ମହାକବି ମହର୍ଷି ବାଲ୍ମୀକିଙ୍କ ପ୍ରଣୀତ—

# ଆର୍ଷ ରାମାୟଣ

( ଓଡ଼ିଆ ପଦ୍ୟାନୁବାଦ )

## ବାଳକାଣ୍ଡ ( ଆଦ୍ୟକାଣ୍ଡ )

ଅନୁବାଦକ :

ପୁରୁଷୋତ୍ତମ ମିଶ୍ର

ସମ୍ପାଦକ :

ପଣ୍ଡିତ ନୀଳମଣି ମିଶ୍ର

ପ୍ରକାଶିକା :

ଶ୍ରୀମତୀ ମଞ୍ଜୁଶ୍ରୀ ମିଶ୍ର

ଏ/ଏଲ୍-୭୫, ଭୀମଟାଙ୍ଗି

ଭୁବନେଶ୍ୱର-୭୫୧୦୦୨

# ବାଲ୍ମୀକୀୟ ଆର୍ଷରାମାୟଣ
## ( ବାଳକାଣ୍ଡ )

ଅନୁବାଦକ :

**ପୁରୁଷୋତ୍ତମ ମିଶ୍ର**

ସମ୍ପାଦକ :

**ପଣ୍ଡିତ ନୀଳମଣି ମିଶ୍ର**


ପ୍ରକାଶିକା :

**ଶ୍ରୀମତୀ ମଞ୍ଜୁଶ୍ରୀ ମିଶ୍ର**
ଏ/ଏଲ୍—୬୫, ଭୀମଟାଙ୍ଗି,
ଭୁବନେଶ୍ୱର-୭୫୧୦୦୨

ପ୍ରଚ୍ଛଦ :

**ପ୍ରସନ୍ନ କୁମାର ସାମନ୍ତ**

ପ୍ରଥମ ମୁଦ୍ରଣ : ୧୦୦୦

୧୯୯୨

ମୁଦ୍ରକ :

**ଶ୍ରୀଲକ୍ଷ୍ମୀ ପ୍ରିଣ୍ଟର୍ସ**
୨୧୨/୭, ବିମାନଘାଟୀ ଅଞ୍ଚଳ,
ଭୁବନେଶ୍ୱର-୯

ମୂଲ୍ୟ :

**ଷାଠିଏ ଟଙ୍କା ମାତ୍ର**


Valmikiya—
**ARSHA RAMAYANA**
BALAKANDA

*Translated by :*
**Purushottama Mishra**

*Edited by :*
**Pandit Nilamani Mishra**


*Published by :*
**Smt. Manjushree Mishra**
A/L—65, Bhimatangi,
Bhubaneswar-751002

*Cover Design by :*
**Prasanna Kumar Samant**

*Printed at :*
**Sri Laxmi Printers**
212/7, Aerodrome Area
Bhubaneswar—9

Price :
**Rupees Sixty only**

—ସମର୍ପଣ—

ପରମାରାଧ୍ୟା ମାତୃଦେବୀଙ୍କ
ପରମ ପବିତ୍ର ସ୍ମୃତିରେ ବାଳକାଣ୍ଡଟି
ସମର୍ପିତ ହେଲା ।

ସ୍ନେହାଧୀନ
**ନୀଳମଣି**

ଜନନୀ ଜନ୍ମଭୂମିଶ୍ଚ ସ୍ୱର୍ଗାଦପି ଗରୀୟସୀ

# ଭୂମିକା

ଓଡ଼ିଆ ସାହିତ୍ୟରେ ମହର୍ଷି ବାଲ୍ମୀକିଙ୍କ ପ୍ରଣୀତ 'ଆର୍ଷରାମାୟଣ'ର ପଦ୍ୟାନୁବାଦ ରୂପେ କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ନବାକ୍ଷର ବୃତ୍ତରେ ରଚିତ ଅପ୍ରକାଶିତ ଅଂଶ କେବଳ ତାଳପତ୍ର ପୋଥିରେ ମିଳେ । ଖୁବ୍ ସମ୍ଭବତଃ ଏହି ଅନୁବାଦଟି ଅଦ୍ୟାପି ପ୍ରକାଶିତ ହୋଇନାହିଁ । ଦକ୍ଷିଣ ଓଡ଼ିଶାର କୃଷ୍ଣଚରଣ ପଟ୍ଟନାୟକଙ୍କ ଅନୁବାଦ ଆଦୌ ମୂଳ ଶ୍ଳୋକାନୁସାରୀ ନୁହେଁ । ବରଂ କବି କୃଷ୍ଣଚରଣ ସାରଳା ଦାସ ଓ ବଳରାମ ଦାସଙ୍କ ପରି ଅନେକ ପରିମାଣରେ କଳ୍ପନା ବିଳାସୀ ହୋଇଛନ୍ତି । ତେଣୁ ଅଦ୍ୟାପି 'ଆର୍ଷରାମାୟଣ'ର ଶ୍ଳୋକାନୁସାରୀ ପଦ୍ୟାନୁବାଦ ଓଡ଼ିଆ ପାଠକ ପାଠିକା ମାନଙ୍କର ହସ୍ତଗତ ହୋଇନାହିଁ । କିନ୍ତୁ ବିଂଶଶତାବ୍ଦୀର ତୃତୀୟ ଦଶକରେ ସ୍ୱର୍ଗତ କବି ପୁରୁଷୋତ୍ତମ ମିଶ୍ର ବାଲ୍ମୀକି ମହର୍ଷିଙ୍କ 'ଆର୍ଷରାମାୟଣ' ଗ୍ରନ୍ଥଟିକୁ ଯଥା ସମ୍ଭବ ସରଳ ପଦ୍ୟାନୁବାଦ କରି, ଓଡ଼ିଆ ସାହିତ୍ୟର ଶ୍ରୀମଣ୍ଡନ କରିଛନ୍ତି ।

କବି ପୁରୁଷୋତ୍ତମ ବାଲେଶ୍ୱର ଜିଲ୍ଲାର ଭଦ୍ରକ ଅନ୍ତର୍ଗତ ସାହିଡଙ୍ଗ ନିକଟବର୍ତ୍ତୀ ତୃଣପଦା ଶାସନରେ ବିପ୍ର ମୈତ୍ରେୟ ବଂଶଜ ଭଗବାନ ମିଶ୍ର ଓ ପାର୍ବତୀ ଦେବୀଙ୍କର ଚତୁର୍ଥ ପୁତ୍ର ରୂପେ ଖ୍ରୀ: ଅ: ୧୮୯୦ ମାଘ ଶୁକ୍ଳଦ୍ୱାଦଶୀ ତିଥିରେ ଜନ୍ମ ଗ୍ରହଣ କରିଥିଲେ । ପିଲାଟି ଦିନରୁ ସେ ପିତାଙ୍କୁ ହରାଇ ଜ୍ୟେଷ୍ଠଭ୍ରାତା ଭାଗୀରଥି ମିଶ୍ରଙ୍କ ଛତ୍ରଛାୟାରେ ବାଲ୍ୟ, ଶୈଶବ ଅତିକ୍ରମ କରି ଯଜନ, ଯାଜନ, ପଠନ ଓ ପାଠନ ଆଦି ବ୍ରାହ୍ମଣ କର୍ମରେ ମନ ନିୟୋଗ କରିଥିଲେ । ଜ୍ୟେଷ୍ଠଭ୍ରାତାଙ୍କ ତତ୍ତ୍ୱାବଧାନରେ ସେ ଅମର, କୁମର ଶେଷ କରି, କାଶୀପଦ୍ଧତିର ମଧ୍ୟମାନ କଣ୍ଠସ୍ଥ କରିବା ସଙ୍ଗେ ସଙ୍ଗେ ରାମାୟଣ, ମହାଭାରତ, ହରିବଂଶ, ରସକଲ୍ଲୋଳ, ବୈଦେହୀଶ ବିଳାସ, ବିଦଗ୍ଧ ଚିନ୍ତାମଣି, ମଥୁରାମଙ୍ଗଳ ଆଦି ପ୍ରାଚୀନ ପୁରାଣ, କାବ୍ୟ, ଚଉତିଶା, ଚଉପଦୀ ଆଦି ଅଧ୍ୟୟନ କରିଥିଲେ । ତାଙ୍କ ଜ୍ୟେଷ୍ଠଭ୍ରାତା ତିନିଜଣ ଭାଗୀରଥି, ପ୍ରହ୍ଲାଦ ଓ ସାଗର ମିଶ୍ର ତତ୍କାଳୀନ ପୂର୍ବବଙ୍ଗ (ବାଂଲାଦେଶ)ର 'ପାବନା' ଜିଲ୍ଲା ଅନ୍ତର୍ଗତ କାମରୂପର ରାୟବାଡ଼ି ଜମିଦାରୀରେ ବିଭିନ୍ନ କାର୍ଯ୍ୟରେ ନିଯୁକ୍ତ ଥିଲେ । ଭାଇମାନଙ୍କ ଦ୍ୱାରା ପ୍ରେରିତ ଟଙ୍କାରେ ସାନଭାଇ ପୁରୁଷୋତ୍ତମ ଗୃହଧନ୍ଦା ଚଳାଇବା ସଙ୍ଗେ ସଙ୍ଗେ ପୈତୃକ ସମ୍ପତ୍ତିର ଅଭିବୃଦ୍ଧି କରିଥିଲେ । ଶୁଣାଯାଏ- ସନ୍ ୧୩୨୨ ସାଲ୍ ଅର୍ଥାତ୍ ୧୯୧୫/୧୬ ମସିହାରେ ଉତ୍କଳରେ ଯେଉଁ ଦୁର୍ଭିକ୍ଷ ପଡ଼ିଥିଲା, ସେତେବେଳେ କବି

ପୁରୁଷୋତ୍ତମ ସମ୍ପୃକ୍ତ ଧାନ ବଦଳରେ ନିଜ ଭୂସମ୍ପତ୍ତିର ଯଥେଷ୍ଟ ଅଭିବୃଦ୍ଧି କରିଥିଲେ । ଏପରିକି, କବି ପୁରୁଷୋତ୍ତମ ଖଣ୍ଡିଏ ଷ୍ଟେଟ୍‌କାଟର ଜମିଦାରୀ କିଣି ବେଶ୍ ପ୍ରତିପତ୍ତି ସମ୍ପନ୍ନ ହୋଇ ଉଠିଥିଲେ । ତା' ଫଳରେ ସାବରଙ୍ଗର ଜମିଦାର ପୁରୁଷୋତ୍ତମ ମହାପାତ୍ର ଓ ଗୋପମାଟିର ପାଣିଗ୍ରାହୀ ବଂଶ ସହିତ ତାଙ୍କର ଘନିଷ୍ଠତା ବଢ଼ି ଉଠିଲା ।

ସେତିକିବେଳେ ତୁଣପଦା ନିକଟବର୍ତ୍ତୀ ବଗିଆ ନିବାସୀ କୃଷ୍ଣଚନ୍ଦ୍ର (କୃଷ୍ଣିଆ)ଙ୍କ ସହିତ ମିଳିତ ହୋଇ ସେ ଗୋଟିଏ 'ପାଲାଦଳ' ଗଠନ କରିବା ସଙ୍ଗେ-ସଙ୍ଗେ ପ୍ରାଚୀନ ସଙ୍ଗୀତଚର୍ଚ୍ଚାରେ ମନୋନିବେଶ କଲେ । ଧୀରେ ଧୀରେ ତାଙ୍କ ପାଲାଦଳଟି ବେଶ୍ ଲୋକପ୍ରିୟ ହୋଇଉଠିଲା । ସେ ନିଜେ ଗାୟକ ଓ କୃଷ୍ଣଚନ୍ଦ୍ର ଶ୍ରୀପାଳିଆ ରୂପେ ପାଲାଦଳଟିକୁ ସମୃଦ୍ଧ କରିବା ଦିଗରେ ଦିନରାତି ପରିଶ୍ରମ କରିବାକୁ ଲାଗିଲେ । ସେତେବେଳେ ତୁଣପଦା ଶାସନ ମଧ୍ୟରେ ତାଙ୍କ ସଂଯୁକ୍ତ ପରିବାରର ତିନୋଟି ସ୍ଥାନରେ ତିନି ଖଣ୍ଡ ଘର ଥିଲା । ସେ ମଝି ଖଣ୍ଡିକୁ ପାଲାଦଳର ତାଲିମ୍ ଓ ଅଭ୍ୟାସ ପାଇଁ ବ୍ୟବହାର କରୁଥିଲେ । ଧୀରେ ଧୀରେ କବି ପୁରୁଷୋତ୍ତମଙ୍କ ପାଲାଦଳ ଆଖପାଖ ଗାଆଁମାନଙ୍କରେ ପାଲା ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ଦୂର ଦୂରାନ୍ତରେ ପାଲା ଗାଇବାକୁ ନିମନ୍ତ୍ରଣ ପାଇଲେ ।

ଖୁବ୍ ସମ୍ଭବତଃ ୧୯୬୫—୧୯୬୮ ମସିହା ମଧ୍ୟରେ ତାଙ୍କ ପାଲାଦଳ ବେଶ୍ ସୁଖ୍ୟାତି ଅର୍ଜନ କରିଥିଲା । ସେ ପାଲାଦଳରେ ଅଧିକ ମନୋନିବେଶ କରିବା ଫଳରେ ନିଜର ଭୂସମ୍ପତ୍ତି ଓ ଜମିଦାରୀ ପ୍ରତି ଆଦୌ ଦୃଷ୍ଟି ଦେଇ ପାରିଲେ ନାହିଁ । ତେଣୁ କୃଷିବାସ ସୁବ୍ୟବସ୍ଥା ରୂପେ ହୋଇପାରିଲା ନାହିଁ ଏବଂ ଠିକ୍ ସେହି ସମୟରେ ଜ୍ୟେଷ୍ଠଭ୍ରାତା ଭଗୀରଥ ମିଶ୍ରଙ୍କର ଅକାଳ ବିୟୋଗ ନିଜର କର୍ମକ୍ଷେତ୍ରରେ ହୋଇ-ଯାଆନ୍ତେ, ପରିବାର ଉପରେ ଏକ ଶକ୍ତ ଧକ୍କା ଲାଗିଲା । ବାହାରୁ ଆସୁଥିବା ଟଙ୍କା ଏକ ନେଲେକେ ବନ୍ଦ ହୋଇ ଯାଆନ୍ତେ, ଅନ୍ୟ ଦୁଇଭାଇ ପ୍ରହ୍ଲାଦ ଓ ସାଗର ପୂର୍ବବଙ୍ଗ ତ୍ୟାଗ କରି ଘରେ ଆସି ବସି ରହିଲେ ।

ପିତୃ ପିତାମହଙ୍କ ଅମଳରୁ ଯେଉଁ ଭୂସମ୍ପତ୍ତି ଓ ଯଜମାନ ଥିଲା, ସେଇଥିରେ ସଂଯୁକ୍ତ ବଡ଼ ପରିବାରକୁ ଚଳାଇବା ଆଦୌ ସହଜସାଧ୍ୟ ହେଲା ନାହିଁ । ଏଣେ କନିଷ୍ଠ ଭ୍ରାତା ପୁରୁଷୋତ୍ତମଙ୍କ ପାଲା ଗାୟନରୁ ଯେଉଁ ରୋଜଗାର ହେଉଥିଲା, ତାହା କେବଳ ପାଲାଦଳର ସାଜସଜ୍ଜା ତଥା ଆଡମ୍ବରରେ ବ୍ୟୟିତ ହେବାକୁ ଲାଗିଲା । ତା' ଫଳରେ ଖର୍ଚ୍ଚର ସ୍ରୋତକୁ ସମ୍ଭାଳିବା ପାଇଁ, ଅର୍ଥର ଆବଶ୍ୟକତା ପଡ଼ିବା ମାତ୍ରେ, ଭୂସମ୍ପତ୍ତି

ବନ୍ଦସ୍ତ କରିବାକୁ ଭାଇମାନେ ସ୍ଥିର କଲେ ଏବଂ ତାହାରି ଫଳରେ ମିଶ୍ର ପରିବାର ସମାଜରେ ନିଜର ପ୍ରତିପତ୍ତି ହରାଇବାକୁ ଲାଗିଲେ । ଧୀରେ ଧୀରେ ଅଭାବର ପ୍ରଖର ସ୍ରୋତ ମଧ୍ୟରେ ନିଜ ବଂଶର ଗୌରବ ହ୍ରାସ ପାଆନ୍ତେ, ଗାୟକ ପୁରୁଷୋତ୍ତମ ପାଲା-ଗାୟନ ତ୍ୟାଗ କରି, ଯଜନ ଯାଜନରୁ ଅଧିକ ରୋଜଗାର କରିବା ପାଇଁ ମନସ୍ଥ କଲେ । କିନ୍ତୁ ପାଲାଦଳର ସହଯୋଗୀବୃନ୍ଦ ତାଙ୍କୁ ଉତ୍ସାହିତ କରାଇ 'ଦଳ'ଟିକୁ କୌଣସିମତେ ବଞ୍ଚାଇ ରଖିଲେ ।

କବି ପୁରୁଷୋତ୍ତମ ଭଦ୍ରକ ଷ୍ଟେସନର ପଶ୍ଚିମ ପଟରେ ଥିବା ଚରମ୍ପା ଗ୍ରାମର ପଣ୍ଡିତ ଗୋବିନ୍ଦଶୁକ୍ଳଙ୍କ କନ୍ୟା ଗେନ୍ଦେଇ ଦେବୀଙ୍କୁ ବିବାହ କରିଥିଲେ । ପତିପତ୍ନୀଙ୍କ କୋଳମଣ୍ଡନ କରି ରୁକ୍ମଣୀ, ସରସ୍ଵତୀ, ପ୍ରଭାବତୀ ଓ ଲକ୍ଷ୍ମୀ ନାମରେ ଚାରୋଟି କନ୍ୟା ଜନ୍ମଗ୍ରହଣ କରିଥିଲେ । କିନ୍ତୁ ପରେ ପରେ ଦୁଇଟି ପୁତ୍ର ଜାତ ହୋଇ ଅକାଳରେ ମୃତ୍ୟୁ ମୁଖରେ ପଡ଼ିବା ଫଳରେ, ଉଭୟ ପତିପତ୍ନୀଙ୍କ ମନରେ ଗଭୀର ଦୁଃଖର ରେଖାପାତ ହୋଇଥିଲା । ତେଣୁ କବି ପୁରୁଷୋତ୍ତମ ସେହି ଅପତ୍ୟ ଦୁଃଖରେ ମ୍ରିୟମାଣ ହୋଇ, ଅଧିକ ସମୟ ପାଲା ଗାୟନରେ ବିତାଉଥିଲେ ।

ଦୈବଯୋଗକୁ ପତ୍ନୀ ଗେନ୍ଦେଇ ଦେବୀ ପୁଣି ଅନ୍ତଃସତ୍ତ୍ଵା ହୁଅନ୍ତେ, ତାଙ୍କ ମନରେ ପୁତ୍ରପ୍ରାପ୍ତିର ଆଶା ସଞ୍ଚାର ହେଲା । ସେତିକବେଳେ ଅର୍ଥାତ୍ ୧୯[illegible]୮ ଆଷାଢ଼ ମାସ ଶ୍ରୀଗୁଣ୍ଡିଚା ଦିନ ସେ ସଙ୍କଳ୍ପ କରି ବାଲ୍ମୀକିଙ୍କ 'ଆର୍ଷରାମାୟଣ'ଟିକୁ ଧାରାବାହିକ ଭାବରେ ପତ୍ନୀ ଗେନ୍ଦେଇ ଦେବୀଙ୍କୁ ଶୁଣାଇବାକୁ ଲାଗିଲେ । ମଝିରେ ମଝିରେ ପାଲା-ଗାୟନରେ ମଧ୍ୟ ସେହି ରାମାୟଣ ଅଯୋଧ୍ୟାକାଣ୍ଡକୁ ସ୍ଵରଚିତ ପଦ୍ୟାନୁବାଦରେ ପାଲାର ଶ୍ରୋତୃବୃନ୍ଦଙ୍କୁ ଶୁଣାଉଥିଲେ ।

ଏହି ସମୟରେ କବି ପୁରୁଷୋତ୍ତମଙ୍କ ଶ୍ଵଶୁର ଘର ଉପରେ ଏକ ମସ୍ତବଡ଼ ଧକ୍କା ଲାଗିଲା । ତାଙ୍କ ଶ୍ଵଶୁର ଗୋବିନ୍ଦଶୁକ୍ଳଙ୍କ ବିୟୋଗ ପରେ, ତାଙ୍କର ଭେଣ୍ଡିଆ ପୁଅ ପରିବାରଟିକୁ କୌଣସିମତେ ଚଳାଉଥିଲେ । ମାତ୍ର ପିତୃ ବିୟୋଗର ମାତ୍ର ଦୁଇବର୍ଷ ପରେ କବି ପୁରୁଷୋତ୍ତମଙ୍କ ଶାଳକ ତଥା ସ୍ଵର୍ଗତଃ ଗୋବିନ୍ଦ ଶୁକ୍ଳଙ୍କ ତେଇଶିବର୍ଷର ପୁତ୍ର ଗଦାଧର ଶୁକ୍ଳ ରକ୍ତ ଆମାଶୟ ରୋଗରେ ମୃତ୍ୟୁବରଣ କରନ୍ତେ କବିଙ୍କୁ ଶ୍ଵଶୁରଘର ପରିବାରର ଦାୟିତ୍ଵ ତୁଲାଇବାକୁ ପଡ଼ିଲା । ଏହା ଫଳରେ ଭାଇମାନଙ୍କ ସହିତ ତାଙ୍କର ମନାନ୍ତର ବୃଦ୍ଧି ହେବାକୁ ଲାଗିଲା ।

କବି ପୁରୁଷୋତ୍ତମ ଏକାଧାରରେ ପାଲାଗାୟନ ଓ ଆର୍ଷରାମାୟଣରେ ଅନୁବାଦ କାର୍ଯ୍ୟ ହାତକୁ ନେଇ କାର୍ଯ୍ୟ କ୍ଷେତ୍ରରେ ଅଗ୍ରସର ହୋଇଥିଲେ ।

ଠିକ୍ ଏହି ସମୟରେ ତାଙ୍କ ଜୀବନର ଗତିସ୍ରୋତ ଏକ ଭିନ୍ନ ଦିଗରେ ପ୍ରବାହିତ ହେବାକୁ ଲାଗିଲା । ୧୯୨୯ ମସିହା ଅପ୍ରେଲ୍ ବାର ତାରିଖରେ ତାଙ୍କ ପତ୍ନୀ ଗୋଟିଏ ପୁତ୍ର ସନ୍ତାନ ଜାତ କଲେ । ସେତେବେଳେ କବି ପୁରୁଷୋତ୍ତମ ନିଜ ଗ୍ରାମଠାରୁ ଏକ ନିକଟବର୍ତ୍ତୀ ସ୍ଥାନରେ ବାଦୀ ପାଲାରେ ଗାୟକ ରୂପେ ପାଲାଦଳ ସହିତ ଯୋଗ ଦେଇଥିଲେ । ତାଙ୍କର ପ୍ରତିଦ୍ୱନ୍ଦୀ ଗାୟକ ରୂପେ ଉତ୍ତର ବାଲେଶ୍ୱରର ବରିଷ୍ଠ ପାଲା ଗାୟକ ବିକର୍ତ୍ତନ ମହାପାତ୍ର ପାଲା ଗାୟନ କରୁଥିଲେ । ୧୯୨୯ ଅପ୍ରେଲ ଏଗାର ତାରିଖ ରାତିର ଶେଷ ପ୍ରହରରେ ଗାୟକ ବିକର୍ତ୍ତନ ମହାପାତ୍ର କବି ପୁରୁଷୋତ୍ତମଙ୍କୁ ଯେଉଁ ପ୍ରଶ୍ନଗୁଡ଼ିକ ପଚାରିଥିଲେ, ତା'ର ଉତ୍ତର ଦେଉଁ ଦେଉଁ ପରଦିନ ସକାଳ ହୋଇଗଲା । ଏହି ସମୟରେ ନିଜ ଗାଁରୁ ଜଣେକ ଲୋକ ଆସି, ତାଙ୍କ ପତ୍ନୀଙ୍କ ଗର୍ଭରୁ ପୁତ୍ର ସନ୍ତାନଟିଏ ଜାତ ହୋଇଥିବାର ଖବର ଦେବାମାତ୍ରେ, ସେ ଆନନ୍ଦରେ ବିଭୋର ହୋଇଉଠିଲେ ଏବଂ ପରମୁହୂର୍ତ୍ତରେ ଆଉ ଜଣେ ଲୋକଆସି ଖବର ଦେଲା ଯେ, ନବଜାତ ଶିଶୁଟି ଜନ୍ମ ହେବା ପରେ ଆଦୌ କାନ୍ଦୁନାହିଁ । ଏହା ଶୁଣିବାମାତ୍ରେ ସେ ଦୁଃଖରେ ମ୍ରିୟମାଣ ହୋଇଯାଇ, ସେହିଦିନଠାରୁ ଆଉ ପାଲାଗାୟନ ନ କରିବାର ଶପଥ ନେଇ, ଶ୍ରୀପାଳିଆ କୃଷ୍ଣଚନ୍ଦ୍ର (କୃଟିଆ)ଙ୍କ ହସ୍ତରେ 'ଚଉଁର' ଟେକ ଦେଇ ନିଜ ଗ୍ରାମ ତୃଣପଦାକୁ ଫେରିଆସିଲେ । ତା'ପରେ ଶ୍ରୀପାଳିଆ କୃଷ୍ଣଚନ୍ଦ୍ର (କୃଟିଆ) ଗାୟକ ରୂପେ ତାଙ୍କ ପାଲାଦଳଟିକୁ କିଛିଦିନ ଚଳାଇଥିଲେ ।

ଦୈବଯୋଗକୁ କବି ପୁରୁଷୋତ୍ତମଙ୍କ ନବଜାତ ପୁତ୍ର ସନ୍ତାନଟି 'ଗୁଣି' ଓ 'ଟୁଙ୍କୁଟାଙ୍କୋ'ରେ ଭଲ ହୋଇଗଲା । କବି ଦମ୍ପତ୍ତି ପୁତ୍ର ସନ୍ତାନଟିକୁ ପାଇ ଆନନ୍ଦରେ ବିଭୋର ହୋଇଗଲେ । ନବଜାତ ଶିଶୁର ନାମକରଣ ଦିନ ତାକୁ 'ମନୋରଞ୍ଜନ' ନାମରେ ନାମିତ କରିଗଲା ସତ, କିନ୍ତୁ 'ଏକୋଇଶା' ଦିନ ଗାୟକ କୃଟିଆ (କୃଷ୍ଣଚନ୍ଦ୍ର) ପୁତ୍ରଟିର ନାମ ପରିବର୍ତ୍ତନ କରିଦେଲେ । ସତ୍ୟନାରାୟଣଙ୍କ ଉଦ୍ଦେଶ୍ୟରେ 'ଶିରିଣି' ଭୋଗ ସମର୍ପଣ କରିବା ପରେ, ନୂତନଥାଳୀ ଓ ତା' ଉପରେ ପଡ଼ିଥିବା ନୂତନ ବସ୍ତ୍ର ଉପରେ ଶୋଇଥିବା ପୁତ୍ରଟିକୁ ଧରି ଉଚ୍ଛ୍ୱସିତ କଣ୍ଠରେ ଗାୟକ କୃଷ୍ଣଚନ୍ଦ୍ର ଗାଇ ଉଠିଲେ—

"ବାପଧନ ନୀଳମଣିରେ,
ମାଆ ମାଆ ବୋଲି ଡାକିବ କିଏ ?
ଦୁଃଖିଧନ ନୀଳମଣିରେ !"

ଏହି ଉଚ୍ଛ୍ୱସିତ ଗାନ ଫଳରେ ପୁତ୍ରଟିର ନାମ 'ମନୋରଞ୍ଜନ' ପରିବର୍ତ୍ତେ 'ନୀଳମଣି' ହୋଇଥିଲା । ପିଲାଟିର ଚାରିବର୍ଷ ଚାରିମାସ ଚାରିଦିନରେ 'ଝଡ଼ିଛୁଆଁ'

ହେଲ ଚରମ୍ପା ଗ୍ରାମରେ । ସେତେବେଳକୁ କବି ପୁରୁଷୋତ୍ତମ ଶ୍ୱଶୁର ଘରର ପରିବାରକୁ ଅଭ୍ୟାନ କରିବା ଲାଗି, ନିଜ ଗ୍ରାମରୁ ସପରିବାର ଚରମ୍ପା ଗ୍ରାମକୁ ଆସି ଯାଇଥିଲେ ଏବଂ ସେଠାରେ ରାମଭକ୍ତ ମହାବୀର ହନୁମାନଜୀଙ୍କ ସେବା ତଥା ଯଜନ ଯାଜନରେ ମନ ଦେଇ, ସୁଖ୍ୟାତି ଅର୍ଜନ କରିଥିଲେ ।

ଏହା ମଧ୍ୟରେ କବି ପୁରୁଷୋତ୍ତମ ଚରମ୍ପା ଗ୍ରାମର ଜନୈକ ଦକ୍ଷିଣକାଳୀ ସାଧକ ନାରାୟଣ ପଣ୍ଡାଙ୍କ ପ୍ରରୋଚନାରେ କାଳୀପୂଜା ଆରମ୍ଭ କରାଇଥିଲେ । ଭଦ୍ରକ ଷ୍ଟେସନର 'ଲେକେସେଡ୍'ରେ ପ୍ରତିବର୍ଷ ଅତ୍ୟନ୍ତ ସମାରୋହରେ ଶ୍ୟାମାପୂଜା, ସାଧକ ନାରାୟଣ ଓ ମୋ' ପିତା (କବି ପୁରୁଷୋତ୍ତମ ମିଶ୍ର)ଙ୍କ ସହଯୋଗରେ ହେବାକୁ ଲାଗିଲା । ତା' ପରେ ପରେ ମୋ' ପିତୃଦେବ ଚରମ୍ପା ଓ ତା'ର ଆଖପାଖରେ ଜଣେ ପ୍ରସିଦ୍ଧ କର୍ମକାଣ୍ଡବିତ୍, ଯାଜ୍ଞିକ ତଥା କାଳୀପୂଜକ ଭାବରେ ବେଶ୍ ସୁଖ୍ୟାତି ଅର୍ଜନ କରିଥିଲେ ।

'ଖଡ଼ିଛୁଆଁ' ପରେ ଜଣେ ନାୟକ ଅବଧାନଙ୍କ ତତ୍ତ୍ୱାବଧାନରେ ମୋର ପାଠାରମ୍ଭ ହେଲା ଏବଂ ମୋର ପାଠପଢ଼ା ପ୍ରତି ଆଗ୍ରହ ଓ ସ୍ମରଣଶକ୍ତି ଦେଖି ମୋ' ପିତୃଦେବ ମନେ ମନେ ଆହ୍ଲାଦିତ ହୋଇଥିଲେ ହେଁ, 'ମୁଁ କିଛି ପାଠ ପଢ଼ୁନାହିଁ' 'ମୂର୍ଖଟେ ହେବି' ବୋଲି ଭର୍ତ୍ସନା କରୁଥିଲେ ।

ଏହି ସମସ୍ତ ମଧ୍ୟରେ କବି ପୁରୁଷୋତ୍ତମ (ମୋ' ପିତା) ସନ୍ଧ୍ୟା ସମୟରେ ମୋତେ ଓ ମୋ' ଉପର ଭଉଣୀ ଲକ୍ଷ୍ମୀକୁ ବସାଇ ଅନେକ ଶ୍ଳୋକ ଶିଖାଉଥିଲେ ଏବଂ ପ୍ରାଚୀନ କାବ୍ୟ କବିତା, ବିଶେଷତଃ 'ମହାନାଟକ'ରୁ ଶ୍ଳୋକମାନ ପଢ଼ି ଅର୍ଥ ଅର୍ଥାନ୍ତର କରି ବୁଝାଉଥିଲେ । ସେ ମଧ୍ୟ ଅବସର ସମୟରେ ଭଜନ, ଚଉପଦୀ ଆଦି ରଚନା କରୁଥିଲେ ଏବଂ ଆର୍ଷରାମାୟଣର ଅନୁବାଦରେ ମନ ଦେଇଥିଲେ ।

ମୋର ତଥା ଆମ ପରିବାରର ଦୁର୍ଭାଗ୍ୟ ମୋ' ପିତା ୧୯୩୬ ମସିହା କାଳୀପୂଜା ଶେଷ ପରେ ପରେ ରୋଗରେ ଆକ୍ରାନ୍ତ ହେଲେ । ସେତେବେଳେ ଆମ ଗାଆଁର 'ଆଖଣ୍ଡଳମଣି' ସାଧକ ଘନ ବଇଦ ଚେର ମୂଳମୂଳିକା ଦେଇ ଚିକିତ୍ସା କରୁଥିଲେ । ମୋ' ପିତା ଡାକ୍ତରୀ ଚିକିତ୍ସା ପ୍ରତି ବୀତସ୍ପୃହ ହୋଇ, ଘନ ବଇଦଙ୍କ ଚିକିତ୍ସାରେ ବିଶ୍ୱାସ କରି, ତାଙ୍କ ପ୍ରଦତ୍ତ ଚେରମୂଳ ବାଟି ଔଷଧ ରୂପେ ବ୍ୟବହାର କଲେ । କିନ୍ତୁ ତାଙ୍କର ରୋଗ କୌଣସିମତେ ଉପଶମ ହେଲା ନାହିଁ । ଲୋକମାନେ କୁହାକୁହି ହେଲେ– ଏଥର କାଳୀପୂଜାରେ ସେ ପୂଜା ଠିକ୍‌ଭାବରେ କରି ନଥିବାରୁ,

ତା' ଉପରେ ଦୈବୀଚକ୍ରକ ପଡ଼ିଛି । କିନ୍ତୁ ମୋ' ପିତା ସେଥିରେ ଆଦୌ ବିଶ୍ୱାସ କରୁ ନଥିଲେ ଏବଂ ପ୍ରତିଦିନ ଗରମ ପାଣିରେ ଦେହ ପୋଛିପୋଛି କରି, କୁଳ-ଦେବତାଙ୍କ ଅର୍ଚ୍ଚନା କରିବା ସଙ୍ଗେ ସଙ୍ଗେ 'କାଳୀକର୍ପୂର' ଓ 'କାଳୀ ସହସ୍ର ନାମ' ଆଦି ପାଠ କରୁଥିଲେ ।

ବାସ୍ତବିକ୍ ଆମ ପରିବାର ଉପରେ 'ଦୈବୀଚକ୍ରକ' ପଡ଼ିଲା । ମୋ' ପିତା ଗାୟକ ତଥା କବି ପୁରୁଷୋତ୍ତମ ମିଶ୍ର ୧୯୩୭ ମସିହା .....ପୌଷମାସ ବୁଧଦିନ... ଦିନ ରତିରତି ସମୟରେ ଆମକୁ ଅଥଳ ଦରିଆରେ ଭସାଇ ଦେଇ ଆର ପୁରକୁ ବାଟ କାଟିଲେ ।

ପିତାଙ୍କ ମୃତ୍ୟୁ ପରେ ଆମ ପରିବାର ଛିନ୍ନଛତ୍ର ହୋଇଗଲା ଏବଂ ମୋ' ଶିକ୍ଷାର ମଧ୍ୟ ଇତିଶ୍ରୀ ହେଲା । ପରେ ବହୁ ଝଡ଼ଝଞ୍ଜାର ସମ୍ମୁଖୀନ ହୋଇ ମୁଁ ମୋର ଶିକ୍ଷାଗତ ଯୋଗ୍ୟତା ବଢ଼ାଇଲି । ମୋ' ପିତାଙ୍କ ଅପୂର୍ଣ୍ଣ କାମନା କିଞ୍ଚିତ୍ ପରିମାଣରେ ପୂରଣ କରିବାରେ ମୁଁ ସକ୍ଷମ ହୋଇଥିଲେ ହେଁ, ତାଙ୍କ ରଚିତ ଭଜନ, ଚଉପଦୀ, ବିଶେଷତଃ 'ଆର୍ଷରାମାୟଣ'ର ଅନୁବାଦର ସମ୍ପୂର୍ଣ୍ଣ ଅଂଶ ଏ' ଯାବତ୍ ମୋର ହସ୍ତଗତ ହୋଇନାହିଁ । କେତୋଟି ଭଜନ ଓ ଆର୍ଷରାମାୟଣର ଅନୁବାଦରୁ କେତେକାଂଶ ପାଇବା ପରେ, ପିତୃଦେବଙ୍କ ଦ୍ୱାରା ଆରମ୍ଭ କରାଯାଇଥିବା କାର୍ଯ୍ୟ ସମ୍ପୂର୍ଣ୍ଣ କରିବା ପାଇଁ ଅଭିଳାଷୀ ହେଲି । ପିତାଙ୍କ ଅନୁବାଦକୁ ମୂଳ ସଂସ୍କୃତ ସହିତ ମିଳାଇ ଦେଖିବା ପରେ ମୋର ଆନନ୍ଦର ସୀମା ରହିଲା ନାହିଁ । ତାଙ୍କ ଅନୁବାଦର ଛିନ୍ନ ପୃଷ୍ଠାରୁ ପାଠୋଦ୍ଧାର କରିବା ସଙ୍ଗେ ସଙ୍ଗେ ବର୍ତ୍ତମାନ ସୁଦ୍ଧା ମୁଁ ବାଲ୍ମୀକିଙ୍କ ରାମାୟଣର ବାଲକାଣ୍ଡ ଓ ଅଯୋଧ୍ୟାକାଣ୍ଡ ସମ୍ପୂର୍ଣ୍ଣ କରିଛି ଏବଂ ଅରଣ୍ୟ, କିଷ୍କିନ୍ଧା, ସୁନ୍ଦର, ଲଙ୍କା ଓ ଉତ୍ତରକାଣ୍ଡରୁ କେତେକାଂଶ ପିତୃଦେବଙ୍କ ପଦଚିହ୍ନରେ ଶେଷ କରିବାରେ ସକ୍ଷମ ହୋଇଛି ।

ସଂସ୍କୃତରେ ଲିଖିତ 'ଆର୍ଷରାମାୟଣ' କବି କୁଳଗୁରୁ ମହାକବି ବାଲ୍ମୀକିଙ୍କ ଦ୍ୱାରା ରଚିତ ହେବା ପରେ ସମଗ୍ର ଭାରତବର୍ଷର କବିମଣ୍ଡଳୀରେ ଚହଳ ସୃଷ୍ଟି ହୋଇଥିଲା । ଭାରତର ବିଭିନ୍ନ ଅଞ୍ଚଳର ସଂସ୍କୃତ ତଥା ଆଞ୍ଚଳିକ ଭାଷାର କବିମାନେ ବାଲ୍ମୀକିଙ୍କ ପଦଚିହ୍ନର ଅନୁସରଣ ତଥା ଅନୁକରଣରେ ଶତଜିହ୍ୱ ହୋଇଉଠିଲେ ।

ବାଲ୍ମୀକିଙ୍କ 'ଆର୍ଷରାମାୟଣ'ର ଅବଲମ୍ବନରେ ଆଧ୍ୟାତ୍ମ ରାମାୟଣ, ବ୍ରହ୍ମ-ରାମାୟଣ, ତାର୍କ୍ଷ୍ୟ ରାମାୟଣ ପ୍ରଭୃତି ବହୁ ରାମାୟଣ, ଅଷ୍ଟାଦଶ ପୁରାଣ ବାଲ୍ମୀକିଙ୍କ

କଥାବସ୍ତୁକୁ ଅନେକାଂଶରେ ପଲ୍ଲବିତ କରିଛନ୍ତି । ସେହିପରି କାବ୍ୟ, ମହାକାବ୍ୟ, ଚମ୍ପୂ, ନାଟକାଦିରେ କାଳିଦାସଙ୍କ ରଘୁବଂଶ, ଭଟ୍ଟିଙ୍କ ରାବଣବଧ ମହାକାବ୍ୟ, କୁମାର ଦାସଙ୍କ ଜାନକୀ ହରଣ, ଅଭିନନ୍ଦଙ୍କ ରାମଚରିତ, କ୍ଷେମେନ୍ଦ୍ରଙ୍କ ରାମାୟଣ ମଞ୍ଜରୀ, ଭାସଙ୍କ ପ୍ରତିମା ନାଟକ ଓ ଅଭିଷେକ ନାଟକ, ଭବଭୂତିଙ୍କ ଉତ୍ତର ରାମଚରିତ ନାଟକ ଓ ମହାବୀର ଚରିତ, ମୁରାରି ମିଶ୍ରଙ୍କ ଅନର୍ଘ ରାଘବ ନାଟକ, ଜୟଦେବଙ୍କ ପ୍ରସନ୍ନରାଘବ, ମଧୁସୂଦନ ମିଶ୍ରଙ୍କ ହନୁମନ୍ନାଟକ, ମାର୍କଣ୍ଡେୟ ମିଶ୍ରଙ୍କ ଦଶଗ୍ରୀବ ବଧ ମହାକାବ୍ୟ, ବାସୁଦେବ ପ୍ରହରାଜଙ୍କ ରାଘବ ଯାଦବୀୟ ମହାକାବ୍ୟ, କୃଷ୍ଣ ଶ୍ରୀଚନ୍ଦନଙ୍କ ଅବ୍‌ଦଦୂତ ଖଣ୍ଡକାବ୍ୟ ପ୍ରଭୃତି ବାଲ୍ମୀକୀୟ ବିଭୂର ଧାରାର ପୃଷ୍ଠପୋଷକତା କରିଛନ୍ତି ।

ଆଞ୍ଚଳିକ ଭାଷାରେ ଯେତେ ରାମାୟଣ ରଚିତ ହୋଇଥିଲା, ତନ୍ମଧ୍ୟରେ ତାମିଲ୍‌ଭାଷାର କମ୍ବରାମାୟଣ, ତେଲଗୁର ରଙ୍ଗନାଥ ରାମାୟଣ, ମଲୟାଲମ୍‌ର ଇରାମଚରିତ (ରାମଚରିତ), କନ୍ନଡ଼ ଭାଷାର ପମ୍ପ ରାମାୟଣ, ଗୁଜରାଟୀ ଭାଷାର ମାଉଣବସାଏଙ୍କ ରାମାୟଣ, ମରାଠୀର କବି ଏକନାଥଙ୍କ ଭାବାର୍ଥ ରାମାୟଣ, କାଶ୍ମୀରୀ ଭାଷାର ରାମାବତାର ଚରିତ, ଅସମୀୟା ଭାଷାର ମାଧବକନ୍ଦଲୀଙ୍କ ରାମାୟଣ, ବଙ୍ଗଳାର କୃତ୍ତିବାସ ରାମାୟଣ, ହିନ୍ଦୀରେ ସନ୍ଥ ତୁଳସୀ ଦାସଙ୍କ ରାମଚରିତମାନସ, ଏବଂ ଓଡ଼ିଆ ଭାଷାରେ ରଚିତ ମହାକବି ବଳରାମ ଦାସଙ୍କ ଜଗମୋହନ ରାମାୟଣ ପ୍ରଭୃତି ବିଶେଷ ପ୍ରଖ୍ୟାତି ଅର୍ଜନ କରିଛି ।

ଏତଦ୍‌ବ୍ୟତୀତ ଓଡ଼ିଆ ସାହିତ୍ୟରେ ବହୁ ରାମକାବ୍ୟ ଆମ ସଂସ୍କୃତିକୁ ସମୃଦ୍ଧ କରିଛି । ସେହି କାବ୍ୟ, ମହାକାବ୍ୟଗୁଡ଼ିକ ମଧ୍ୟରେ ଅର୍ଜୁନ ଦାସଙ୍କ ରାମବିଭା, ଧନଞ୍ଜୟ ଭଞ୍ଜଙ୍କ ଶ୍ରୀରାମ ବିଳାସ, କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶ ବିଳାସ, କାହ୍ନୁ ଦାସଙ୍କ ରାମରସାମୃତସିନ୍ଧୁ, ବିଶ୍ୱନାଥ ଖୁଣ୍ଟିଆଙ୍କ ବିଚିତ୍ର ରାମାୟଣ, ଗୋପୀନାଥ ପାଣ୍ଡଙ୍କ ରାମଚନ୍ଦ୍ର ବିହାର, ବନମାଳୀ ଦାସଙ୍କ ସୁଚିତ୍ର ରାମାୟଣ, କୃଷ୍ଣଚନ୍ଦ୍ର ରାଜେନ୍ଦ୍ର, କେଶବ ପଟ୍ଟନାୟକ, ବୈଶ୍ୟ ସଦାଶିବ, ବ୍ରଜମନରେନ୍ଦ୍ର ଓ ଅନଙ୍ଗ ନରେନ୍ଦ୍ର ପ୍ରଭୃତିଙ୍କ ରାମଲୀଳା, ସଦୁମଣି ମହାପାତ୍ରଙ୍କ ରାଘବ ବିଳାସ, ବିଶ୍ୱମ୍ଭର ରାଜେନ୍ଦ୍ରଙ୍କ ରଘୁନାଥ ବିଳାସ ଓ ବୀର ରାମଚନ୍ଦ୍ର ବିଳାସ, କେଶବ ତ୍ରିପାଠୀଙ୍କ ପୂର୍ଣ୍ଣରାମାୟଣ ପ୍ରଭୃତି ପୁସ୍ତକ ଓଡ଼ିଶାରେ ବାଲ୍ମୀକୀୟ ଧାରାକୁ ଉଜ୍ଜୀବିତ କରି ରଖିଛନ୍ତି ।

ଏତଦ୍‌ବ୍ୟତୀତ ଓଡ଼ିଶାର ବହୁ କବି କୋଟିଏ ରାମାୟଣରେ ଅବଲମ୍ବନରେ ଚଉତିଶା, ପୋଇ, ଚଉପଦୀ, ବୋଲି ଓ କୋଇଲି ପ୍ରଭୃତି ରଚନା କରି, ଓଡ଼ିଶାରେ

ରାମାୟଣୀୟ ସଂସ୍କୃତିର ଜଣେ ଜଣେ ପୃଷ୍ଠପୋଷକ ରୂପେ ସୁଖ୍ୟାତି ଅର୍ଜନ କରିଛନ୍ତି ।

ଏତଦ୍‌ବ୍ୟତୀତ ଗୋଟିଏ ଗୋଟିଏ ଅକ୍ଷରକୁ ଆଦ୍ୟାନୁପ୍ରାସ ରୂପେ ଗ୍ରହଣ କରି କେତେଜଣ ଓଡ଼ିଆ କବି ଓଡ଼ିଆ ରାମସାହିତ୍ୟକୁ ସମୃଦ୍ଧ କରିଛନ୍ତି । ତନ୍ମଧ୍ୟରେ ପ୍ରଥମ କବି ହେଉଛନ୍ତି ଉପେନ୍ଦ୍ର ଭଞ୍ଜ । ସେ 'ବ' ଆଦ୍ୟାନୁପ୍ରାସରେ ବାହନଛନ୍ଦ ବିଶିଷ୍ଟ ବୈଦେହୀଶବିଳାସ ରଚନା କରି, ଏକ ସ୍ୱତନ୍ତ୍ର ତଥା ଅଲୌକିକ ପରମ୍ପରା ସୃଷ୍ଟି କରିଛନ୍ତି । ତାଙ୍କ ପଦାଙ୍କ ଅନୁସରଣରେ 'ଅ' 'ଆ' ଆଦ୍ୟାନୁପ୍ରାସରେ ଅର୍କବଂଶାବତଂସ ବିଳାସ, 'ବ' ଆଦ୍ୟାନୁପ୍ରାସରେ ବୈଦେହୀବିଳାସ, 'ଜ' ଆଦ୍ୟାନୁପ୍ରାସରେ ଜାନକୀଶ ବିଳାସ, 'ସ' ଆଦ୍ୟାନୁପ୍ରାସରେ ସୀତେଶ ବିଳାସ, ସୀତା ବିଳାସ, ସତୀ ଚନ୍ଦ୍ରିକା, 'କ' ଆଦ୍ୟାନୁପ୍ରାସରେ ରାମକଲ୍ଲୋଳ ପ୍ରଭୃତି ରାମ କାବ୍ୟ ରଚିତ ହୋଇଛି ।

ମହାକାବ୍ୟ, କାବ୍ୟ ଓ ଗୀତି କାବ୍ୟଗୁଡ଼ିକ ବ୍ୟତୀତ ଓଡ଼ିଶାର ବହୁ କୃତୀ ନାଟ୍ୟକାର ଯଥା—କାମପାଳ ମିଶ୍ର, ରାଧାମୋହନ ରାଜେନ୍ଦ୍ର, ଜଗନ୍ନାଥ ପାଣି, ଅଶ୍ୱିନୀ କୁମାର ଘୋଷ, ବୈଷ୍ଣବ ପାଣି, ରାମଶଙ୍କର ରାୟ, ବାଳକୃଷ୍ଣ ମହାନ୍ତି ଓ ନାଟ୍ୟାଚାର୍ଯ୍ୟ ରଘୁନାଥ ପଣ୍ଡା ପ୍ରମୁଖ ରାମାୟଣୀୟ ବିଷୟବସ୍ତୁର ଅବଲମ୍ବନରେ ବହୁ ନାଟକ, ଗୀତିନାଟ୍ୟ ତଥା ଗ୍ରନ୍ଥନାଟକ ପ୍ରଭୃତି ଲେଖି ଓଡ଼ିଆ ନାଟ୍ୟ ସାହିତ୍ୟର ଶ୍ରୀମଣ୍ଡନ କରିଛନ୍ତି ।

ସର୍ବୋପରି ରାଜକବି କୃଷ୍ଣଚନ୍ଦ୍ର ସର୍ବପ୍ରଥମେ ଆର୍ଷରାମାୟଣର ଓଡ଼ିଆ ପଦ୍ୟାନୁବାଦ କରିଛନ୍ତି, ତାହା ସେତେ ମନୋଜ୍ଞ ହୋଇନାହିଁ । ତଥାପି ସେ ଏ' କ୍ଷେତ୍ରରେ ପଥପ୍ରଦର୍ଶନ କରିଥିବାରୁ ଓଡ଼ିଶାର ପାଠକ—ପାଠିକାଙ୍କର ନମସ୍ୟ ହୋଇଛନ୍ତି । ତାଙ୍କ ଅନୁବାଦ ଅଦ୍ୟାପି ପ୍ରକାଶିତ ହୋଇନାହିଁ । ଅନୁବାଦର କେତେକ ଛିନ୍ନ ଅଂଶ ତାଳପତ୍ର ପୋଥି ଆକାରରେ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ଭଣ୍ଡାରରେ ସଂରକ୍ଷିତ ହୋଇଛି । କୃଷ୍ଣଚନ୍ଦ୍ରଙ୍କ ଅନୁବାଦିତ ରାମାୟଣର ଆଦ୍ୟକାଣ୍ଡ ଓ ଅରଣ୍ୟକାଣ୍ଡରୁ ଜଣାଯାଏ ଯେ, ରାମାୟଣର ଗୋବିନ୍ଦରାଜଙ୍କ ଟୀକା ଅନୁସାରେ ରାଜକବି ଅନୁବାଦ କରିଥିଲେ । ସେହି ଅନୁବାଦ କାର୍ଯ୍ୟରେ ତାଙ୍କୁ କବିରାଜ ହରେକୃଷ୍ଣ ପୁରୋହିତ ଓ ଜଗନ୍ନାଥ ଆଚାର୍ଯ୍ୟ ସାହାଯ୍ୟ କରିଥିଲେ ଏବଂ ଅଯୋଧ୍ୟାକାଣ୍ଡର ଅନୁବାଦ ସମୟରେ ତାଙ୍କୁ କ ସ୍ଥିର ବରଦରାଜ ସ୍ୱାମୀ ବିଶେଷ ସାହାଯ୍ୟ କରିଥିଲେ ।

ରାଜକବି କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ଦ୍ୱାରା ଅନୁବାଦିତ ଅଯୋଧ୍ୟାକାଣ୍ଡର ଏକଷଷ୍ଟିତମ ସର୍ଗରୁ ଗୋଟିଏ ଶ୍ଳୋକର ଅନୁବାଦ ଏଠାରେ ପ୍ରଦତ୍ତ ହେଲା—

"ଜଲାର୍ଦ୍ରଗାତ୍ରଂ ତୁ ବିଲପ୍ୟକୃଚ୍ଛ୍ରଂ
ମର୍ମବ୍ରଣଂ ସନ୍ତତମୁଚ୍ଛ୍ୱସନ୍ତମ୍ ।
ତତଃ ସରଯ୍ୱାଂ ତମହଂ ଶୟାନଂ
ସମୀକ୍ଷ୍ୟ ଭଦ୍ରେ ସୁଭୃଶଂ ବିଷର୍ଣ୍ଣମ୍" ।

ଅନୁବାଦ—

"ଜଲରେ ଆର୍ଦ୍ର ଯା' ଶରୀର । ଯେ କରେ ବିଳାପ ଆବର ॥
ମର୍ମସ୍ଥଳରେ ବ୍ରଣ ଯା'ର । ଘର ନିଃଶ୍ୱାସ ବହେ ଆର ॥
ସରଯୂ ସରିତ ତୀରରେ । ଶୟନ କରେ ଯେ କଷ୍ଟରେ ॥
ସେ ମୁନିସୁତଙ୍କୁ ସତ୍ୱରେ । ଦେଖିଣ ମୁହିଁ ତଦନ୍ତରେ ॥
ଆଗୋ କଲ୍ୟାଣି ! ସେ କାଲରେ । ବିଷର୍ଣ୍ଣ ହୋଇଲି ଅନ୍ତରେ" ॥

କୃଷ୍ଣଚନ୍ଦ୍ର ରାଜେନ୍ଦ୍ରଙ୍କ ଅନୁବାଦ ବ୍ୟତୀତ, ଓଡ଼ିଆରେ ବାଲ୍ମୀକି-ରାମାୟଣର ପଦ୍ୟାନୁବାଦ ମିଳେ ନାହିଁ । ଅନ୍ୟ ଯେଉଁ କବିମାନେ 'ବାଲ୍ମୀକି-ରାମାୟଣ' ଶୀର୍ଷକ ପୁସ୍ତକ ପ୍ରକାଶ କରିଛନ୍ତି, ତାହା ଆଦୌ ମୂଳଶ୍ଳୋକର ଅବିକଳ ଅନୁବାଦ ନୁହେଁ । ମହର୍ଷି ବାଲ୍ମୀକି ବିରଚିତ 'ରାମାୟଣ' ଗ୍ରନ୍ଥର ପାଠରେ ଯେଉଁ ସ୍ୱାଭାବିକ ଦୃଷ୍ଟିଭଙ୍ଗୀ ଦେଖାଇଛନ୍ତି; ତାହା ଅନ୍ୟାନ୍ୟ ରାମାୟଣରେ, ବିଶେଷତଃ 'ରାମଚରିତ ମାନସ', 'ଜଗମୋହନ ରାମାୟଣ', 'କୃତ୍ତିବାସ ରାମାୟଣ' 'କମ୍ବ ରାମାୟଣ' ଓ 'ରଙ୍ଗ ରାମାୟଣ' ପ୍ରଭୃତିରେ କ୍ଷୁଣ୍ଣ ହୋଇଛି । ମହର୍ଷି ବାଲ୍ମୀକିଙ୍କ ମାନବୀୟ ଚିନ୍ତାଧାରାକୁ ଅନ୍ୟାନ୍ୟ କବି ଓ ଅନୁବାଦକମାନେ ଅତିମାନବୀୟ ସ୍ତରକୁ ନେଇ ଯାଇ ପାଠକ-ପାଠିକା-ମାନଙ୍କୁ ବିଭ୍ରାନ୍ତ କରିଛନ୍ତି ।

ଓଡ଼ିଆରେ ସ୍ୱର୍ଗତଃ ପଣ୍ଡିତ ଲିଙ୍ଗରାଜ ମିଶ୍ର 'ଆର୍ଷରାମାୟଣ'ର ଓଡ଼ିଆ ଗଦ୍ୟାନୁବାଦ କରି ସର୍ବ ପ୍ରଥମେ ବାଲ୍ମୀକିଙ୍କ ମୌଳିକ ଚିନ୍ତାଧାରାକୁ ଆମ ଆଗରେ ପରିବେଷଣ କରିଥିଲେ । ସେ ପୁସ୍ତକ ମଧ୍ୟ ଏବେ ଦୁଷ୍ପ୍ରାପ୍ୟ ହୋଇଛି ।

କବି ପୁରୁଷୋତ୍ତମ ମିଶ୍ର 'ଆର୍ଷରାମାୟଣ'ର ଯେଉଁ ଅନୁବାଦ କରିଛନ୍ତି, ତାହା ଯେପରି ସୁଖପାଠ୍ୟ, ସେହିପରି ପ୍ରାଞ୍ଜଳ ଓ ମୂଳପାଠାନୁସାରୀ ହୋଇଛି । ପୂଜ୍ୟ ପିତୃଦେବଙ୍କ ପ୍ରଦର୍ଶିତ ମାର୍ଗକୁ ଅନୁସରଣ ପୂର୍ବକ ମୁଁ ମୋର ସାଧ୍ୟମତେ ଚେଷ୍ଟା କରି ମହର୍ଷି ବାଲ୍ମୀକିଙ୍କ ପାଠକୁ ଅବିକଳ ଅନୁବାଦ କରିବାରେ ତଥା ମୂଳପାଠର ମୌଳିକତା ଯେପରି ସୁରକ୍ଷିତ ହେବ, ସେଥିପାଇଁ ଆବଶ୍ୟକୀୟ ସଂଶୋଧନ କରିଛି ।

ଆର୍ଷରାମାୟଣର ଅନ୍ୟ ଛଅ କାଣ୍ଡର ମୁଦ୍ରଣ ପାଇଁ ସମସ୍ତ ପ୍ରକାର ଆୟୋଜନ ଶେଷ ହୋଇଛି । କେବଳ ପାଠକ ପାଠିକାଙ୍କର ସହଯୋଗ ମିଳିଲେ ଯଥାଶୀଘ୍ର ସମ୍ଭବ ସେଗୁଡ଼ିକ ପ୍ରକାଶ ପାଇବ ।

ବନ୍ଧୁ ଡକ୍ଟର ଭଗବାନ ପଣ୍ଡା 'ଗୀତାପ୍ରେସ୍'ରୁ ପ୍ରକାଶିତ ଦୁଇଖଣ୍ଡ ଆର୍ଷ-ରାମାୟଣ ଯୋଗାଇଦେଇ ମୋତେ ସାହାଯ୍ୟ କରିଛନ୍ତି । ବନ୍ଧୁ ସଚ୍ଚିଦାନନ୍ଦ ରଥ ଅନୁବାଦିତ ପାଣ୍ଡୁଲିପିରୁ କେତେକାଂଶ ପାଠକରି କବି ପୁରୁଷୋତ୍ତମଙ୍କ ପ୍ରଚେଷ୍ଟା ଓ ମୋର ସମ୍ପାଦନାକୁ ସୁଖପାଠ୍ୟ ବୋଲି ମତ ଦେଇଛନ୍ତି । ମୋର ଅନୁଜ ପ୍ରଥମ ଆୟୁଷ୍ମାନ୍ ଶ୍ରୀ ଚନ୍ଦ୍ରରଞ୍ଜନ ସାମନ୍ତ ଏହି ସଙ୍କଳନର ପ୍ରକାଶ ପାଇଁ ସର୍ବଦା ମୋତେ ଉତ୍ସାହିତ କରିଛନ୍ତି । ତେଣୁ ଡକ୍ଟର ପଣ୍ଡା, ଶ୍ରୀ ରଥ ଓ ଶ୍ରୀମାନ୍ ଚନ୍ଦ୍ରରଞ୍ଜନଙ୍କ ଠାରେ ମୁଁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି ।

ମୁଦ୍ରଣଯୋଗ୍ୟ ପାଣ୍ଡୁଲିପି ପ୍ରସ୍ତୁତ କରିବାରେ ମୋର କନ୍ୟା ଆୟୁଷ୍ମତୀ ଅଧ୍ୟାପିକା ଜୟଶ୍ରୀ ମିଶ୍ର, ସୁଶ୍ରୀ ମିଶ୍ର ଏମ୍. ଏ., ପୁତ୍ର ଆୟୁଷ୍ମାନ୍ ଶିବକୁମାର ଓ ପୁତ୍ରବଧୂ ଆୟୁଷ୍ମତୀ ପ୍ରେମଲତା ମୋତେ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କୁ ଶୁଭାଶିଷ ପ୍ରଦାନ କରିବା ସଙ୍ଗେ ସଙ୍ଗେ ଧନ୍ୟବାଦ ଅର୍ପଣ କରୁଛି ।

ମୋର ଦ୍ୱିତୀୟା କନ୍ୟା ଆୟୁଷ୍ମତୀ ଶ୍ରୀମତୀ ମଞ୍ଜୁଶ୍ରୀ ଓ ଜାମାତା ଆୟୁଷ୍ମାନ ହଳଧର ପାଣିଗ୍ରାହୀ ପ୍ରସ୍ତୁତ ପୁସ୍ତକର ମୁଦ୍ରଣବ୍ୟୟ ବହନ କରି ଆର୍ଷରାମାୟଣର ବାଲକାଣ୍ଡଟିକୁ ଲୋକଲୋଚନର ଗୋଚରକୁ ଆଣିବାରେ ସହାୟକ ହୋଇ ନଥିଲେ, ଏହା ଏତେ ଶୀଘ୍ର ପ୍ରକାଶ ପାଇ ନଥା'ନ୍ତା । ତେଣୁ ଉଭୟ ଆୟୁଷ୍ମତୀ ମଞ୍ଜୁଶ୍ରୀ ଓ ଆୟୁଷ୍ମାନ୍ ହଳଧରଙ୍କୁ ମୁଁ ଶତଧନ୍ୟବାଦ ଦେବା ସଙ୍ଗେ ସଙ୍ଗେ ତାଙ୍କର ମଙ୍ଗଳ କାମନା କରୁଛି ।

ଆର୍ଷରାମାୟଣର ବାଲକାଣ୍ଡଟି ବର୍ତ୍ତମାନ ଓଡ଼ିଶାର ବିଜ୍ଞ ପାଠକପାଠିକାଙ୍କ ହସ୍ତରେ ଅର୍ପଣ କରି, ମୁଁ ମୋର କର୍ତ୍ତବ୍ୟ ଶେଷ କରିଛି । ଏଣିକି ଚିନ୍ତାଶୀଳ ଗ୍ରାହକ-ମାନେ କବି ପୁରୁଷୋତ୍ତମଙ୍କ ଅନୁବାଦଟିକୁ କିପରି ଭାବରେ ଗ୍ରହଣ କରିବେ, ତାହା ସେମାନଙ୍କ ସହୃଦୟତା ଓ ଭକ୍ତିଭାବନା ଉପରେ ନିର୍ଭର କରେ । ତଥାପି ଓଡ଼ିଶାର ଗୁଣଜ୍ଞ ପାଠକ ପାଠିକାମାନେ ପୁସ୍ତକରେ ଥିବା ଦୋଷତ୍ରୁଟି ପ୍ରତି ମୋତେ ସଚେତନ କରାଇଲେ ମୁଁ କୃତଜ୍ଞ ହେବି ଏବଂ ସ୍ୱର୍ଗତଃ କବି ପୁରୁଷୋତ୍ତମଙ୍କ ସାଧନା ଫଳପ୍ରସୂ ହେବ ।

ବ୍ୟାସପୂର୍ଣ୍ଣିମା
କେଦାରନାଥ ଗବେଷଣା ପ୍ରତିଷ୍ଠାନ,
ଭୁବନେଶ୍ୱର — ୨୬-୭-୧୯୯୧

ବିନୀତ
ନୀଳମଣି ମିଶ୍ର

# ଆର୍ଷ ରାମାୟଣ

## ବାଲକାଣ୍ଡ

## ସୂଚୀପତ୍ର

ବିଷୟ | ପୃଷ୍ଠା

| ବିଷୟ | ପୃଷ୍ଠା |
|---|---|





# ବାଲ୍ମୀକୀୟ ରାମାୟଣ

## ବାଳକାଣ୍ଡ

### ପ୍ରଥମ ସର୍ଗ

### ସଂକ୍ଷିପ୍ତ ରାମାୟଣ ଓ ନାରଦ ବାଲ୍ମିକ ସମ୍ବାଦ ।

ଜୟ ଜୟ ଜଗନ୍ନାଥ ଜଗତଜୀବନ !
ଜୟ କମଳାବଦନାଶ ଶ୍ରୀଜଗମୋହନ ॥ ୧
ନୀଳଗିରିନାଥ ପ୍ରଭୁ ଦୀନ ଦୁଃଖହାରୀ !
ପତିତପାବନ ବଳୟାର ଭୁଜ ଧର ॥ ୨
ଭାଇ ବଳରାମ ଭଗ୍ନୀ ସୁଭଦ୍ରା ସହିତ ।
ରତ୍ନ ସିଂହାସନେ ବଜେ ପ୍ରଭୁ ଜଗନ୍ନାଥ ॥ ୩
ବାରମାସେ ତେର ଯାତ୍ରା ଭିଆଣ କରାଇ ।
ନୀଳପର୍ବତେ ବିରାଜ ଦୀନଜନସାଇଁ ॥ ୪
ସପ୍ତମୂର୍ତ୍ତି ଧର ଆହେ ପ୍ରଭୁ ଜଗନ୍ନାଥ !
ରାମାୟଣ ରଚିବ ପୂରାଅ ମନୋରଥ ॥ ୫
ଜୟ ଜୟ ପଦ୍ମାସନା ! ମାତ ସରସ୍ୱତି !
ତୁମ୍ଭ ଶ୍ରୀପୟରେ ମାଗୋ କରଇ ବିନତି ॥ ୬
ରାମାୟଣ ପୂର୍ଣ୍ଣ ହେଉ ଏତିକ ମୋ' ଆଶା ।
ବାକ୍ୟଦେବୀ କଣ୍ଠେ ବସି କୁହ ଦିବ୍ୟଭାଷା ॥ ୭
ଜୟ ଏକାମ୍ରବିହାରୀ ପ୍ରଭୁ ଲିଙ୍ଗରାଜ !
ସ୍ୱର୍ଣ୍ଣାଦ୍ରିବିହାରୀ ପ୍ରଭୁ ଜୟ ବୃଷଧ୍ୱଜ ॥ ୮
ଅର୍ଦ୍ଧନାରୀଶ୍ୱର ହର ତ୍ରିପୁର ବିନାଶୀ ।
ଭାଲେ ଅର୍ଦ୍ଧଚନ୍ଦ୍ର ରାଜେ ଜୟ କାଶୀବାସୀ ॥ ୯
ତୁମ୍ଭ ଅନୁଗ୍ରହ ବିନୁ ଶ୍ରୀରାମ ଚରିତ ।
କହିବାକୁ କେବେ ପ୍ରଭୁ ନୋହିବି ସମର୍ଥ ॥ ୧୦

ମାତ ଗିରିରାଜ ସୁତେ ! ଜୟ ଗୌରୀ ଦେବି !
ତୁମ୍ଭ ମହିମା ବର୍ଣ୍ଣିବେ ସମର୍ଥ କେ କବି ॥ ୧୧
ଅଭୟ ବରଦ ହସ୍ତେ କର ସୁକଲ୍ୟାଣ ।
ଲେଖନ କରିବ ସାତକାଣ୍ଡ ରାମାୟଣ ॥ ୧୨
ଲମ୍ବୋଦର ମୂଷିକ ବାହନ ଗଜାନନ !
କରୁଛି ସାହସ ପ୍ରଭୁ କର ସୁକଲ୍ୟାଣ ॥ ୧୩
ବାଲମିକ ରାମାୟଣ ଭାଷାବନ୍ଧ ଗୀତେ ।
ରଚିବାକୁ ଅଭିଳାଷ ବଳୁଛି ମୋ' ଚିତ୍ତେ ॥ ୧୪
ବାମନ ହୋଇ ଚନ୍ଦ୍ରକୁ ବଢ଼ାଇଛି ହାତ ।
ତୁମ୍ଭ ଦୟା ହେଲେ ପୂରିବ ମୋ' ମନୋରଥ ॥ ୧୫
ଆହେ ଦେବ ! ଅଞ୍ଜନାନନ୍ଦନ ମହାବୀର !
ଯା' ହୁଙ୍କାରେ ଗର୍ଭସ୍ରବେ ରକ୍ଷ ନାରୀଙ୍କର ॥ ୧୬
ପ୍ରଭୁ ଆଜ୍ଞାପାଳକ ହେ ପବନ ନନ୍ଦନ !
ତବ ପ୍ରସାଦୁ ଏ' ରାମକଥା ହେବ ପୂର୍ଣ୍ଣ ॥ ୧୭
ପୂର୍ବପୁରୁଷଙ୍କ ମୁଖରୁ ଶୁଣିଛି ଏସନ ।
ତୁମ୍ଭେ ରହିଥାଅ ତହିଁ ଯହିଁ ରାମାୟଣ ॥ ୧୮
ଗାୟନ କରନ୍ତି ଜନେ ଶରଧା ମାନସେ ।
ତେଣୁ ତବ ଶ୍ରୀଚରଣେ ଶରଣ ମୁଁ ପଶେ ॥ ୧୯
ଆହେ କପିବର ମୋରେ କର ସୁକଲ୍ୟାଣ ।
ଅବିଘ୍ନେ ସମ୍ପୂର୍ଣ୍ଣ ହେଉ ଗ୍ରନ୍ଥ ରାମାୟଣ ॥ ୨୦
ଆହେ ମୁନିବର ! ତପୋନିଷ୍ଠ ବାଲମିକ !
ତବ ଶ୍ରୀପଦରେ ନମେ ଏ' ଦୀନ ସେବକ ॥ ୨୧
ତୁମ୍ଭ ଲେଖନୀ ନିଃସୃତ ଆର୍ଷରାମାୟଣ ।
ଭାଷାବନ୍ଧେ ରଚିବାକୁ ବଳୁଛି ମୋ' ମନ ॥ ୨୨
କଲ୍ୟାଣ କର ସଦୟେ ଆହେ କୃପାନାଥ !
ଅବିଘ୍ନେ ସମ୍ପୂର୍ଣ୍ଣ ହେଉ ଶ୍ରୀରାମ ଚରିତ ॥ ୨୩
ତପସ୍ୱୀ ପ୍ରବର ବାଲମିକ ମହାମୁନି ।
ଆଶ୍ରମରେ ବସିଥିଲେ ଶିଷ୍ୟଗଣ ଘେନି ॥ ୨୪

ସକଳ ଶାସ୍ତ୍ରପାରଗ ମହାମୁନିବର ।
ଶିଷ୍ୟଗଣେ କରୁଥିଲେ ଜ୍ଞାନର ପ୍ରସ୍ତର ॥ ୨୫
ଏ' ସମୟେ ବୀଣାମୁନି ହେଲେ ପରବେଶ ।
ଗାୟନ କରଣି ବିଭୁ ଗୁଣ-ନାମ-ଯଶ ॥ ୨୬
ତାଙ୍କ ପାଦପୂଜା କରି ବସାଇ ଆସନେ ।
ପଚାରିଲେ ବାଲମିକ ହରଷିତ ମନେ ॥ ୨୭
ଆହେ ଦେବର୍ଷି ପ୍ରବର ! କୁହ ଦୟା କରି ।
ଏ' ସଂସାରେ ମହା ଗୁଣବାନ ଅଛି କେହି ॥ ୨୮
ଅମିତ ବିକ୍ରମଶାଳୀ ଦୃଢବ୍ରତ ନର ।
ଧର୍ମଜ୍ଞ କୃତଜ୍ଞ ସତ୍ୟବାକ୍ ବୃଦ୍ଧ ଧୀର ॥ ୨୯
ସଦାଚାର ପରିପୂର୍ଣ୍ଣ ସୁନ୍ଦର ପୁରୁଷ ।
ସକଳ ପ୍ରାଣୀ ହିତରେ ବ୍ୟାପିଛି ଯା'ର ଯଶ ॥ ୩୦
ବିଦ୍ୟାବନ୍ତ ଅଉ ଶୂରପଣେ କେ ସମର୍ଥ ।
ଫିଟାଇ କହ ହେ ମୁନି ! ଅସ୍ଥିର ମୋ' ଚିତ୍ତ ॥ ୩୧
ଆତ୍ମସଂଯମୀ ଅକ୍ରୋଧ କୀର୍ତ୍ତିଧର ବୀର ।
ପରନିନ୍ଦାକାରଣେ କୁଣ୍ଠିତ-ଚିତ୍ତ ଯାର ॥ ୩୨
କେ ଧନୁ ଧରିଲେ ନାଗ ଯକ୍ଷ ସୁରଙ୍କର ।
କମ୍ପଇ ଶରୀର ଶୁଣି ତା' ଧନୁଷ୍ଟଙ୍କାର ॥ ୩୩
କିଏ ସେ ପୁରୁଷବର କୁହ ମୁନିବର !
ଶୁଣିବାକୁ ଅଭିଳାଷ କରୁଛି ମନର ॥ ୩୪
ମହର୍ଷି ବାଲମିକଙ୍କ ଶୁଣି ଏ' ବଚନ ।
ତ୍ରିଲୋକବିହାରୀ ମୁନି ହେଲେ ସୁପ୍ରସନ୍ନ ॥ ୩୫
ତିନିଲୋକ ବାରତା ଯେ ଜାଣନ୍ତି ସକଳ ।
କଳିମୁନି ନାମେ ଯେହୁ ଖ୍ୟାତ ଜଗତର ॥ ୩୬
ଦେବର୍ଷି ନାରଦ ହସି ବୋଇଲେ ବଚନ ।
ଯାହା ପଚାରିଲ ବାଲମିକ ତପୋଧନ ॥ ୩୭
ବହୁ ଦୁର୍ଲ୍ଲଭ ଗୁଣରେ ଭୂଷିତ ଯେ' ନର ।
ତା' ଚରିତ ଶୁଣିବାକୁ ଶରଧା ତୁମର ॥ ୩୮

କହୁଛି ବିପ୍ରବର ମୁନି ! ଶୁଣ ଏକଚିତ୍ତେ ।
ସକଳ ସୁଗୁଣରତ ଜଣେ ଅଛି ମର୍ତ୍ତ୍ୟ ॥ ୩୯
ଇକ୍ଷ୍ୱାକୁ ବଂଶରେ ଜାତ ରାମ ନାମେ ଖ୍ୟାତ ।
ଯାହାଙ୍କ କୀର୍ତ୍ତି ବ୍ୟାପିଅଛି ତ୍ରିଜଗତ ॥ ୪୦
ସେ ଅଟନ୍ତି ମହାବୀର ଧୀର ବଳବାନ ।
ଜିତେନ୍ଦ୍ରିୟ ମନସ୍ୱୀ ଅତୁଳ କାନ୍ତିମାନ ॥ ୪୧
ବୁଦ୍ଧିରେ ନିପୁଣ ନୀତିଶାସ୍ତ୍ରରେ ପ୍ରବୀଣ ।
ସୁବକ୍ତା ଧୁରୀଣ ପୁଣି ଶତ୍ରୁ-କାଳଯମ ॥ ୪୨
କନ୍ଧରୁ ଲମ୍ବିଛି ସୁବିଶାଳ ଭୁଜଯୁଗ ।
ଦକ୍ଷିଣାବର୍ତ୍ତ ଶଙ୍ଖକୁ ଜିଣିଛି ଯା' ଗ୍ରୀବ ॥ ୪୩
ସୁପୁଷ୍ଟ ଅଧର ଉଚ୍ଚ ସୁବିଶାଳ ବକ୍ଷ ।
ଶତ୍ରୁ-ମାନମର୍ଦ୍ଦନେ ଅଟନ୍ତି ଯେ ଦକ୍ଷ ॥ ୪୪
ଆଜାନୁଲମ୍ବିତ ଭୁଜ ସୁଷମ କପୋଳ ।
ଉନ୍ନତ ମସ୍ତକ ଗଣ୍ଡ ଅତି ମନୋହର ॥ ୪୫
ପ୍ରଶସ୍ତ ଲଲାଟ ଶୋଭେ ଯା'ର ଭବ୍ୟ ଶିରେ ।
ଯେ ବିରାଜେ ସୁକୋମଳ ମନୋଜ୍ଞ ଶରୀରେ ॥ ୪୬
ଶରୀର କାନ୍ତି ଯାହାର ଜଗୁଜନ ମୋହେ ।
ଆୟତ ଲୋଚନଯୁଗ ଯା'ବଦନେ ଶୋଭେ ॥ ୪୭
ସର୍ବ ଶୁଭ ଲକ୍ଷଣରେ ଅଟେ ଯେ ସମ୍ପନ୍ନ ।
ଯା' ମହିମା ବର୍ଣ୍ଣିବାକୁ ନୋହେ ମୁଁ ଭାଜନ ॥ ୪୮
ପ୍ରତାପଶାଳୀ ସେ ଶୂରବର ଗୁଣଧାମ ।
ସୁଗଠିତ ବପୁ ତାଙ୍କ ଅଟେ ମନୋରମ ॥ ୪୯
ପ୍ରଜା ପାଳନରେ ସେହୁ ପ୍ରଜାପତି ସମ ।
ସ୍ୱଧର୍ମ ରକ୍ଷଣେ ଯେହୁ ଜିଣିଅଛି ଧର୍ମ ॥ ୫୦
ବଇରିଗଞ୍ଜନବାନା ବନ୍ଧିଛନ୍ତି ରାମ ।
ସକଳ ଶାସ୍ତ୍ର ନିପୁଣ ବୃହସ୍ପତି ସମ ॥ ୫୧
ଚତୁର ପଣରେ ସେହୁ ମହା ଧୁରନ୍ଧର ।
ପ୍ରିୟ ବନ୍ଧୁଗଣେ ସଦା ଲଭନ୍ତି ଆଦର ॥ ୫୨

ସ୍ରୋତସ୍ୱିନୀ ଧାଏଁ ଯଥା ସାଗର ସଙ୍ଗମେ ।
ତଥା ସାଧୁଗଣ ସଦା ମିଳନ୍ତି ଶ୍ରୀରାମେ ॥ ୫୩
ସମଭାବ ପୋଷଣେ ସେ ମହାବ୍ରତଧାରୀ ।
ତେଣୁ ସଦା ସାଧୁସଙ୍ଗେ ଥାଆନ୍ତି ଆବୋରି ॥ ୫୪
ମାତା କଉଶଲ୍ୟାଙ୍କର ଅତି ପ୍ରିୟକାରୀ ।
ସୁଜନ ପାଳକ ରାମ ପର ଉପକାରୀ ॥ ୫୫
ଗମ୍ଭୀର ପଣରେ ସେହୁ ମହୋଦଧି ସମ ।
ଧଇର୍ଯ୍ୟ ଧାରଣେ ଗିରିରାଜଙ୍କ ସମାନ ॥ ୫୬
ବଳବୀର୍ଯ୍ୟ ପଣେ ରାମ ବିଷ୍ଣୁଙ୍କ ସଦୃଶ ।
ଅପୂର୍ବ କାନ୍ତିରେ ସମ ନୋହେ ରଜନୀଶ ॥ ୫୭
କୋପକଲେ କାଳାଗ୍ନି ସଦୃଶ ସେ ହଣନ୍ତି ।
କ୍ଷମା ପରପୂଣେ ସମ ନୋହିବ ଧରଣୀ ॥ ୫୮
ତ୍ୟାଗରେ କୁବେର ସତ୍ୟପାଳନେ ଶ୍ରୀରାମ ।
ଦ୍ୱିତୀୟ ଧର୍ମ ସଦୃଶ ତାହାଙ୍କର କର୍ମ ॥ ୫୯
ସର୍ବଗୁଣେ ସୁନିପୁଣ ପ୍ରିୟପୁତ୍ରଙ୍କର ।
ଅଭିଷେକ ଲାଗି ଦଶରଥ ତତପର ॥ ୬୦
ପ୍ରଜାହିତକାମୀ ରାମ ହୋଇବେ ରାଜନ ।
କୋଶଳବାସୀଙ୍କ ମନୋରଥ ହେବ ପୂର୍ଣ୍ଣ ॥ ୬୧
ଏମନ୍ତ ବତ୍ସଳ ସୂର୍ଯ୍ୟକୁଳ-କୁଳାଙ୍କୁର ।
ଅଭିଷେକ ଆୟୋଜନେ ହୋଇଲେ ତତ୍ପର ॥ ୬୨
ମନ୍ଥରା ଦାସୀର ବୋଲେ କଇକେୟୀ ରାଣୀ ।
କୂଟ କପଟ ରଚିଲା ବେଳକାଳ ଜାଣି ॥ ୬୩
ପୂର୍ବେ ଦଶରଥ ଦେଇଥିବା ଦୁଇ ବରେ ।
ମାଗିଲା କୈକେୟୀ ତାଙ୍କୁ ବତ୍ସଳ ମନରେ ॥ ୬୪
ଚଉଦ ବରଷ ରାମ ଯିବ ବନବାସ ।
ଅଯୋଧ୍ୟାରେ ଭରତ ହୋଇବ ନରଈଶ ॥ ୬୫
ଏହା ଶୁଣି ଧର୍ମଶୀଳ ରାଜା ଦଶରଥ ।
ବଜ୍ରାଘାତ ଦ୍ରୁମ ପରି ହେଲେ ମୂର୍ଚ୍ଛାଗତ ॥ ୬୬

ପିତୃସତ୍ୟ ପାଳନରେ ସତ୍ୟ ପରାକ୍ରମ ।
ବନ ଗମନରେ ସଜ ହୋଇଲେ ଶ୍ରୀରାମ ॥ ୬୭
ସୁମିତ୍ରା ନନ୍ଦନ ସାନଭାଇ ଲକ୍ଷ୍ମଣ ।
ସୀତା ସହିତରେ କଲେ ବନକୁ ଗମନ ॥ ୬୮
ଜନକନନ୍ଦିନୀ ସୀତା ପତି-ସୁହାଗିନୀ ।
ଅନୁଗମିଲେ ଶ୍ରୀରାମେ ଚନ୍ଦ୍ରେ କ ରୋହିଣୀ ॥ ୬୯
ସର୍ବ ସୁଲକ୍ଷଣୀ ନାରୀକୁଳ ଶିରୋମଣି ।
ଅଯୋନିଜ ସମ୍ଭବା ଯୋଗମାୟା ସ୍ୱରୂପିଣୀ ॥ ୭୦
ପତିଙ୍କ ବନ ଗମନେ ନ ହୋଇ ଅଧୀର ।
ସର୍ବସୁଖ ତ୍ୟାଗ କରି ଚଳିଲେ ସୁଧୀର ॥ ୭୧
ଏ' ବାରତା ପ୍ରଜାଜନେ ଶୁଣିଲେ ସକଳ ।
ଗୃହୁଁ ଗୃହୁଁ ଅଯୋଧ୍ୟାରେ ପଡ଼ିଲା ଚହଳ ॥ ୭୨
ଅଯୋଧ୍ୟାବାସୀଏ ପ୍ରସ୍ତୁତ ହୋଇଲେ ବାହାର ।
ଶ୍ରୀରାମଙ୍କ ସଙ୍ଗେ ଯିବା ଲାଗି ତତ୍ପର ॥ ୭୩
ମହାଦୁଃଖେ ଦଶରଥ ହୋଇଣ ଅସ୍ଥିର ।
ସୁମନ୍ତ୍ରଙ୍କ ସଙ୍ଗେ ପଠାଇଲେ ରଘୁବର ॥ ୭୪
କେତେଦୂର ପଥ ଗମି ଅଯୋଧ୍ୟା ନରେଶ ।
ଫେରିଲେ ଭୁବନେ ବହୁ ମନରେ ହରଷ ॥ ୭୫
ରଥେ ବସି କିଛି ଦୂର ଚଳିଲେ ଶ୍ରୀରାମ ।
ସଙ୍ଗେ ଛନ୍ତି ପ୍ରିୟତମା ସୀତା ଲକ୍ଷ୍ମଣ ॥ ୭୬
ବେଳ ଅବସାନେ ପହଞ୍ଚିଲେ ଗଙ୍ଗାଘାଟରେ ।
ଏ' ବାରତା ଶୁଣାଗଲା ଶୃଙ୍ଗବେର ପୁରେ ॥ ୭୭
ନିଷାଦ-ରାଜନ ଗୁହ ପାଇ ଏ' ବାରତା ।
ଶ୍ରୀରାମଙ୍କୁ ଭେଟିବାକୁ ମନେ କଲା ଚିନ୍ତା ॥ ୭୮
ସକଳ ସମ୍ଭାର ଘେନି ନିଷାଦ-ରାଜନ ।
ପାତ୍ର ମନ୍ତ୍ରୀ ଗହଣରେ ମିଳିଲା ବହନ ॥ ୭୯
ମଇତ୍ର ସହିତେ ରାମ ସେ ରଜନୀମୁଖେ ।
ଭାଇ ଭାରଯାଙ୍କ ଭୁଲେ ଯାପିଲେକ ସୁଖେ ॥ ୮୦

ପର ଦିନ ପ୍ରଭାତରୁ ରଘୁକୁଳ ସାଇଁ ।
ରଥ ଲେଉଟାଇ ଦେଲେ ସୁମନ୍ତ୍ରେ ବୁଝାଇ ॥ ୮୧
ନିଷାଦ-ରାଜନ ସାଥେ ଚଳିଲେ ଶ୍ରୀରାମ ।
ନଦ ନଦୀ ବନ ଗିରି କରି ଅତିକ୍ରମ ॥ ୮୨
ଗୁହକୁ ଲେଉଟାଇଲେ ହେଠରୁ ବୁଝାଇ ।
ଭରଦ୍ୱାଜ ମୁନିଙ୍କ ଆଶ୍ରମେ ହେଲେ ଯାଇ ॥ ୮୩
ମୁନିଙ୍କ ଅନୁଜ୍ଞା ନେଇ ରଘୁକୁଳ ସାଇଁ ।
ବନମାର୍ଗେ ଗମି ହେଲେ ଚିତ୍ରକୂଟ ଯାଇ ॥ ୮୪
ଆଶ୍ରମ ନିର୍ମାଣି ରାମ ରହି ଦିନାକେତେ ।
ମାନବୀ ଲୀଳା ରଚିଲେ ମୁନିଙ୍କ ସଙ୍ଗତେ ॥ ୮୫
ରାଜା ଦଶରଥ ପୁତ୍ର ଶୋକେ ମୋହ ଯାଇ ।
କାଳ ପରାପ୍ତେ ହୋଇଲେ ଶ୍ରୀରାମଙ୍କୁ ଧ୍ୟାଇ ॥ ୮୬
ରାମ ଲକ୍ଷ୍ମଣ ସୀତା ନାମ ଗାଇ ଗାଇ ।
ଜୀବନ ହାରିଲେ ଦଶରଥ ନୃପସାଇଁ ॥ ୮୭
ଏହା ଦେଖି ବଶିଷ୍ଠ ଭରତେ ବରଣିଲେ ।
ଭରତେ ତକାଳ ରାଜ୍ୟ ସ୍ଥିତି ବୁଝାଇଲେ ॥ ୮୮
ଅଭିଷେକ ଲାଗି କଲେ ସକଳେ ବିଚାର ।
ତାହା ଶୁଣି ଭରତ ବୋଇଲେ ଯୋଡ଼ି କର ॥ ୮୯
ଆଜ୍ଞା ହେଉ ଗୁରୁଦେବ ! ଯିବି ମୁଁ ବନକୁ ।
ସୀତା ଲକ୍ଷ୍ମଣ ସହିତେ ଫେରାଇ ରାମଙ୍କୁ ॥ ୯୦
ବସାଇବି ଅଯୋଧ୍ୟାର ଶୂନ୍ୟ-ସିଂହାସନେ ।
ସୁଦୟା କରନ୍ତୁ ଗୁରୁଦେବ ! ଯିବି ବନେ ॥ ୯୧
ପାତ୍ର ମନ୍ତ୍ରୀ ତିନି ମାତା ସହିତେ ଭରତ ।
ଚଳିଲେ ବନକୁ ନେଇ ଅଶ୍ୱ ଗଜ ରଥ ॥ ୯୨
ଚିତ୍ରକୂଟ ବନେ ଯାଇ ହେଲେ ପରବେଶ ।
ଶୁଭ-ରତ ଭରତ ଭେଟିଲେ ରଘୁଈଶ ॥ ୯୩
ଶ୍ରୀରାମଙ୍କ ପାଦେ ପଡ଼ି କଇକେୟୀ ସୁତ ।
ଜଣାଇଲେ ସକଳ ଆପଣା ମନୋରଥ ॥ ୯୪

ଆହେ ରାମ ରାଜୀବଲୋଚନ ଗୁଣାଧାର !
ଅଯୋଧ୍ୟାକୁ ଫେରି ପ୍ରଜାପାଳ ହେ ସତ୍ଵର ॥ ୯୫
ଭରତ ବଚନ ଶୁଣି ରାମ ସତ୍ୟବ୍ରତ ।
ବୁଝାଇଲେ ଧର୍ମମିତ୍ତ ସ୍ଵକୁଳ ଚରିତ ॥ ୯୬
ଶେଷେ ଆପଣା ପାଦୁକା ଦେଇ ଭରତକୁ ।
କୋଇଲେ ଶ୍ରୀରାମ ସ୍ମରି ଗୁରୁ ବଶିଷ୍ଠଙ୍କୁ ॥ ୯୭
ଚଉଦବରଷ ଅନ୍ତେ ଅଯୋଧ୍ୟାକୁ ଫେରି ।
ରଘୁକୁଳ ସିଂହାସନେ ହେବ ଦଣ୍ଡଧାରୀ ॥ ୯୮
ପାଦୁକା ଶିରରେ ଧରି ଅଇଲେ ଭରତ ।
ନନ୍ଦିଗ୍ରାମେ ରହି ଆଚରିଲେ ମୁନିବ୍ରତ ॥ ୯୯
ପୂରଣ ନୋହିଲା ଯହୁଁ କାମନା ସକଳ ।
ଭରତ ରହିଲେ ହୋଇ ଅତ୍ୟନ୍ତ ବ୍ୟାକୁଳ ॥ ୧୦୦
ଭରତ ଲେଉଟି ଯା'ନ୍ତେ ରଘୁକୁଳସାଇଁ ।
ବଢ଼ରିଲେ ଚିତ୍ରକୂଟ ବନେ ମୋଦ ବହି ॥ ୧୦୧
ବନବାସୀ ମୁନିଜନେ ଆସି ରାମ ପାଶେ ।
କହିଲେ ବନର ଦୁଃଖ ସକଳ ବିଶ୍ଵାସେ ॥ ୧୦୨
ବନ୍ଧୁବାନ ବଢ଼ିଲାକ ଜନ-ସମାଗମ ।
ତାହା ଦେଖି ବସୁରିଲେ ଦାଶରଥି ରାମ ॥ ୧୦୩
ଏ' ବନେ ରହିବା ଭଲ ନୋହେ ବେଶିଦିନ ।
ତାହା ଚିନ୍ତ୍ର ପ୍ରବେଶିଲେ ଦଣ୍ଡକ ଅରଣ୍ୟ ॥ ୧୦୪
ସେ ବନେ ପ୍ରବେଶି ରାମ ରାଜୀବଲୋଚନ ।
ବିରାଧକୁ ବଧ କଲେ ଘେନି ଶରାସନ ॥ ୧୦୫
ସୁତୀକ୍ଷ୍ଣ ଶରଭଙ୍ଗଙ୍କ ଆଶ୍ରମେ ମିଳିଣ ।
ପ୍ରସନ୍ନ ହୋଇଲେ ରାମ ରଘୁକୁଳରାଣ ॥ ୧୦୬
ତହୁଁ ଅଗସ୍ତ୍ୟ ମୁନିଙ୍କ ଆଶ୍ରମକୁ ଯାଇ ।
ପୂଜିଲେ ମୁନି ପୁଙ୍ଗବେ ଶରଧା ବଳଇ ॥ ୧୦୭
ମୁନି ଅଗସ୍ତ୍ୟଙ୍କ ଭ୍ରାତା ମହାତପୋଧନ ।
ତାଙ୍କ ପାଦ ପୂଜି ରାମ ଘେନିଲେ କଲ୍ୟାଣ ॥ ୧୦୮

ତହୁଁ କୁମ୍ଭଯୋନ ଋଷି ପ୍ରସନ୍ନ ମନରେ ।
ସମର୍ପିଲେ ଦେବଦତ୍ତ ଖଡ଼୍‌ଗ ରାମ କରେ ॥ ୧୦୯
ଆଉର ଇନ୍ଦ୍ର-ଧନୁଷ ଅକ୍ଷୟ ତୂଣୀର ।
ଯଥାଯୋଗ୍ୟ ସମର୍ପିଲେ ବଧାତା କୁମର ॥ ୧୧୦
ବନବାସୀ ଜନମାନେ ରଘୁକୁଳନାଥ ।
ବତାଇଲେ ତପୋବନେ ଯେନ ହେ୍ଲୀ-ଭ୍ରାତ । ୧୧୧
ଦଣ୍ଡକ କାନନବାସୀ ମହର୍ଷି ସକଳ ।
ଅନେକ ଭେଟିଲେ ଶ୍ରୀରାମଙ୍କୁ ହୋଇ ମେଳ । ୧୧୨
ନବେଦଲେ ମୁନଗଣେ ରାମ ପାଶେ ଯାଇ ।
ଅସୁରଙ୍କ ଉତପାତୁ ରଖ ରଘୁସାଇଁ ॥ ୧୧୩
ଅଗ୍ନିର ସମାନ ତେଜଶାଳୀ ଋଷଗଣେ ।
ବୋଧିଲେ ଶ୍ରୀରାମ ପ୍ରିୟ ମଧୁର ବଚନେ ॥ ୧୧୪
ଆହେ ମୁନଗଣ ! ଶୁଣ ଏ' ମୋର ବଚନ ।
ଘ୍ନ ଚର ଅସୁରଙ୍କୁ ବଧିବ ବହନ ॥ ୧୧୫
ଅଳପ ଦନେ ହୋଇବ ସଗ୍ରାମ କଠୋର ।
ଅସୁରଙ୍କ ସଙ୍ଗେ ନ ଭଳ ହେ ମୁନକୁଳ ॥ ୧୧୬
କଚ୍ଛଦନ ଅନ୍ତେ ମନମୋହ୍ୱନ ରାକ୍ଷସୀ ।
ରାବଣ-ଭଗ୍ନୀ ମିଳଲ ଉପବନେ ଆସି ॥ ୧୧୭
ଜନସ୍ଥାନ ନବାସିନ ନାମ ସୂର୍ପଣଖା ।
ପଞ୍ଚବଟୀ ବନେ ବୁଲେ ହୋଇଣ ନଃଶଙ୍କା ॥ ୧୧୮
ମାୟାବନ୍ତ ମାୟା ଜାଣି ରାଜୀବଲୋଚନ ।
ଆଦେଶିଲେ ଲକ୍ଷ୍ମଣରେ କାଟ ନାକ କାନ ॥ ୧୧୯
ବରୂପା ହୋଇଣ ନଶାଚରୀ ପଳାଇଲା ।
ଖର ଦୂଷଣ ତ୍ରିଶିର ସମୀପେ ମିଳଲ ॥ ୧୨୦
ଭଗିନୀର ଦଶା ଦେଖି ରାକ୍ଷସ ସକଳ ।
ବେଢ଼ିଲେ ଶ୍ରୀରାମେ ଯେନ ଶତସସ୍ର ବଳ ॥ ୧୨୧
ଚଉଦ ସହସ୍ର ବଳ ପଡ଼ନ୍ତେ ସଗ୍ରାମେ ।
ତାହା ଦେଖି ସୂର୍ପଣଖା ଭେଟିଲା ରାବଣେ ॥ ୧୨୨

ଦଣ୍ଡକ ଅରଣ୍ୟ ଦଶା ଶୁଣି ଦଶାନନ ।
ମାରୀଚ ଆଶ୍ରମେ ଯାଇ ମିଳିଲା ବହନ ॥ ୧୨୩
କହି ସକଳ ବାରତା ବୋଲେ ଲଙ୍କାନାଥ ।
ସାହା ହୋଇ ମାରୀଚ ତୁ ଚଳ ମୋର ସାଥ ॥ ୧୨୪
ତୋର ମାୟାବଳେ ହରିବ ମୁଁ ରାମନାରୀ ।
ଶିକ୍ଷା ଲଭି ଲେଉଟିବ କାନନ ବିହାରୀ ॥ ୧୨୫
ଅନେକ ପ୍ରକାରେ ତହୁଁ ମାରୀଚ ବୋଧିଲା ।
କାଳ ପ୍ରେରିତ ହୋଇ ସେ କିଛି ନ ଘେନିଲା ॥ ୧୨୬
ମାରୀଚକୁ ସଙ୍ଗେ ଘେନି ଜନସ୍ଥାନେ ମିଳି ।
ମାୟାରେ ହରିଲା ତହୁଁ ଜନକ ଦୁଲାଳୀ ॥ ୧୨୭
କାଳରୂପ ଧରି ପଥେ ଜଟାୟୁ ଅଇଲା ।
ରାବଣ ସଙ୍ଗତେ ଘୋର ଯୁଦ୍ଧ ଆରମ୍ଭିଲା ॥ ୧୨୮
ଜଟାୟୁର ପକ୍ଷ ଛେଦ ବିଶ୍ରବା-ନନ୍ଦନ ।
ସୀତାଙ୍କୁ ନେଇ ରଖିଲା ଅଶୋକ କାନନ ॥ ୧୨୯
ଶ୍ରୀରାମେ ବାରତା ଦେଇ ଜଟାୟୁ ସକଳ ।
ଦିବ୍ୟଗତି ଲଭି ଗୃଧ୍ର ଗଲା ସୁରପୁର ॥ ୧୩୦
ସୀତା ହରଣ ବାରତା ପାଇଣ ଶ୍ରୀରାମ ।
ବିକଳ ହୋଇ ବିଳାପ କଲେ ଶିଶୁ ସମ ॥ ୧୩୧
ଲକ୍ଷ୍ମଣେ ରଖି ପକ୍ଷୀକୁ କଲେ ସତକାର ।
ଶ୍ରୀରାମଙ୍କ କରେ ଗୃଧ୍ର ହୋଇଲା ଉଦ୍ଧାର ॥ ୧୩୨
ତହୁଁ ରଘୁନାଥ ଘେନି ଭାଇ ଲକ୍ଷ୍ମଣ ।
ବିଳାପ କରି ବୁଲିଲେ କାନନୁଁ କାନନ ॥ ୧୩୩
କବନ୍ଧକୁ ଭେଟିଲେ ସେ କଣ୍ଟକବୁରେ ଯାଇ ।
ଦିବ୍ୟ ଗତି ଦେଲେ ତାକୁ ରଘୁକୁଳ ସାଇଁ ॥ ୧୩୪
କବନ୍ଧ ମୁଖରୁ ଶୁଣି ଶବରୀ ବାରତା ।
ଉକତ ବହନ ରଘୁମଣି କଲେ ତତ୍ପରତା ॥ ୧୩୫
ଶବରୀ ଆଶ୍ରମେ ଯାଇ ହୋଇଲେ ପ୍ରବେଶ ।
ପ୍ରଭୁଙ୍କୁ ଦେଖି ତାପସୀ ମନେ ହେଲା ତୋଷ ॥ ୧୩୬

ପାଦ୍ୟ ଅର୍ଘ୍ୟ ଫଳ ମୂଳ ଭେଟି ଶବରଣୀ ।
ଶ୍ରୀରାମେ ପୂଜିଲା ଭାବେ ହୋଇ ପୂଜାରଣୀ ॥ ୧୩୭
ଶବରୀକୁ ଦିବ୍ୟ ଗତି ଦେଇ ରଘୁତ୍ରାଣ ।
ପମ୍ପାତୀରେ ଭେଟ ହେଲେ ପବନ ନନ୍ଦନ ॥ ୧୩୮
ଆରତବନ୍ଧୁ ଭକ୍ତରେ ସୁଦୟା ବହିଲେ ।
ହନୁ ସଙ୍ଗେ ଯାଇ ସୁଗ୍ରୀବରେ ଭେଟ ହେଲେ ॥ ୧୩୯
ସୁଗ୍ରୀବ ଆଗେ କହିଲେ ସକଳ ବୃତ୍ତାନ୍ତ ।
ସୀତା ହରଣ ଆଦି ଯେ' ଘଟିଛି ନପୂତ ॥ ୧୪୦
ଶୁଣି ସୁଗ୍ରୀବ ସକଳ ଶ୍ରୀରାମ କାହାଣୀ ।
ମତ୍ର ପଣେ ବରିଲା ଜାଳି ବନ ଅଗ୍ନି ॥ ୧୪୧
ତହୁଁ ସୁଗ୍ରୀବ ଶ୍ରୀରାମେ କଲେକ ଜଣାଣ ।
ବାଳୀ ଦୁଷ୍ଟଠାରୁ ଯା' ଘଟିଛି ଅଘଟଣ ॥ ୧୪୨
ଶୁଣି ମିତ୍ର ମୁଖୁ ବାଣୀ ବୋଇଲେ ଶ୍ରୀରାମ ।
ନ କର ଭାବନା ସଖେ ! ମୋ' ପ୍ରତିଜ୍ଞା ଶୁଣ ॥ ୧୪୩
ଏକା ବାଣକରେ ବଧି ବାନର ବାଳୀକୁ ।
ସିଂହାସନେ ରାଜପଦେ ବସାଇ ତୁମ୍ଭଙ୍କୁ ॥ ୧୪୪
ତୁମ୍ଭ ସକାଶରୁ ସୀତା ଲଭିବ ମୁଁ ହେଳେ ।
ଅସତ୍ୟ ନୋହିବ ଯାହା ବୋଲେ ବଚନରେ ॥ ୧୪୫
ଶୁଣି ଶ୍ରୀରାମଙ୍କ ବାଣୀ ଭାଳଇ ସୁଗ୍ରୀବ ।
ସତେ କି ଏ' ବାଳୀ ତୁଲେ ସମାନ ହୋଇବ ॥ ୧୪୬
ତହୁଁ ଶ୍ରୀରାମଙ୍କୁ ଘେନ ସୁଗ୍ରୀବ ଚଳିଲେ ।
କିଛି ଦୂରେ ଦୁନ୍ଦୁଭିର ଅସ୍ଥି ଦେଖାଇଲେ ॥ ୧୪୭
ବାମ ପାଦ ଅଙ୍ଗୁଷ୍ଠିରେ ଟେକି ସେ ଅସ୍ଥିକୁ ।
ଫିଙ୍ଗିଦେଲେ ରଘୁନାଥ ଯୋଜନେ ଦୂରକୁ ॥ ୧୪୮
ତହୁଁ ଶ୍ରୀରାମଙ୍କୁ ନେଇ ସପ୍ତଶାଳ ପାଶ ।
ଦେଖାଇ ବୋଲେ ସୁଗ୍ରୀବ ଶୁଣ ରଘୁତ୍ତଂଶ ॥ ୧୪୯
ଏକା ବାଣକରେ ଯେବେ ଛେଦିବ ଏହାକୁ ।
ତେବେ ମୁଁ ଜାଣିବ ତୁମ୍ଭେ ବଧିବ ବାଳୀକୁ ॥ ୧୫୦

ମିତ୍ର ବାଣୀ ଶୁଣି ରାମ ବନ୍ଧ ଏକ ଶରେ ।
ଛେଦିଲେ ସପତ ଶାଳ ନିମିଷ ମଧ୍ୟରେ ॥ ୧୫୧
ତହୁଁ ଆନନ୍ଦ ମନରେ ବାନର ଅଧୀଶ ।
ଆଲିଙ୍ଗନ କଲା ରାମେ ହୋଇ ହସ ହସ ॥ ୧୫୨
ହନୂ ଲକ୍ଷ୍ମଣ ରାମ ସାଥେ ସୁଗ୍ରୀବର ।
ଚଳିଲା କିଷ୍କିନ୍ଧା ଗଡ଼େ ହୋଇ ଆଗଭର ॥ ୧୫୩
ପିଙ୍ଗଳ ବର୍ଣ୍ଣ ଶରୀର ମହା କପିବର ।
ଗରଜିଲା ସିଂହନାଦେ ବାଳୀ ସିଂହଦ୍ୱାର ॥ ୧୫୪
ଶୁଣି ତା' ଉଚ୍ଚାଟ ବାଣୀ ବାଳୀ ଘାରମଣି ।
ବାହାରିଲା ନବରତ୍ନ କରେ ଗଦା ଘେନି ॥ ୧୫୫
ବାଳୀ ମନୋରମା ତାରା ଆଗରେ ଓଗାଳି ।
ବାରଣ କଲା ରମଣୀ ହୋଇ ନିଜ୍ଜଳି ॥ ୧୫୬
ନମାନି ବାନରରାଜା ପ୍ରିୟାର ବଚନ ।
ଯୁଝିଲା ସୁଗ୍ରୀବ ସଙ୍ଗେ ହୋଇ କୋପମନ ॥ ୧୫୭
ଏକା ବାଣକେ ଶ୍ରୀରାମ ବାଳୀକି ସଂହାରି ।
କିଷ୍କିନ୍ଧାରେ ସୁଗ୍ରୀବର ଅଭିଷେକ ସାରି ॥ ୧୫୮
ଲେଉଟି ଆଇଲେ ରାମ ରାଜୀବଲୋଚନ ।
ମାଲ୍ୟବନ୍ତେ ବସି ଭାଇ ସଙ୍ଗେ ନେଲେ ଦିନ ॥ ୧୫୯
ବରଷା ଋତୁ ଅନ୍ତରେ ସୁଗ୍ରୀ ଦୂତ ପେଷି ।
ଖୋଜିଲା ସୀତାଙ୍କୁ ବନ ଗିରି ଜଳରାଶି ॥ ୧୬୦
ସମ୍ପାତିଠାରୁ ବାରତା ପାଇ ହନୁମାନ ।
ଲଙ୍ଘିଗଲା ମହୋଦଧି ଘୋଷି ରାମନାମ ॥ ୧୬୧
ଲଙ୍କାଗଡ଼େ ପଶି ଖୋଜି ପବନ ନନ୍ଦନ ।
କାହିଁ ନ ଦେଖିଲା ସୀତା ଶୀତାଂଶୁ ବଦନ ॥ ୧୬୨
ଶେଷେ ଅଶୋକ କାନନେ ପଶି ହନୂମାନ ।
ଦେଖିଲା ଅସୁସ୍ଥ ମେଳେ ସୀତା ଚନ୍ଦ୍ରାନନ ॥ ୧୬୩
ବାରତା ଦେଇ ସୀତାଙ୍କୁ ହନୂ ଘାରମଣି ।
ବୁଝାଇ କହିଲା ଶୁଣ ଜନକ ଦୁଲଣି ! ॥ ୧୬୪

ଅଳପ ଦିନେ ଶ୍ରୀରାମ ଧରି କପିବଳ ।
ଆସିବେ ଏଥିକୁ ମାତ ! ନୁହ ତୁ ବିକଳ ।। ୧୬୫
ରାବଣ ସବଂଶେ ମାରି ତୋତେ ଉଦ୍ଧରିବେ ।
କାଳ କାଳକୁ କୀରତି ଜଗତେ ରହିବେ ।। ୧୬୬
ତହୁଁ ଅନୁଜ୍ଞା ମାଗିଣ ବୀର ଗଲା ଚଳି ।
ଭାଙ୍ଗିଲା ଅଶୋକ ବନ ଚୂରମାର କରି ।। ୧୬୭
ପାଞ୍ଚ ସାତ ଅସୁରଙ୍କୁ କରି ସେ ନିଧନ ।
ଶେଷେ ଅକ୍ଷୟକୁମାରେ ବଧି ହନୁମାନ ।। ୧୬୮
ଇନ୍ଦ୍ରଜିତ ବ୍ରହ୍ମଶରେ ହୋଇ ଅଚେତନ ।
ବନ୍ଦୀ ହେଲା କପିବର ସ୍ମରି ବିଧି ନାମ ।। ୧୬୯
ରାକ୍ଷସଙ୍କ ଅତ୍ୟାଚାର ସହିଲା ପାବନ ।
ସାଧିଲା ପ୍ରଭୁଙ୍କ କାର୍ଯ୍ୟ ଲଗାଇଣ ବହ୍ନି ।। ୧୭୦
ଅଶୋକ ବାଟିକା ବିନା ଲଙ୍କାଗଡ଼ ଯାକ ।
ଦହିଲା ରାକ୍ଷସପୁରୀ ହୋଇଣ ନିଃଶଙ୍କ ।। ୧୭୧
ଲେଉଟି ଲଙ୍କାରୁ ବନ୍ଦି ଶ୍ରୀରାମ ଚରଣ ।
ବୋଇଲା ହେ ପ୍ରଭୁ ! ଭଲା ମାତାଙ୍କ ଦର୍ଶନ ।। ୧୭୨
ଶୀଘ୍ର କପିବଳ ଘେନି ଚଳ ହେ ଶ୍ରୀରାମ !
ନୋହିଲେ ଜନକ ସୁତା ହାରିବେ ଜୀବନ ।। ୧୭୩
ତହୁଁ ସୁଗ୍ରୀବ ସହିତେ ଘେନି କପିବଳେ ।
ପ୍ରବେଶିଲେ ରାମ ଯାଇ ମହୋଦଧି କୂଳେ ।। ୧୭୪
ଏକ ବାଣେ ବରୁଣଙ୍କୁ କରି ଭୟଭୀତ ।
ନଳ ହସ୍ତେ ସେତୁ ବନ୍ଧାଇଲେ ରଘୁନାଥ ।। ୧୭୫
ଲଙ୍କାଗଡ଼େ ପରବେଶି ଜାନକୀରମଣ ।
ରାବଣକୁ ସବଂଶରେ କରିଲେ ନିଧନ ।। ୧୭୬
ରାକ୍ଷସ ପୁରେ ଜାନକୀ ଚତୁର୍ଦ୍ଦଶ ମାସ ।
ଥିବାରୁ ରାମଙ୍କ ମନେ ହେଲା ଅବିଶ୍ବାସ ।। ୧୭୭
ସକଳ ସମକ୍ଷେ ରାମ ରଘୁକୁଳ ସାଇଁ ।
ଧିକ୍କାରିଲେ ଜାନକୀଙ୍କି ନିରଦୟା ବହି ।। ୧୭୮

ମର୍ମଭେଦୀ ବାଣୀ ଶୁଣି ଜନକ ନନ୍ଦିନୀ ।
ପଶିଲେ ଅନଳେ ମନେ ରାମନାମ ଗୁଣି ॥ ୧୭୯
ସତୀ ଶିରୋମଣି ସୀତା ଜଗତ ପାବନୀ ।
ତାଙ୍କୁ କୋଳେ ଧରି ବାହାରିଲେ ତୋଷେ ଅଗ୍ନି ॥ ୧୮୦
ଶ୍ରୀରାମଙ୍କ କରେ ସମର୍ପିଲେ ନାରୀବର ।
ବୋଇଲେ ଅନଳ ଆହେ ଶୁଣ ରଘୁବର ! ॥ ୧୮୧
ରାବଣ ପୁରେ ଜାନକୀ ଧ୍ୟାୟି ତୁମ୍ଭ ନାମ ।
କାଟିଲେ ଚଉଦ ମାସ ଦୁଃସହ ଜୀବନ ॥ ୧୮୨
ଶ୍ରୀମତୀ ସତୀଙ୍କୁ ତୁମ୍ଭେ ନ ବସ୍ତର ଆନ ।
ନାରୀ ଶିରୋମଣି ସୀତା ଅନଳ ସମାନ ॥ ୧୮୩
ତୁମ୍ଭ ବିନା ଆନ କେ କରିବ ସ୍ପରଶ ।
ତାହା ଶୁଣି ରଘୁନାଥ ହୋଇଲେ ହରଷ ॥ ୧୮୪
ରାବଣ ନିଧନେ ତୁଷ୍ଟ ହୋଇ ଦେବକୁଳ ।
ଦେବ ବ୍ରହ୍ମ ଋଷି ମେଳେ ମିଳିଣ ସକଳ ॥ ୧୮୫
ଶ୍ରୀରାମେ ପୂଜିଲେ ହୋଇ ହରଷ ମାନସ ।
ଏ ଅନ୍ତେ ଯା' ହେଲା ଶୁଣ ଆହେ ମୁନିଶ୍ରେଷ୍ଠ ! ॥ ୧୮୬
ବିଭୀଷଣଙ୍କୁ ଲଙ୍କାରେ କରାଇ ରାଜନ ।
ଜୀଆଇଲେ ଦେବବରେ ସକଳ ସୈନ୍ୟ ॥ ୧୮୭
ମିତ୍ର ଭାଇ ଭାର୍ଯ୍ୟାଙ୍କୁ ଘେନି ରଘୁବର ।
ପୁଷ୍ପକ ବିମାନେ ବସି ହୋଇଲେ ବାହାର ॥ ୧୮୮
ଅଯୋଧ୍ୟା ମାର୍ଗେ ଶ୍ରୀରାମ କଲେକ ଗମନ ।
ପଥେ ଭରଦ୍ୱାଜାଶ୍ରମେ କରିଲେ ବିଶ୍ରାମ ॥ ୧୮୯
ସେଠାରୁ ହନୁମାନଙ୍କୁ ଅଯୋଧ୍ୟା ପଠାଇ ।
ସନ୍ଦେଶ ଦେଲେ ଭରତେ ରଘୁକୁଳ ସାଇଁ ॥ ୧୯୦
ତଦନ୍ତେ ସକଳ ବଳ ସାଥେ ରଘୁନାଥ ।
ନନ୍ଦିଗ୍ରାମେ ପ୍ରବେଶିଲେ ହୋଇ ହର୍ଷଯୁତ ॥ ୧୯୧
ସେଠାରେ ଅଙ୍ଗ ମାର୍ଜନା କରି ରଘୁବର ।
ସୀତା ସହିତରେ ପ୍ରବେଶିଲେ ରାଜପୁର ॥ ୧୯୨

ସିଂହାସନେ ଆରୋହଣ ରଘୁକୁଳ ସାଇଁ ।
ପରଜା ପାଳଲେ ଛନ୍ଦେ ହୋଇଣ ତପସ୍ୱୀ ॥ ୧୯୩
ରାମରାଜ୍ୟେ ପ୍ରଜାକୁଳ ହୋଇ ହରଷିତ ।
ରହିଲେ କୁଟୁମ୍ବ ପାଳ ଆଧିବ୍ୟାଧି ମୁକ୍ତ ॥ ୧୯୪
ରାମରାଜ୍ୟେ ନ ରହିଲା କାଳଦଣ୍ଡ ଭୟ ।
ଧାର୍ମିକ ବନସ୍ଥୀ ସୁଖୀ ହେଲେ ପ୍ରଜାଚୟ ॥ ୧୯୫
ନାରୀଗଣ ପତିବ୍ରତା ଧରମ ପାଳିଲେ ।
ଅଇସୁଲକ୍ଷଣୀ ହୋଇ କୁଟୁମ୍ବେ ତୋଷିଲେ ॥ ୧୯୬
ବିଧବା ଶବଦ ନ ଶୁଭିଲା ସେ ନଗରେ ।
ଧନଧାନ୍ୟ ପୂର୍ଣ୍ଣ ହେଲା ଅଯୋଧ୍ୟା ନଗରେ ॥ ୧୯୭
ଅଗ୍ନି ଚୌର ଜଳାତଙ୍କ ଭୟ ସେ ସମାଜେ ।
ନ ରହିଲା ଆହେ ତପିବର ! ରାମରାଜ୍ୟେ ॥ ୧୯୮
ରୋଗ ବ୍ୟାଧି ମହାମାରୀ ନ ପଡ଼ିଲା ଆଜ ।
ଶ୍ରୀରାମ ଶାସନେ ନ ରହିଲା ଯମ ବାଜ ॥ ୧୯୯
ବ୍ୟାପାର ବାଣିଜ୍ୟେ ସୁଖୀ ହେଲେ ବୈଶ୍ୟକୁଳ ।
ଧନ ରତ୍ନେ ପରିପୂର୍ଣ୍ଣ ପ୍ରଜାଙ୍କ ମନ୍ଦିର ॥ ୨୦୦
ମିଥ୍ୟାବାଦୀ କପଟୀ ଅସୂୟାବନ୍ତ ଜନ ।
ନ ରହିଲେ ଜଣେ ରାମ କରନ୍ତେ ଶାସନ ॥ ୨୦୧
ତ୍ରେତୟା ଯୁଗେ କି ସତ୍ୟଯୁଗ ହେଲା ଆସି ।
ମନ ସୁଖେ ଯାଗ ଯଜ୍ଞ ଆରମ୍ଭିଲେ ଋଷି ॥ ୨୦୨
ଶତ ସହସ୍ର ଅଶ୍ୱମେଧ ଯାଗ କରି ରାମ ।
ସୁବର୍ଣ୍ଣ ଗୋରଥ ଅଶ୍ୱ ଗଜ ଦେଲେ ଦାନ ॥ ୨୦୩
ବେଦାଧ୍ୟାୟୀ ବ୍ରାହ୍ମଣ ତପସ୍ୱୀ ନିରନ୍ତରେ ।
ଗାଇଲେ ଶ୍ରୀରାମ ଯଶ ପୁଲକ ଅନ୍ତରେ ॥ ୨୦୪
ନୂତନ ରାଜକୁଳରେ ଶୋଭିଲା ଧରଣୀ ।
ମନେ ତୋଷ ହେଲେ ଏହା ଦେଖି ରଘୁମଣି ॥ ୨୦୫
ଏଗାର ସହସ୍ର ବର୍ଷ କରି ରାଜପଣ ।
ପରମପଦେ ଗମିଲେ ଶ୍ରୀପୁରୁଷୋତ୍ତମ ॥ ୨୦୬

ବେଦ ସମାନ ପବିତ୍ର ରାମାୟଣବାଣୀ ।
ଶ୍ରଦ୍ଧାରେ ଯେ ଏହା ନିତ୍ୟେ କର୍ଣ୍ଣପୁଟେ ଶୁଣି ॥ ୨୦୭
ଧନ ଧାନ୍ୟ ପୁତ୍ର ପୌତ୍ର ଯଶ ମହିମାରେ ।
ବିଖ୍ୟାତ ସେ ହୁଏ ଏହି ଅସାର ସଂସାରେ ॥ ୨୦୮
ଶେଷେ ଦିବ୍ୟଯାନେ ବସି ଗମେ ସୁରପୁର ।
ଏ' କଥା ଅନ୍ୟଥା ନୋହେ ଆହେ ମୁନିବର ॥ ୨୦୯
ବ୍ରାହ୍ମଣ ପଢ଼ିଲେ ବେଦ ପାରଗ ହୁଅଇ ।
କ୍ଷତ୍ରିୟ ପଢ଼ିଲେ ଚକ୍ରବର୍ତ୍ତୀ ରାଜା ହୋଇ ॥ ୨୧୦
ବୈଶ୍ୟ ଜନ ପାଠ କଲେ ନିତ୍ୟ ରାମାୟଣ ।
ଚଞ୍ଚଳା କମଳା ନ ଛେଡ଼ନ୍ତି ତା' ଭୁବନ ॥ ୨୧୧
ଶୂଦ୍ର ଶ୍ରଦ୍ଧାଚିତ୍ତେ ପାଠ କଲେ ରାମଗୀତ ।
ପ୍ରତିଷ୍ଠା ବଢ଼ଇ ତା'ର ଲୋକରେ ବହୁତ ॥ ୨୧୨
ନାରଦଙ୍କ ମୁଖୁଁ ଶୁଣି ରାମାୟଣ ତତ୍ତ୍ୱ ।
ବାଲମିକ ମୁନି ମନେ ହେଲେ କୃତକୃତ୍ୟ ॥ ୨୧୩
ଆହେ ରାମ ! ରାଜୀବଲୋଚନ ! ରଘୁରାଣ !
ବଳନ୍ତୁ ମୋ' ଚିତ୍ତ ଗାଇବାକୁ ରାମାୟଣ ॥ ୨୧୪
ଆହେ ନୀଳାଚଳ ନାଥ ସୁଦୟା ବହିଣ ।
ତତ୍ପୁନ କରଇ ପୂରାଅ ମୋ' ମନସ୍କାମ ॥ ୨୧୫
ଭଗବାନ ମିଶ୍ର ସୁତ ଶ୍ରୀପୁରୁଷୋତ୍ତମ ।
ମୈତ୍ରେୟ-କୁଳ-ଭୂଷଣ ଗାଏ ରାମାୟଣ ॥ ୨୧୬
ପ୍ରଥମ ଅଧ୍ୟାୟ ଗୀତ ହେଲା ସମାପତ ।
ଦୁଇଶତ ସପ୍ତଦଶ ପଦରେ ସଯୁତ ॥ ୨୧୭

ଇତି ଶ୍ରୀଆର୍ଷେ ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ବାଲ୍ମୀକି ନାରଦ ସମ୍ବାଦେ ପ୍ରଥମ ସର୍ଗ ।

—o—

# ଦ୍ୱିତୀୟ ସର୍ଗ

## ତମସାତୀରେ ରାମାୟଣ ରଚନା-ଉପକ୍ରମ

ଦେବର୍ଷି ନାରଦ ବାଣୀ ଶୁଣି ବାଲମିକ ।
ବାଣୀ ବିଶାରଦ ମୁନି ପରମ ଧାର୍ମିକ ॥ ୧
ଶିଷ୍ୟ ସହିତ ମୁନିଙ୍କି ପୂଜି ସମାଦରେ ।
ଗନ୍ଧ ମାଲ୍ୟ ଦେଇ ବସାଇଲେ ଆସନରେ ॥ ୨
ବାଲମିକଠାରୁ ପୂଜା ପାଇ ଋଷିମୁନି ।
ଚଳିଲେ ଗଗନମାର୍ଗେ ହରିଗୁଣ ଗୁଣି ॥ ୩
ଦେବର୍ଷିଙ୍କ ଉପଦେଶେ ବାଣୀ ବିଶାରଦ ।
ରାମାୟଣ ରଚିବାକୁ ମନେ କଲେ ସଧ ॥ ୪
ଶିଷ୍ୟ ସହିତ ଚଳିଲେ ସେ ତମସା ତୀରେ ।
ଯେ ନଦୀର ଜଳ ପୂତ ମନ୍ଦାକିନୀ ପରେ ॥ ୫
ସୁବିମଳ ଜଳଘାଟେ ବିସ୍ତୁରି ଆସନ ।
ଶିଷ୍ୟ ଭରଦ୍ୱାଜେ ମୁନି କହିଲେ ଏସନ ॥ ୬
ବତ୍ସ ଭରଦ୍ୱାଜ ! ଦେଖ ଏ' ତମସାତୀର ।
ଅତ୍ୟନ୍ତ ନିର୍ମଳ ଯଥା ମନ ସାଧୁଙ୍କର ॥ ୭
ଏଠାରେ ସ୍ଥାପି କଳଶ ଦିଅ ମୋ' ବଲ୍କଳ ।
ଏ' ତୀର୍ଥରେ ସ୍ନାନ କରି ହୋଇବି ନିର୍ମଳ ॥ ୮
ଶିଷ୍ୟଠାରୁ କଳଶ ବଲ୍କଳ ନେଇ ମୁନି ।
ଥୋଇ ଜଳଘାଟେ ମନେ ବିମୃଶିଲେ ପୁଣି ॥ ୯
ଏ' ତମସାତୀର-ବନ ଅତି ଶୋଭାବନ ।
ନାନା ପକ୍ଷୀ କୂଜନରେ ମୋହେ ଜନମନ ॥ ୧୦
ଏହା ଚିନ୍ତି ମୁନିବର ସେ ଶୋଭା ନିରେଖି ।
ଧୀରେପଦେ ବନଦେଶେ ଚଳିଲେ ଏକାକୀ ॥ ୧୧
ଏକ ତରୁଡ଼ାଳେ ବସି ବକବକୀ ଦୁଇ ।
ପରମ ପ୍ରୀତିରେ ପରସ୍ପର ପ୍ରେମ ବନ୍ଧି ॥ ୧୨

କଳ କୂଜନରେ ମାତ୍ତ କ୍ରୌଞ୍ଚ ଯୁଗଳ ।
ଆମ୍ଭଙ୍କି ପାସୋରିଲେ ହୋଇଣ ବହ୍ୱଳ ॥ ୧୩
ସେ କଳ ଯୁଗଳେ ମୁନି ବାଲମିକ ଋଷି ।
ବିମୁଗ୍ଧ ହେଲେ ଅନ୍ତରେ ମହାମୋଦ ବହି ॥ ୧୪
ସକଳ ଜନ୍ତୁ ବଇରି ନିଷ୍ଠୁର ନିଷାଦ ।
କ୍ରୌଞ୍ଚ ଦମ୍ପତି କ୍ରୀଡ଼ା ଦେଖି ହେଲା ମୋଦ ॥ ୧୫
ବକକୁ ସନ୍ଧି ବାଣ ଛାଡ଼ିଲା ଶବର ।
ଝୁହୁଁ ଝୁହୁଁ ଭୂମିରେ ପଡ଼ିଲା ପକ୍ଷୀବର ॥ ୧୬
ଉକତ ଧାର ତା' ଦେହୁ ବହିଲା ପ୍ରଖର ।
ସର୍ବାଙ୍ଗ ଶୋଣିତଧାରେ ହେଲା ଜରଜର ॥ ୧୭
ପକ୍ଷ ହଲାଇ ଆକୁଳେ କରନ୍ତେ କୂଜନ ।
ତା' ଦେଖି ବକୀ ହୋଇଲା ବ୍ୟାକୁଳ ପରାଣ ॥ ୧୮
ସୁରଙ୍ଗ କୋମଳ ପକ୍ଷଧାରି ପକ୍ଷୀବର ।
ପ୍ରେମଭରେ ମାତିଥିଲା ପକ୍ଷଣୀ ସଙ୍ଗର ॥ ୧୯
ପ୍ରିୟା ଅଙ୍ଗସଙ୍ଗ ଅନୁରାଗେ ସେହୁ ବକ ।
ମନସୁଖେ ରମୁଥିଲା ହୋଇଣ ନିଦକ ॥ ୨୦
ଏମନ୍ତ ବକ ବିଯୋଗେ ଅତୁର ଅନ୍ତର ।
କରୁଣ କୂଜନେ ବକୀ ହେଲା ଥରହର ॥ ୨୧
କ୍ରୂରକର୍ମା ନିଷାଦର ଦେଖି ହୀନକର୍ମ ।
ବାଲମିକ ମୁନିଙ୍କର ଭେଦିଗଲା ମର୍ମ ॥ ୨୨
ମନେ ମନେ ବ୍ୟାକୁଳ ହୋଇଲେ ତପୋଧନ ।
ପକ୍ଷୀର ବିପଦେ ଗେ ତାଙ୍କ ଦଗ୍ଧ ହେଲା ପ୍ରାଣ ॥ ୨୩
'କି ଘୋର ଅନ୍ୟାୟ' ଏହା ବୋଲି ଭାଷିଲେଣି ।
ଅଶ୍ରୁଳ ନୟନେ ଋଷି ବକୀ କି ସେ ପୁଣି ॥ ୨୪
କୋଇଲେ ଆରତ କଣ୍ଠେ ଗଦଗଦ ହୋଇ ।
ଶୋକାଶ୍ରୁପୂରିତ ନେତ୍ରେ ବ୍ୟାଧ ମୁଖ ଋହିଁ ॥ ୨୫
ରେ ପାପୀ ନିଷାଦ କଲୁ କେଡ଼େ କ୍ରୂରକର୍ମ ।
ଏ' ଅନ୍ୟାୟ ତୋ'ର କରେ ସହିବଟି ଧର୍ମ ॥ ୨୬

କାମରେ ମୋହିତ କ୍ରୌଞ୍ଚ ସୁଖେ ରମୁଥିଲା ।
ତୋ' ଦାରୁଣ କର୍ମ କ୍ରୌଞ୍ଚୀ ବରହିଣୀ ହେଲା ॥ ୨୭
ଏ' ସକାଶୁ ଆରେ ମଦମତ୍ତ ଶବବର୍ଣ୍ଣେ ।
ଯାଏଁ ତୁ ନ ଲଭ ଗତି ହୋଇ ସ୍ଥାନବାସ ॥ ୨୮
ଏ' ଦାରୁଣ ପଣୁ ଶାନ୍ତି ନ ଲଭୁ ତୋ ଚିତ୍ତ ।
ନିରପରାଧେ ବଧିଲୁ ହୋଇଣ କୃତାନ୍ତ ॥ ୨୯
ଏମନ୍ତ କହିଣ ମୁନି ବସ୍ମରିଲେ ମନେ ।
ଶୋକର ଆକୁଳେ କ'ଣ ବୋଇଲି ବଚନେ ॥ ୩୦
ମହାମନା ମହାଋଷି ବାଲ୍ମିକି ଯତି ।
ଶିଷ୍ୟ ଭରଦ୍ୱାଜେ ସ୍ପର୍ଶି କହିଲେ ଭାରତୀ ॥ ୩୧
ବତ୍ସ ! ଶୋକାକୁଳେ ମୋ' ମୁଖରୁ ଯା' ନିର୍ଗତ ।
ହେଲା ଶ୍ଳୋକାକାର ସେହୁ ଚତୁଷ୍ପାଦ ଯୁକ୍ତ ॥ ୩୨
ଏ' ବାଣୀ ବୀଣାର ତାନେ ହୋଇପାରେ ଗାନ ।
ଅଜାଣତେ ଯେଉଁ ଶ୍ଳୋକ କଲି ମୁଁ ଗାୟନ ॥ ୩୩
ଏହନକ ବାଣୀ ଶୁଣି ଶିଷ୍ୟ ଭରଦ୍ୱାଜ ।
ଗଦ୍‌ଗଦ ବଚନେ ଭାଷେ ଶୁଣ ଋଷିରାଜ ! ॥ ୩୪
ଶ୍ରୀମୁଖରୁ ଶ୍ଳୋକ ରୂପେ ଯେ ବାଣୀ ସ୍ଫୁରିଲା ।
ସେ ବାଣୀକୁ ଗାନ ରୂପ ଦିଅ ମୁନିକଳା ॥ ୩୫
ଜଗତେ ସେ ଶୋକ ସ୍ଫୁରୁ ଶ୍ଳୋକରୂପ ଧରି ।
ଯାହାର ଶ୍ରବଣେ ଜନେ ଯିବେ ଭବୁଁ ତରି ॥ ୩୬
ଶିଷ୍ୟ ଭରଦ୍ୱାଜ ବାଣୀ ଅମୃତ ସମାନ ।
ଶୁଣି ବାଲ୍ମିକି ହେଲେ ଉଲ୍ଲସିତ ମନ ॥ ୩୭
ଏଥିଅନ୍ତେ ମହାମୁନି ଆନନ୍ଦିତ ମନେ ।
ତୀର୍ଥଜଳେ ଅବଗାହି ଚଳିଲେ ଆଶ୍ରମେ ॥ ୩୮
କାୟା ସାଥେ ଛାୟା ପରି ଶିଷ୍ୟ ଭରଦ୍ୱାଜ ।
ତୀର୍ଥ-ଜଳଘଟ ଘେନି ଗମିଲେ ଋଷିଜ ॥ ୩୯
ଆଶ୍ରମେ ପ୍ରବେଶି ମହାମୁନି ବାଲ୍ମିକି ।
ଶିଷ୍ୟଗଣେ ପ୍ରବଚନେ ଭାଷିଲେ ଅନେକ ॥ ୪୦

କିନ୍ତୁ ତାଙ୍କ ମନ-ମନ୍ଦିରରେ ସେହି ଶ୍ଳୋକ ।
ଗୁଞ୍ଜରିଲା ମୂର୍ତ୍ତିମନ୍ତ ହୋଇ ଏକ ଏକ ॥ ୪୧
ଧ୍ୟାନ ପଥେ ଶ୍ଳୋକ ରାଜି ଉଠିଲେ ଉଲ୍ଲସି ।
ଏକ ପରେ ଏକ ପୁଣି ସରସେ ବିଳସି ॥ ୪୨
କିନ୍ତୁ ମୁନିବର ନ ପାଇଲେ ସମାଧାନ ।
କିପରି ରଚିବେ ସେହି ଶ୍ଳୋକମୟ ଗାନ ॥ ୪୩
ଏକାଳେ ଆଶ୍ରମେ ଆସି ଲୋକପ୍ରଜାପତି ।
ବ୍ରହ୍ମଲୋକ ତେଜି ପ୍ରବେଶିଲେ ମହାମତି ॥ ୪୪
ସହସା ଚତୁରାନନେ ଦେଖି ମହାମୁନି ।
ନ ସ୍ଫୁରିଲା ବାକ୍ୟ ମୂର୍ଖ ହୋଇଲେ ସେ ଗୁଣି ॥ ୪୫
ଚରଣରେ ଦେଇ ପାଦ୍ୟ ଅର୍ଘ୍ୟ ବିଧିମତ ।
ପୂଜିଲେ ସେ ବିଧାତାଙ୍କୁ କରି ଦଣ୍ଡବତ ॥ ୪୬
ଯଥାଯୋଗ୍ୟ ଅର୍ଚ୍ଚନା ସାରି ମୁନିବର ।
ବସାଇ ଆସନେ ଜିଜ୍ଞାସିଲେ ସକୁଶଳ ॥ ୪୭
ଉତ୍ତମ ଆସନେ ବସି ଚରାଚର ନାଥ ।
ବସିବାକୁ ଆଦେଶିଲେ ଦେଇଣ ଇଙ୍ଗିତ ॥ ୪୮
ଲୋକ ପିତାମହ ଇଙ୍ଗିତରେ ମୁନିବର ।
ବସିଲେ ଆସନେ ଧ୍ୟାନେ ଚିନ୍ତି ଋଷିବର ॥ ୪୯
କ୍ରୌଞ୍ଚୀର ବିଳାପ ଧ୍ୱନି ଗୁଞ୍ଜରିଲା କର୍ଣ୍ଣେ ।
କରୁଣା-କଳିତ ହୃଦେ ଭାବିଲେ ସେ ମନେ ॥ ୫୦
ଆହା ପ୍ରେମମୟୀ କ୍ରୌଞ୍ଚୀ ପ୍ରିୟ ବିରହରେ ।
ଯାପିବ କିପରି କାଳ ରହି ଏ' ସଂସାରେ ॥ ୫୧
ନିଷ୍ଠୁର ନିୟତି ପୀଡ଼ା ସହିବ କେସନେ ?
ବ୍ୟାଧ ଶରେ ଜର୍ଜ୍ଜରିତ କ୍ରୌଞ୍ଚର ବିହୁନେ ॥ ୫୨
ନିଷ୍ଠୁର ନିର୍ଦ୍ଦୟ କ୍ରୂର ବ୍ୟାଧର କବଳେ ।
ପଡ଼ି ଅନ୍ୟାୟରେ ପ୍ରାଣ ଦେଲା ଯେ ବିକଳେ ॥ ୫୩
ସତେ କି ସେ ବ୍ୟାଧ କେବେ ହେବ ସଚେତନ ।
ବଞ୍ଚିବ ସରଗେ ତେଜି କ୍ରୂର କର୍ମମାନ ॥ ୫୪

ନିୟତିର ପରିହାସ ଏଡ଼ାଇ ଯତନେ ।
ହେବ ଦସ୍ୟୁପରବଶ ସରେ ଏ’ ଜୀବନେ ॥ ୫୫
ଭାବି ସେ ଚରିତ ମନେ ବାଲମିକ ମୁନି ।
ଆଳାପିଲେ ମନେ ମନେ ‘ମାନିଷାଦ’ ବାଣୀ ॥ ୫୬
ପୁଣି ମୁନିବର ମନେ ଚିନ୍ତି ଅଭିଶାପ ।
ଭାଳିଲେ ମୁଁ ଅବଶରେ କଲି କେତେ ପାପ ॥ ୫୭
ଅନ୍ୟାୟ କରିଲା ବ୍ୟାଧ ମୁଁ ଅନ୍ୟାୟ କଲି ।
ଜ୍ଞାନ ଉପଦେଶ ତେଜି ନିଷ୍ଠୁର କର୍ମା ହେଲି ॥ ୫୮
ଧିକ ମୋ’ ଜୀବନ ଧିକ ମୋର ବଡ଼ପଣ ।
ଧିକ ମୋ’ ତପସ୍ୟା ଧିକ ଧିକ ମୋ’ ଆଶ୍ରମ ॥ ୫୯
ବ୍ୟାଧ ତୁଲ ସରି ହେଲି ତେଜି ମୁନିବ୍ରତ ।
କି କାରଣେ ଶିଷ୍ୟଗଣେ ହେବ ମୁଁ ପୂଜିତ ? ॥ ୬୦
ଏସନକ ଚିନ୍ତାତୁରେ ଘାରିହେଲେ ମୁନି ।
ବିଷାଦ ଅନ୍ତରେ ମୁଖୁଁ ନ ସ୍ଫୁରିଲା ବାଣୀ ॥ ୬୧
ଧ୍ୟାନବଳେ ଜାଣି ଏହା ଚତୁର ଆନନ ।
ଆଶ୍ୱାସିଲେ ବାଲମିକେ ଦେଇ ଦିବ୍ୟଜ୍ଞାନ ॥ ୬୨
ବତ୍ସ ବାଲମିକ ! ଘେନ ମୋର ହିତ ବାଣୀ ।
ନ ବିଳାପ ଶୋକାତୁରେ ତବ କୃତ୍ୟ ଗୁଣି ॥ ୬୩
କରୁଣା-କଳିତ ସ୍ୱରେ ତବ ମୁଖୁଁ ଯାହା ।
ବାହାରିଛି ଶ୍ଳୋକରୂପେ ଶୁଣ ମୁନିନାହା ॥ ୬୪
ସେଥିରେ ରହିଛି ବତ୍ସ ! ମୋହର ଇଙ୍ଗିତ ।
ତବ କଣ୍ଠୁ ‘ମା ନିଷାଦ’ ହୋଇଛି ଉଦିତ ॥ ୬୫
ସେହି ଶ୍ଳୋକ ମୋହିବ ଏ’ ତ୍ରିଜଗତ ଯାକ ।
ହୋଇବ ସୃଷ୍ଟିର ଆଦ୍ୟ ରଚନା ଏ’ ଶ୍ଳୋକ ॥ ୬୬
ମୋହର ପ୍ରେରଣା ଆଉ କରୁଣା ବଶରୁ ।
ନିଃସରିଲା ତବ କଣ୍ଠୁ ଏହି ଗାନ ଗୁରୁ ॥ ୬୭
ଏଥିଲାଗି ମନେ ତୁମ୍ଭେ ନ କରୁର ଆନ ।
ଯା’ କିଛି ଘଟିଛି ତାହା ମୋହର ଭିଆଣ ॥ ୬୮

ଜଗତର ପିତାମାତା ପ୍ରଭୁ ଜଗନ୍ନାଥ ।
ତାଙ୍କ ଇଚ୍ଛା-ସଙ୍କଳପୁ ଜାତ ଏ' ଜଗତ ॥ ୬୯
ତାଙ୍କରି ଇଙ୍ଗିତେ ସୃଷ୍ଟି ହେଲା ଲୋକପାଳ ।
ସବୁକିଛି ତାଙ୍କ ଇଚ୍ଛା ବିନେ ହେଁ ନ ପାର ॥ ୭୦
ପରମ ପୁରୁଷ ରାମ ଜଗତର ପତି
ଜଗତେ ବନ୍ଦିତ ତାଙ୍କ ଅତୁଳ କୀରତି ॥ ୭୧
ସେହି କୀର୍ତ୍ତିମୟୀ ଗାଥା କର ତୁ ଗାୟନ ।
ନାରଦ ମୁଖରୁ ଯାହା ଲଭିଅଛ ଜ୍ଞାନ ॥ ୭୨
ଧୀର ବୀର ସୁପୁରୁଷ ଶ୍ରୀରାମ-ଚରିତ ।
ତବ ଶ୍ଳୋକ ରୂପେ ସ୍ଫୁରି ପୂରି ଏ' ଜଗତ ॥ ୭୩
ଯାହା କିଛି ଜ୍ଞାତ ଅବା ଅଜ୍ଞାତ ବାରତା ।
ରାମ ଲକ୍ଷ୍ମଣ ଜାନକୀ ଅସୁରଙ୍କ ଗାଥା ॥ ୭୪
ମୋ' ଆଶିଷେ ତବ ମନ୍ତ୍ରେଁ ସ୍ଫୁରିବ ସକଳ ।
ନିଶ୍ଚିନ୍ତ ମାନସେ ରଚ କିଛି ହିଁ ନ ଭାଳ ॥ ୭୫
ଯା' କିଛି ଗୁପତ କଥା ସ୍ଫୁରିବ ସବାରେ ।
ବିରଚନ କର ରାମକଥା ମନଯୋଗେ ॥ ୭୬
ଏ' ରଚନା କାବ୍ୟରୂପେ ମୋହିବ ଜଗତ ।
ରାମ-କୀର୍ତ୍ତିମାଳା ଏଥି ହୋଇବ ଗ୍ରଥିତ ॥ ୭୭
ଯେତେକାଳ ଥିବ ଧରା ଗିରି ନଦୀ ବନ ।
ତାବତ ରହିବ ତବ ଗାଥା ରାମାୟଣ ॥ ୭୮
ରାମକଥା ଜନମୁଖେ ହୋଇବ ପ୍ରସିଦ୍ଧ ।
ଅମର ହୋଇବ ତବ କାବ୍ୟ ମୁନିବର ! ॥ ୭୯
ତୁମରି ରଚନା ଗାଇ ଏ' ଜଗତଜନ ।
ଉଦ୍ଧରିବେ ଏ'ଜଗତୁ ଲଭି ଦିବ୍ୟଜ୍ଞାନ ॥ ୮୦
ସେହି ପୁଣ୍ୟଗାଥା ବଳେ ଆହେ ମୁନିବର !
ତୁମ୍ଭ କୀର୍ତ୍ତିମୟୀ ଧ୍ୱଜା ଲଭିବ ଅମର ॥ ୮୧
ଇଚ୍ଛାସୁଖେ ତୁମ୍ଭେ ବିଚରିବ ବ୍ରହ୍ମଧାମେ ।
ତପ ଜପ ମନ୍ତ୍ର ଅବା ନିତ୍ୟ ସତ୍ୟଧାମେ ॥ ୮୨

ଏମନ୍ତ ବଚନ ଭାଷି ସୃଷ୍ଟିର କରତା ।
ବ୍ରହ୍ମଲୋକେ ଚଳିଗଲେ ଦେଇ ଦିବ୍ୟବାର୍ତ୍ତା ॥ ୮୩
ଅଳକ୍ଷାରେ ସବୁ କିଛି ଘଟିଲା ଘଟଣା ।
ଶିଷ୍ୟଗଣ ସନ୍ତରରେ ହୋଇ ଆନମନା ॥ ୮୪
ବିସ୍ମରିଲେ ମହାମୁନିବର ବାଲ୍ମିକି ।
ଏ' କି ଅଦ୍ଭୁତେ ଘଟିଗଲା ସେତେ ଯାକ ॥ ୮୫
ସତ୍ୟ କି ହୋଇବ ଯାହା ଭାଷିଲେ ବିଧାତା ।
ସତେ କି ଜଗତେ ପ୍ରସରିବ ରାମକଥା ॥ ୮୬
ଶିଷ୍ୟଗଣେ ପରସ୍ପର କହିଲେ ବିସ୍ମର ।
କ୍ରୌଞ୍ଚର ନିଧନେ ଯା' ଭାଷିଲେ ମୁନିବର ॥ ୮୭
ଆଦିକାବ୍ୟ ରାମାୟଣେ 'ମା ନିଷାଦ' ବାଣୀ ।
ଶୋକ ଶ୍ଳୋକ ରୂପେ ସ୍ଫୁରି ମୋହିବ ଧରଣୀ ॥ ୮୮
ନିର୍ମଳ ମାନସେ ମୁନିବର ବାଲ୍ମିକି ।
ବିସ୍ମରିଲେ ରାମଗାଥା କହିବ ଶୋଳକ ॥ ୮୯
ଭାବୀ ଚରିତ ବାଲ୍ମିକି ମହାମୁନି ।
ବିରଚିଲେ ରାମାୟଣ ଧାତା ଗୁଣ ଗୁଣି ॥ ୯୦
ଚବିଶ ସହସ୍ର ଶ୍ଳୋକ ପରମପାବନ ।
ବିରଚିଲେ ମହାକାବ୍ୟ ନାମ 'ରାମାୟଣ' ॥ ୯୧
ପରମ ପୁରୁଷ ରାମ-ଗୁଣଗାଥା ଗାଇ ।
ଅମର ହୋଇଲେ ମୁନି ବ୍ରହ୍ମପଦ ଧରି ॥ ୯୨
ସୁଲଳିତ କାନ୍ତ ମନୋହର ପଦାବଳୀ ।
ବିରଚିଲେ ବାଲ୍ମିକି ଶବ୍ଦ ଭଣ୍ଡାର ॥ ୯୩
ସକଳ ସମାସ ଗୁଣ ରୀତି ଅଳଙ୍କାର ।
ପ୍ରକୃତି ପ୍ରତ୍ୟୟ ଆଉ ସନ୍ଧି ସମାହାର ॥ ୯୪
କାବ୍ୟ ଅନୁରୂପେ ମନୋରମ ପଦାବଳୀ ।
ସ୍ଫୁରିଲା ମୁନିଙ୍କ ମୁଖୁଁ ଅନୁପମ ଶୈଳୀ ॥ ୯୫
ଦୋଷ ବିବର୍ଜିତ ପଦ କାବ୍ୟର ଭୂଷଣ ।
ନ ରହିଲା ରାମାୟଣେ ବିଧାତା ବରେଣ ॥ ୯୬

ମଧୁର ପ୍ରସାଦ ଗୁଣେ ହୋଇ ଝଳସିତ ।
ଝଳସିଲ ରାମଗାଥା ବାଲ୍ମୀକି ଭଣିତ ॥ ୯୭
ଆହେ ସୁଜ୍ଞଜନେ ପିଅ ରାମ ରସାମୃତ ।
ଯାହା ପାନ ଫଳେ ଜୀବ ଲଭି ଅମରତ୍ୱ ॥ ୯୮
ବସିବ ପରମଧାମେ ମୋକ୍ଷଗତି ପାଇ ।
ଏ' ଜୀବନ ଧନ୍ୟ ହେବ ରାମାୟଣ ଗାଇ ॥ ୯୯
ଆଦିକାବ୍ୟ ରାମାୟଣ କର ହେ ଗାୟନ ।
ଯଦି ଇଚ୍ଛା ତରିବାକୁ ଶମନ-ଜଡନ ॥ ୧୦୦
ମଇହେପୁ କୁଳଚନ୍ଦ୍ର ଶ୍ରୀପୁରୁଷୋତ୍ତମ ।
ଶରଧାରେ ଗାଏ ରାମଗାଥା ମନୋରମ ॥ ୧୦୧

ଇତିଶ୍ରୀ ଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳ-
କାଣ୍ଡେ ଦ୍ୱିତୀୟ ସର୍ଗ ।



# ତୃତୀୟ ସର୍ଗ

## ବାଲ୍ମୀକିଙ୍କ ଦ୍ୱାରା ସମ୍ପୂର୍ଣ୍ଣ ରାମଗାଥା ସ୍ମରଣ

ଦେବମୁନି ନାରଦଙ୍କ ମୁଖୁଁ ଶୁଣି ବାଣୀ ।
ଅମୃତମୟ ଶ୍ରୀରାମ କଥା ତରଙ୍ଗିଣୀ ॥ ୧
ଗୁପତ ପ୍ରକଟ ତଥା ସମ୍ବାଦ ଅନେକ ।
ବିସ୍ମରିଲେ ପୁଣି ଥରେ ମୁନି ବାଲମିକ ॥ ୨
କି ରୂପେ ଶ୍ରୀରାମ ଗୁଣ କରିବେ ବର୍ଣ୍ଣନ ।
ଧ୍ୟାନବଳେ ପୁଣ୍ୟଗାଥା ବିସ୍ମରିଲେ ମନ ॥ ୩
ପୂର୍ବମୁଖ ହୋଇ କୁଶାସନେ ବସି ମୁନି ।
ଆଚମନ ପ୍ରାଣାୟାମ ସାରିଲେକ ପୁଣି ॥ ୪
ଯୋଗବଳେ ସମାଧିରେ କାନ୍ତି ଶୁଦ୍ଧ ବୁଦ୍ଧି ।
ଅନ୍ତରେ ଶ୍ରୀରାମ-ଗୁଣ-କୀର୍ତ୍ତିମାନ ସାଧି ॥ ୫

ଶ୍ରୀରାମ ଲକ୍ଷ୍ମଣ ଶତ୍ରୁଘ୍ନ ସୁଭରତ ।
ଦଶରଥ କଉଶଲ୍ୟା ରାଣୀଙ୍କ ସମେତ ॥ ୬
ସୀତାଙ୍କ ଜନମଠାରୁ ଶେଷ ଦିନ ଯାଏ ।
ଯା' ଘଟିଲା ବର୍ଷିବଣେ ଚନ୍ଦ୍ରଲେ ଥୋକାଏ ॥ ୭
ଶ୍ରୀରାମ ହାସ ବିଳାସ ଶୋକ ବଇରାଗ ।
ଭରତ ଲକ୍ଷ୍ମଣ ଶତ୍ରୁଘ୍ନ ବଇରାଗ ॥ ୮
ଗୋଟି ଗୋଟି କରି ମୁନି ଚନ୍ଦ୍ରଲେ ଧ୍ୟାନରେ ।
ପବିତ୍ର ଶ୍ରୀରାମଗାଥା ଆନନ୍ଦ ମନରେ ॥ ୯
ସତ୍ୟଧର୍ମ ସୁପାଳକ ଶ୍ରୀରାମ ବନରେ ।
ସାଧିଲେ ଯେ କର୍ମ ସୀତା ଲକ୍ଷ୍ମଣ ଭୁଲେ ॥ ୧୦
ଯାହା ଯାହା ପ୍ରାରମ୍ଭରୁ ପ୍ରସରିଲା ଲୀଳା ।
ଧ୍ୟାନବଳେ ସବୁଯାକ ପ୍ରକଟ ହୋଇଲା ॥ ୧୧
ପୂର୍ବରୁ ଯା' ଘଟିଥିଲା ହୋଇଲା ପ୍ରତ୍ୟକ୍ଷ ।
ଅମୂଲ୍ୟନିଧି ପ୍ରାପତ ହେଲେ ବାଲ୍ମିକ ॥ ୧୨
ଅତି ପ୍ରିୟକର ହିତ ମନୋଜ୍ଞ ଉତ୍ତମ ।
ଶ୍ରୀରାମ ଚରିତ ଏ' ଶପ୍ତେକ ମନୋରମ ॥ ୧୩
ମନେ ଗୁଣି ଧ୍ୟାନେ ଜାଣି ବାଲ୍ମିକ ଋଷି ।
ବର୍ଣ୍ଣିଲେ ବିରଚିବେ ଶୁଦ୍ଧମନେ ବସି ॥ ୧୪
ରାମାୟଣ ମହାକାବ୍ୟ କରିବେ ରଚନ ।
ଯା'ଶୁଣି ପାପୁଁ ତରିବେ ଏ' ଜଗତଜନ ॥ ୧୫
ନାରଦ ଯେପରି ଭାଷିଥିଲେ ରାମକଥା ।
ରଘୁକୁଳ-ଭୂଷଣଙ୍କ ଆରତ ବାରତା ॥ ୧୬
ଆଦ୍ୟପ୍ରାନ୍ତ କରି ମୁନି ସୁଚ୍ଚ ରାମାୟଣ ।
ଯେ ବାଣୀ ହୋଇବ ଭବେ ଅମୂଲ୍ୟ ରତନ ॥ ୧୭
ରତ୍ନାକର ସମାନ ଅଗାଧ ରାମବାଣୀ ।
ପବିତ୍ର ହୋଇବେ ଜନେ ଯେ ଚରିତ ଶୁଣି ॥ ୧୮
ସକଳ ଗୁଣ ଭିତରେ ଏ' ଗାଥା ସଂଯୁତ ।
ଅଳଙ୍କାରିଦରେ ପୁଣି ହୋଇଛୁ ମଣ୍ଡିତ ॥ ୧୯

ବେଦ-ବେଦାଙ୍ଗ-ବେଦାନ୍ତ ସାର ରାମାୟଣ ।
ସକଳ ଜନ ମାନସେ ଯେହୁ ଅଭିରାମ ॥ ୨୦
ଧର୍ମ ଅର୍ଥ କାମ ମୋକ୍ଷ ଚତୁର୍ବର୍ଗ ଦାତା ।
ଏମନ୍ତ ସକଳଗୁଣେ ପୂର୍ଣ୍ଣ ରାମଗାଥା ॥ ୨୧
ଯା' ଶ୍ରବଣେ ପ୍ରାଣୀ ତରେ ଏ' ଭବସାଗର ।
ସେ ଚରିତ ବରଣିଲେ ମହାମୁନିବର ॥ ୨୨
ଶୁଭଲଗ୍ନେ ଶ୍ରୀରାମଙ୍କ ଜନମ ବୃତ୍ତାନ୍ତ ।
ପରାକ୍ରମ ଗୁଣାବଳୀ ସକଳ ଚରିତ ॥ ୨୩
କ୍ଷମା-ସତ୍ୟ-ଧୈର୍ଯ୍ୟ-ଲୋକପ୍ରିୟ ଗାଥାମାନ ।
ଆଦ୍ୟପ୍ରାନ୍ତ କରି ମୁନି କଲେ ସୁମରଣ ॥ ୨୪
ବିଶ୍ୱାମିତ୍ର ସଙ୍ଗେ ରାମ ଲକ୍ଷ୍ମଣ ଗମନ ।
ଯେଉଁରୂପେ ତାଡ଼କାକୁ କଲେ ସେ ନିଧନ ॥ ୨୫
ସୁବାହୁର ଶିରଚ୍ଛେଦ ପ୍ରଭୁ ରଘୁନାଥ ।
ମାରୀଚକୁ ନ ମାରିଣ ରଖିଲେ ତା' ପ୍ରାଣ ॥ ୨୬
ମୁନି ଯାଗ ରଖି ମୁନି ଘରଣୀ ତାରିଲେ ।
ଜଗତ ମଧ୍ୟରେ ମହାଯଶ ଲୁହାଇଲେ ॥ ୨୭
ଗଙ୍ଗାତଟେ କଇବର୍ତ୍ତେ ଧୂଆଇଲେ ପାଦ ।
ଧନୁଭଙ୍ଗେ କ୍ଷତ୍ରିକୁଳେ ହେଲା ବିସମ୍ବାଦ ॥ ୨୮
ପରଶୁରାମଙ୍କୁ ପଥେ ଦେଲେ ବିବ୍ୟଞ୍ଜନ ।
ଅଯୋଧ୍ୟାରେ ପ୍ରବେଶି ଯା' କଲେ ରଘୁରାଣ ॥ ୨୯
ରାମ ଅଭିଷେକ ମନ୍ଥରାର ଦୁଷ୍ଟପଣ ।
କେକୟୀ ରାଜ-ନନ୍ଦିନୀ କଲା ଯେତେ ଗୁଣ ॥ ୩୦
ଦଶରଥ ବିଳାପ ଶ୍ରୀରାମ ବନବାସ ।
ପୁତ୍ରଶୋକେ ରାଜାଙ୍କର ହେଲା ସ୍ୱର୍ଗବାସ ॥ ୩୧
ଅଯୋଧ୍ୟାବାସୀଙ୍କ ଶୋକ ଭରତ ବିଳାପ ।
ଗୁହକ ମିଳନ ଭରଦ୍ୱାଜଙ୍କ ଆଳାପ ॥ ୩୨
ଶୂନ୍ୟରଥ ଘେନ ସୁମନ୍ତ୍ରଙ୍କ ଆଗମନ ।
ଯଥାଶ୍ରୁତ ସ୍ମରିଲେ ବାଲ୍ମୀକି ତପୋଧନ ॥ ୩୩

ଚିତ୍ରକୂଟେ ରାମ ଭରତଙ୍କ ଭେଟ ଗାଥା ।
ନନ୍ଦିଗ୍ରାମେ ଭରତର ହେଲା ଯେ ବ୍ୟବସ୍ଥା ।। ୩୪
ଦଣ୍ଡକବନ ଗମନ ମୁନିଙ୍କ ମିଳନ ।
ସ୍ୱାରପୃଧେ ବିରାଧର ମସ୍ତକ ଛେଦନ ।। ୩୫
ଶରଭଙ୍ଗ ସୁତୀକ୍ଷ୍ଣ ଆଶ୍ରମେ ରଘୁବର ।
ପ୍ରବେଶି ଯା' ଲୀଳା ବିରଚିଲେ ଏ' ମହୀର ।। ୩୬
ଅନସୂୟା-ସୀତାଙ୍କ ସମ୍ବାଦ ରୁଚିକର ।
ଅମଳାନ ବାସ ଅଙ୍ଗରାଗ ମନୋହର ।। ୩୭
ଅଗସ୍ତ୍ୟ ଆଶ୍ରମେ ରଘୁନାଥଙ୍କ ଗମନ ।
ବୈଷ୍ଣବଧନୁ ଖଡ଼ଗ ମୁନିଙ୍କ ପ୍ରଦାନ ।। ୩୮
ପଞ୍ଚବଟୀ ବନେ ଭାଇ-ଭାରିଯାଙ୍କୁ ଘେନ ।
ଯେପରି ଯାପିଲେ କାଳ ରଘୁକୁଳମଣି ।। ୩୯
ସୂର୍ପଣଖା ନାସାକର୍ଣ୍ଣ ଛେଦନ ବୃତ୍ତାନ୍ତ ।
ଖର ଦୂଷଣ ତ୍ରିଶିର ରାମବାଣେ ହତ ।। ୪୦
ଲଙ୍କାକୁ ଗମିଲା ଯେଉଁରୂପେ କଉଣପୀ ।
ରାବଣ ଆଗେ ଯା' ମିଥ୍ୟା ଭାଷିଲା ବିଳପି ।। ୪୧
ରାବଣର କୋପ ସୀତାହରଣ ପ୍ରସଙ୍ଗ ।
ମାୟାମୃଗ ବଧ ଜଟାୟୁର ଦେହ ତ୍ୟାଗ ।। ୪୨
ଶ୍ରୀରାମଙ୍କ ବିଳାପ କବନ୍ଧବଧ ଲୀଳା ।
ସେ ଜନ୍ତୁରୁ ଯେ ରୂପେ ଶବରୀ ଭେଟ ହେଲା ।। ୪୩
ପମ୍ପାସର ତଟେ ଭେଟ ପବନ କୁମର ।
ସୁଗ୍ରୀବେ ମିତ୍ରତା ବାଳୀ ବଧର ବିସ୍ତର ।। ୪୪
ଋଷ୍ୟମୂକ ଶିଖେ ବରଷାରେ ରଘୁରାଣ ।
ଯେପରି ଯାପିଲେ ଚିନ୍ତି ସୀତା ଚନ୍ଦ୍ରାନନ ।। ୪୫
ସୀତା ଅନ୍ୱେଷଣେ ହନୁ ଲଙ୍କାରେ ପ୍ରବେଶ ।
ଠିକ ଠିକ କରି ସୁମରିଲେ ମୁନିଈଶ ।। ୪୬
ସୀତା ହନୁ ସମ୍ବାଦ ଅଶୋକବନ ଭଙ୍ଗ ।
ଅକ୍ଷୟକୁମାର ବଧ ଆଦି ଯେତେ ରଙ୍ଗ ।। ୪୭

ଲଙ୍କା ଦହନ ରାକ୍ଷସ ରାକ୍ଷସୀଙ୍କ ଶୋକ ।
ହନୁ ଆଗମନ ଘେନ ସୀତାଙ୍କ ସନ୍ତକ ॥ ୪୮
ଋକ୍ଷକପି ଘେନ ରାମ ସୁଗ୍ରୀବ ଲକ୍ଷ୍ମଣ ।
ପ୍ରବେଶି ସାଗରଖଣ୍ଡରେ କଲେ ଯେ ବିଧାନ ॥ ୪୯
ନଳ ହସ୍ତେ ସେତୁ ବାନ୍ଧ ଜାନକୀରମଣ ।
ପ୍ରବେଶି ଲଙ୍କାରେ କଲେ ରଣରଙ୍ଗମାନ ॥ ୫୦
ବିଭୀଷଣ ମିତ୍ର ହୁଲେ ରଘୁକୁଳ ସାଇଁ ।
ଯାତୁଧାନ-ମହାର୍ଣ୍ଣବେ ପଶିଲେ ଝସାଇ । ୫୧
କୁମ୍ଭକର୍ଣ୍ଣ ମେଘନାଦ ଆଦି ଦୈତ୍ୟବର ।
ଶ୍ରୀରାମ କଲେ ରାବଣ ସଙ୍ଗତେ ସଂହାର ॥ ୫୨
ଲଙ୍କାଗଡ଼େ ବିଭୀଷଣ ଅଭିଷେକ କଥା ।
ଏ' ଆଦି ସ୍ମରିଲେ ବାଲମିକ ସାମରଥା । ୫୩
ପୁଷ୍ପକ ଆରୋହି ରାମ ରଘୁକୁଳ ସାଇଁ ।
ଅଯୋଧ୍ୟାକୁ ଲେଉଟିଲେ ଘେନ ବଇଦେହୀ । ୫୪
ରାମ ଲକ୍ଷ୍ମଣ ଭରତ ଶତ୍ରୁଘ୍ନ ମିଳନ ।
ଆରୋହିଲେ ଶ୍ରୀରାମ ଅଯୋଧ୍ୟା ସିଂହାସନ । ୫୫
ପରଜାପାଳକ ସୀତା ଅପବାଦ ଶୁଣି ।
ବନେ ପ୍ରେଷିଲେ ରାମ ଜନକଦୁଲଣୀ ॥ ୫୬
ସକଳ ଚରିତ ବାଲମିକ ମୁନିବର ।
ଯଥାକ୍ରମେ ସମ୍ପାଦିଲେ ନିର୍ମଳ ମନର ॥ ୫୭
ଶ୍ରୀରାମ ଚରିତ ଏହୁ ଅମୃତ ସମାନ ।
ସରଗରେ ପାନ କର ଆହେ ସୁଜ୍ଞଜନ । ୫୮
ଚରମା ନିବାସୀ ବିପ୍ର ଶ୍ରୀପୁରୁଷୋତ୍ତମ ।
ବିସ୍ତରି ରଚନା କରେ ଗ୍ରନ୍ଥ ରାମାୟଣ । ୫୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ତୃତୀୟ ସର୍ଗ ।



# ଚତୁର୍ଥ ସର୍ଗ

## ଚବଶ ହଜାର ଶ୍ଳୋକ ବଶିଷ୍ଟ ରାମାୟଣ ରଚନା
## ଓ
## ଲବ କୁଶଙ୍କ ମୁଖରେ ପ୍ରଚାର ।

ଜୟ ଜୟ ଜୟ ରାମ ଜନକ ସୁଖଦ ।
        ଜୟ ସୀତା-ଶୀତାଂଶୁ ମୁଖୀର ହୃଦମୋଦ ॥ ୧
ଜୟ ରଘୁକୁଳ ନାଥ ଜୟ ରବଣାର ।
        ଜୟ ସୁଗ୍ରୀବର ମିତ୍ର ଜୟ ଖରାଧାର ॥ ୨
ତୁମ୍ଭ କୃପାବଳେ ପ୍ରଭୋ ଚବ ନାମ ଧ୍ୟାୟି ।
        ଗାଉଛୁ ଏ' ରାମାୟଣ ଆହେ ଭବତ୍ରାହି ॥ ୩
ତୁମ୍ଭ କରୁଣାରୁ ହେଲେ ତର ଭବବାର ।
        ପରମପଦ ଲଭିବ ଏ' ମୋର ଗୁହାର । ୪
ଲଙ୍କାରୁ ଲେଉଟି ଅଯୋଧ୍ୟାରେ ରାମରାଣ ।
        ରାଜପଦେ ପାଳଲେ ସକଳ ପ୍ରଜାଗଣ ॥ ୫
ଏହା ଜାଣି ଶୁଭଲଗ୍ନେ ବାଲମିକ ମୁନ ।
        ବରଚଲେ ରାମଗାଥା ଶିଷ୍ୟଗଣ ଘେନ ॥ ୬
ସରସ ମଞ୍ଜୁଳ ପଦେ ଅର୍ଥ କର ପୂର୍ଣ୍ଣ ।
        ଭଣିଲେ ଶ୍ରୀରାମାୟଣ ଗୁଣି ରାମନାମ ॥ ୭
ଚବଶ ହଜାର ଶ୍ଳୋକେ ଗ୍ରନ୍ଥ ବରଚତ ।
        ପାଞ୍ଚଶତ ଶ୍ଳୋକ ତହିଁ ହୋଇଛୁ ସଂଯୁତ ॥ ୮
ଆଦ୍ୟ ଅଯୋଧ୍ୟା ଅରଣ୍ୟ ଶନକାଣ୍ଡ ଜାଣ ।
        ଚତୁର୍ଥ କାଣ୍ଡ କଷ୍କିନ୍ଧା ଶୁଣ ହେ ସୁଜନ ୯
ସୁନ୍ଦରେ ମୋହିଲ ଧର ପଞ୍ଚମେ ସୁନ୍ଦର—
        କାଣ୍ଡ ବରଚଲେ ବାଲମିକ ମୁନବର ॥ ୧୦
ଷଷ୍ଠେ ଲଙ୍କାକାଣ୍ଡ ନାମ ଅଣ ଭୟଙ୍କର ।
        କଉଣପ କୁଳ ଦହିଲେକ ରଘୁବର ॥ ୧୧

ଏ' ଉତ୍ତରେ ହେଲା ଶେଷକାଣ୍ଡ ଯେ ଉତ୍ତର ।
ଯାହା ଶୁଣି ସୁଜନରେ ହେବେ ମୋଦଭର ॥ ୧୨
ବିରଚି ସରସବନ୍ଧେ ଋଷି କୁଳମଣି ।
ବିସ୍ମରିଲେ କିଏ ହେବ ଏ' କାବ୍ୟ କାରେଣି ॥ ୧୩
ମହାଜ୍ଞାନୀ ସର୍ବଶକ୍ତିମାନ ଋଷିବର ।
ଏମନ୍ତ ଚିନ୍ତଣ ଧ୍ୟାନେ ବସିଲେ ସତ୍ୱର ॥ ୧୪
ଏ' ସମୟେ ମୁନିବେଶଧାରୀ ଲବ କୁଶ ।
ମୁନିଙ୍କି ପ୍ରଣମିବାକୁ ହୋଇଲେ ପ୍ରବେଶ ॥ ୧୫
ବେଦବିଦ୍ୟା ବିଶାରଦ ସୁନିପୁଣ ଯତି ।
ଧର୍ମଜ୍ଞପଣେ ସମାନ ନୋହେ ବୃହସ୍ପତି ॥ ୧୬
ସରସ ମଧୁରସ୍ୱରେ ରାମଗାଥା ମାନ ।
ସ୍ୱର ଲୟେ ଲବକୁଶ କରନ୍ତି ଗାୟନ ॥ ୧୭
ମାତା ସହିତେ କୁମାର ବେନ ଆଶ୍ରମରେ ।
ରହି ଶସ୍ତ୍ର ଶାସ୍ତ୍ରଜ୍ଞାନ ଲଭିଲେ ସତ୍ୱରେ ॥ ୧୮
ଧାରଣା ଶକ୍ତିରେ ଦୁହେଁ ଅତି ମହୀୟାନ ।
ବ୍ରତବନ୍ତ ବୁଦ୍ଧିମନ୍ତ ବଳେ ବଳୀୟାନ ॥ ୧୯
ଏମନ୍ତ ସୁଯୋଗ୍ୟ ଶିଷ୍ୟେ ଦେଇ ରାମାୟଣ ।
ବୋଇଲେ ମୁନିପ୍ରବର କର ପୁତ୍ରେ ! ଗାନ ॥ ୨୦
ଶ୍ରୀରାମ ଘରଣୀ ସୀତା ସତୀ ଶିରୋମଣି ।
ଯାହାଙ୍କ ଚରିତେ କାବ୍ୟ ସକରୁଣ ପୁଣି ॥ ୨୧
ପୌଲସ୍ତ୍ୟ ରାବଣବଧ ଏହା ଅନ୍ୟ ନାମ ।
ସରାଗେ ପଢ଼ିଣ ହୁଅ ସଫଳ ସକାମ ॥ ୨୨
ଏ' ମହାକାବ୍ୟେ ରହିଛି ନବରସ ପୂରି ।
ଷଡ଼ଜାଦି ସପ୍ତସ୍ୱରେ ଅତି ମନୋହାରୀ ॥ ୨୩
ଦ୍ରୁତ ବିଲମ୍ବିତ ମଧ୍ୟ ମଧୁର ଲୟରେ ।
ଏ' କାବ୍ୟଗାନ ପ୍ରବୀଣ ହୁଅସି କ୍ରମରେ ॥ ୨୪
ଗୁରୁଙ୍କ ଆଦେଶେ ଲବକୁଶ ବେନିଭାଇ ।
ମହାକାବ୍ୟ ପଢ଼ିଲେ ପରମ ମୋଦ ବହି ॥ ୨୫

ମନ୍ଦ୍ର, ମଧ୍ୟ ତାର ସ୍ୱରେ ରାମ ଗୁଣମାନ ।
ଗାଇ ଶୁଣାଇଲେ ତହୁଁ ସୀତସ୍ୱା ନନ୍ଦନ ।। ୨୬
ମନୋଜ୍ଞ ଚରିତ ପୁଣି ମନୋହର ବେଣ ।
ଶ୍ରୀରାମ ତନୁଜ ସୀତା-ମାନସ-ପୀୟୂଷ ।। ୨୭
ଦିଶନ୍ତି ଶ୍ରୀରାମ ରୂପେ ଅତି ଶୋଭାକର ।
ସୁମଧୁର ସ୍ୱରେ ଗାଇ ରାମଗୀତ ସାର ।। ୨୮
ମୋହିଲେ ସବୁରି ମନ ବୈଦେହୀ ତନୟ ।
ତାଙ୍କ ସ୍ୱର-ମୂର୍ଚ୍ଛନାରେ ସକଳେ ତନ୍ମୟ ।। ୨୯
ହୋଇ ସୁକଲ୍ୟାଣ କଲେ ବିପ୍ରର୍ଷିଗଣ ।
ସଭା ସମାଗମେ ସେ ଗାଇଲେ ରାମାୟଣ ।। ୩୦
ଶୁଣ ହେ ସୁଜନ ଜନେ ! ରାମ ମନେ ଧ୍ୟାୟି ।
ଏକଦିନେ ମୁନିସଭା ମଧ୍ୟେ ବେନିଭାଇ ।। ୩୧
ଗାଇଲେ ଶ୍ରୀରାମାୟଣ ରାମ ଗୁଣାବଳୀ ।
ଯାହା ଶୁଣି ସନ୍ତୋଷିଲେ ସେ ମୁନି ମଣ୍ଡଳୀ ।। ୩୨
କରୁଣା-କଳିତ ସୀତାରାମ ଗୁଣଗାଥା ।
ଶୁଣି ବିଚଳିତ ହେଲେ ମୁନି-ସର୍ବଜ୍ଞତା ।। ୩୩
ପ୍ରେମ ପୁଲକରେ ନେତ୍ରୁ ବହି ଅଶ୍ରୁଧାର ।
ମୁନି-ମାନସେ ଉଚ୍ଛୁଳେ ଆନନ୍ଦସାଗର ।। ୩୪
ବିସ୍ମୟ-ସଭ୍ରମନେ କଲେ ସାଧୁବାଣୀ ।
ଧନ୍ୟ ହେ କୁମରେ ତବ ପିଅର-ଜନନୀ ।। ୩୫
ଧରମପାଳକ ମୁନିବରେ ସନ୍ତୋଷିଣ ।
ଲବକୁଶ ପୂର୍ଣ୍ଣ କଲେ ସର୍ବ ମନସ୍କାମ ।। ୩୬
ଗାନ୍ଧର୍ବବିଦ୍ୟା ନିପୁଣ ସେ ବେନି କୁମର ।
ସ୍ୱରମୂର୍ଚ୍ଛନାରେ ସେ ଅତ୍ୟନ୍ତ ଧୁରନ୍ଧର ।। ୩୭
ରୂପଗୁଣେ କେହି ତାଙ୍କ ନୋହେ ସମସର ।
ମଧୁରସ୍ୱରେ ଗାବନ୍ତି ଯେସନେ କିନ୍ନର ।। ୩୮
ସୁଚତୁର ସୁନିପୁଣ ଶ୍ରୀରାମଙ୍କ ସୁତ ।
ରାମାୟଣ ଗାନରେ ମୋହିଲେ ମୁନିଚିତ୍ତ ।। ୩୯

ରାମାୟଣ ଚରିତ ଏ' ଅମୂଲ୍ୟ କାହାଣୀ ।
ଯେ ଚରିତେ ଶ୍ଳୋକବନ୍ଧେ ଲେଖିଥିଲେ ମୁନି ॥ ୪୦
ସେ ରସାଳ ଚରିତ ସୁସ୍ୱରେ ଗାନ କରି ।
ରସାଇଲେ ରସାରେ ଯେସନେ ସୁଧାବାରି ॥ ୪୧
ଶୁଣିବା ଲୋକର ଚିତ୍ତେ ଦୁଇଭି ପ୍ରତୀତ ।
ସତେ କି ବା ଆଜ ଏହା ହୋଇଛି ଘଟିତ ॥ ୪୨
ରାମାୟଣ-ଗାନକାଣ୍ଡ ସେ ବେନି କୁମରେ ।
ଆଶିଷିଲେ ମୁନିଗଣେ ହରଷ ଅନ୍ତରେ ॥ ୪୩
ତୋଷ ହୋଇ ଯତିଗଣ ଦେଲେ ଉପହାର ।
କମଣ୍ଡଳୁ କୃଷ୍ଣାଜିନ ବଲ୍କଳ ଆବର ॥ ୪୪
କେ ଦେଲା ଯଜ୍ଞୋପବୀତ ଗଳାରେ ଲମ୍ବାଇ ।
ବେନି କୁମରଙ୍କ ଗାନ ଶୁଣି ତୋଷ ହୋଇ ॥ ୪୫
ଆବର ମୁନିଏ ଦେଲେ ମଞ୍ଜି ମେଖଳା ।
ଆସନ କୌପୀନ କେହୁ ମୁନିବର ଦେଲା ॥ ୪୬
ଗୈରିକ ବସନ କେହୁ ଦେଲା ହରଷରେ ।
କେହୁ ଆଣି କୁଠାର ସମର୍ପେ ଲବ କରେ ॥ ୪୭
କେହୁ ତପସ୍ୟା ସାଧନ ଦେଲା ଉପହାର ।
ଯଜ୍ଞପାତ୍ର ସ୍ରୁବ ସ୍ରୁଚ ସମିଧ ଆବର ॥ ୪୮
କେହୁ ଋଷିବର ନିଜ ଜଟାରୁ ଫିଟାଇ ।
ଜଟାବନ୍ଧନ ଡୋରକୁ ସମର୍ପିଲା ନେଇ ॥ ୪୯
କେ ପୀଢ଼ା ସମର୍ପି ଆଶିଷିଲା ମନ୍ଦ୍ରସ୍ୱରେ ।
ଲବକୁଶ ଗାନସ୍ରୋତ ମୋହିଲା ସକଳେ ॥ ୫୦
କେ ମୁନି ହରଷେ କହେ ହେ ମୁନିକୁମରେ !
ସହସ୍ର ସହସ୍ର ବର୍ଷ ଭୁଞ୍ଜ ଆୟୁଷରେ ॥ ୫୧
ଏ'ରୂପେ ଅନେକ ବରେ ତୋଷି ମୁନିଗଣେ ।
ରାମଗାଥା ଶୁଣି ଗଲେ ଯେ ଯାହା ଆଶ୍ରମେ ॥ ୫୨
ବାଲମିକ ବିରଚିତ ରାମାୟଣ ଗୀତ ।
ଲବକୁଶ କଣ୍ଠେ ହେଲା ଜନରେ ବିଦିତ ॥ ୫୩

ମୁନି ଆଜ୍ଞା ପାଇ ଲବକୁଶ ବେନିଭାଇ ।
ଅଯୋଧ୍ୟା ବୁଲିଲେ ରାମାୟଣ ଗୀତ ଗାଇ ॥ ୫୪
ଶୁଣ ଜନେ ! ଏଥୁଅନ୍ତେ ଅପୂର୍ବ ଚରିତ ।
ଏକଦିନେ ରାଜମାର୍ଗେ ବୁଲି ବେନିଭ୍ରାତ ॥ ୫୫
କାନ୍ତ ସୁକୋମଳ ସ୍ୱରେ ଗାଇ ରାମାୟଣ ।
କରୁଣ ରସରେ ଭସାଇଲେ ପ୍ରଜାଜନ ॥ ୫୬
ଦଇବେ ସେଦିନ ଅଯୋଧ୍ୟାର ନରପତି ।
ଶୁଣି ପ୍ରମୁଦିତ ହେଲେ ରାମାୟଣ ଗୀତି ॥ ୫୭
ସାଦରେ ବେନିଭାଇଙ୍କୁ କରି ଆଲିଙ୍ଗନ ।
ସଙ୍ଗେ ଘେନିଗଲେ ରାମ ଆପଣା ଭୁବନ ॥ ୫୮
ପୁରଜନେ ଡକାଇ ବୋଲନ୍ତି ରଘୁମଣି ।
ଶୁଣ ଆହେ ପୁରଜନେ ଏ ଦିବ୍ୟ କାହାଣୀ ॥ ୫୯
ଦେବ ଗନ୍ଧର୍ବ କୁମର ପରାଏ ଏ ବେନି ।
ରାଜଚନ୍ଦ୍ର ରାମଗାଥା ଗେୟନ୍ତେ ଦେବବାଣୀ ॥ ୬୦
ଶୁଣ ଆହେ ସଉମିତ୍ରି ଭରତ ଶତ୍ରୁଘ୍ନ !
ନ କରି ବିଳମ୍ବ ଡାକିଆଣ ଗୁରୁଜନ ॥ ୬୧
ସଭିଏ ମିଳି ଶୁଣିବା ଦିବ୍ୟ କାବ୍ୟ ବାଣୀ ।
ସ୍ୱରଗେ ଯା' ରଚିଛନ୍ତି ବାଲ୍ମିକି ମୁନି ॥ ୬୨
ଶ୍ରୀରାମ ବଚନେ ମିଳି ସର୍ବ ପୁରଜନ ।
ଶୁଣିବାକୁ ରାମାୟଣ ହୋଇଲେ ଉତ୍କର୍ଣ୍ଣ ॥ ୬୩
ରାଜା ଆଜ୍ଞା ପାଇ ମୁନିବେଶୀ ବେନିଭାଇ ।
ଆରମ୍ଭିଲେ ରାମାୟଣ ତମ୍ବୁରା ବଜାଇ ॥ ୬୪
ରାଗ ସ୍ୱର ଛନ୍ଦରେ ନିପୁଣ ଲବକୁଶ ।
ଆଳାପିଲେ ପ୍ରଣମି ଅନ୍ତରେ ମୁନିଈଶ ॥ ୬୫
ପ୍ରଥମେ ବନ୍ଦିଲେ ରାମ ଚରଣ-କମଳେ ।
ତଦନ୍ତେ ବନ୍ଦିଲେ ଯେତେ ଥିଲେ ସଭାସ୍ଥଳେ ॥ ୬୬
ମାର୍ଗୀ ବିଧାନରେ ଗାନ କରନ୍ତେ ସେ ବେନି ।
ଏ ସମୟେ ହସିଲେ ଶ୍ରୀରାମ ରଘୁମଣି ॥ ୬୭

ମୁନି ବେଶଧାରୀ ରାଜଲକ୍ଷଣେ ଲକ୍ଷିତ ।
ଏ' ବେନି କୁମରେ ହୋଇଛନ୍ତି ସୁରେ ଭିତ ॥ ୬୮
ସଙ୍ଗୀତେ କୁଶଳ ପୁଣି ତପସ୍ୱୀ ପ୍ରବର ।
କାବ୍ୟଶାସ୍ତ୍ର ପ୍ରବଚନେ ଅତି ଧୂରନ୍ଧର ॥ ୬୯
ରାମାୟଣ ପ୍ରବନ୍ଧ ଏ' କରନ୍ତି ଗାୟନ ।
ଗୁଣରାଶି ଅଳଙ୍କାରେ ଯେହୁ ଶୋଭମାନ ॥ ୭୦
ମୋ' ଯଶ ମାନ ଗୌରବ ଅଭିବୃଦ୍ଧିକର ।
ଆହେ ସଭାଜନେ ! ଶୁଣ ମନ କରି ସ୍ଥିର ॥ ୭୧
ଶ୍ରୀରାମଙ୍କ ବାଣୀ ଶୁଣି ସର୍ବ ସଭାଜନ ।
ବର୍ଣ୍ଣିଲେ ସତ୍ୟ ଯାହା ବୋଇଲେ ରାଜନ ॥ ୭୨
ଏ' ରୂପ ଦେବମାନବେ ଦେଖିଲୁ ନାହିଁ ।
ସତେ ବା ଶ୍ରୀରାମ ବାଳରୂପେ ଛନ୍ତି ରହି ॥ ୭୩
ଅଥବା କୁମାର ବେନି ଛଳେ ଆସିଛନ୍ତି ।
ସଙ୍ଗୀତ ରାଗ ମୂର୍ଚ୍ଛନା ମୂର୍ତ୍ତିମନ୍ତ ହୋଇ ॥ ୭୪
ତଦନ୍ତେ ଶ୍ରୀରାମ କୁମରଙ୍କୁ ଆଜ୍ଞା ଦେଲେ ।
ଗାନ କର ରାମାୟଣ ଶୁଣନ୍ତୁ ସକଳେ ॥ ୭୫
ରାଜ ଆଜ୍ଞା ଶିରେ ଘେନି ଲବକୁଶ ବେନି ।
ଆରମ୍ଭିଲେ ଅଯୋଧ୍ୟା ବର୍ଣ୍ଣନ ଶାନ୍ତ ମୁନି ॥ ୭୬
ସେ ଗୀତ ଶ୍ରବଣେ ସର୍ବେ ହେଲେ ବିମୋହିତ ।
ମୁରଲୀବାଦନ ଯଥା ହରେ ମୃଗୀ ଚିତ୍ତ ॥ ୭୭
ମୈତ୍ରେୟ ବଂଶଜ ପୁରୁଷୋତ୍ତମ ବ୍ରାହ୍ମଣ ।
ଗାନ କରେ ରାମାୟଣ ଶାନ୍ତ ରଘୁରାଣ ॥ ୭୮
ଆହେ ସୁଜ୍ଞଜନେ ! ଏଣେ ଦିଅ ମନ-ବୁଦ୍ଧି ।
ତରିବାକୁ ଇଚ୍ଛା ଯେବେ ଏ' ଭବବାରିଧି ॥ ୭୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଚତୁର୍ଥ ସର୍ଗ ।



# ପଞ୍ଚମ ସର୍ଗ

## ଅଯୋଧ୍ୟା ବର୍ଣ୍ଣନ ।

ଶୁଣ ହେ ସୁଧୀର ଜନେ ! ଦେଇ ମନ କର୍ଣ୍ଣ ।
ରାମାୟଣ ଚରିତ ଏ’ ଅମୃତ ବିଧାନ ॥ ୧
ପ୍ରଜାପତି ମନୁଠାରୁ ଆଜଯାଏଁ ପୁଣ ।
ହୋଇଛନ୍ତି ଏ’ ଧରା ଯେଉଁ ବଂଶର ଅଧୀନ ॥ ୨
ଯହିଁ ବଂଶଧରେ କଲେ ସାଗର ଖୋଦନ ।
ଶତ ଅଶ୍ବମେଧ ଯଜ୍ଞେ ଯେହୁ କୀର୍ତ୍ତିମାନ ॥ ୩
ମହାମନା ସଗର ଯେ ବଂଶ ଅଧିପତି ।
ଇକ୍ଷ୍ବାକୁ-କୁଳ-ଭୂଷଣ ରାଜ-ଚକ୍ରବର୍ତ୍ତୀ ॥ ୪
ସେ ବଂଶ ଚରିତ ରାମାୟଣେ ସୁବର୍ଣ୍ଣିତ ।
ହୋଇଛନ୍ତି ହେ ସୁଜ୍ଞ ନରେ ! ଶୁଣ ଦେଇ ଚିତ୍ତ ॥ ୫
ରାମନାମ ଗୁଣ ଯଶ ଗୌରବେ ପୂରିତ ।
ହୋଇଛନ୍ତି ଏ’ ଗ୍ରନ୍ଥ ଯାହା ବାଲ୍ମିକି କୃତ ॥ ୬
ସେ ଚରିତ ସାଧୁଜନେ ମୋହିବ ସତତ ।
ଉତ୍ତମା ଅଧମ ଜନେ ନନ୍ଦିବେ ନିରତ ॥ ୭
ଆଦ୍ୟନ୍ତକାଣ୍ଡଠାରୁ ଆମ୍ଭେ କରିବୁ ଗାୟନ ।
ଯା’ ଶ୍ରବଣେ ଧର୍ମ ଅର୍ଥ କାମ ମୋକ୍ଷ ପୁଣ ॥ ୮
ଚତୁର୍ବର୍ଗ ଲାଭ ହୁଏ ପୁରୁଷାର୍ଥ ସିଦ୍ଧି ।
ତେଣୁ ହେ ସୁଜନେ ! ଦିଅ ରାମାୟଣେ ବୁଦ୍ଧି ॥ ୯
ଦୋଷ ପରିହରି ଗୁଣେ ଆଦର ସୁଜନ ।
ସୁହୃଦ୍ୟା କରିବେ ରାମ ରଘୁକୁଳଗଣ ॥ ୧୦
ସରଯୂ ତଟିନୀ ତଟେ ଯେହୁ ଶୋଭମାନ ।
ଧନଧାନ୍ୟେ ପରିପୂର୍ଣ୍ଣ ଅଟଇ ଯେ ସ୍ଥାନ ॥ ୧୧
କୋଶଳ ନାମରେ ଯେହୁ ବିଦିତ ସଂସାରେ ।
ଯା’ ଶୋଭା କଥନେ କ୍ଷମ ନୁହନ୍ତି ଅମରେ ॥ ୧୨

ସେହି ଜନପଦେ ଏକ ନଗରୀ ପ୍ରଧାନ ।
ଅଯୋଧ୍ୟା ନାମରେ ଅଛି ଆହେ ସୁଜ୍ଞଜନ ॥ ୧୩
ଆଦ୍ୟ ପୁରୁଷ ମନୁରେ ଯାହା ବିନିର୍ମିତ ।
ଯେ' ପୁରୀ ନାମ ଶ୍ରବଣେ ପଳାଏ ଦୁରିତ ॥ ୧୪
ସୁରମ୍ୟ ଶୋଭାଶାଳିନୀ ନଗରୀ ଅଯୋଧ୍ୟା ।
ଦେବ ନର ଗନ୍ଧର୍ବେ ଯା' ଅଟଇ ଆରାଧ୍ୟା ॥ ୧୫
ଦ୍ୱାଦଶ ଯୋଜନ ଲମ୍ବ ଆୟତ ଯେ ତିନି ।
ଯୋଜନ ମଧ୍ୟେ ରହିଛି ଏ' ନଗରୀମଣି ॥ ୧୬
ବିସ୍ତୃତ ରାଜମାର୍ଗେ ଏ' ପୁରୀ ସୁଶୋଭିତ ।
ମାର୍ଗ ବେନି ପାର୍ଶ୍ୱେ ବୃକ୍ଷରାଜି ବିରାଜିତ ॥ ୧୭
ମନୋରମ ପାଦପେ ଶୋଭିତ ଏ' ନଗରୀ ।
ଶୋଭାପାଏ ଯଥା ସ୍ୱର୍ଗେ ବାରସ୍ୱର୍ଣ୍ଣ ପୁରୀ ॥ ୧୮
ବଟପୀମାଳାରେ ନାନା ସୁଗନ୍ଧ ସୁମନ ।
ବିକଶି ଶୋହଇ ଯେହ୍ନେ ନନ୍ଦନ କାନନ ॥ ୧୯
ନାନାବର୍ଣ୍ଣ ପୁଷ୍ପେ ସୁଶୋଭିତ ରାଜପଥ ।
ସେ ବୃକ୍ଷେ ସେବନ୍ତି ଜନେ କରି ଜଳେ ସିକ୍ତ ॥ ୨୦
ଦେବରାଜ ଇନ୍ଦ୍ର ଯେହ୍ନେ ଅମରାବତୀରେ ।
ତେସନ ଅଯୋଧ୍ୟା ଦଶରଥ ନୃପତିରେ ॥ ୨୧
ସୁପାଳିତ ହୋଇ ରାଜେ ଯଥା ଇନ୍ଦ୍ରପୁରୀ ।
ମହାବୀର ଦଶରଥ ଯାହାର ପ୍ରହରୀ ॥ ୨୨
ରାଜା ଦଶରଥ ପୂର୍ବୁଁ ଅଧିକ ଯତନେ ।
ନିର୍ମାଣିଲେ ଅଯୋଧ୍ୟାକୁ ଆନନ୍ଦିତ ମନେ ॥ ୨୩
ନଗରୀ ପ୍ରାଚୀରେ ଶୋହେ ଅନେକ ଦୁଆର ।
କବାଟମାନଙ୍କେ ଦିଶେ ଅତି ମନୋହର ॥ ୨୪
ବିପଣୀମାଳାରେ ଶୋହେ ଅଯୋଧ୍ୟା ନଗରୀ ।
ନାନାଯନ୍ତ୍ର ଅସ୍ତ୍ରଶସ୍ତ୍ରେ ପୂରିତ ଏ' ପୁରୀ ॥ ୨୫
ସକଳ କଳା ନିପୁଣ ସୁଦକ୍ଷ ବିଜ୍ଞାଣି ।
ଯେ ପୁରେ ବସନ୍ତି ସର୍ବ କଳାତତ୍ତ୍ୱ ଜେଣି ॥ ୨୬

ସ୍ୱଧର୍ମ ନ୍ୟାୟରେ ରତ ଅଯୋଧ୍ୟା ରାଜନ ।
ଯେ ପୁର ବିକାଶେ ସଦା ଛନ୍ତି ସାବଧାନ ।। ୨୭
ସୂତ ମାଗଧେ ସୁଗୀତ ସୂର୍ଯ୍ୟ ବଂଶାବଳୀ ।
ଯଜ୍ଞ ପୂର୍ତ୍ତି କରେ ଶ୍ରୁତିପଥ ଭଲ ଭଲ ।। ୨୮
ଅଯୋଧ୍ୟା ନଗରୀ ସୁଷମାରେ ବିମଣ୍ଡିତ ।
ରମ୍ୟ ତୁଙ୍ଗ ଅଟ୍ଟାଳିକା ପଙ୍କ୍ତି ସୁଶୋଭିତ ।। ୨୯
ତଥି ପରେ ବିରାଜିତ ଚନ୍ଦ୍ରଧ୍ୱଜମାନ ।
ଶତ ସସ୍ତ୍ର ଶତଘ୍ନୀ ସଜ୍ଜିତ ଯା' ଶିଖେଣ ।। ୩୦
ନାଟ୍ୟଶାଳା ରଙ୍ଗମଞ୍ଚେ ଶୋଭଇ ଯେ ପୁରୀ ।
ନୃତ୍ୟ ରଙ୍ଗେ ମାତିଛନ୍ତି ଯହିଁ ବରନାରୀ ।। ୩୧
ଅଭିନୟେ କୁଶଳା ସୁନ୍ଦରୀ ନାରୀଗଣ ।
କଳା ପ୍ରଦର୍ଶନେ ଯହିଁ ନିତ୍ୟ ଅବଧାନ ।। ୩୨
ନଗରୀର ଚତୁପାଶେ ଆମ୍ର ଶାଳ ବନ ।
ମେଖଳା ପ୍ରାୟ ଶୋଭଇ ସୁରମ୍ୟ ଉଦ୍ୟାନ ।। ୩୩
ଦୁର୍ଗ ଚତୁପାଶେ ସୁଗଭୀର ଗଡ଼ଖାଇ ।
ନିର୍ମଳ ଜଳେ ଶୋଭିତ ଯଥା ଦେବନଈ ।। ୩୪
ନାନା ଜଳଜନ୍ତୁ ଯହିଁ ଅଛନ୍ତି ଅପାର ।
ତରିବାକୁ ସେ ପରିଖା ସାଧ୍ୟ ଅଛି କା'ର ।। ୩୫
ଶତ୍ରୁରେ ଅଲଙ୍ଘ୍ୟ ସଦା ଅଟଇ ଏ' ପୁରୀ ।
ଚତୁରଙ୍ଗବଳ ଯା'ର ଜାଗ୍ରତ ପ୍ରହରୀ ।। ୩୬
ଗଜ ବାଜି ଗୋ ମହିଷ ଉଷ୍ଟ୍ର ଖର ଆଦି ।
ଯେ ପୁରେ ଅଛନ୍ତି ଜନେ ସକଳ ସମ୍ପାଦି ।। ୩୭
ସାମନ୍ତ ନରେଶଗଣ ସଦା କରଯୋଡ଼ ।
ଚକ୍ରବର୍ତ୍ତୀ ଦଶରଥେ ରହିଥା'ନ୍ତି ବେଢ଼ି ।। ୩୮
ନାନା ଦେଶୁ ବଣିଜାର ବିବିଧ ପସରା ।
ମେଳି ଥିବାରୁ ନଗରୀ ଶୋଭା ଅତି ଚୋରା ।। ୩୯
ଯେ ପୁରର ବିଶାଳ ଉତ୍ତୁଙ୍ଗ ସୌଧମାନ ।
ଦିଶନ୍ତି ସତେ କି ଅବା ଛୁଇଁବେ ଗଗନ ।। ୪୦

ନାନା କ୍ରୀଡ଼ାଗୃହେ ବିମଣ୍ଡିତ ସେହି ପୁରୀ ।
ବିରାଜେ ଭୂତଳେ ଯେହ୍ନେ ଅମର ନଗରୀ ॥ ୪୧
ନାନା ମଣିରତ୍ନେ ବିଳସିତ ସୌଧମାନ ।
ନାହିଁ ଚତୁର୍ଦ୍ଦଶ ଲୋକେ ତେବାକୁ ଉପାମ ॥ ୪୨
ଚଉପାଶେ ରାଜ ସରଣୀରେ ସୁଶୋଭିତ ।
ଶୋହେ ରାଜପୁରୀ ଯଥା ସୁମେରୁ ପର୍ବତ ॥ ୪୩
ସୁବର୍ଣ୍ଣ ଖଚିତ କାନ୍ଥମାନ ଯେ ପୁରୀର ।
ଶୋଭା ବର୍ଦ୍ଧିମା ଯେ ପୁରୀରେ ନାଗରୀର ॥ ୪୪
ରାଜସେବା ପଣେ ସଦା ଅଟନ୍ତି ନିଯୁତ ।
ରତ୍ନମୟ ସପ୍ତତଳ ପ୍ରାସାଦେ ପୂରିତ ॥ ୪୫
ସମତଳ କ୍ଷେତ୍ରେ ବିରାଜଇ ସେ ନଗରୀ ।
ଜନ ଗହଳରେ ସଦା ଅଟେ ମନୋହାରୀ ॥ ୪୬
ଧାନ୍ୟାଦି ଶସ୍ୟେ ପୂରିତ ତହିଁ ଗୃହମାନ ।
ଶୋଭନ୍ତି ଜଣିବେ ଅବା କୁବେର ସଦନ ॥ ୪୭
ମଧୁର ନିର୍ମଳ ଜଳ ସଦା ପ୍ରବାହିତ ।
ସତେ ଅବା ଇକ୍ଷୁରସେ ହୋଇଛି ପୂରିତ ॥ ୪୮
ଦେବ ତପସ୍ୟାରେ ଲବ୍ଧ ସୁସିଦ୍ଧ ବିମାନ ।
ଶୋଭାକୁ ନିନ୍ଦଇ ସେ ନଗରୀ ସୌଧମାନ ॥ ୪୯
ଭୂମଣ୍ଡଳେ ଅଯୋଧ୍ୟାର ସମ ଆନ ପୁରୀ ।
ନାହିଁ ନଥିଲା ନୋହିବ ଯାହା ସମସରି ॥ ୫୦
ବିବିଧ ବିଧାନେ ସୁଘଟଣ ପୁରମାନ ।
ଦେଖିଲେ ପରମ ତୃପ୍ତ ହୁଏ ନେତ୍ର-ମନ ॥ ୫୧
ମନୋରମ ସାଜେଣିରେ ସଜ୍ଜିତ ଅଙ୍ଗଣ ।
ଦେହଳୀ ବୀଥିକା ପୁର ସର୍ବ ଶୋଭାବନ ॥ ୫୨
ସୁପୁରୁଷେ ସଦା ବାସ କରନ୍ତି ସେ ପୁରେ ।
ତେଣୁ ସେ ପୁରୀ ମହିମା ଖ୍ୟାତ ଭୂମଣ୍ଡଳେ ॥ ୫୩
ଶତ ସହସ୍ର ସୁଯୋଦ୍ଧା ବୀରାଗ୍ରଣୀ ନର ।
ସେ ପୁର ରକ୍ଷଣେ ସଦା ଥା'ନ୍ତି ଧନୁର୍ଦ୍ଧର ॥ ୫୪

ଅସ୍ତ୍ର ଶସ୍ତ୍ରେ ସୁନିପୁଣ ଲକ୍ଷ୍ୟ ବେଧେ ସାର୍ଥ ।
ସିଂହ ମହାବଳ ବ୍ୟାଘ୍ର ନିଧନେ ସମର୍ଥ ॥ ୫୫
ଏମନ୍ତ ବୀରେ ବେଷ୍ଟିତ ରାଜା ଦଶରଥ ।
ବିରାଜନ୍ତି ଅଯୋଧ୍ୟାରେ ଯେହ୍ନେ ଶଚୀନାଥ ॥ ୫୬
ଅଷ୍ଟାଙ୍ଗ ଯୋଗେ ନିପୁଣ ବେଦ ପାରଙ୍ଗମ ।
ଅଗ୍ନିହୋତ୍ରୀ ଷଡ଼ଙ୍ଗ ବିଦ୍ୟାରେ ଯୋଗ୍ୟତମ ॥ ୫୭
ବ୍ରାହ୍ମଣ ସକଳେ ସେ ପୁରରେ ଛନ୍ତି ପୂରି
ସମାଧି ତପ ସାଧନେ ଋଷି ବ୍ରହ୍ମର୍ଷି ॥ ୫୮
ରାଜା ଦଶରଥେ ଯେହ୍ନ କରନ୍ତି କଲ୍ୟାଣ ।
ଏମନ୍ତ ପୁରୁଷବରେ ପୂର୍ଣ୍ଣ ସେହ୍ନ ସ୍ଥାନ ॥ ୫୯
ସାଧୁ ସୁପୁରୁଷ ଦେବ ବିପ୍ର ସୁପୂଜନେ ।
ତତ୍ପର ଅଟନ୍ତି ସଦା ଦଶରଥ ମନେ ॥ ୬୦
ଏମନ୍ତ ବିଭବରେ ବିଭାନ୍ୱିତ ସେହ୍ନ ପୁର ।
ଚଉଦ ଭୁବନେ ଯା'ର ନାହିଁ ପଟାନ୍ତର ॥ ୬୧
ରାଜ-ଚକ୍ରବର୍ତ୍ତୀ ପଣେ ନୃପ ଦଶରଥ ।
ସେ ନଗ୍ର ରକ୍ଷଣେ ସଦା ହୋଇଥା'ନ୍ତି ରତ ॥ ୬୨
ଦ୍ୱିଜକୁଳ ବର ମୈସେୟୁ ପୁରୁଷୋତ୍ତମ ।
ଗୀତବନ୍ଧେ ରଚିଲ ଏ' ଅଧ୍ୟାୟ ପଞ୍ଚମ ॥ ୬୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ପଞ୍ଚମ ସର୍ଗ ।

—o—

# ଷଷ୍ଠ ସର୍ଗ

## ଦଶରଥଙ୍କ ଶାସନ ଓ ପ୍ରଜାବର୍ଗଙ୍କ ସ୍ଥିତି ।

ଶୁଣ ଆହେ ସୁଜ୍ଜନରେ ! ଅପୂର୍ବ ଆଖ୍ୟାନ ।
ରାମାୟଣ ଚରିତ ଏ' ଅମୃତ ସମାନ ॥ ୧
ଏମନ୍ତ ଅଯୋଧ୍ୟା ନଗ୍ରେ ଦଶରଥ ରାଜା ।
ବସି ସିଂହାସନେ ପାଳନ୍ତି ସେ ଜନ ପ୍ରଜା ॥ ୨
ବେଦବିଦ୍ୟା ନିପୁଣ ସଂଗ୍ରହି ଦ୍ରବ୍ୟ ଧନ ।
ଦୂରଦର୍ଶୀ ତେଜସ୍ୱୀ ସେ ମାତ୍ରରେ ନିପୁଣ ॥ ୩
ସୁନିପୁଣ ଯୋଦ୍ଧା ଧନୁର୍ବେଦରେ ପାରଗ ।
ଧାର୍ମିକ ପ୍ରବର ଦାମ୍ଭ ରୂପରେ ଅନଙ୍ଗ ॥ ୪
ଦେବଋଷି ବ୍ରହ୍ମଋଷି ସମାନ ସେ ରାଜା ।
ଜିତେନ୍ଦ୍ରିୟ ତ୍ରିଲୋକଭୂଷଣ ମହାତେଜା ॥ ୫
ମହାବଳୀ ଅରାତିଦଳନେ ପୂର୍ଣ୍ଣକାମ ।
ଧନ ଭଣ୍ଡାର ରକ୍ଷଣେ କୁବେର ସମାନ ॥ ୬
ମନୁଙ୍କ ସଦୃଶ ପ୍ରଜାପାଳନେ ତତ୍ପର ।
ସୁନାସୀର-ମିତ୍ର ମହାରଥୀ ନୃପବର ॥ ୭
ଧର୍ମାର୍ଥ କାମ ପାଳନେ ଅତି ଧୁରନ୍ଧର ।
ସତ୍ୟପ୍ରତିଜ୍ଞ ନରେଶ ତ୍ରିଲୋକ ସୁନ୍ଦର ॥ ୮
ଅମରାବତୀ ସମାନ ଅଯୋଧ୍ୟା ନଗରେ ।
ଦେବରାଜ ସମ ପ୍ରଜା ପାଳନ୍ତି ମହୀରେ ॥ ୯
ସେ ରାଜାଙ୍କ ହସ୍ତଗ୍ରସ୍ତା କରିଣ ଆଶ୍ରୟ ।
ପ୍ରଜାଜନେ ରହୁଥା'ନ୍ତି ହୋଇଣ ନିର୍ଭୟ ॥ ୧୦
ସବୁରି ପ୍ରସନ୍ନ ମନ ସଭିଏଁ ଧାର୍ମିକ ।
ସତ୍ୟବାଦୀ ନିର୍ଲୋଭ ଅତ୍ୟନ୍ତ କାରୁଣିକ ॥ ୧୧

ଧନବନ୍ତ ପଣେ ସର୍ବେ ଅଯୋଧ୍ୟାରେ ଋଦ୍ଧ ।
ସୁଖେ ପରମ ସନ୍ତୋଷେ ନୃପଗୁଣ ଗାଇ ॥ ୧୨
ଗୋଧନ-ଭୂଷଣେ ସର୍ବେ ଅଟନ୍ତି ମହାନ ।
ଧର୍ମ ଅର୍ଥ କାମ ଆଦ କରନ୍ତି ପାଳନ ॥ ୧୩
ସେ ରାଜଶାସନେ କେହ୍ନ ନୁହନ୍ତି ଅସୁଖୀ ।
ସର୍ବଦା ସର୍ବ ସମ୍ପଦେ ନାହାନ୍ତି କେ ଦୁଃଖୀ ॥ ୧୪
ଉତ୍ତମ ଦ୍ରବ୍ୟ ସାଧନେ ସର୍ବେଁ ତତ୍ପର ।
ରଥ ଗଜ ବାଜ ଧନେ ସର୍ବେ ସୁଖୀ ନର ॥ ୧୫
ସେ ପୁରେ ନାହାନ୍ତି କେହ୍ନ କାମୀ ବା କୃପଣ ।
ଅଦାତା କ୍ରୂର ମୂରୁଖ ଅବା ଜ୍ଞାନହୀନ ॥ ୧୬
ଅଯୋଧ୍ୟାର ନରନାରୀ ଯୁବା ବୃଦ୍ଧ ବାଳ ।
ସର୍ବେଁ ଅଟନ୍ତି ସଦାଚାରୀ ସୁନର୍ମଳ ॥ ୧୭
ସର୍ବଜନ ଅଙ୍ଗରେ କୁଣ୍ଡଳ ପୁଷ୍ପହାର ।
ମୁକୁଟ ଅଙ୍ଗରାଗରେ ସରବେ ପୁଷ୍କଳ ॥ ୧୮
ଅଙ୍ଗେ ସୁଗନ୍ଧ ଲେପନେ ସର୍ବେ ତତ୍ପର ।
ନିର୍ମଳମନେ ପ୍ରଜାଏ କରନ୍ତି ବିହାର ॥ ୧୯
ସଂଯମୀ ଧାର୍ମିକପଣେ ଅଯୋଧ୍ୟାର ଜନ ।
ସବୁରି ଅଙ୍ଗେ ମଣ୍ଡିତ ରତ୍ନ ଆଭୂଷଣ ॥ ୨୦
ଶୁଦ୍ଧାଚାର ବିହୀନ କେ' ନାହାନ୍ତି ସେ ପୁରେ ।
ସର୍ବେ ଅଗ୍ନିହୋତ୍ର ଆଚରନ୍ତି ନିରନ୍ତରେ ॥ ୨୧
ସୁଭୋଜ୍ୟ ପାନରେ ସୁଖୀ ସଦା ପ୍ରଜାଗଣ ।
ନିରନ୍ତରେ ହରିଗୁଣ କରନ୍ତି ଗାୟନ ॥ ୨୨
ସେ ନଗ୍ରେ ବସନ୍ତି ଯେତେ ସୁଜ୍ଞାନୀ ବ୍ରାହ୍ମଣ ।
ସର୍ବେ ସ୍ୱାଧ୍ୟାୟ ନିରତ ଷଟ୍‌କର୍ମେ ନିପୁଣ ॥ ୨୩
ନାସ୍ତିକ ଅସଦାଚାରୀ ନୁହନ୍ତି କେ ଜନ ।
ଈର୍ଷ୍ୟା ଦ୍ୱେଷ ଘୃଣା ମହରତାଦି ନିର୍ଗୁଣ ॥ ୨୪
ବିପ୍ରକୁଳ ସେ ନଗରେ ସଦା ସଦାଚାରୀ ।
ନୃପ ଦଶରଥ-ଛତ୍ର-ଛାୟାରେ ବିହରି ॥ ୨୫

ଷଡ଼ଙ୍ଗ ସଂହିତ ବେଦେ ସରବେ ଧୁରୀଣ ।
ଦାନ ଧ୍ୟାନ ଦେବପୂଜା ବ୍ରତରେ ଅଗ୍ରଣୀ ॥ ୨୬
ଏମନ୍ତ ଭୂସୁରଗଣେ ଛନ୍ତି ସେ ନଗରେ ।
ନୃପ ଦଶରଥ ତାଙ୍କୁ ପାଳନ୍ତି ଆଦରେ ॥ ୨୭
ପରଜାଜନ ସଭିଙ୍କେ ସଦା ଶୁଚିଶୀଳ ।
ସବୁରି ମନେ ପୂରିତ ଧୈର୍ଯ୍ୟ ତେଜ ବଳ ॥ ୨୮
ବିରସ ବଦନ କା'ର ନ ଦିଶଇ କେବେ ।
ଦୁଃଖରେ ପୀଡ଼ିତ କେହି ନ ହୁଅନ୍ତି ଲବେ ॥ ୨୯
ଅଧୈର୍ଯ୍ୟ ଚଞ୍ଚଳ ଅବା ଦୀନଦୁଃଖୀ ନର ।
ନଥିଲେ ଅଯୋଧ୍ୟାପୁରେ ତଜର ତସ୍କର ॥ ୩୦
ସର୍ବେ କାନ୍ତିମାନ ଦେବ ଅତିଥି ପୂଜକ ।
କୃତଜ୍ଞ ଉଦାର ଶୂର ପରମ ଧାର୍ମିକ ॥ ୩୧
ସେ ପୁରେ ନ ପଶେ ଯମ କାଳଦଣ୍ଡ ଧରି ।
ତେଣୁ ଦୀର୍ଘାୟୁଷ ଅଯୋଧ୍ୟାର ନରନାରୀ ॥ ୩୨
ସତ୍ୟ ଧର୍ମ ପାଳନରେ ସର୍ବ ପୁରଜନେ ।
ସପରିବାର ବସନ୍ତି ଆନନ୍ଦିତ ମନେ ॥ ୩୩
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚତୁର୍ବର୍ଣ୍ଣ ।
ଆପଣାଠାରୁ ଶ୍ରେଷ୍ଠରେ ଦିଅନ୍ତି ସମ୍ମାନ ॥ ୩୪
ସ୍ୱକୁଳ ଆଚାରେ ସର୍ବେ ପୂଜନ୍ତି ଶ୍ରେଷ୍ଠରେ ।
କେବେ ବିଦ୍ୱେଷ ନ ଥାଇ କାହାରି ମନରେ ॥ ୩୫
ଇକ୍ଷ୍ୱାକୁ କୁଳଭୂଷଣ ନୃପ ଦଶରଥ ।
ସେ ପୁର ନଗ୍ର ରକ୍ଷଣେ ସଦା ଦତ୍ତଚିତ୍ତ ॥ ୩୬
ପୂର୍ବେ ଯେସନ୍ତେ ମନୁଗଣ ପାଳିଲେ ଜଗତ ।
ସେ ରୂପେ ପାଳନ୍ତି ଅଯୋଧ୍ୟାକୁ ନୃପନାଥ ॥ ୩୭
ପର୍ବତକନ୍ଦର ଯଥା କେଶରୀ ସେବିତ ।
ସେ ରୂପେ ଅଯୋଧ୍ୟାଜନେ ସ୍ୱପୁରେ ଶୋଭିତ ॥ ୩୮
ଆପଣା ତେଜରେ ସର୍ବେ ଅଗ୍ନିସମ ହୋଇ ।
ଦିଶନ୍ତି ସୁକାନ୍ତିମନ୍ତ ଅତ୍ୟନ୍ତ ବିନୟୀ ॥ ୩୯

କୁଟିଳତା ଅନ୍ତରରେ ତେଜି ଚଳାଞ୍ଚଳ ।
ମର୍ଯ୍ୟାଦାବନ୍ତ ସର୍ବେ ଅଟନ୍ତି କୁଶଳୀ ॥ ୪୦
ଅପମାନ ଅମର୍ଯ୍ୟାଦା ଲଭେ ଯେଉଁ ଜନ ।
ସର୍ପ ପ୍ରାୟେ ଫୁଁ...ଫୁଁ କରି କରଇ ଦଂଶନ ॥ ୪୧
ଏମନ୍ତ ଜନେ ପୂରିତ ଅଯୋଧ୍ୟା ନଗରୀ ।
ଶୋଭେ ଯଥା ସ୍ୱର୍ଗେ ଅମରାବତୀ ପୁରୀ ॥ ୪୨
କାମ୍ବୋଜ ବାହ୍ଲୀକ ଆଉ ବନାୟୁ ଦେଶଜ ।
ସିନ୍ଧୁଦେଶ ଜାତ ଅଶ୍ୱେ ପୂରିଛି ସେ ରାଜ୍ୟ ॥ ୪୩
ଉଚ୍ଚୈଃଶ୍ରବା ସମ ଯେ ଅଟନ୍ତି ବେଗବଳେ ।
ଏମନ୍ତ ତୁରଙ୍ଗ ପୂର୍ଣ୍ଣ ଅଯୋଧ୍ୟା ମଣ୍ଡଳେ ॥ ୪୪
ପ୍ରଜାଜନେ ନିର୍ଭୟରେ କରନ୍ତି ନିବାସ ।
ସଦା ମନେ ବହି ଲୀଳା ହାସ ପରିହାସ ॥ ୪୫
ମତ୍ତ ଗଜରାଜେ ପରିପୂର୍ଣ୍ଣ ସେ ନଗରୀ ।
ଐରାବତ ମହାପଦ୍ମ ବଂଶ-ଜାତ କରୀ ॥ ୪୬
ଅଞ୍ଜନ ବାମନ ଆଉ ସୁଜାତି ବଂଶଜ ।
ବିନ୍ଧ୍ୟ ହିମାଳୟ ପରବତେ ଜାତ ଗଜ ॥ ୪୭
ଗିରିବ୍ରଜେ ଜାତ ଭଦ୍ରଜାତି କରୀବର ।
ବିନ୍ଧ୍ୟେ ଉତପନ୍ନ ମନ୍ଦ୍ରଜାତି ଗଜବର ॥ ୪୮
ମୃଗ ଜାତି ଗଜେ ଯେହ୍ନ ସହ୍ୟାଦ୍ରି ଭୂଷଣ ।
ଆଉରି ସଙ୍କର ଜାତି କରୀବର ପୁଣ ॥ ୪୯
ସେ ନଗ୍ରେ ଅଛନ୍ତି ପୂରି ସକଳ ପ୍ରକାର ।
ଏମନ୍ତ ଅଯୋଧ୍ୟାପୁରୀ ଦେଖି ଶତ୍ରୁବଳ ॥ ୫୦
ଦୂରୁ କୃତାଞ୍ଜଳି ପୁଟେ କରନ୍ତି ପ୍ରଣାମ ।
ତେଣୁ ଜଗତେ ବିଦିତ ଏ' ଅଯୋଧ୍ୟା ନାମ ॥ ୫୧
ବଳବନ୍ତ ବୀରେ ଅସ୍ତ୍ରଶସ୍ତ୍ରେ ସୁସଜ୍ଜିତ ।
ସେ ରାଜ୍ୟ ରକ୍ଷଣେ ସଦା ଅଛନ୍ତି ଜାଗ୍ରତ ॥ ୫୨
ଅସ୍ତ୍ରଶସ୍ତ୍ରଧାରୀ ଧନୁର୍ଦ୍ଧରେ ସୁବେଷ୍ଟିତ ।
ସେ ରାଜ୍ୟ ପାଳନ୍ତି ହୃଷ୍ଟମନେ ଦଶରଥ ॥ ୫୩

ଶଶଧର ରାଜେ ଯଥା ନକ୍ଷତ୍ର ଲୋକରେ ।
ତେହ୍ନେ ଦଶରଥ ବିରାଜନ୍ତି ସେ ନଗରେ ॥ ୫୪
ସ୍ୱତେଜ ବଳେ ନିବାରି ଅରାତି ସମାଜ ।
ଅଯୋଧ୍ୟାନଗରୀ ପାଳୁଛନ୍ତି ନୃପରାଜ ॥ ୫୫
ଯେ ନଗରୀ ସିଂହଦ୍ୱାରେ ସୁଦୃଢ଼ ଅର୍ଗଳ ।
ରକ୍ଷୁଛନ୍ତି ଚୂର୍ଣ୍ଣ କରି ରିପୁ ମନୋବଳ ॥ ୫୬
ଯୋଦ୍ଧା ନୋହିବାରୁ ଯେ ନଗରୀ ଲୋକେ ଖ୍ୟାତ ।
ସାର୍ଥକ ଅଯୋଧ୍ୟା ନାମ ଜଗତେ ବିଦିତ ॥ ୫୭
ଅଷ୍ଟାବିଂଶତି ଶ୍ଳୋକରେ ଷଷ୍ଠ ସର୍ଗ ଶେଷ ।
ଜନ ଉପକାରେ ବିରଚିଲେ ମୁନିଈଶ ॥ ୫୮
ଛରମ୍ବା ସ୍ୱାମୀରେ ପୂର୍ବେ ଯେ ଗ୍ରାମର ସ୍ଥିତି ।
ବୃଦ୍ଧଜନ ମୁଖେ ନାମ ଯାର ଚମ୍ପାବତୀ ॥ ୫୯
ଶିଳ୍ପବାଣିଜ୍ୟେ ସମୃଦ୍ଧ ଚରମ୍ବା ଯା' ନାମ ।
ଦଧିବାମନ ମନ୍ଦିର ଯହିଁ ବିଦ୍ୟମାନ ॥ ୬୦
ଯହିଁ ଇଷ୍ଟ ବୁଦ୍ଧେଶ୍ୱର ଅଞ୍ଜନାକୁମର ।
ସେ ଗ୍ରାମେ ବସନ୍ତି ଯା'ର ସେହୁ ବିପ୍ରବର ॥ ୬୧
ମୈତ୍ରେୟ କୁଳଭୂଷଣ ଶ୍ରୀପୁରୁଷୋତ୍ତମ ।
ଭଗବାନ ସୁତ ବିରଚିଲ ରାମାୟଣ ॥ ୬୨
ଆହେ ସୁଜ୍ଞନରେ ! ସଦା ରଟ ରାମ ରାମ ।
ଜାଣିବାକୁ ଇଚ୍ଛା ଯେବେ ଶମନ କଦନ ॥ ୬୩
ଜଗତ-ପବିତ୍ରକର ରାମ ରସାମୃତ ।
ପିଅ ହେ ସୁଜ୍ଞାନୀ ଜନେ ହୋଇ ହୃଷ୍ଟଚିତ୍ତ ॥ ୬୪

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଷଷ୍ଠ ସର୍ଗ ।



# ସପ୍ତମ ସର୍ଗ

## ଅମାତ୍ୟଗଣଙ୍କ ନୀତି ତଥା ଗୁଣ ବର୍ଣ୍ଣନ ।

ଆହେ ସଜ୍ଜନେ ଶୁଣ ଦେଇ ମନ କର୍ଣ୍ଣ ।
ସର୍ବ ବେଦସାର ଏହୁ ରମ୍ୟ ରାମାୟଣ ॥ ୧
ଇକ୍ଷ୍ୱାକୁ କୁଳଭୂଷଣ ଦଶରଥଙ୍କର ।
ଥିଲେ ଅଷ୍ଟମନ୍ତ୍ରୀ ମଣ୍ଡଣାରେ ଧୁରନ୍ଧର ॥ ୨
ମନୋଗତ ଭାବ ଜାଣିବାରେ ସୁଚତୁର ।
ବାହ୍ୟ ଘାତପାତ ଦେଖି ଆସ୍ତର ବହାର ॥ ୩
ସତତ ରାଜନ ପ୍ରିୟେ ସହଚର ପଣେ ।
ସୁବିଖ୍ୟାତ ଥିଲେ ସଦାଗ୍ରହ ଆଚରଣେ ॥ ୪
ରାଜତନ୍ତ୍ରେ ସୁନିପୁଣ ଅଷ୍ଟମନ୍ତ୍ରୀଗଣେ ।
ନିରତେ ପ୍ରବୃତ୍ତ ରାଜ କର୍ମ ଅବଧାନେ ॥ ୫
ଏଣୁ ତାଙ୍କ ଯଶ ଗଉରବ ଜଗତରେ ।
ହୋଇଛୁ ପ୍ରଖ୍ୟାତ ଜନେ ଜାଣନ୍ତି ସକଳେ ॥ ୬
ଧୃଷ୍ଟି ଜୟନ୍ତ ଏ' ବେନି ତୃତୀୟ ବିଜୟ ।
ସୁରାଷ୍ଟ୍ର ରାଷ୍ଟ୍ରବର୍ଦ୍ଧନ ଗୁଣୀ ସଦାଶୟ ॥ ୭
ଅକୋପ ଯେ ଧର୍ମପାଳ ବେନି ମନ୍ତ୍ରୀବର ।
ଅଷ୍ଟମ ସୁମନ୍ତ୍ର ନାମ ଅଟେ ତାହାଙ୍କର ॥ ୮
ଅର୍ଥଶାସ୍ତ୍ରରେ ନିପୁଣ ଚତୁର ସୁଜ୍ଞମା ।
ରାଜକାର୍ଯ୍ୟେ ତତପର ଅଟନ୍ତି ଯେ ପୁଣି ॥ ୯
ଋଷିଗଣେ ବରିଷ୍ଠ ଯେ ବଶିଷ୍ଠ ମହର୍ଷି,
ଆଉର ମହାତପସ୍ୱୀ ବାମଦେବ ଋଷି ॥ ୧୦
ଏହୁ ବେନି ବ୍ରହ୍ମମୁନି ରାଜ ପୁରୋହିତ ।
ଆଉର ମୁନିଏ ଛନ୍ତି ବଦ୍ୟଜ୍ଞମା ସପ୍ତ ॥ ୧୧

ସୁଯଜ୍ଞ ଜାବାଳ ମାର୍କଣ୍ଡେୟ ଗଉତମ ।
କାଶ୍ୟପ ଗାର୍ଗ୍ୟାୟୁ କାତ୍ୟାୟନ ଯେ ସପ୍ତମ ॥ ୧୨
ରାଜ ଉପଦେଷ୍ଟା ଏଣେ ଥାନ୍ତି ନିରନ୍ତର ।
ଯୋଗସିଦ୍ଧ ମହାତମା ବିବେକୀ ଚତୁର ॥ ୧୩
କୁଳ ପରମ୍ପରା ଧର୍ମେ ଋତ୍ୱିକ ବ୍ରାହ୍ମଣେ ।
ନିଯୁକ୍ତ ହୋଇଅଛନ୍ତି ନୃପ ମନ୍ତ୍ରୀ ପଣେ ॥ ୧୪
କ୍ଷମାଶୀଳ କୀର୍ତ୍ତିମନ୍ତ ଅଷ୍ଟମନ୍ତ୍ରୀଗଣ ।
ଭୂବନମୀ ଯଶସ୍ୱୀ ଅଟନ୍ତି ଶ୍ରୀସୁମନ୍ତ ॥ ୧୫
ଶସ୍ତ୍ରଶାସ୍ତ୍ରେ ସୁକୁଶଳ ତେଜସ୍ୱୀ ସକଳ ।
ବଳସ୍ୱୀ ଅଟନ୍ତି ସର୍ବକାର୍ଯ୍ୟେ ଧୁରନ୍ଧର ॥ ୧୬
କାର୍ଯ୍ୟଦକ୍ଷ ପଣେ ତାଙ୍କ ନାହିଁ ପଟାନ୍ତର ।
ଜିତେନ୍ଦ୍ରିୟ ଅଟନ୍ତି ସେ ଅମାତ୍ୟ ସକଳ ॥ ୧୭
ରାଜକାର୍ଯ୍ୟେ ନୃପ ଆଜ୍ଞା ପାଳନ୍ତି ସତତ ।
କାମ କ୍ରୋଧ ଧନ ସ୍ୱାର୍ଥେ ନହନ୍ତି ଜଡ଼ିତ ॥ ୧୮
ଗୁଣୀଙ୍କ ବିଦୂଷପଣେ ବୃହସ୍ପତି ସମ ।
ଅସତ୍ୟ ଭାଷଣେ ତାଙ୍କ ନ ବଳଇ ମନ ॥ ୧୯
ସର୍ବଜ୍ଞପଣେ ସେ ମନ୍ତ୍ରୀଗଣେ ସୁଚତୁର ।
ମିତ୍ର ଶତ୍ରୁ ରାଜାଙ୍କର ଜାଣନ୍ତି ଅନ୍ତର ॥ ୨୦
କେ କସ କରିଛୁ ଅବା ମନାସିଛୁ ଯାହା ।
ଅଥବା କରିବ କସ ଜାଣନ୍ତି ସେ ତାହା ॥ ୨୧
ଗୁପ୍ତଚରଗଣେ ସଦା ଦଅନ୍ତି ସନ୍ଦେଶ ।
ଏ' ହେନ ଅମାତ୍ୟଗଣେ ମହା ଉତ୍କୃଷ ॥ ୨୨
ଲଭି ରାଜା ଦଶରଥ ପରମ ଆଦର ।
ବିରାଜନ୍ତି ଅଯୋଧ୍ୟାରେ ଅମାତ୍ୟ ସକଳ ॥ ୨୩
ନ୍ୟାୟ ଗୁଣେ ତାଙ୍କ ଯଶ ବ୍ୟାପିଛି ଜଗତ ।
ବହୁ ଘଟଣା ପ୍ରବାହେ ଯାହା ପରୀକ୍ଷିତ ॥ ୨୪
ଅନ୍ୟାୟ ଅଧର୍ମ କାର୍ଯ୍ୟେ ଯେବୁ ହେବ ଲିପ୍ତ ।
ଅବଶ୍ୟ ଦଣ୍ଡିବେ ମନ୍ତ୍ରୀ ହେଲେ ନିଜ ସୁତ ॥ ୨୫

ଏ' ଯେଉଁ ନୃପତି ତାଙ୍କୁ କରନ୍ତି ଆଦର ।
ଅଟନ୍ତି ଅମାତ୍ୟେ ସେଣୁ ବିଷୟରେ କୁଶଳ ॥ ୨୬
ନୃପତି କୁଶଳ ସଦା ବାଞ୍ଛନ୍ତି ଅନ୍ତରେ ।
ତେଣୁ ରାଜପୂଜ୍ୟ ସଣେ ଥା'ନ୍ତି ଅପେ ଧାରେ ॥ ୨୭
ଧନ ଭଣ୍ଡାର ରକ୍ଷଣେ ସତତ ତତ୍ପର ।
ଚତୁରଙ୍ଗବଳ ସଂଗ୍ରହଣେ ଧୁରନ୍ଧର ॥ ୨୮
ବିନା ଅପରାଧେ କେବେ ନ ଦଣ୍ଡନ୍ତି କାହେ ।
ଶତ୍ରୁ ହେଲେ ହେଁ ତୋଷନ୍ତି ଭଦ୍ର ବ୍ୟବହାରେ ॥ ୨୯
ସାଧୁ ସୁପୁରୁଷେ ସଦା କରନ୍ତି ରକ୍ଷଣ ।
ଶୌର୍ଯ୍ୟ ଓଜ ଶୀଳ ଗୁଣେ ଅତି ବିଚକ୍ଷଣ ॥ ୩୦
ସାହସ ଉତ୍ସାହ ଗୁଣମାନ ମନ୍ତ୍ରୀଙ୍କର ।
ଦେଖି ପ୍ରଜାଜନେ ସଦା କରନ୍ତି ସତ୍କାର ॥ ୩୧
ରାଜପ୍ରାପ୍ୟ କରେ ପୂର୍ଣ୍ଣ କରି ରାଜକୋଷ ।
ବ୍ରାହ୍ମଣ କ୍ଷତ୍ରିୟଗଣେ ନ ଦଣ୍ଡନ୍ତି ଲେଶ ॥ ୩୨
ଅପରାଧୀ ଅପରାଧ ବଳାବଳ ଦେଖି ।
ଦଣ୍ଡନ୍ତି ସଚିବଗଣେ ଉପ୍ରୋଧ ନ ରଖି ॥ ୩୩
ନ ଦିଅନ୍ତି କା'ରେ କେବେହେଲେ ଦଣ୍ଡ ଘୋର ।
ସକ୍ଷମ ସେ ଯେଉଁ ଦଣ୍ଡେ ମୃଦୁ ବା କଠୋର ॥ ୩୪
ନର୍ମଳ ଶାସନେ ତାଙ୍କ କୋଶଳ ଦେଶରେ ।
ନଥିଲେ କେ ମିଥ୍ୟାବାଦୀ ଲମ୍ପଟୀ ପ୍ରଜାରେ ॥ ୩୫
ତାଙ୍କ ସୁଶାସନେ ସୁଖ ଶାନ୍ତି ବିରାଜିତ ।
ହୋଇ କୋଶଳମଣ୍ଡଳ ଜଗତେ ବିଦିତ ॥ ୩୬
ମହାର୍ଘ ବସ୍ତ୍ର ଭୂଷଣେ ହୋଇ ବିଭୂଷିତ ।
ମନ୍ତ୍ରୀଗଣେ ଥା'ନ୍ତି ରାଜସେବାରେ ନିରତ ॥ ୩୭
ସୁବ୍ରତ ଚରିତ୍ର ପ୍ରଜା-ମଙ୍ଗଳ ଚାହାଁଣେ ।
ଖଟୁଥା'ନ୍ତି ଦିବା ନିଶି ସାମ୍ରାଜ୍ୟ ରକ୍ଷଣେ ॥ ୩୮
ସୁମନ୍ତ୍ର ବିଷୟରେ ସଦା ଦେଇନ୍ତି ସରବ ।
ପ୍ରଶାନ୍ତ ହୃଦୟେ ତାଙ୍କ ନାହିଁ ଭେଦଭାବ ॥ ୩୯

ରାଷ୍ଟ୍ରର ପ୍ରତିପାଳନେ ସର୍ବଦା ସଜାଗ ।
ତେଣୁ ନୃପ ଦଶରଥ ଭଜନ୍ତି ସରାଗ || ୪୦
ନିଜ ଗୁଣେ ମନ୍ତ୍ରୀଗଣ ରାଜ ସୁପୂଜିତ ।
ହୋଇ କରୁଥା'ନ୍ତି ନିତ୍ୟେ ଦେଶ-ଦଶ ହିତ || ୪୧
ଅନ୍ୟ ରାଜ୍ୟେ ପ୍ରକଟିତ ହୁଏ ତାଙ୍କ ଯଶ ।
ମନ୍ତ୍ରଣା ବିଚାରବନ୍ତ ତଥା ପୌରୁଷ || ୪୨
ସୁବିଚାରେ ସର୍ବ କାର୍ଯ୍ୟ ସମ୍ପାଦି ଅମାତ୍ୟେ ।
ତୁଷାଇଲେ ରାଜଭବ ପ୍ରଜାଜନ ହିତେ || ୪୩
ଦେଶ କାଳ ପାତ୍ରେ କରି ବିଚାର ଆପଣେ ।
ପ୍ରମାଣି ଅଛନ୍ତି ନିଜ ବୁଦ୍ଧି ବିଚକ୍ଷଣେ || ୪୪
ସାନ୍ଧି-ବିଗ୍ରହିକ ପଣେ ଅତ୍ୟନ୍ତ ଚତୁର ।
ଯେଣୁ ଦୈବାଗୁଣେ ବିମଣ୍ଡିତ ମନ୍ତ୍ରୀବର || ୪୫
ରାଷ୍ଟ୍ର-ହିତକର କାର୍ଯ୍ୟ କରଣେ ତତ୍ପର ।
ତେଣୁ ମନ୍ତ୍ରୀଗଣେ ପ୍ରିୟ ପ୍ରଜାଜନଙ୍କର || ୪୬
ଗୋପନୀୟ-ମନ୍ତ୍ର ମନ୍ତ୍ରଣାରେ ସୁକୁଶଳ ।
ଗୋପନ କରଣେ ଦକ୍ଷ ଅଷ୍ଟ ମନ୍ତ୍ରୀବର || ୪୭
ସୁତୀକ୍ଷ୍ଣ ଧୀଷଣାବନ୍ତ ଅମାତ୍ୟ ସକଳ ।
ନୀତିଶାସ୍ତ୍ର ପ୍ରବଚନେ ତେଣୁ ବିଜ୍ଞବର || ୪୮
ମଧୁର କୋମଳବାଣୀ ଭଣି ମନ୍ତ୍ରୀଗଣ ।
ସତତ ତୋଷନ୍ତି ଜନେ ଅମୃତ ସମାନ || ୪୯
ଏମନ୍ତ ସକଳ ଗୁଣ ସର୍ବ କାର୍ଯ୍ୟେ ଦକ୍ଷ ।
ମନ୍ତ୍ରୀଗଣ ଲଭି ଦଶରଥ ନିଷ୍କଣ୍ଟକ || ୫୦
ହୋଇ ପାଳନ୍ତି କୋଶଳେ କୁଶଳେ ରାଜନ ।
ଗୁପ୍ତଚରଗଣେ ଦିଅନ୍ତି ସଦା ତଥ୍ୟମାନ || ୫୧
ତେଣୁ ଶତ୍ରୁ ନୃପଗଣେ ନ ଥାଇ ଭାବନା ।
ପାଳନ୍ତି ସ୍ୱଧର୍ମେ ପ୍ରଜା ହୋଇ ଆନମନା || ୫୨
ଅଧର୍ମ ଅନ୍ୟାୟ ଅସାତରେ ଦଶରଥ ।
ନ ନୁଆଇଁ ଶିର ହୋଇଥା'ନ୍ତି ଖଡ୍ଗହସ୍ତ || ୫୩

ତ୍ରିଲୋକ-ବନ୍ଦିତ ଅଯୋଧ୍ୟାର ନୃପଗଣ ।
ସୁଗୁଣେ ସୁକର୍ମେ ସତ୍ୟବାଦେ ସୁନିପୁଣ ।। ୫୪
ସେ ନୃପକେଶରୀ ରହି କୋଶଳ ମଣ୍ଡଳେ ।
ଶାସନ କରନ୍ତି ଯଥା ସ୍ୱର୍ଗ ଆଖଣ୍ଡଳେ ।। ୫୫
ନିଜ ଠାରୁ ବଳୀ ଅବା ସମ ଶତ୍ରୁ କେହ୍ନି ।
ନ ଥିଲେ ତାହାଙ୍କ ତେଣୁ ମିଷ ସ୍ନେହ ବନ୍ଧ ।। ୫୬
ସକଳ ସାମନ୍ତରାଜ୍ୟ ରାଜନ୍ୟ-ମଣ୍ଡଳ ।
ସଦା ବେଢ଼ିଥା'ନ୍ତି ଯେହ୍ନେ ପଶ୍ବର କୂଳ ।। ୫୭
ରାଜନ୍ୟବର୍ଗ-ମୁକୁଟ-ଆପ୍ତ ମଣିଗଣ ।
ତେଜରେ ପ୍ରଦୀପ୍ତ ତେଣୁ ତାହାଙ୍କ ଚରଣ ।। ୫୮
ପ୍ରତାପ ଅନଳେ ଶତ୍ରୁବଳ ବିଧ୍ୱଂସିଣ ।
ଲୁହାଇଲେ ଏ' ଧରାରେ ଦିବ୍ୟ କୀର୍ତ୍ତିମାନ ।। ୫୯
ଅଯୋଧ୍ୟାରେ ରହି ନୃପ ପାଳୁଥିଲେ ମହୀ ।
ଯେହ୍ନେ ସୁରରାଜ ଥିଲେ ତ୍ରିଲୋକ ବିଜୟୀ ।। ୬୦
ସୁକୁଶଳ ମନ୍ତ୍ରୀଗଣ ମନ୍ତ୍ରଣା ଚତୁର ।
ନୃପତି ଆଦେଶେ ସଦା ଯେତ୍ନ ତତପର ।। ୬୧
ଏମନ୍ତ ଅଷ୍ଟ ଅମାତ୍ୟେ ହୋଇ ଅଳଙ୍କୃତ ।
ପାଳୁଥିଲେ ପ୍ରଜାଗଣେ ରାଜା ଦଶରଥ ।। ୬୨
ବିଭାବସୁ ତେଜେ ଯଥା ଧରା ଆଲୋକିତ ।
ତଥା ଦଶରଥ ମନ୍ତ୍ରୀଗଣେ ଉଲ୍ଲସିତ ।। ୬୩
ପୁରୁଷୋତ୍ତମ ଭୂସୁର ଘୋଷି ରାମନାମ ।
ସବନୟେ ଗାଏ ବାଲ୍ମୀକୀୟ ରାମାୟଣ ।। ୬୪
ଆହେ ସଜ୍ଜନେ ସଦା ରଟ ରାମ ରାମ ।
ପାରିହେବ ଅନାୟାସେ ଏ' ସଂସାରତମ ।। ୬୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତମ ସର୍ଗ ।



# ଅଷ୍ଟମ ସର୍ଗ

## ପୁତ୍ରପ୍ରାପ୍ତି ନିମିତ୍ତ ରାଜା ଦଶରଥଙ୍କ ଅଶ୍ୱମେଧ ଯଜ୍ଞର ଆୟୋଜନ ।

ସର୍ବଜ୍ଞ ଧାର୍ମିକ ମହାମନା ଦଶରଥ ।
ଯାହାଙ୍କ ପ୍ରତାପାନଳେ ଶତ୍ରୁ ବିଜିତ ॥ ୧
ପୁତ୍ର ନଥିବାରୁ ରାଜା ବିମନ ସତତ ।
ପୂଜୁଥିଲେ ଦେବଦେବୀ ହୋଇ ଛିନ୍ନ ଚିତ୍ତ ॥ ୨
ସୂର୍ଯ୍ୟବଂଶ ସୁପାଳନେ ହୋଇ ତତପର ।
ପୁତ୍ରକାମୀ ହେଲେ ଦଶରଥ ମହୀପାଳ ॥ ୩
ଦିନେକ ନୃପତିବର ବସି ଏକାନ୍ତରେ ।
ଭାଳନ୍ତି କରିବେ ଯଜ୍ଞ ପୁତ୍ରକାମନାରେ ॥ ୪
ଅଶ୍ୱମେଧେ ହୁଏ ସର୍ବ କାମନା ପୂରଣ ।
ତେଣୁ ସେ ଯଜ୍ଞ କଳ୍ପିଲେ ମନେ ନୃପରାଣ ॥ ୫
ସୁବକ୍ଷରବନ୍ତ ମନ୍ତ୍ରୀଗଣଙ୍କୁ ବସାଇ ।
ବର୍ଣ୍ଣିଲେ ମନକଥା ନୃପକୁଳସାଇଁ ॥ ୬
ଧାର୍ମିକ ସୁଜ୍ଞାନୀ ରାଜା ସୁମନ୍ତ୍ରରେ ରାଇ ।
ବୋଇଲେ ହେ ମିତ୍ର ! ଶୁଣ ମୋହର ବନୋଇ ॥ ୭
ପୁତ୍ରକାମେ ଅଶ୍ୱମେଧ କରିବାକୁ ପୁଣ ।
ବଳନ୍ତି ମାନସ ମୋର ଶୁଣ ମନ୍ତ୍ରୀଗଣ ॥ ୮
ତା' ଶୁଣି ହରଷେ ସର୍ବେ ହୋଇ ଉଲ୍ଲସିତ ।
ବୋଇଲେ ରାଜନ ! ଯାହା ଭାଳନ୍ତି ଉଚିତ ॥ ୯
ମନ୍ତ୍ରୀଗଣ ବାଣୀ ଶୁଣି ଅଯୋଧ୍ୟାର ସାଇଁ ।
ବୋଇଲେ ମଧୁରସ୍ୱରେ ସୁମନ୍ତ୍ରେ ଅନାଇଁ ॥ ୧୦
ଆହେ ମନ୍ତ୍ରୀ ବିଶାରଦ ! ଶୁଣ ମୋ' ବଚନ ।
ଯାଇ ବେଗେ ଘେନିଆସ ସର୍ବ ଋଷିଗଣ ॥ ୧୧

କୁଳ ପୁରୋହିତ ଋଷି ବଶିଷ୍ଠେ ତ୍ୱରିତ ।
ଯେନ ଆସି ନିବେଦନ ସକଳ ବୃତ୍ତାନ୍ତ ॥ ୧୨
ମହାମନା ସୁମନ୍ତ୍ର ଚଳିଲେ ବେଗ ହୋଇ ।
ବେଦବିଦ ମୁନିଗଣେ ଆଣିଲେ ଡକାଇ ॥ ୧୩
ସୁଯଜ୍ଞ ଜାବାଳି ବାମଦେବ ଯେ କାଶ୍ୟପ ।
ପୁରୋହିତ ବଶିଷ୍ଠାଦି ମୁନିଙ୍କି ସେ ନୃପ ॥ ୧୪
ପାଦ୍ୟ ଅର୍ଘ୍ୟ ଦେଇ ସୁଖାସନେ ବସାଇଲେ ।
ଧର୍ମ ଅର୍ଥ ଯୁକ୍ତ ବାଣୀ ନୃପତି ବୋଇଲେ ॥ ୧୫
ଆହେ ମୁନିଗଣ ! ଶୁଣ ମୋ' ବିନୟ ବାଣୀ ।
ଯେ ଦିନ ମୁଁ ସନ୍ତାପରେ କରୁଛି ଦହନ ॥ ୧୬
ସୁପୁତ୍ର ବିନୁ ମୋ' ମନ ବିକଳେ ସତତ ।
ତେଣୁ ମୁଁ କଳ୍ପଇ ଯାହା ଶୁଣ ତପୋବନ୍ତ ॥ ୧୭
ପୁତ୍ରକାମ ଅଶ୍ୱମେଧେ ପୂଜି ନାରାୟଣ ।
ଲଭିବି ତନୟରତ୍ନ ଆହେ ମୁନିଗଣ ! ॥ ୧୮
କି ରୂପେ ବିଧି ବିଧାନେ ସାଧିବି ସେ କର୍ମ ।
ଦିଅ ମୋତେ ଉପଦେଶ ତପସ୍ୱୀ ଉତ୍ତମ ॥ ୧୯
ଶୁଣି ଏ' ବଚନ ମୁନିଗଣେ ହୋଇ ତୋଷ ।
ବୋଇଲେ 'ତଥାସ୍ତୁ' ଆହେ ନୃପକୁଳେଶ ॥ ୨୦
ପୁଣ୍ୟବନ୍ତେ ପୁଣ୍ୟକାର୍ଯ୍ୟେ କରନ୍ତି ସତ୍ୱର ।
ଯଜ୍ଞ ଆୟୋଜନେ ଆଉ ବିଳମ୍ବ ନ କର ॥ ୨୧
ସକଳ ସାମଗ୍ରୀ ବେଗେ କର ହେ ଯତନ ।
ସରଯୂ ଉତ୍ତରତଟରେ କର ଯଜ୍ଞସ୍ଥାନ ॥ ୨୨
ଯଜ୍ଞ ଉପଯୋଗୀ ଅଶ୍ୱ ବାଛ ନୃପରାଣ !
ଶୁଭଦିନେ ଯାତ୍ରାପଥେ କରାଅ ପ୍ରୟାଣ ॥ ୨୩
ମନେ ଯାହା କଳ୍ପିଅଛ ଉତ୍ତମ ବିଚାର ।
ସେହି ଅନୁରୂପେ ଲଭ ସୁଗୁଣୀ କୁମର ॥ ୨୪
ଧାର୍ମିକ-ଜନଙ୍କ ଚିତ୍ତେ ଅମଙ୍ଗଳ ବାଣୀ ।
କେବେ ହେଁ ସ୍ଫୁରଇ ନାହିଁ ଆହେ ନୃପମଣି ! ॥ ୨୫

ପରମ ଧାର୍ମିକ ଯେଣୁ ତୁମ୍ଭେ ଦଶରଥ !
ଅଚିରେ ପୂରଣ ହେବ ତବ ମନୋରଥ ॥ ୨୬
ମୁନିଜନ ମୁଖୁଁ ଶୁଣି ଏ' ସାଧୁବଚନ ।
ମନ୍ତ୍ରୀଗଣେ ରାଇ ବୋଲେ ଅଯୋଧ୍ୟା ରାଜନ ॥ ୨୭
ଆହେ ମନ୍ତ୍ରୀଗଣ ! ଶୁଣିଲତ ଏ' ବଚନ ।
ବଶିଷ୍ଠାଦି ମୁନିଗଣେ ଭାଷିଲେ ଯା' ପୁଣ ॥ ୨୮
ସରଯୂ ଉତ୍ତରତଟେ ଭୂମିପୂଜା-ସ୍ଥାନ ।
ଭିଆଅ ଯତନ କରି ସକଳ ବିଧାନ ॥ ୨୯
ବିଘ୍ନ ବିନାଶନେ ଶାନ୍ତିକର୍ମ ଆୟୋଜନ ।
ଶାସ୍ତ୍ରମତେ ମାନି ମୁନିଜନଙ୍କ ବଚନ ॥ ୩୦
କର ଏବେ ଆହେ ବୁଦ୍ଧିମନ୍ତ ମନ୍ତ୍ରୀଗଣ !
ଯେପରି ନିର୍ବିଘ୍ନେ ଯଜ୍ଞ ହୋଇବ ସମ୍ପୂର୍ଣ୍ଣ ॥ ୩୧
ଉତ୍ତମ ଅଶ୍ୱ ଆଣାଇ କରାଅ ପୂଜନ ।
ଉପାଧ୍ୟାୟ ରାରବର ସତ୍ୱର ବ୍ରାହ୍ମଣ ॥ ୩୨
ଅନ୍ତ ଖରେ ପେଷ ଯଜ୍ଞଅଶ୍ୱ ଶୁଭଦିନେ ।
ତଥାରି କହିବ ଫେରିବ ସେ ଅଳ୍ପଦିନେ ॥ ୩୩
ଅତ୍ୟନ୍ତ କଠିନ ଏହି ଅଶ୍ୱମେଧଯାଗ ।
କ୍ଷଣକେ ବିଘ୍ନ ଘଟିବ ଆହେ ମହାଭାଗ ! ॥ ୩୪
ବ୍ରହ୍ମରାକ୍ଷସେ ଚିନ୍ତନ୍ତି ସଦା ବିଘ୍ନମାନ ।
ତେଣୁ ହେ ଅମାତ୍ୟଗଣେ ! ହେବ ସାବଧାନ ॥ ୩୫
ଏଣୁ ବିଘ୍ନଭୟ-ନିବାରଣେ ଯତ୍ନକର ।
ଯେ ରୂପେ ତୋଷ ଲଭିବେ ପାର୍ବତୀକୁମର ॥ ୩୬
ବିଧିହୀନ-ଯଜ୍ଞେ ହୁଏ ଯେଉଁ ଅଘଟଣ ।
କହଇ ସରବ ଶୁଣ ଦେଇ ମନକର୍ଣ୍ଣ ॥ ୩୭
ବିଧିହୀନ-ଯଜ୍ଞେ କର୍ତ୍ତା ଲଭଇ ମରଣ ।
ଆବର ହୁଅଇ ନାନା ବ୍ୟତ୍ପାତ ଘଟଣ ॥ ୩୮
ତେଣୁ ଆହେ ମନ୍ତ୍ରୀଗଣ ! ହୋଇ ସାବଧାନ ।
ଆୟୋଜନ କର ସବ ଯଜ୍ଞଦ୍ରବ୍ୟମାନ ॥ ୩୯

ଜାଣଇଁ ଅଛ ହେ ତୁମ୍ଭେମାନେ ବିଚକ୍ଷଣ ।
ତେଣୁ ସକଳ ବିଧାନ କର ସୁସମ୍ପନ୍ନ ॥ ୪୦
ଶୁଣି ରାଜନ ବଚନ ଅମାତ୍ୟ ପ୍ରବର ।
ବୋଲନ୍ତି ନ ଭଲ ଆହେ ରଘୁବଂଶବୀର ! ॥ ୪୧
ତବ ଇଚ୍ଛାମତେ ହେବ ସର୍ବ ଆୟୋଜନ ।
ଯେ ରୂପେ ଅବିଘ୍ନେ ହେବ ଯଜ୍ଞ ସମାପନ ॥ ୪୨
ତହୁଁ ବଶିଷ୍ଠାଦି ମୁନିଗଣେ ହୋଇ ତୋଷ ।
ଚଳିଲେ ଆଶ୍ରମେ ଭାଷି ନୃପେ ଶୁଭାଶିଷ ॥ ୪୩
ମୁନିଗଣେ ଯା’ନ୍ତେ ପୁଣି ଦଶରଥ ନୃପ ।
ବୋଇଲେ ଅମାତ୍ୟବରେ ବସାଇ ସମୀପ ॥ ୪୪
ଯା’ବୋଇଲେ ପୁରୋହିତେ ଶୁଣିଲ ତ ସର୍ବ ।
ବିଧିମତେ ହେବ ଯଥା ମୋ’ ଯଜ୍ଞ ସମ୍ଭବ ॥ ୪୫
ସେହିରୂପେ ଆୟୋଜନ କର ହେ ସକଳେ ।
ଏତେ ଭାଷି ନୃପ ଅନ୍ତଃପୁରେ ପ୍ରବେଶିଲେ ॥ ୪୬
ତରୁଣୀରତନ ରାଣୀମାନଙ୍କୁ ଡକାଇ ।
କହିଲେ ଯଜ୍ଞବିଧାନ ସକଳ ବୁଝାଇ ॥ ୪୭
ପ୍ରିୟବନ୍ଧୁ ରାଣୀଗଣେ ! ଶୁଣ ମୋ’ ବଚନ ।
ପୁତ୍ରକାମେ ହେବ ଅଶ୍ୱମେଧ ଆୟୋଜନ ॥ ୪୮
ତେଣୁ ସର୍ବେ ଶୁଚିମନ୍ତ ହୋଇ କର ବ୍ରତ ।
ଯେ ରୂପେ ହୋଇବ ଯଜ୍ଞ ନିର୍ବିଘ୍ନେ ସମାପ୍ତ ॥ ୪୯
ଶୁଣି ନୃପତି ବଚନ ସକଳ ତରୁଣୀ ।
ଉଲ୍ଲସିତା ହେଲେ ମନେ ପୁତ୍ରଲାଭ ଶୁଣି ॥ ୫୦
ସଭିଙ୍କ ମୁଖକମଳ ହେଲା ବିକଶିତ ।
ବସନ୍ତ କାନନେ ଯଥା ପଦ୍ମ ସୁଶୋଭିତ ॥ ୫୧
ଅନୁରୂପ ଶୋଭା ଫୁଟି ଉଠିଲା ବଦନେ ।
ପ୍ରଫୁଲ୍ଲ ମାନସେ ବିଳସିଲେ ରାଣୀଗଣେ ॥ ୫୨
ବୀର ହନୁମନ୍ତ ପଦକମଳେ ଶରଣ ।
ଅଧମ ପୁରୁଷୋତ୍ତମ ଭାଷେ ରାମାୟଣ ॥ ୫୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଅଷ୍ଟମ ସର୍ଗ ।

# ନବମ ସର୍ଗ

## ଋଷ୍ୟଶୃଙ୍ଗଙ୍କ ଆଗମନ ପ୍ରସ୍ତାବ ।

ଶୁଣ ସଜ୍ଜନେ ! ଏହୁ ଅପୂର୍ବ ଚରିତ ।
ବାଲମିକ ମୁନି ଯାହା କରିଛନ୍ତି ଗୀତ ॥ ୧
ପୁତ୍ରକାମ ଅଶ୍ୱମେଧ କରିବାକୁ ମନ ।
କରନ୍ତେ ରାଜନେ କହେ ସୁମନ୍ତ ବୋଧିଣ ॥ ୨
ଆହେ ନୃପବର ରଘୁକୁଳ ଶିରୋମଣି !
ଯାହା ପୁରାଣ ବଚନ କହୁଛି ବଖାଣି ॥ ୩
ବଶିଷ୍ଠାଦି ମୁନିଙ୍କର ଘେନି ଉପଦେଶ ।
ଅଶ୍ୱମେଧ କରିବାକୁ ବଳାଇଛ ଆଶ ॥ ୪
କିନ୍ତୁ ମୁଁ ଶୁଣିଛି ଦେବ ! ଇତିହାସ କଥା ।
କହୁଛି ଫିଟାଇ ଶୁଣି ତୁଟୁ ମନବ୍ୟଥା ॥ ୫
ଏକଦିନେ ସନତକୁମାର ମୁନିମେଳେ ।
କହିଥିଲେ ତବ ପୁତ୍ରପ୍ରାପ୍ତି ବିଷୟରେ ॥ ୬
ମୁନିଙ୍କି ସମ୍ବୋଧି କହିଥିଲେ ସା' କୁମାର ।
ତା' ବଖାଣେ ଆଦ୍ୟପ୍ରାନ୍ତ କରି ନୃପବର ॥ ୭
ଆହେ ତପୋଧନେ ! ଶୁଣ କାଶ୍ୟପକୁମର ।
ବିଭାଣ୍ଡକ ମୁନି ଛନ୍ତି ଅରଣ୍ୟ ମଧ୍ୟର ॥ ୮
ତାଙ୍କ ପାଳିତ କୁମର ନାମ ଋଷ୍ୟଶୃଙ୍ଗ ।
ବେଦ ବେଦାନ୍ତ ନିଷ୍ଣାତ ଯଜ୍ଞରେ ପାରଗ ॥ ୯
ସତତ ତପସ୍ୟାବ୍ରତେ ବ୍ରତୀ ହୋଇ ମୁନି ।
ଆରଣ୍ୟକ ବନେ ଅନ୍ୟେ ନାହାନ୍ତି ସେ ଚିହ୍ନି ॥ ୧୦
ପିତା ବିଭାଣ୍ଡକ ବିନୁ ଅନ୍ୟ ନରନାରୀ ।
ଦେଖିନାହାନ୍ତି ସେ କେବେ ନୟନ ଉଘାରି ॥ ୧୧
ପିତାଙ୍କ ବଚନ ସଦା କରନ୍ତି ପାଳନ ।
ଜାଣିନାହାନ୍ତି ଧରାରେ ଅଛନ୍ତି କେ ଜନ ॥ ୧୨

ବ୍ରହ୍ମଚର୍ଯ୍ୟ ସ୍ୱରୂପ ମୁଁ କହୁଛୁ ବୁଝାଇ ।
ମୌଞ୍ଜୀ ମେଖଳା ଧାରଣେ ବ୍ରହ୍ମଚାରୀ ହୋଇ ।। ୧୩
ତପସ୍ୟାରେ ରତ ଯା'ର ସତତ କରଣ ।
ସେହୁ ଏକା ବ୍ରହ୍ମଚାରୀ ଶୁଣ ତପୋଧନ ।। ୧୪
ଅପର ପ୍ରକାର ଯେହୁ ଥା'ନ୍ତି ବ୍ରହ୍ମଚାରୀ ।
ତାହାଙ୍କ କର୍ତ୍ତବ୍ୟକର୍ମ କହୁଛୁ ବିସ୍ତାରି ।। ୧୫
ଋତୁକାଳ ବିନୁ ପତ୍ନୀସଙ୍ଗ ନ କରନ୍ତି ।
ଏମନ୍ତ ଆଚାରେ ଯେହୁ ଗୃହାଶ୍ରମେ ଥା'ନ୍ତି ।। ୧୬
ଅଟନ୍ତି ସେମାନେ ତହିଁ ବ୍ରହ୍ମଚାରୀ ପୁଣ ।
ସତ୍ୟଧର୍ମଠାରୁ ତାଙ୍କ ମହତ୍ତ୍ୱ ପ୍ରଧାନ ।। ୧୭
ଉଭୟ ପ୍ରକାର ବ୍ରହ୍ମଚର୍ଯ୍ୟବ୍ରତ ଜାଣ ।
ସାଧନ କରିବେ ଋଷ୍ୟଶୃଙ୍ଗ ମୁନିଗଣ ।। ୧୮
ଆହେ ମୁନିଗଣେ ! ଶୁଣ ଅପୂର୍ବ ଚରିତ ।
ଯା' ଘଟିବ ଋଷ୍ୟଶୃଙ୍ଗେ କହୁଛୁ ନିଶ୍ଚିତ ।। ୧୯
ଅଙ୍ଗଦେଶ ନରପତି ରୋମପାଦ ବୀର ।
ଯାହାଙ୍କ ମହିମା ଘୋଷୁଛନ୍ତି ସୁରନର ।। ୨୦
ଧର୍ମ ଉଲ୍ଲଙ୍ଘନେ ତାଙ୍କ ରାଜ୍ୟେ ମଘବାନ ।
ନ କରିବେ ବୃଷ୍ଟି ହେବେ ପ୍ରଜାଏ ଶ୍ରୀହୀନ ।। ୨୧
ଏହା ଦେଖି ଅଙ୍ଗରାଜ ରୋମପାଦ ବୀର ।
ବହିବେ ଅଶେଷ କ୍ଲେଶ ବିଚାରି ମନର ।। ୨୨
ଏକଦିନେ ସେହୁ ରାଜା ଡକାଇ ବ୍ରାହ୍ମଣ ।
ବିଚାରିବେ କେହ୍ନେ ଇନ୍ଦ୍ର ଦେବେ ଜଳଦାନ ।। ୨୩
ବିନୋଇ କହିବେ ରାଜା ଜ୍ଞାନୀ ଦ୍ୱିଜବରେ ।
କେଉଁ ପାପୁଁ ଘଟିଛି ଏ' ବିଘ୍ନ ମନରେ ।। ୨୪
କେଉଁ ପ୍ରାୟଶ୍ଚିତ୍ତ ବଳେ ଛୁଟିବ ଏ' ଦଶା ।
କୁହ ହେ ସୁଜ୍ଞାନୀ ବିପ୍ରେ ତୁଆଇ ଭରସା ।। ୨୫
ବେଦ ବେଦାଙ୍ଗ ବେଦାନ୍ତେ ପାରଗ ଆପଣ ।
କୃପା କରି କୁହ ଅନାବୃଷ୍ଟିର କାରଣ ।। ୨୬

ପାଳବେ ବାସବ ମନ୍ତ୍ର ତେଜ ମହାରୋଷ ।
ଏହା ଶୁଣି କହିବେ ସେ ସକଳ ବିବୁଧ ॥ ୨୭
ଆହେ ନରନାଥ ! ବ୍ରହ୍ମଶାପୁଁ ଏ' ଘଟିତ ।
ହୋଇଛି ତା' ପ୍ରତିକାର ଶୁଣ ନରନାଥ ! ॥ ୨୮
ବିଭାଣ୍ଡକସୁତ ଋଷ୍ୟଶୃଙ୍ଗ ମୁନିବର ।
ଅଛନ୍ତି ଘୋର କାନନେ ଏକାନ୍ତ ସ୍ଥାନର ॥ ୨୯
ଉପାୟ କରଣ ତାଙ୍କୁ ଅଣାଅ ବହନ ।
ସାଦରେ ବସିଣ କର ଶାନ୍ତାରେ ପ୍ରଦାନ ॥ ୩୦
କନ୍ୟା ଲଭି ମୁନିବର ହୋଇବେ ହରଷ ।
ଛୁଟିବ ସେ ଅନାବୃଷ୍ଟି ପାଳବେ ସୁରେଶ ॥ ୩୧
ବ୍ରାହ୍ମଣଙ୍କ ମୁଖୁଁ ଶୁଣି ଏସନ ବଚନ ।
ଚିନ୍ତିଲେ ରୋମପାଦ ହରଷରେ ମନ ॥ ୩୨
କପରି ଆଣିବି ଋଷ୍ୟଶୃଙ୍ଗ ତପୋଧନେ ।
ଏମନ୍ତ ବିଚାରି ଡକାଇବେ ମନ୍ତ୍ରୀଗଣେ ॥ ୩୩
ବୋଲିବେ ଅମାତ୍ୟେ ତୁମ୍ଭେ ସୁଜ୍ଞଙ୍କ ସିଦ୍ଧାଣ ।
ଯେବଣ ଉପାୟ କରି ଋଷ୍ୟଶୃଙ୍ଗେ ଆଣ ॥ ୩୪
ରାଜନ ଆଦେଶ ଶୁଣି ଅମାତ୍ୟ ସକଳ ।
କହିବେ ବିନୟବାଣୀ ଶୁଣ ଅଙ୍ଗେଶ୍ୱର ॥ ୩୫
ଏ' କାର୍ଯ୍ୟ ଅଟଇ ଦେବ ! ଅସାଧ୍ୟ ସାଧନ ।
ବିଭାଣ୍ଡକ ଜାଣିଲେ ହୋଇବେ କମ୍ପମାନ ॥ ୩୬
ମୁନି କୋପ କଲେ କିସ ହେବ ପରିଣତ ।
ତେଣୁ ଆମ୍ଭେ କରଯୋଡ଼ି କରୁଛୁଁ ବିନତ ॥ ୩୭
ଯେ ଉପାୟେ ଏଥକୁ ଆସିବେ ମୁନିବର ।
ସେ ବିଧାନ ବୁଝାଇ କହନ୍ତୁ ନୃପବର ॥ ୩୮
ଯେମନ୍ତ ଉପାୟେ ଋଷ୍ୟଶୃଙ୍ଗ ହେବେ ତୋଷ ।
ଲଭିବ ରାଜନ ! ତ୍ରିଭୁବନେ ପଜ୍ଜୟଷ ॥ ୩୯
ଅମାତ୍ୟ ବଚନେ ରାଜା ହୋଇ ତତପର ।
ପଠାଇବେ ବାରଙ୍ଗନାଗଣେ ବନ ଘୋର ॥ ୪୦

ମୁନି-ମନୋହାରିଣୀ ଜରତୀ ନାମେ ନାରୀ ।
ଆଣିବ ଉପାୟେ ଋଷ୍ୟଶୃଙ୍ଗ ବ୍ରତଚାରୀ ॥ ୪୧
ମୁନି ଆଗମନେ ଇନ୍ଦ୍ର ବରଷିବେ ବାରି ।
ତହୁଁ ରାଜା ସମର୍ପିବେ ଆପଣା ଦୁଲାଳୀ ॥ ୪୨
ଏମନ୍ତେ ଶାନ୍ତାକୁ ପତ୍ନୀରୂପେ ପାଇ ମୁନି ।
ହରଷ ହୋଇ ରମିବେ ରାଜଜେମା ସେନି ॥ ୪୩
ବୋଲନ୍ତି ସୁମନ୍ତ୍ର ଆହେ ଶୁଣ କୋଶଳେଶ !
ଏ' ରୂପେ ଜାମାତା ତବ ହେବେ ମୁନିଈଶ ॥ ୪୪
ସୁସିଦ୍ଧି-ସାଧକ ଯେଣୁ ଋଷ୍ୟଶୃଙ୍ଗ ମୁନି ।
ପୁତ୍ରକାମ ଯଜ୍ଞେ ତାଙ୍କୁ କରିବା ବରଣି ॥ ୪୫
ଅଚିରେ ଲଭିବ ମୁନିପ୍ରସାଦେ କୁମର ।
ସନତ୍କୁମାରେ ଯାହା ଭାଷିଛନ୍ତି ଗିର ॥ ୪୬
କ୍ଷମ ଅପରାଧ ନିବେଦିଲି ଶ୍ରୀଛାମୁର ।
ଏହା ଶୁଣି ହରଷେ ବୋଲନ୍ତି ନୃପବର ॥ ୪୭
ଆହେ ମନ୍ତ୍ରୀବର ! କୁହ ସକଳ ବୃତ୍ତାନ୍ତ ।
କପରି ଅଇଲେ ଅଙ୍ଗଦେଶେ ମୁନିସୁତ ॥ ୪୮
ରାମାୟଣ ଚରିତ ଏ' ଅମୃତ ସମାନ ।
ଭଣଇ ଗୀତରେ ବିପ୍ର ଶ୍ରୀପୁରୁଷୋତ୍ତମ ॥ ୪୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ନବମ ସର୍ଗ ।



# ଦଶମ ସର୍ଗ

## ଋଷ୍ୟଶୃଙ୍ଗଙ୍କ ଆଗମନ ଓ ଶାନ୍ତା ବିବାହ ।

ଦଶରଥ ବାଣୀ ଶୁଣି ଅମାତ୍ୟ ପ୍ରବର ।
କରଯୋଡ଼ି କହେ ଧୀରେ ଶୁଣ ନୃପବର ! ॥ ୧
ରୋମପାଦ ରାଜ୍ୟେ ଋଷ୍ୟଶୃଙ୍ଗ ଆଗମନ ।
କପରି ତା' ସମ୍ଭବିଲା ଶୁଣ ଦେଇ ମନ ॥ ୨
ସକଳ ଚରିତ ତୁମେ କହୁଛି ବୁଝାଇ ।
ଅମାତ୍ୟ ସମ୍ବତେ ଶୁଣ ଅଯୋଧ୍ୟାର ସାଇଁ ॥ ୩
ପୁରୋହିତ ଅମାତ୍ୟେ ଭାଷିଲେ ଅଙ୍ଗନୃପ !
ଯେ ରୂପେ ଆସିବେ ମୁନି ନ ବହିଣ କୋପ ॥ ୪
ସେ ଉପାୟ ଶୀଘ୍ରମ୍ଭରେ କରନ୍ତୁ ଜଣାଣ ।
ସାବଧାନ ହୋଇ ଶୁଣ ଅଙ୍ଗଦେଶ ରାଣ ! ॥ ୫
ଅବଦ୍ଧେ ଆସିବେ ଯେହ୍ନେ ବିଭାଣ୍ଡକ ସୁତ ।
ଶୁଣ ହେ ରାଜନ ! କହୁଁ ତହିଁର ଚରିତ ॥ ୬
କାନନ-ବିହାରୀ ଅଟନ୍ତି ସେ ମୁନିବର ।
ଜାଣିନାହାନ୍ତି ସେ ସଂସାରିକ ବ୍ୟବହାର ୭
ବିଶେଷେ ମନମୋହିନୀ ନାରୀଙ୍କର ମୁଖ ।
ଅନୁଭବ ନାହାନ୍ତି ସେ ଉପଭୋଗ ସୁଖ ॥ ୮
ରୂପଜୀବୀ ନାରୀଗଣେ ଗଲେ ସେ ବନକୁ ।
ଆଣିବେ ଭୁଲାଇ କଷ୍ଟେଁ ମୁନିମାନସକୁ ॥ ୯
ଏଣୁ ଅପସରା ସମ ରମଣୀରତନ ।
ପଠାଇବା ସେ ବନକୁ ଆହେ ଅଙ୍ଗରାଣ ! ॥ ୧୦
ଶୁଣି ଏସନ ବଚନ ରୋମପାଦ ରାୟ ।
ବୋଇଲେ ଅମାତ୍ୟେ କର ସକଳ ଉପାୟ ॥ ୧୧
ଅମାତ୍ୟେ ହକାରି ସେହୁ ରୂପଜୀବୀଗଣେ ।
ପଠାଇଲେ ନାବ ସାଜି ବିଭାଣ୍ଡକ ବନେ ॥ ୧୨

ନଗର ନାଗରୀଗଣ ସାଜ ଦିବ୍ୟ ବେଶ ।
ପଠାଇଲେ ସେ କାନନେ ଯହିଁ ମୁନିଈଶ ॥ ୧୩
ଆଶ୍ରମୁଁ ଅଦୂରେ ରହି ବାରନାରୀଗଣ ।
ମୁନି ଗତାଗତ ଚହିଁ କଲେ ନିରୀକ୍ଷଣ ॥ ୧୪
ସ୍ୱଭାବେ ସୁଧୀର ଋଷ୍ୟଶୃଙ୍ଗ ତପୀବର ।
ତପସ୍ୱାଧ୍ୟାୟେ ଆଶ୍ରମୁଁ ନୁହନ୍ତି ବାହାର ॥ ୧୫
ପିତାଙ୍କ ସମୀପେ ସଦା କରନ୍ତି ନିବାସ ।
ପିତା ତହୁଁ ଆନରେ ନ ଥାଇ ତାଙ୍କ ଆଶ ॥ ୧୬
ତେଣୁ ସେ ତରୁଣମୁନି ଆଶ୍ରମୁଁ ବାହାର ।
ନୋହି ଷଟକର୍ମେ ମଜ୍ଜି ଥା'ନ୍ତି ନିରନ୍ତର ॥ ୧୭
ଜନମ କାଳରୁ ପିତାବିନୁ ଆନ ନର ।
ଦେଖି ନ ଥିଲେ ସେ ଋଷ୍ୟଶୃଙ୍ଗ ତପୀବର ॥ ୧୮
ଦିନେ ହେଲେ ଦେଖି ସେ ନଥିଲେ ନାରୀରୂପ ।
ମନମୋହିନୀ ସୁଶ୍ରୋଣୀ ତରୁଣୀ କଳାପ ॥ ୧୯
ନଗର ଗ୍ରାମ ବିଷୟ ପତ୍ତନ ବିଷୟେ ।
ନଥିଲା ଧାରଣା ତିଳେ ମୁନି ସଦାଶୟେ ॥ ୨୦
କେବଳ ପିତୃବଚନ ପାଳିଥା'ନ୍ତି ସଦା ।
କାନନବିହାରୁଁ ଆନେ ନଥିଲା ଶରଧା ॥ ୨୧
ଏକଦିନେ ଋଷ୍ୟଶୃଙ୍ଗ ଭ୍ରମୁଁ ସେ କାନନ ।
ଦେଖିଲେ ଅଦୂରେ ଛନ୍ତି ରମଣୀରତନ ॥ ୨୨
ମନମୋହନ ବେଶରେ ସୁସଜ୍ଜିତା ହୋଇ ।
ମୋହୁଥିଲେ ମନ ନାନାରସେ ଗୀତ ଗାଇ ॥ ୨୩
ଏକାଳେ ମୁନିକୁମାର ହେଲେ ପରବେଶ ।
ଆଚମ୍ବିତେ ରହିଲେ ବିସ୍ମରି ନିଜ ବାସ ॥ ୨୪
ତହୁଁ ରୂପଜୀବୀଗଣେ ହୋଇ ଉଲ୍ଲସିତ ।
ଚଳିଲେ ମୁନି ସମୀପେ ମନେ ହରଷିତ ॥ ୨୫
ନିକଟେ ପ୍ରବେଶି ମନମୋହିନୀ ନାଗରୀ ।
ଆଚମ୍ବିତେ ନିରେଖିଲେ ନୟନ ଉଭାରି ॥ ୨୬

ସୁରଚକ୍ଷୁ ମିଳନେ ସେ ବିଭାଣ୍ଡକ ସୁତା
ପାସୋରି ଆପଣା ସ୍ଥିତି ହୋଇଲେ ଉଲ୍ଲସିତ ॥ ୨୭
ମନମୋହନମାଏ ଯାଇ ମୁନି ସନ୍ନିଧାନେ ।
ପୁଚ୍ଛନ୍ତି ତାହାଙ୍କୁ ସୁନ୍ଦି କଟାକ୍ଷ କ୍ଷେପଣେ ॥ ୨୮
ଆହେ ତରୁଣ କୁମାର ! କିଏ ତୁମ୍ଭେ କହ ?
ମୁନିକୁମାର ପରାଏ ଦିଶୁଅଛି ଦେହ ॥ ୨୯
କିସ ନାମ ଆଶ୍ରମ ତୁମ୍ଭର କେଉଁ ସ୍ଥାନେ ?
ଏକାକୀ ବୁଲୁଛ କିମ୍ପା ଏ' ନିର୍ଜନବନେ ॥ ୩୦
ଦେଖି ତୁମ୍ଭ ତରୁଣ ବୟସ କାମକାନ୍ତି ।
ପଚାରୁଁ ହେ ମୁନିବର ! କରଣ ବିନତି ॥ ୩୧
ମେଣ୍ଟାଅ ସନ୍ଦେହ ଦେଇ ତବ ପରିଚୟ ।
ଏହା ଶୁଣି କହେ ବିଭାଣ୍ଡକର ତନୟ ॥ ୩୨
ମୋ' ପିତା ଅଟନ୍ତି ମୁନିମଣ୍ଡଳ-ମଣ୍ଡନ ।
ନାମ ବିଭାଣ୍ଡକ ତପକରଣେ ପ୍ରବୀଣ ॥ ୩୩
ନାମ ମୋର ଋଷ୍ୟଶୃଙ୍ଗ ଏ' ବନେ ଆଶ୍ରମ ।
ଏ' ବନେ ବୁଲଇ ମୁହିଁ ସାରି ନିତ୍ୟକର୍ମ ॥ ୩୪
ଅନତିଦୂରେ ଅଛଇ ପବିତ୍ର ଆଶ୍ରମ ।
ନାନାଜାତି ଫଳଫୁଲେ ଦିଶେ ମନୋରମ ॥ ୩୫
ପିତା ତପସ୍ୟାରେ ରତ ତରଙ୍ଗିଣୀ ତୀରେ ।
ଏକାକୀ ରହେ ଆଶ୍ରମେ ନିଃଶଙ୍କ ମନରେ ॥ ୩୬
ମୋ' ଆଶ୍ରମ ପୂତ କର ଦେଇ ପଦଧୂଳି ।
ସୁଦର୍ଶନ ରୂପ ଦେଖି କରେ ନିଜଛାଳି ॥ ୩୭
ପୂଜିବି ଶ୍ରୀପଦେ ଦେଇ ନାନା ପୁଷ୍ପମାନ ।
ସୁବାସିତ ଅର୍ଘ୍ୟଜଳ କରାଇବି ପାନ ॥ ୩୮
ଏମନ୍ତ ଅପୂର୍ବ ରୂପ କେବେହେଲେ ବନେ ।
ଦେଖିନାହିଁ ତେଣୁ ମୁହିଁ ବିସ୍ମରଇ ମନେ ॥ ୩୯
ଅପୂର୍ବ ତପସ୍ୱୀ ତୁମ୍ଭେମାନେ ହେ ସକଳ ।
ତପୋବନେ ଅଇଲଛ ସୁକାନ୍ତି ନିକର ॥ ୪୦

ଆସ ଆସ ମୋ' ଆଶ୍ରମେ ଆହେ ତପିସାଇଁ ।
ପାଦ୍ୟ ଅର୍ଘ୍ୟ ଫଳମୂଳେ ପୂଜିବଇଁ ମୁହିଁ ॥ ୪୧
ଏସନ ବଚନ ଶୁଣି ବାରନାରୀଗଣ ।
ମଣିଲେ ନିଶ୍ଚୟ ହେବ କାମନା ପୂରଣ ॥ ୪୨
ସନମତ କରି ଚଳିଗଲେ ନାରୀବର ।
ପ୍ରବେଶ ହୋଇଲେ ଯାଇ ବିଭଣ୍ଡକ ପୁର ॥ ୪୩
ଫଳପୁଷ୍ପେ ମନୋରମ ଦିଶେ ତପୋବନ ।
ମୂର୍ତ୍ତିମନ୍ତ ତପ ଯହିଁ କରନ୍ତି ବିଶ୍ରାମ ॥ ୪୪
ଆଶ୍ରମେ ମିଳିଲେ ଯହୁଁ ସକଳ ତରୁଣୀ ।
ପାଦ୍ୟଅର୍ଘ୍ୟ ଫଳମୂଳେ ପୂଜିଲେ ସେ ମୁନି ॥ ୪୫
ଘେନାକର ଉପସ୍କର ଆହେ ମୁନୀଶ୍ୱର !
ସୁମିଷ୍ଟ ଭୋଜନେ ତୃପ୍ତ କର ହେ ଉଦର ॥ ୪୬
ଏମନ୍ତ ଭାଷିଣ ଋଷ୍ୟଶୃଙ୍ଗ ମହାମୁନି ।
ତରୁଣୀଗଣେ ଚର୍ଚ୍ଚିଲେ ହୋଇଣ ଦଇନ ॥ ୪୭
ଋଷ୍ୟଶୃଙ୍ଗ ଅଭ୍ୟର୍ଥନା ଘେନ ସେ ତରୁଣୀ ।
ଉତ୍ସୁକ ହୋଇଲେ ଫେରିବାକୁ ଶୀଘ୍ର ପୁଣି ॥ ୪୮
ବିଭଣ୍ଡକ ସମାଗମ ଭୟ ଘେନ ମନେ ।
ପଟସ୍ଥରେ ବସ୍ତ୍ର ସଜଗ ହେଲେ ଛନ୍ନେ ॥ ୪୯
ତଦନ୍ତେ ରମଣୀମଣି ଭାଷିଲେ ହେ ମୁନି !
ଗ୍ରହଣ କର ଏ' ଦ୍ରବ୍ୟ ଆମ୍ଭେ ଅଛୁଁ ଆଣି ॥ ୫୦
ଏମନ୍ତ ବୋଲିଣ ନାନା ସୁମିଷ୍ଟ ଆହାର ।
ଅରପିଲେ ଋଷ୍ୟଶୃଙ୍ଗେ ହୋଇ ତତପର ॥ ୫୧
ପ୍ରସାଦ ବୋଲି ଛଳନା କରି ବାରନାରୀ ।
ଖୁଆଇଲେ ସୁମିଷ୍ଟ ଆହାର କ୍ଷୀର ପୁରୀ ॥ ୫୨
ନାନାଜାତି ସୁମଧୁର ସୁସ୍ୱାଦ ଦରବ ।
ପରଶିଲେ ସ୍ନେହଭରେ ତରୁଣୀ ପୁଙ୍ଗବ ॥ ୫୩
ଭୋଜନ ଅନ୍ତେ ମୁନିଙ୍କି କରି ଆଳିଙ୍ଗନ ।
ବାହୁଡ଼ିଗଲେ ବେଶ୍ୟାଏ ଦେଇ ନିମନ୍ତ୍ରଣ ॥ ୫୪

ସୁମିଷ୍ଟ ଭୋଜନେ ମୁନି ହୋଇ ଆପ୍ୟାୟିତ ।
ଭାବିଲେ ସେଦେଶ ଫଳ କେଡ଼େ ସ୍ୱାଦୁଯୁକ୍ତ ॥ ୫୫
ନବତରୁଣୀଙ୍କ ଅଙ୍ଗ କରି ଆଲିଙ୍ଗନ ।
ଉଲ୍ଲସିତ ହେଲେ ମନେ ତପସ୍ୱୀନନ୍ଦନ ॥ ୫୬
ଭାବିଲେ ଏ' ଉପରୁର ଆମୋଦଦାୟକ ।
ସେଦେଶ ମୁନିଙ୍କ ସଙ୍ଗ ସୌଭାଗ୍ୟଜନକ ॥ ୫୭
ମନେ ମନେ ପୁଲକିତ ହୋଇ ମୁନିବର ।
ନାରୀ ରୂପ ଚିନ୍ତି ହେଲେ ରାତି ଉଜାଗର ॥ ୫୮
ପରଦିନ ପ୍ରଭାତରୁ ତରୁଣ ତପସ୍ୱୀ ।
ଶୀଘ୍ର ଶେଷ କଲେ ସନ୍ଧ୍ୟା ବନ୍ଦନାଦି ବସି ॥ ୫୯
ପିତା ଚଳିଯାନ୍ତେ ନପାନ୍ତରେ ତପକରି ।
ଧାଇଁଲେ ମୁନିକୁମାର ନାରୀରୂପ ସ୍ମରି ॥ ୬୦
ବ୍ୟାକୁଳ ଅନ୍ତରେ ମୁନି ହେଲେ ଉପନୀତ ।
କପଟ ଦେଖିବେ ଛଦ୍ମବେଶୀ ଯୁବାରନ୍ଦ ॥ ୬୧
ଦୂରୁ ଦେଖି ବେଶ୍ୟାଗଣ ଧାଇଁ ଆସି ଖରେ ।
ଆଲିଙ୍ଗିଲେ ମୁନିଙ୍କି ସସ୍ନେହ ପ୍ରେମଭରେ ॥ ୬୨
ମନୋହାରିଣୀ କନ୍ୟାଏ ହୋଇ ଏକମେଳ ।
ହୃଦୟେ ଲଗାଇ ସ୍ନେହଭରେ କଲେ କୋଳ ॥ ୬୩
ତଦନ୍ତେ ଭାଷିଲେ ଆହେ ତପସ୍ୱୀ ପ୍ରବର !
ଅନୁଗ୍ରହ କରି ଅମ୍ଭ ତପସ୍ଥାନେ ଚଳ ॥ ୬୪
ଆଶ୍ରମେ ପୂଜିବୁ ନାନା ଭୋଜ୍ୟ ଫଳମୂଳେ ।
ଚାଲ ହେ ତରୁଣର୍ଷି ! ଶୀଘ୍ର ଆମ୍ଭ ମେଳେ ॥ ୬୫
ରମଣୀଗଣଙ୍କ ମୃଦୁ ସହାସ୍ୟ ବଚନ ।
ନମିଷକେ ଉମୋହିଲ ଋଷ୍ୟଶୃଙ୍ଗ ମନ ॥ ୬୬
ପୁଲକିତ ଅଙ୍ଗେ ବହି ପରମ ହରଷ ।
ଚଳିଲେ ମୁନିକୁମର ହୋଇ ହସ ହସ ॥ ୬୭
ହାସକୌତୁକେ ମୁନିଙ୍କି ମଜ୍ଜାଇ ସରବେ ।
ଅଙ୍ଗଦେଶେ ଘେନଗଲେ ତରୁଣୀଏ ଜବେ ॥ ୬୮

ସେ ଦେଶରେ ପାଦ ଦ୍ୟନ୍ତେ ପିଙ୍ଗ ମୁନିବର ।
ଅଦଭୂତେ ଗଗନେ ଘୋଟିଲ ମେଘମାଳ ॥ ୬୯
ମୂଷଳ ଧାରରେ ବରଷିଲ ଜଳଧାର ।
ତା' ଦେଖି ଶକ୍ତରେ ରୋମପାଦ ନୃପବର ॥ ୭୦
ନଷ୍ଟପ୍ରୟ ଆସିଲେ ମୁନ ବଭାଣ୍ଡକ ସୁତ ।
ନୋହୁଲେ ତୁଅନ୍ତା କାର୍ଣ୍ଣି ଏତେ ଅଦଭୂତ ॥ ୭୧
ପାତ୍ରମନ୍ତ୍ରୀ ଅମାତ୍ୟ ଗହଣେ ନୃପବର ।
ସଙ୍ଗୋଳରେ ମୁନବରେ ହୋଇ ତତପର ॥ ୭୨
ବଦଧ ବାଜଣା ସାଥେ ଶଙ୍ଖ ହୁଳହୁଳ ।
କମ୍ପିଲ ଦଗ ବଦଗ ସୁରଲୋକ ପୁର ॥ ୭୩
ବନପ୍ରେ ବନ୍ଦଲେ ନୃପ ମୁନଙ୍କ ଚରଣ ।
ପାଦ୍ୟ ଅର୍ଘ୍ୟ ବସନ ଭୂଷଣ ଦେଇ ପୁଣ ॥ ୭୪
ବୋଇଲେ ହେ ମୁନବର ! ହୁଅ ସୁପ୍ରସନ୍ନ ।
କୃପାମୟ ! କୃପାକର ଦଅ ବର ଦାନ ॥ ୭୫
ବନବାସୀ ତପୀବର ହୋଇ ସଚକତ ।
ଭବ୍ୟ ସ୍ୱାଗତ ସଜ୍ଜାରେ ହେଲେ ଉଲ୍ଲସିତ ॥ ୭୬
ସବ ନବେଦଲେ କରଯୋଡ଼ ନୃପମଣି ।
ଅନ୍ତଃପୁରେ ଘେନଗଲେ କଗଇ ମଣ୍ଡଣି ॥ ୭୭
ରାଜ ଅନ୍ତଃପୁର ଦେଖି ତପସ୍ୱୀ ପ୍ରବର ।
ମହାନନ୍ଦେ ଉଲ୍ଲସିତ ହୋଇଲ ଅନ୍ତର ॥ ୭୮
ଏସନ ସମୟେ ଲଭି ରାଜାର ଇଙ୍ଗିତ ।
ରାଣୀଗଣେ ଶାନ୍ତା କନ୍ୟା ଆଣିଲେ ତ୍ୱରିତ ॥ ୭୯
ଚନ୍ଦ୍ରମା ବଦନୀ ରାଜକୁମାରୀ ସୁକୁମାରୀ ।
ସଲଜ୍ଜ ନୟନେ ଋଷ୍ୟଶୃଙ୍ଗ ରୂପ ହେରି ॥ ୮୦
ଲମ୍ବାଇଲେ ମୁନଗଳେ ସୁମନସ-ମାଳା ।
ସତେ ଅବା ରତି ଆସି ମଦନେ ବରିଲା ॥ ୮୧
ପୂରିଲା ମଙ୍ଗଳ ରବେ ରାଜ ଅନ୍ତଃପୁର ।
ଶାନ୍ତା ଲଭି ଶାନ୍ତ ଚିତ୍ତ ହେଲେ ମୁନବର ॥ ୮୨

ଆହେ ଧାର୍ମିକ ପ୍ରବର କୋଶଳ ନରେଶ !
ବଖାଣିଲି ଋଷ୍ୟଶୃଙ୍ଗ ଚରିତ ବିଶେଷ ॥ ୮୩
କନ୍ୟା ପ୍ରେମରସେ ମାତି ତପସ୍ୱୀ ପ୍ରବର ।
ସୁଖେ ବଢ଼ଣଲେ ଲୋମପାଦ ରାଜ ଅନ୍ତଃପୁର ॥ ୮୪
ଋଷ୍ୟଶୃଙ୍ଗ ଚରିତ ଏ ପବିତ୍ର ଭାରତୀ ।
ପୁରୁଷୋତ୍ତମ ଭଣଇ ରାମାୟଣ-ଗୀତି ॥ ୮୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଦଶମ ସର୍ଗ ।



# ଏକାଦଶ ସର୍ଗ

## ସପତ୍ନୀକ ଦଶରଥଙ୍କ ଅଙ୍ଗଦେଶ ଗମନ ତଥା ଶାନ୍ତା ଓ ଋଷ୍ୟଶୃଙ୍ଗଙ୍କ ସହିତ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ ।

ଏଥୁ ଅନ୍ତେ ଶୁଣ ଜନେ ଅପୂର୍ବ ଚରିତ ।
ରାଜା ଦଶରଥ ଆଗେ ବୋଇଲେ ସୁମନ୍ତ ॥ ୧
ଶୁଣନ୍ତୁ ରାଜନ ! ସୂର୍ଯ୍ୟବଂଶ-ହିତବାଣୀ ।
ସନତ କୁମାର ମୁଖୁଁ ଯାହା ଅଛୁ ଶୁଣି ॥ ୨
ସେ ଋଷି ପ୍ରବର ଦିନେ ଦେବସଭା ମଧ୍ୟେ ।
କହୁଥିଲେ ଋଷିଗଣେ ପରମ ଆନନ୍ଦେ ॥ ୩
କହିଲେ କୁମାର ଆହେ ଶୁଣ ଋଷିଗଣ !
ଇକ୍ଷ୍ୱାକୁ ବଂଶରେ ଜାତ ଦଶରଥ ରାଣ ॥ ୪
ତାଙ୍କ ଅନ୍ତରଙ୍ଗ ମିତ୍ର ଅଙ୍ଗଦେଶ ରାଜ ।
ପୁତ୍ର କାମନାରେ ତହିଁ ଯିବେ ନୃପରାଜ ॥ ୫
ଜଣାଇବେ ରାଜନରେ ଆପଣା ବୃତ୍ତାନ୍ତ ।
ଶୁଣି ଲୋମପାଦ ରାଜା ହୋଇବେ ହରଷିତ । ୬

ମିତ୍ରର ବଚନେ ଅଙ୍ଗରାଜ ବେଗ ହୋଇ ।
ଶାନ୍ତା ଋଷ୍ୟଶୃଙ୍ଗେ ନିବେଦିବେ ନୃପସାଇଁ ॥ ୭
ଦଶରଥ ରାଜା ଘେନି ଋଷ୍ୟଶୃଙ୍ଗ ମୁନି ।
ହରଷେ ଚଳିବେ ନୃପ ନିଜ ରାଜଧାମ ॥ ୮
ନିବେଦିବେ ମୁନିବରେ ସବୁ ମନୋବ୍ୟଥା ।
ତାହା ଶୁଣି ଯଜ୍ଞ ଆରମ୍ଭିବେ ମହାରଥା ॥ ୯
ମୁନି ପ୍ରସାଦରୁ ରାଜନ ଲଭିବେ ସୁପୁତ୍ର ।
ରାମ ଲକ୍ଷ୍ମଣ ଶତ୍ରୁଘ୍ନ ଆବର ଭରତ ॥ ୧୦
ଏ’ ଚାରି କୁମରେ ଲଭି ରାଜା ଦଶରଥ ।
ପୂରାଇବେ ତ୍ରେତାଯୁଗେ ନିଜ ମନୋରଥ ॥ ୧୧
ହେ ରାଜନ ! ଋଷିଗଣ ଆଗେ ସତ୍ୟଯୁଗେ ।
ସନତ କୁମାର ଯାହା ବୋଇଲେ ସରାଗେ ॥ ୧୨
ସେ ଚରିତ ବଖାଣିଲି ଆହେ ନରନାହା !
ଏଥିକୁ ଉପାୟ କର ସମୁଚିତ ଯାହା ॥ ୧୩
ତଥାପି କହଇ ଶୁଣ ନୃପତି ଶେଖର !
ଋଷ୍ୟଶୃଙ୍ଗଙ୍କୁ ଆଣିବା ଲାଗି ଯତ୍ନ କର ॥ ୧୪
ସ୍ୱୟଂ ଅଙ୍ଗଦେଶେ ଦେବ ! କର ହେ ଗମନ ।
ଅତି ସମ୍ଭ୍ରମେ ଅଣାଅ ବିଭାଣ୍ଡକ-ନାନ ॥ ୧୫
ଶୁଣି ସୁମନ୍ତ୍ର ବଚନ କୋଶଳ-ନରେଶ ।
ସମାଦର କଲେ ସୁମନ୍ତ୍ରରେ ବହୁ ତୋଷ ॥ ୧୬
ପୁରୋହିତ ବଶିଷ୍ଠଙ୍କୁ ନିବେଦି ସକଳ ।
ଆଜ୍ଞା ଘେନି ଦଶରଥ ଗମିଲେ ସତ୍ୱର ॥ ୧୭
ସଙ୍ଗେ ପୁରାଙ୍ଗନା ମନ୍ତ୍ରୀଗଣଙ୍କୁ ଘେନାଇ ।
ଅଙ୍ଗଦେଶେ ଚଳିଲେକ ଅଯୋଧ୍ୟାର ସାଇଁ ॥ ୧୮
ବହୁ ନଦନଦୀ ବନଗିରି ପାର ହୋଇ ।
ଗମିଲେ ସାନନ୍ଦେ ଦଶରଥ ନରସାଇଁ ॥ ୧୯
ରାଜଭବନେ ପ୍ରବେଶ ହେଲେ ଦଶରଥେ ।
ଦେଖିଲେ ମୁନିଙ୍କି ନିଜେ ରୋମପାଦ ସାଥେ ॥ ୨୦

ହୁତାଶନ ସମ ବିଭଣ୍ଡକ ମୁନିବର ।
ହୋଇଲେ ହରଷ ତାଙ୍କୁ ଦେଖି ନୃପବର ॥ ୨୧
ରଜା ରୋମପାଦ ଦେଖି ଉଠିଲେ ସତ୍ୱରେ ।
ପାଦ୍ୟ ଅର୍ଘ୍ୟ ଦେଇ ପୂଜା କଲେ ମିତ୍ରବରେ ॥ ୨୨
ମୁନି କୁମାରଙ୍କୁ ଚାହିଁ ବୋଲେ ଅଙ୍ଗରାଣ ।
ଆହେ ମୁନିପୁତ୍ର ! ଏହୁ କୋଶଳ ରାଜନ ॥ ୨୩
ଅଭିନ୍ନ ମିତ୍ର ଅଟନ୍ତି ମୋର ଦଶରଥ ।
ଜ୍ଞାନ ଗୁଣବଳେ ଏହୁ ଜଗତେ ବିଖ୍ୟାତ ॥ ୨୪
ସତ୍ୟ ଧର୍ମ ପରାୟଣ ଦଶରଥ ରାଜା ।
ଯା' ଚରଣେ ନୃପକୁଳ କରୁଥା'ନ୍ତି ପୂଜା ॥ ୨୫
ସେ ସୌଭାଗ୍ୟବଳେ ମୋର ଅଟନ୍ତି ମିତ୍ର ।
ନିବେଦିଲ ଋଷିପୁତ୍ର ! ତାହାଙ୍କ ଚରିତ ॥ ୨୬
ଏହା ଶୁଣି ଶାନ୍ତା ସହିତରେ ଉଠି ମୁନି ।
ସୁସ୍ୱାଗତ ଜଣାଇଲେ ସସମ୍ମାନ ଘେନି ॥ ୨୭
ଆଦର ସତ୍କାରେ ରାଜା ହୋଇ ଉଲ୍ଲସିତ ।
ଅଙ୍ଗରାଜପୁରେ ବିତାଇଲେ ଦିନ ସାତ ॥ ୨୮
ଅଷ୍ଟମ ଦିବସେ ଏକାନ୍ତରେ ଦଶରଥ ।
ରୋମପାଦେ ଜଣାଇଲେ ସକଳ ଚରିତ ॥ ୨୯
ଆହେ ମିତ୍ରବର ! ଶୁଣ ମୋ' ବିନମ୍ର ଗିର ।
ଆସିଛି ମୁଁ ଯେ କାରଣେ କହଇ ସକଳ ॥ ୩୦
ପରମ ଯଜ୍ଞ ସାଧନେ କଳିଛି ମାନସ ।
ସେ କାରଣୁଁ ଆସିଅଛି ଆହେ ନୃପେଶ୍ୱର ! ॥ ୩୧
ସଦୟା କରଣ ଶାନ୍ତା ସହିତ ଆଦର ।
ଆଜ୍ଞା ଦିଅ ଋଷ୍ୟଶୃଙ୍ଗେ ନେବି ନିଜ ପୁର ॥ ୩୨
ଶୁଣି ଏ' ବଚନ ମିତ୍ରବର ରୋମପାଦ ।
ନିବେଦିଲେ ଋଷ୍ୟଶୃଙ୍ଗେ ସକଳ ସମ୍ବାଦ ॥ ୩୩
ହେ ଋଷିତନୟ ! ଶୁଣ ମୋହର ବଚନ ।
ଦଶରଥ ନୃପ ଆସିଛନ୍ତି ଯେ କାରଣ ॥ ୩୪

ଶାନ୍ତା ସହିତରେ ତୁମ୍ଭେ ଚଳ ଅଯୋଧ୍ୟାକୁ ।
କରିବ କଲ୍ୟାଣ ବତ୍ସ ! କୋଶଳ ନୃପଙ୍କୁ ॥ ୩୫
ଶ୍ୱଶୁରଙ୍କ ଠାରୁ ଶୁଣି ବିନୟ ବଚନ ।
'ତଥାସ୍ତୁ' ବୋଇଲେ ଋଷ୍ୟଶୃଙ୍ଗ ତପୋଧନ ॥ ୩୬
ମୁନିଙ୍କ ଆଗ୍ରହ ଜାଣି ଅଯୋଧ୍ୟା ନରେଶ ।
ରୋମପାଦେ ଜଣାଇଲେ ହୋଇଣ ହରଷ ॥ ୩୭
ଆହେ ମିତ୍ରବର ! ଆଜ୍ଞା ଦିଅ ତୋଷମନେ ।
ଦୁହିତା ଜାମାତା ଘେନି ଯିବି ମୁଁ ଭୁବନେ ॥ ୩୮
ତବ ଜାମାତାଙ୍କ ହେତୁ ହେବ ଭାଗ୍ୟବାନ ।
ତାଙ୍କ କଲ୍ୟାଣୁଁ ଲଭିବ କୁଳର ନନ୍ଦନ ॥ ୩୯
ତହୁଁ ରାଜା ରୋମପାଦ ମୋଦମଗ୍ନ ଚିତ୍ତେ ।
ଆଲିଙ୍ଗିଲେ ସମାଦରେ ନୃପ ଦଶରଥେ ॥ ୪୦
ଦୁହେଁ କୋଳାକୋଳ ହୋଇ ଘେନିଲେ ବିଦାୟ ।
ବାହୁଡ଼ିଲେ ନିଜ ପୁରେ ଅଙ୍ଗଦେଶ ରାୟ ॥ ୪୧
ତହୁଁ ନୃପ ଦଶରଥ ଶୀଘ୍ରଗାମୀ ରଥେ ।
ପଠାଇଲେ ବେଗ କରି ଅଯୋଧ୍ୟାକୁ ଦୂତେ ॥ ୪୨
ବୋଇଲେ ହେ ଦୂତେ ! ଯାଇ କହ ସୁମନ୍ତ୍ରରେ ।
ମଣ୍ଡଣି କରିବେ ଶୀଘ୍ର ଅଯୋଧ୍ୟା ନଗରେ ॥ ୪୩
ଅଯୋଧ୍ୟା ନଗରୀ ମଧ୍ୟେ ଯେତେ ରାଜପଥ ।
ପରିଷ୍କାର ପରିଚ୍ଛନ୍ନେ ହେବ ସୁରଭିତ ॥ ୪୪
ପ୍ରତି ପୁରଦ୍ୱାରେ ପୂର୍ଣ୍ଣକୁମ୍ଭ ବସାଇବ ।
ଅତି ଯତନେ ଅଯୋଧ୍ୟାପୁର ମଣ୍ଡାଇବ ॥ ୪୫
ଧ୍ୱଜ ଚିସଳରେ ହେବ ସର୍ବସ୍ୱ ସଜ୍ଜିତ ।
ଶୃଙ୍ଗାଟକେ ମଣ୍ଡିବ ତୋରଣ ଶତ ଶତ ॥ ୪୬
ନୃପ ଆଗମନ ବାଣୀ ଶୁଣି ପୁରଜନ ।
ମଣ୍ଡାଇଲେ ଅଯୋଧ୍ୟାକୁ କରି ଶୋଭାବନ ॥ ୪୭
ଏଥୁ ଅନନ୍ତରେ ଶୁଣ ସୁଜାଣ ସିହାଣ ।
ପ୍ରବେଶିଲେ ଅଯୋଧ୍ୟାରେ ଦଶରଥ ରାଣ ॥ ୪୮

ଶଙ୍ଖ ଦୁନ୍ଦୁଭି ଶବଦେ ପୂରିଲା ଆକାଶ ।
ହୁଳହୁଳି ଦେଲେ ପୁରନାରୀ ହୋଇ ତୋଷ ॥ ୪୯
ପଥପ୍ରାନ୍ତେ ଅଯୋଧ୍ୟାର ପରଜା ସକଳ ।
ଜୟହୋଇ ସଙ୍ଖୋଳିଲେ କରି ବାଦ୍ୟରୋଳ ॥ ୫୦
କମ୍ପିଲା ଅଯୋଧ୍ୟା ନଗ୍ର ଜନ କୋଳାହଳେ ।
ମୁନି ସଙ୍ଗେ ଯେନି ନୃପ ପ୍ରବେଶ ନଗରେ ॥ ୫୧
ପୁରବାସୀଗଣେ ଦେଖି ମୁନିଙ୍କ ବଦନ ।
ଆନନ୍ଦ ସାଗରେ ସର୍ବେ ହେଲେ ମୋଦମଗ୍ନ ॥ ୫୨
ପୂର୍ବେ ଯେହ୍ନେ ଇନ୍ଦ୍ର ସଙ୍ଗେ ଦେଖିଣ ବାମନ ।
ହରଷିତ ହୋଇଥିଲେ ସ୍ୱର୍ଗବାସୀଗଣ ॥ ୫୩
ତେମନ୍ତ ପ୍ରକାରେ କରି ମୁନି ପାଦପୂଜା ।
ଯେସନେ ବାମନେ ପୂଜିଥିଲେ ସୁରରାଜା ॥ ୫୪
ସାଦରେ ପାଶ୍ଚେଟି ତାଙ୍କୁ ଦଶରଥ ନୃପ ।
ଋଷ୍ୟଶୃଙ୍ଗେ ନେଲେ ଅନ୍ତଃପୁରର ସମୀପ ॥ ୫୫
ଅନ୍ତଃପୁରୁ ବାହାର ହୋଇଲେ ସର୍ବ ରାଣୀ ।
ହୁଳହୁଳି ଦେଇ ବନ୍ଦାଇଲେ ମହାମୁନି ॥ ୫୬
ଶାନ୍ତା ସହିତେ ମୁନିଙ୍କି ବହୁ ସମାଦରେ ।
ରଖାଇଲେ ଅନ୍ତଃପୁରେ ପୂଜି ଉପଚାରେ ॥ ୫୭
ସୁଭୋଜନ ପାନେ ତରଟିଲେ ନାରୀଗଣ ।
ଆନନ୍ଦ ଉତ୍ସବେ ମୋହିଲେ ସେ ମୁନିମନ ॥ ୫୮
ଶାନ୍ତ ଚିତ୍ତେ ଶାନ୍ତା ବିହରିଲେ ପତି ସଙ୍ଗେ ।
ସୁସଜ୍ଜିତ ଅଯୋଧ୍ୟା ନବରେ ରଙ୍ଗ ରଙ୍ଗେ ॥ ୫୯
ଅନ୍ତଃପୁରବାସିମାଙ୍କ ପାଇଣ ଆଦର ।
ସନ୍ତୋଷ ଲଭିଲେ ଋଷ୍ୟଶୃଙ୍ଗ ମୁନିବର ॥ ୬୦
ରାଜାଙ୍କ ଆତିଥ୍ୟ ତୋଷ ହୋଇ ମୁନିସୁତ ।
ଶାନ୍ତା ସହିତେ ହୋଇଲେ ପ୍ରମୁଦିତ ଚିତ୍ତ ॥ ୬୧
ଆନନ୍ଦ ଉଲ୍ଲାସେ ଅଯୋଧ୍ୟାର ନରନାରୀ ।
ଗାଇଲେ ମୁନିଙ୍କ ଯଶ ବଦନେ ଉଚ୍ଚାରି ॥ ୬୨

ସେ ବ୍ରହ୍ମମୁନି ଚରଣେ ପ୍ରଣମି ସତତ ।
ପୁରୁଷୋତ୍ତମ ରଚଇ ରାମାୟଣ ଗୀତ ॥ ୬୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକାଦଶ ସର୍ଗ ।



# ଦ୍ୱାଦଶ ସର୍ଗ

## ପୁତ୍ରେଷ୍ଟି ପାଇଁ ଦଶରଥଙ୍କ ପ୍ରସ୍ତାବ ତଥା ମୁନିମାନଙ୍କ ଅନୁଜ୍ଞାରେ ଯଜ୍ଞର ଆୟୋଜନ ।

ଏଥୁ ଅନନ୍ତରେ ଶୁଣ ଆହେ ସୁଜ୍ଞଜନ !
ସୁମଙ୍ଗଳେ ବସନ୍ତ ଋତୁର ଆଗମନ ॥ ୧
ରାଜା ଦଶରଥ ପୁତ୍ର ପ୍ରାପ୍ତି କାମନାରେ ।
ପୁତ୍ରେଷ୍ଟି କରଣେ ମୁନିଗଣେ ନିବେଦିଲେ ॥ ୨
ମୁନିଗଣ ପ୍ରସ୍ତାବେ କୋଶଳ ନରରାଣ ।
ଋଷ୍ୟଶୃଙ୍ଗେ ହୋତା ପଦେ କଲେ ବରଣ ॥ ୩
ଦେବୋପମ ସୁପୁରୁଷ ବଶିଷ୍ଠଙ୍କ ସୁତ ।
ତାଙ୍କ ଶ୍ରୀଚରଣ ତଳେ କରି ଦଣ୍ଡବତ ॥ ୪
ବୋଇଲେ ଅଯୋଧ୍ୟାନାଥ ଶୁଣ ମୁନିବର !
ଯଜ୍ଞ କରିବାକୁ ଇଚ୍ଛା ବଳଇଛି ମନର ॥ ୫
ପୁତ୍ରକାମରେ ସୁଯଜ୍ଞେ ପୂଜିବି ଯଜ୍ଞେଶ ।
ଋତ୍ୱିଜ ପଣେ ବରୁଛି ବଶିଷ୍ଠଙ୍କ-ଶିଷ ॥ ୬
ତବ ପ୍ରସାଦୁ ଲଭିବି ତନୟ-ରତନ ।
କପରି ହେବ ଏ' ଯଜ୍ଞ କୁହ ତପୋଧନ ! ॥ ୭
ନୃପଙ୍କ ବଚନ ଶୁଣି ଦଶରଥଙ୍କର ।
ବୋଲନ୍ତି ବ୍ରହ୍ମର୍ଷି ଋଷ୍ୟଶୃଙ୍ଗ ମୁନିବର ॥ ୮

ଚିନ୍ତା ନ କର ହେ କୋଶଳେଶ ଦଶରଥ !
ଯଜ୍ଞ କରି ପୂରିବ ତବ ମନୋରଥ ॥ ୯
ସରଯୂ ଉତ୍ତରତଟେ କର ଯଜ୍ଞଶାଳେ ।
ସଜ୍ଜିତ ଘୋଟକ ଭ୍ରମି ଆସୁ ଭୂମଣ୍ଡଳେ ॥ ୧୦
ମୁନି-ବିପ୍ରଗଣେ ଶୀଘ୍ର ଦିଅ ନିମନ୍ତ୍ରଣ ।
ଅବିଳମ୍ବେ ଯଜ୍ଞଦ୍ରବ୍ୟ କର ଆୟୋଜନ ॥ ୧୧
ମୁନିଙ୍କ ବଚନ ଶୁଣି ଅଯୋଧ୍ୟାନରେଶ ।
ସୁମନ୍ତ୍ରେ ଡକାଇ ଜଣାଇଲେ ଏ' ଆଦେଶ ॥ ୧୨
ଆହେ ମନ୍ତ୍ରୀବର ! ଧୀରେ ଶୁଣ ମୋ' ବଚନ ।
ନିମନ୍ତ୍ରଣ ଦେଇ ଆଣ ସୁବେଦଜ୍ଞ ବ୍ରାହ୍ମଣ ॥ ୧୩
ତପସିଦ୍ଧ ଯୋଗିଗଣେ ଦିଅ ନିମନ୍ତ୍ରଣ ।
କାଶ୍ୟପ ଜାବାଳି ଆଦି ସର୍ବ ମୁନିଗଣ ॥ ୧୪
ବାମଦେବ ସୁଯଜ୍ଞଙ୍କୁ କର ହେ ବରଣ ।
କୁଳଗୁରୁ ବଶିଷ୍ଠଙ୍କୁ ଜଣାଅ ବହନ ॥ ୧୫
ଶୁଣି ରାଜନ ବଚନ ସୁମନ୍ତ୍ର ସଧୀରେ ।
ଡକାଇ ଆଣିଲେ ଅବିଳମ୍ବେ ମୁନିବରେ ॥ ୧୬
ପାଦ୍ୟ ଅର୍ଘ୍ୟ ଦେଇ ପୂଜିଲେକ ମୁନିଗଣେ ।
ଦଶରଥ ରାଜା ଅତି ହରଷିତ ମନେ ॥ ୧୭
ଆସନେ ବସାଇ ଋଷିଗଣେ ନୃପସାଇଁ ।
ବୋଲନ୍ତି ସଧୀରେ ଶୁଣ ତପସ୍ୱୀ ଗୋସାଇଁ ॥ ୧୮
ପୁତ୍ର କାମନାରେ କରୁଛି ଏ' ଆୟୋଜନ ।
ସମ୍ପନ୍ନ ଆଣିଛି ଏଥି ବିଭିଣ୍ଡକ ନାନ ॥ ୧୯
ତାଙ୍କ ନିର୍ଦ୍ଦେଶେ ହୋଇବ ପୁତ୍ରକାମ ଯାଗ ।
ଯଜ୍ଞ ପୁରୁଷ ପ୍ରସାଦେ ଲଭିବ ସୌଭାଗ୍ୟ ॥ ୨୦
ତେଣୁ ଆହେ ଯୋଗେଶ୍ୱର ! ତପସ୍ୱୀ ପ୍ରବର !
ଯଜ୍ଞସମ୍ପାଦନେ ଆଉ ବିଳମ୍ବ ନ କର ॥ ୨୧
ପୁତ୍ର ବିହୀନେ ମୋ' ପ୍ରାଣ ହେଉଛି ଅସ୍ଥିର ।
ଋଷ୍ୟଶୃଙ୍ଗ ଯୋଗୁଁ ମନସ୍ତାପ ହେବ ଦୂର ॥ ୨୨

ରାଜାଙ୍କ ବଚନ ଶୁଣି ସର୍ବ ମୁନିଗଣ ।
'ସାଧୁ' 'ସାଧୁ' ବୋଲି ମୁଖେ କଲେ ଉଚ୍ଚାରଣ ॥ ୨୩
ସକଳ ଋଷିଏ ମିଳି ବୋଇଲେ ରାଜନ !
ଅବିଳମ୍ବେ ଯଜ୍ଞଶାଳା କରାଅ ନିର୍ମାଣ ॥ ୨୪
ଅଶ୍ୱମେଧ ତୁରଙ୍ଗମେ କରାଇ ପ୍ରେରଣ ।
ସକଳ ଯଜ୍ଞ-ସମ୍ଭାର କର ଆୟୋଜନ ॥ ୨୫
ସୁଯଜ୍ଞ ପ୍ରସାଦୁ ମନସ୍କାମ ପୂର୍ଣ୍ଣହେବ ।
ଯଜ୍ଞେଶ ପ୍ରସାଦୁ ସୁରତନୟ ଲଭିବ ॥ ୨୬
ଧର୍ମ ଅର୍ଥ କାମ ମୋକ୍ଷ ଗତି ଦାତା ଯେହୁ ।
ତବ ମନୋରଥ ପୂର୍ଣ୍ଣ କରାଇବେ ସେହୁ ॥ ୨୭
ଧାର୍ମିକ ବରିଷ୍ଠ ଅଟ ଆହେ ନରେଶ୍ୱର !
ପୂର୍ଣ୍ଣହେବ ଅଭିଳାଷ ଅବଶ୍ୟ ତୁମ୍ଭର ॥ ୨୮
ଶୁଣି ଅମୃତ ସମାନ ମୁନିଙ୍କ ବଚନ ।
ଆଦେଶିଲେ ମନ୍ତ୍ରୀଗଣେ ଅଯୋଧ୍ୟା ରାଜନ ॥ ୨୯
ଆହେ ମନ୍ତ୍ରୀବର ! ଶୁଣ ବଚନ ମୋହର ।
ମୁନିଙ୍କ ଆଦେଶେ ଦ୍ରବ୍ୟ ଆୟୋଜନ କର ॥ ୩୦
ସୁରକ୍ଷିତ ଘୋଟକକୁ କର ହେ ପ୍ରେରଣ ।
ସଙ୍ଗେ ସୁଭଟ କରନ୍ତୁ ତା'ର ସଂରକ୍ଷଣ ॥ ୩୧
ବିଘ୍ନଶାନ୍ତି କରାଅ ଅଚିରେ ମନ୍ତ୍ରୀଗଣ !
ଯଥା ବିଧି ବିଧାନରେ ଯଜ୍ଞ ହେବ ପୂର୍ଣ୍ଣ ॥ ୩୨
ଆହେ ସୁଧୀର ବିବେକୀ ମନ୍ତ୍ରୀଗଣେ ! ଶୁଣ ।
ଶୁଭକାର୍ଯ୍ୟେ ଛିଦ୍ର ଅନ୍ୱେଷଣେ ଯେ କାରଣ ॥ ୩୩
ସେ ବ୍ରହ୍ମରାକ୍ଷସେ ଦେଇ ବଳିଭୋଜମାନ ।
ଶୁଭ ମୁହୂର୍ତ୍ତେ କରାଅ ପୁଣ୍ୟାହବାଚନ ॥ ୩୪
ବିଧିହୀନ ହେଲେ ଯଜ୍ଞ ନାଶ ହେବ କର୍ତ୍ତା ।
ଏଥକୁ ବିଚାର କରି ଆହେ ସାମରଥା ॥ ୩୫
ଗୁଣଜ୍ଞ ସୁବୁଦ୍ଧିମନ୍ତ ସୁବିଜ୍ଞ ଆପଣ ।
ବିଧିପୂର୍ବ କରି ଯଜ୍ଞ କର ଆୟୋଜନ ॥ ୩୬

ଶୁଣି ଏ' ବଚନ ମନ୍ତ୍ରୀଗଣେ ତତପର ।
ବୋଇଲେ ହେ ନୃପ ! କିଛି ଚିନ୍ତାହିଁ ନକର ॥ ୩୭
ନିର୍ବିଘ୍ନେ ହୋଇବ ତବ ଯଜ୍ଞ ସମ୍ପାଦନ ।
ଯଜ୍ଞେଶ୍ୱର ବିଷ୍ଣୁ ସ୍ୱୟଂ କରିବେ କଲ୍ୟାଣ ॥ ୩୮
ତଦନ୍ତେ ତପସ୍ୱୀଗଣେ ପ୍ରଶଂସି ରାଜାରେ ।
ଚଳିଗଲେ ହରଷିତ ମନେ ଆଶ୍ରମରେ ॥ ୩୯
ଅମାତ୍ୟେ ବୁଝାଇ ସବୁ ଅଯୋଧ୍ୟା ନରେଶ ।
ଶୀଘ୍ର ଯାଇ ଅନ୍ତଃପୁରେ ହୋଇଲେ ପ୍ରବେଶ ॥ ୪୦
କରୁଣା ବରୁଣାଳୟ ପ୍ରଭୁ ଭଗବାନ ।
ତାଙ୍କ ଶ୍ରୀପଦ୍ମରେ ଏକମନେ କର ଧ୍ୟାନ ॥ ୪୧
ମୈତ୍ରେୟ କୁଳଭୂଷଣ ସୁବେଦୀ ବ୍ରାହ୍ମଣ ।
ପୁରୁଷୋତ୍ତମ ଦ୍ୱିଜନମ୍ରେ ଗାଏ ରାମାୟଣ ॥ ୪୨

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଦ୍ୱାଦଶ ସର୍ଗ ।



# ତ୍ରୟୋଦଶ ସର୍ଗ

## ରାଜା ଦଶରଥଙ୍କ ଯଜ୍ଞଦୀକ୍ଷା ଗ୍ରହଣ ।

ଆହେ ସୁଜ୍ଞଜନେ ! ଶୁଣ ଅପୂର୍ବ ଚରିତ ।
ଯଜ୍ଞ ଆୟୋଜନ ସବୁ ହେଲା ସମାପତ ॥ ୧
ଦ୍ୱାଦଶମାସ ପୂରିଲା ଯଜ୍ଞ ଆୟୋଜନେ ।
ସେ ଉତ୍ତାରୁ ଦଶରଥ ବିଚାରିଲେ ମନେ ॥ ୨
ସମୁଚିତ ଦୀକ୍ଷାକାଳ ଆସି ଉପସ୍ଥିତ ।
ହେବାରୁ ରାଜନ ମନେ ହୋଇଲେ ହୃଷିତ ॥ ୩

ରାଜ-କୁଳ-ପୁରୋହିତ ବଶିଷ୍ଠ ଆଶ୍ରମେ ।
ପ୍ରବେଶି ନୃପତିମଣି ହରଷିତ ମନେ ॥ ୪
ମୁନିଙ୍କ ପଦ୍ମରେ ପୂଜି ଅଯୋଧ୍ୟା ନରେଶ ।
ବୋଲନ୍ତି ବିନୟେ ଶୁଣ ଆହେ ତପୀଶ୍ୱର ॥ ୫
ଶାସ୍ତ୍ର ବିଧିମତେ ସବୁ ଯଜ୍ଞର ବିଧାନ ।
କରିଅଛୁ ହେ ମୁନୀଶ ! ଯତ୍ନେ ଆୟୋଜନ ॥ ୬
ବେଦବିଧାନେ କରାଅ ଯଜ୍ଞ ମୁନିବର !
ଅବିଘ୍ନେ ସମାପ୍ତ ହେଉ ଏ' ଯଜ୍ଞ ମୋହର । ୭
ଯଜ୍ଞଅଶ୍ୱ ସଂରକ୍ଷଣେ କରାଅ ବିଧାନ ।
ବ୍ରହ୍ମରାକ୍ଷସ କୁଦୃଷ୍ଟି କର ନିବାରଣ ॥ ୮
ପରମ-କଲ୍ୟାଣକାଂକ୍ଷୀ ସୁହୃଦ ସୁଜାଣ ।
ରାଜକୁଳ ହିତେ ଯଜ୍ଞ କର ସମାଧାନ ॥ ୯
କୁଶଳ ବିଦ୍ୱାନ ପୁଣି ସିଦ୍ଧ ତପୀପଣେ ।
ସୁଯୋଗ୍ୟ ଅଟ ହେ ମୁନି ! ସବୁ ଋଷିଗଣେ ॥ ୧୦
ତେଣୁ ମୋ ଯଜ୍ଞର ଭାର କର ହେ ଗ୍ରହଣ ।
ତବ ପ୍ରସାଦୁ ହୋଇବ ଯଜ୍ଞ ସମାପନ ॥ ୧୧
ଶୁଣି ରାଜାଙ୍କ ମୁଖରୁ ଏସନ ବଚନ ।
ବୋଲନ୍ତି ହରଷ ମନେ ବ୍ରହ୍ମାଙ୍କ ନନ୍ଦନ ॥ ୧୨
ଯାହା ତୁମ୍ଭେ ବୋଇଲ ହେ ଅଯୋଧ୍ୟା ରାଜନ !
କରିବି ମୁଁ ଅନୁରୂପ ତବ କାର୍ଯ୍ୟମାନ ॥ ୧୩
ଏଥୁଅନ୍ତେ ଶୁଣ ଜନେ ଅପୂର୍ବ ଚରିତ ।
ବଶିଷ୍ଠ ଆରମ୍ଭ କଲେ ସବୁ ଯଜ୍ଞକୃତ୍ୟ ॥ ୧୪
ଯଜ୍ଞ କରଣେ ନିପୁଣ ସୁବେଦୀ ବାହ୍ମଣ ।
ଶିଳ୍ପଶାସ୍ତ୍ରରେ ଅଭିଜ୍ଞ ଯେଉଁ ଶିଳ୍ପୀଗଣ ॥ ୧୫
ଯଜ୍ଞକାର୍ଯ୍ୟେ ସେବାକାଂକ୍ଷୀ ଯେ ଧାର୍ମିକ ଜନ ।
ଜ୍ୟୋତିଷ ପାଚକ ମାଳାକାର ଯେ ନିପୁଣ ॥ ୧୬
ସଭିଙ୍କି ଡକାଇ ଆଣି ବଶିଷ୍ଠ ଭୂଦେବ ।
ବୋଇଲେ ଆରମ୍ଭ ଯଜ୍ଞକର୍ମ ମିଳି ସବୁ ॥ ୧୭
ଅଯୋଧ୍ୟା ନରେଶ ଆଜ୍ଞା ପାଳ ହେ ବହନ ।
ସବୁଶୁଭେ କର ଯଜ୍ଞବିଧି ଆୟୋଜନ ॥ ୧୮

ଯେ ଯେଉଁ କର୍ମେ ନିପୁଣ ଅଛ ହେ ସକଳ ।
ଅବିଳମ୍ବେ ସେ କାର୍ଯ୍ୟରେ ସମ୍ପାଦନ କର ॥ ୧୯
ବଶିଷ୍ଠ ବଚନେ ଯଜ୍ଞକର୍ମେ ସୁନିପୁଣ ।
ଯଜ୍ଞଶାଳା ନିର୍ମାଣିଲେ ମିଳି ଶିଳ୍ପୀଗଣ ॥ ୨୦
ଯଜ୍ଞ ଗୃହାଦି ନିର୍ମାଣେ ହୋଇଣ ତତ୍ପର ।
ଇଷ୍ଟକାଦି ଆଣି ଯତ୍ନେ ଆରମ୍ଭିଲେ ପୁର ॥ ୨୧
ଅତିଥି ବ୍ରାହ୍ମଣ ଋଷି ରାଜ-ମିତ୍ରଗଣ ।
ଭଣ୍ଡାର ପାଚନଶାଳା ଆଦି ଯେତେ ସ୍ଥାନ ॥ ୨୨
ଗୋଟି ଗୋଟି କରି ସବ ନିର୍ମାଣିଲେ ପୁର ।
ଅତି ଯତନରେ କଲେ ମଣ୍ଡିଣି ସଭ୍ୱର ॥ ୨୩
ସୁଦୃଢ଼ ସୁମନୋହର ଆବର ବଣାଳ ।
ଶୀତାତପ ବର୍ଷା ପ୍ରଭଞ୍ଜନେ ଯେ ସୁସ୍ଥିର ॥ ୨୪
ପୁରଜନ ବନ୍ଧୁଜନ ଆବର ମଉଡ ।
ସଭଙ୍କ ପାଇଁ ଗଢ଼ିଲେ ପୁର ଶତଶତ ॥ ୨୫
ଗଜ ବାଜ ଶାଳା ପୁଣ ସୈନିକ ଶିବିର ।
ଅତି ଯତ୍ନେ ନିର୍ମାଣିଲେ ଶିଳ୍ପୀ ଧୁରନ୍ଧର ॥ ୨୬
ସକଳ ପୁରେ ସଞ୍ଚିଲେ ନାନା ଦ୍ରବ୍ୟମାନ ।
ଭୋଜନ ପାନାଦି ଯେତେ ଦ୍ରବ୍ୟ ପ୍ରସାଧନ ॥ ୨୭
ନଗରବାସୀଙ୍କ ମନୋବାଞ୍ଛିତ ଭୋଜନେ ।
ପାନ ପ୍ରସାଧନ ଦ୍ରବ୍ୟ ରଖିଲେ ଯତନେ ॥ ୨୮
ସଭଙ୍କ ତରସ୍ତ ଲାଗି ସୁଯୋଗ୍ୟ ସେବକ ।
ଖଞ୍ଜିଦେଲେ ପ୍ରତିପୁରେ ହୋଇଣ ନିର୍ଭୀକ ॥ ୨୯
ବୋଲନ୍ତି ଋଷି ବଶିଷ୍ଠ କର୍ମକାରେ ସର୍ବେ ।
ଶୁଣ ହେ ପୁରୁଷବର ! ଯାହା ବୋଲେ ମୁହିଁ ॥ ୩୦
ସରବେ କୁଶଳ କର୍ମେ ଅଛ ସୁନିପୁଣ ।
ଯଥାଯୋଗ୍ୟ କାର୍ଯ୍ୟ ଏବେ କର ଆୟୋଜନ ॥ ୩୧
ସକଳେ ସନ୍ତୁଷ୍ଟ ହେବେ ଯେସନେ ଭୋଜ୍ୟ-ପାନେ ।
ସେ ରୂପେ ବ୍ୟବସ୍ଥା କର ହେ ସେବକଜନେ ॥ ୩୨

ମୁନି ବଶିଷ୍ଠଙ୍କ ମୁଖୁଁ ଶୁଣି ଏଡୁ ଗିର ।
ସକଳେ ବୋଇଲେ ଧୀରେ ଯୋଡ଼ି ବେନିକର ॥ ୩୩
ଆହେ ଦେବ ବ୍ରହ୍ମର୍ଷି ! ଶୁଣ ଆମ୍ଭ ଗିର ।
ଆଜ୍ଞା ଯା' ଦିନ୍ତଲେ ସର୍ବ ପାଳିବୁ ସତ୍ୱର ॥ ୩୪
ଯଥା ବିଧାନରେ ସମ୍ପାଦିବୁ ସର୍ବବିଧି ।
ଅବିଘ୍ନେ ହୋଇବ କର୍ମ ନ ହେବ ଅବିଧି ॥ ୩୫
ସଫଳ ହୋଇବ ଯଜ୍ଞ ନ ଭାଳ ହେ ମୁନି !
ଏଂତ ବୋଲି କର୍ମକାରେ ହୋଇଲେ ମଗନ ॥ ୩୬
ଶୁଣି ସଭଙ୍କ ବଚନ ବଶିଷ୍ଠ ପ୍ରବର ।
ଡକାଇ ସୁମନ୍ତ୍ରେ ବୋଇଲେ ହେ ମନ୍ତ୍ରୀବର ! ॥ ୩୭
ବରଗି ଦୂତଙ୍କୁ ଚଞ୍ଚଳେ ହେ ସୁଧୀର !
ନୃପ-ବ୍ରହ୍ମର୍ଷି-ବିପ୍ରଙ୍କୁ ନିମନ୍ତ୍ରଣ କର ॥ ୩୮
ଆବର ଯେତେକ କ୍ଷତ୍ରି ବୈଶ୍ୟ ଶୂଦ୍ରଗଣ ।
ଯେମାନେ ଅଟନ୍ତି ଯଜ୍ଞକର୍ମେ ସୁନିପୁଣ ॥ ୩୯
ସଭିଙ୍କି ସାଦରେ ଯଜ୍ଞେ କର ନିମନ୍ତ୍ରଣ ।
ଅବିଘ୍ନେ ହୋଇବ ଯେହ୍ନେ ଯଜ୍ଞ ସମ୍ପାଦନ ॥ ୪୦
ଶୂର ବୀର ମହାଭାଗ ମିଥିଳା ନରେଶ ।
ସୁଧାର୍ମିକପଣେ ଯା'ର ପ୍ରକଟେ ସୁଯଶ ॥ ୪୧
ଆବର ଅଟନ୍ତି ସେହୁ ସୂର୍ଯ୍ୟବଂଶ ମିତ୍ର ।
ମହାମନା ସତ୍ୟବାଦୀ ପବିତ୍ର ଚରିତ୍ର ॥ ୪୨
ତାଙ୍କ ନିମନ୍ତ୍ରଣେ ସ୍ୱୟଂ କର ହେ ଗମନ !
ଯେମନ୍ତେ ହୋଇବ ତାଙ୍କ ଶୁଭ ଆଗମନ ॥ ୪୩
ଆବର ଅଟନ୍ତି ରାଜମିତ୍ର କାଶୀଈଶ ।
ସଦାବ୍ରତ ସୁଧାର୍ମିକ ଅକଳଙ୍କ ଯଶ ॥ ୪୪
ପୂରିଛି ଯାହାଙ୍କ ଧରାତଳେ ଆହେ ବୀର !
କାଶୀପୁରେ ତୁମ୍ଭେ ଯାଇ ନିମନ୍ତ୍ରଣ କର ॥ ୪୫
କେକୟଦେଶ ରାଜନ ଅଟନ୍ତି ସୁଜ୍ଞାନୀ ।
କୈକେୟୀରାଣୀଙ୍କ ପିତା ତେଣୁ ପୂଜ୍ୟ ପୁଣି ॥ ୪୬

ପରମ ଧାର୍ମିକ ବୃଦ୍ଧ ଆଉର ସୁଶୀଳ ।
ସପୁତ୍ରେ ଆଣିବ ତାଙ୍କୁ ଆହେ ମନ୍ତ୍ରୀବର ! ॥ ୪୭
ଅଙ୍ଗଦେଶ ନରପତି ରୋମପାଦ ଧୀର ।
ମହୀପ ଅଟନ୍ତି ସେହୁ ଦଶରଥଙ୍କର ॥ ୪୮
ତାଙ୍କ ପ୍ରସାଦୁ ଏ' ଯଜ୍ଞ ହେଉଛି ନିଶ୍ଚିତ ।
ପୂଜ ସତ୍କାରରେ ତାଙ୍କୁ ବରିବ ତୁରିତ ॥ ୪୯
ଦକ୍ଷିଣ କୋଶଳପତି ନାମ ଭାନୁମାନ ।
ମିଷ୍ଟଭାଷ୍ୟ କରି ତାଙ୍କୁ ବେଗେ ବରି ଆଣ ॥ ୫୦
ପ୍ରାପ୍ତିଜ୍ଞ ଅଟନ୍ତି ଶୂର ବୀର ସୁଧାର୍ମିକ ।
ସର୍ବଶାସ୍ତ୍ର ବିଶାରଦ ସୁଜ୍ଞାନୀ ବିବେକ ॥ ୫୧
ମଗଧ ଦେଶର ସେହୁ ଅଟନ୍ତି ଈଶ୍ୱର ।
ତାଙ୍କୁ ସମାଦରେ ନିମନ୍ତ୍ରିବ ମନ୍ତ୍ରୀବର ॥ ୫୨
ପୂର୍ବଦେଶେ ଆଜ ଯେତେ ଅଛନ୍ତି ନରେଶ ।
ସଭିଙ୍କି ନିମନ୍ତ୍ରି ଆଣ ଲଭିବ ସୁଯଶ ॥ ୫୩
ସିନ୍ଧୁ ସୌବୀର ସୌରାଷ୍ଟ୍ର ଆଦ୍ୟ ଯେତେ ନୃପେ ।
ନିମନ୍ତ୍ରିବା ପାଇଁ ତୁମ୍ଭେ ଚଳିବ ସମୀପେ ॥ ୫୪
ଦାକ୍ଷିଣାତ୍ୟ ରାଜାଗଣେ ବରିବ ସକଳ ।
ଯେ ଅବା ଅଟନ୍ତି ମିତ୍ର ଦଶରଥଙ୍କର ॥ ୫୫
ଭୂତଳେ ଅଛନ୍ତି ଯେତେ ମିତ୍ର ରାଜାଗଣ ।
ସକଳେ ସାଦରେ ତୁମ୍ଭେ କର ନିମନ୍ତ୍ରଣ ॥ ୫୬
ଆଉର ଅଛନ୍ତି ଯେତେ ରାଜା ଦୂରଦେଶେ ।
ସେମାନଙ୍କୁ ବରିବ ଆଉର ସବିଶେଷେ ॥ ୫୭
ପଠାଇ ବିଶ୍ୱସ୍ତ ଅନୁଚରଙ୍କୁ ସକଳ ।
ବରଣ କର ନୃପଙ୍କୁ ଆହେ ମନ୍ତ୍ରୀବର ! ॥ ୫୮
ଶୁଣି ବଶିଷ୍ଠଙ୍କ ଗିର ହରଷରେ ସୁମନ୍ତ୍ର ।
ପଠାଇଲେ ଦୂତଙ୍କୁ ଦେଇଣ ରାଜପତ୍ର ॥ ୫୯
ସୁବୁଦ୍ଧିମନ୍ତ ସୁମନ୍ତ୍ର ବଶିଷ୍ଠ ବଚନେ ।
ସ୍ୱୟଂ ବରଣ କଲେ ମିତ୍ର-ରାଜା ନିମନ୍ତ୍ରଣେ ॥ ୬୦

କର୍ମକାରଗଣ ନିଜ ନିଜ କାର୍ଯ୍ୟ ସାର ।
କହିଲେ ସମ୍ବାଦ ମୁନି ବଶିଷ୍ଠେ ଆବୋର ॥ ୬୧
ଆହେ ବ୍ରହ୍ମମୁନି ! ତବ ଆଜ୍ଞା ପରମାଣେ ।
ନିର୍ବାହ କଲୁ ସକଳ ଶୁଣ ସାବଧାନେ ॥ ୬୨
ଶୁଣି ଶିଳ୍ପୀଗଣ ମୁଖୁଁ ସଫଳ ବଚନ ।
ବୋଲେ କୋଷଧକ୍ଷେ ଦିଅ ଉଚିତ ବେତନ ॥ ୬୩
ଯଥା କାର୍ଯ୍ୟ ଅନୁସାରେ ଦେବ ଧନ ଦାନ ।
ସନ୍ତୋଷ ଲଭିବେ ଯେହ୍ନେ କର୍ମକାରଗଣ ॥ ୬୪
ଅନାଦରେ ନ ଦେବ ହେ ବେତନ ସେବକେ ।
ଶ୍ରଦ୍ଧା ସହକାରେ ଦେବ ଧନ ଏକେ ଏକେ ॥ ୬୫
ଅଶ୍ରଦ୍ଧାରେ ଦେଲେ ଧନ ସକଳ ଅନିଷ୍ଟ ।
ଦୁଃଖ ଦାତାର ପୁଣି ଧର୍ମ ହୋଏ ନଷ୍ଟ ॥ ୬୬
ତେଣୁ ସର୍ବ ଶିଳ୍ପୀଗଣେ ଦିଅ ଧନ ଦାନ ।
ଯେଝା କର୍ମ ଅନୁସାରେ କରଣ ଯତନ ॥ ୬୭
ଏଥୁଅନ୍ତେ ଶୁଣ ହେ ସୁଜନେ ! ଦେଇ ଚିତ୍ତ ।
କଞ୍ଚିଦନ ଅନ୍ତେ ରଜା ଆସିଲେ ବହୁତ ॥ ୬୮
ପ୍ରବେଶିଲେ ଅଯୋଧ୍ୟାରେ ବାଇଦ ବଜାଇ ।
ହସ୍ତେ ଧନରତ୍ନ ଭୋଷେ ନୃପଗୁଣ ଗାଇ ॥ ୬୯
ଦେଖିଣ ଏସନ ଶାନ୍ତ ବଶିଷ୍ଠ ଧୀମାନ ।
ଦଶରଥେ ସମ୍ଭାଷିଲେ ଅମୃତ ବଚନ ॥ ୭୦
ଆହେ ପୁରୁଷକେଶରୀ ! ତବ ଆଜ୍ଞା ମାନି ।
ଅଛନ୍ତି ସକଳ ଦେଶୁଁ ଆସି ନୃପମଣି ॥ ୭୧
ଯଥାଯୋଗ୍ୟ ସନମାନ ଆଦର ସତ୍କାରେ ।
ରଖାଇଛୁ ନୃପଗଣେ ସରଯୂ ତୀରରେ ॥ ୭୨
କର୍ମକାର-ଶିଳ୍ପୀ ପୁର ଯଜ୍ଞଶାଳା ଆଦି ।
ତବ ଆଜ୍ଞା ପରମାଣେ ଅଛନ୍ତି ସମ୍ପାଦି ॥ ୭୩
ଆହେ ନୃପତିତିଳକ ଅଯୋଧ୍ୟା ନରେଶ ।
ଚଳେ କରି ଯଜ୍ଞଶାଳେ ଦେଖ ହେ ବିଶେଷ ॥ ୭୪

ଯଜ୍ଞକରଣେ ସକଳ ବିଧି ସମାପତ ।
ହୋଇଛି କର ହେ ନୃପ ! ଆରମ୍ଭ ତ୍ୱରିତ ॥ ୭୫
ଯେପରି ସଙ୍କଳ୍ପ ତବ ମନେ ଅଛି କରି ।
ସକଳ ହୋଇଛି ଶେଷ ଆହେ ଦଣ୍ଡଧାରି ॥ ୭୬
ମନ ଯେଣ କାର୍ଯ୍ୟ ତବ ହୋଇଛି ରାଜନ !
ବିଳମ୍ବ ନକରି ଯଜ୍ଞ ଆରମ୍ଭ ବହନ ॥ ୭୭
ଋଷ୍ୟଶୃଙ୍ଗ ବଶିଷ୍ଠଙ୍କ ବଚନେ ରାଜନ ।
ଶୁଭକ୍ଷଣେ ଯଜ୍ଞଶାଳେ କଲେକ ଗମନ ॥ ୭୮
ସକଳ ଋଷି ବ୍ରାହ୍ମଣ ଋଷ୍ୟଶୃଙ୍ଗ ସଙ୍ଗେ ।
ଚଳିଲେ ଯଜ୍ଞମଣ୍ଡପେ ମନର ସରାଗେ ॥ ୭୯
ଯଥାଯୋଗ୍ୟ ସ୍ଥାନେ ସର୍ବେ ବସିଣ ସତ୍ୱର ।
ବିଧିପୂର୍ବ କରି ଆରମ୍ଭିଲେ କର୍ମ ସାର ॥ ୮୦
ସପତ୍ନୀକ ନୃପ ଦଶରଥେ ବସାଇଲେ ।
ଋଷ୍ୟଶୃଙ୍ଗ ବଚନେ ତାହାଙ୍କୁ ଦୀକ୍ଷାଦେଲେ ॥ ୮୧
ଶଙ୍ଖ ଦୁନ୍ଦୁଭି ନାଗରା ଭେରୀ ତୂରୀମାନ ।
ବାଜିଲା ଗହନେ ପୂରି ଗଗନ-ପବନ ॥ ୮୨
ପୁତ୍ରକାମ ଯଜ୍ଞାରମ୍ଭ ହେଲା ଅଯୋଧ୍ୟାରେ ।
ହରଷିତ ହେଲେ ପ୍ରଜା ଆନନ୍ଦ କଲ୍ଲୋଳେ ॥
ଆହେ ଯଜ୍ଞେଶ୍ୱର ହରି କରୁଣାସାଗର !
ତବ କୃପାବଳୁ ତ୍ରୟୋଦଶ ସର୍ଗ ସାର ॥ ୮୪
ଏକଚତ୍ୱାରିଂଶ ଶ୍ଳୋକେ ହୋଇଛି ଯା’ ଶେଷ ।
ଯଜ୍ଞ ଆୟୋଜନ ପର୍ବ ବର୍ଣ୍ଣନା ବିଶେଷ ॥ ୮୫
ମୈସେପୁ କୁଳଭୂଷଣ ଭଗବାନ ସୁତ ।
ପୁରୁଷୋତ୍ତମ ସରାଗେ ଭଣେ ଏହୁ ଗୀତ ॥ ୮୬

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ତ୍ରୟୋଦଶ ସର୍ଗ ।



# ଚତୁର୍ଦ୍ଦଶ ସର୍ଗ

## ପୁତ୍ରକାମ ଯଜ୍ଞ ଆରମ୍ଭ ।

ଶୁଣ ଆହେ ସୁଜ୍ଞ ନରେ ! ଅପୂର୍ବ ବିଧାନ ।
ସମ୍ବତ୍ସର ଅନ୍ତେ ହେଲା ଯେଉଁ ବର୍ତ୍ତମାନ ॥ ୧
ଭୂମଣ୍ଡଳ ଭ୍ରମି ଘୋଡ଼ି ଦଶରଥ ଙ୍କର୍ ।
ନେଉଟିଲା ଯଜ୍ଞଅଶ୍ୱ ଶୁଣ ହେ ସୁମନ୍ତ ! ॥ ୨
ନେଉଟି ଆସନ୍ତେ ଅଶ୍ୱ ନୋହି ବନ୍ଧମାନ ।
ଋଷିଗଣ ପୂଜନ୍ତେ ବିଧିରେ ତୁରଙ୍ଗମ ॥ ୩
ସକଳ ମନେ ବିଶ୍ୱାସ ହୋଇଲା ଉଦୟ ।
ଅବଶ୍ୟେ ଏ' ଯଜ୍ଞ ସାଙ୍ଗ ହୋଇବ ନିଶ୍ଚୟ ॥ ୪
ସକଳେ ବିଶ୍ବାସ ଏହା ହୋଇଲେ ହରଷ ।
ଆରମ୍ଭିଲେ ଶୁଭେ ଯଜ୍ଞ ବିପ୍ରଙ୍କ ଶିଷ ॥ ୫
ଦଶରଥେ ଦେଇ ଯଜ୍ଞଦୀକ୍ଷା ମୁନିଗଣ ।
ମଙ୍ଗଳ ଲଗନେ କଲେ ମଙ୍ଗଳାରୋପଣ ॥ ୬
ଋଷ୍ୟଶୃଙ୍ଗ ଆଦି କରି ଯେତେ ବିପ୍ରଗଣ ।
ସକଳେ ବେଦ ପାରଗ ଶାସ୍ତ୍ରରେ ଧୁରୀଣ ॥ ୭
ଯ ଗଯଜ୍ଞେ ଧୁରନ୍ଧର କର୍ମକାଣ୍ଡେ ରତ ।
ସକଳ ମନ୍ତ୍ର ସାଧନେ ବିଧାତା ସାକ୍ଷାତ ॥ ୮
ଯଥା ଶ୍ରୁତ-ସ୍ମାର୍ତ୍ତ-କର୍ମେ ସକଳ ଆସ୍ଥରେ ।
ସରବେ ନିପୁଣ ପୁତ୍ରକାମ ଧୁଯଜ୍ଞରେ ॥ ୯
ତେଣୁ ବେଦ ବିଧାନରେ ସକଳ କରମ ।
ସମ୍ପାଦିତ ହେଲା ଚର୍ଚ୍ଚି ନୋହି ତିଳେ ଭ୍ରମ ॥ ୧୦
ଯେକାଳେ ଯେବଣ କ୍ରିୟା ହେବାର ବିହିତ ।
ଋଷ୍ୟଶୃଙ୍ଗ ବୋଲେ ସର୍ବ ହେଲା ସମ୍ପାଦିତ ॥ ୧୧
ଋତ୍ୱିକ ଯାଜ୍ଞିକେ ଥିଲେ କର୍ମତତ୍ପର ।
ତେଣୁ କାର୍ଯ୍ୟ ନିର୍ଭା ହେଲା ଅବଶ୍ୟେ ସକଳ ॥ ୧୨

ସକଳ ଯାଜ୍ଞିକେ ମିଳି ଶାସ୍ତ୍ର ବିଧିମତେ ।
ସାରିଲେ ପ୍ରାରମ୍ଭ କର୍ମ 'ପ୍ରବର୍ଗ୍ୟ' ଯା' ଶାସ୍ତ୍ରେ ॥ ୧୩
ତଦୁତ୍ତରେ କଳ୍ପସୂତ୍ର ମୀମାଂସା ମତେଣ ।
ସମ୍ପାଦନ କଲେ 'ଉପସଦ' ନାମେ କର୍ମ ॥ ୧୪
ତଦନ୍ତେ ଋଷିଗଣ ଶାସ୍ତ୍ର ଅନୁମତେ ।
ସାରିଲେ 'ଅତିଦେଶ'କୁ ଯଥା ବିଧିମତେ ॥ ୧୫
ବିଧିପୂର୍ବ କରି ଯେତେ ପ୍ରାରମ୍ଭ ବିଧାନ ।
ନିର୍ବାହ କଲେ ଯତନେ ବେଦଜ୍ଞ ବ୍ରାହ୍ମଣ ॥ ୧୬
ତଦନ୍ତେ ଦେବ ପୂଜନ ବିଧି ଶେଷ କଲେ ।
ଯଜ୍ଞ ଅଙ୍ଗଭୂତ ସର୍ବ ଦେବତା ପୂଜିଲେ ॥ ୧୭
ଯଜ୍ଞ ସାରଭୂତ କର୍ମ ପ୍ରଭାତ 'ସବନ' ।
ମଧ୍ୟାହ୍ନ ଓ ସାୟାହ୍ନ ସାଥେ କଲେ ସମାପନ ॥ ୧୮
ତ୍ରିସଂଧ୍ୟାରେ ଯଥ ବିଧି କରାଇ ସ୍ନାପନ ।
ଆରମ୍ଭିଲେ ଋଷିଗଣେ ଯଜ୍ଞ କର୍ମମାନ ॥ ୧୯
ତହୁଁ ସୁରବରେ ହବିର୍ଭାଗ ସମର୍ପିଲେ ।
ସୋମଲତା ରସ ଆଦି ତହିଁ ନିଯୋଜିଲେ ॥ ୨୦
ଏ' ବିଧି ବିଧାନେ କରି ସକଳ ସବନ ।
ପୁରୋହିତ କରାଇଲେ ଦଶରଥେ ସ୍ନାନ ॥ ୨୧
ଋଷ୍ୟଶୃଙ୍ଗ ଆଦି ମୁନିଗଣେ ମନ୍ତ୍ରସ୍ୱରେ ।
ଇନ୍ଦ୍ର ଆଦି ଦେବତାଙ୍କୁ ତୋଷିଲେ ଯଜ୍ଞରେ ॥ ୨୨

---

ପ୍ରବର୍ଗ୍ୟ = ଅଶ୍ୱମେଧ ଯଜ୍ଞର ପ୍ରାରମ୍ଭିକ କର୍ମ ।

କଳ୍ପସୂତ୍ର ମୀମାଂସା = ଜୈମିନିଙ୍କ ରଚିତ କଳ୍ପସୂତ୍ର ନାମକ ଗ୍ରନ୍ଥରେ କର୍ମକାଣ୍ଡ, ବିଶେଷତଃ ଯଜ୍ଞକର୍ମର ବିଧିବିଧାନ ରହିଛି ।

ଉପସଦ = ଯଜ୍ଞର ଗୋଟିଏ ନିର୍ଦ୍ଦିଷ୍ଟ କର୍ମ । ଅତିଦେଶ = ଶାସ୍ତ୍ରବିଧି
ସବନ = ସ୍ନାନ, ଯଜ୍ଞ ଆରମ୍ଭରେ ଯଜମାନର ମନ୍ତ୍ରସ୍ନାନ ।

ସାମଗାନେ ତୋଷିଲେ ସକଳ ଦେବଗଣ ।
ଯଥା ଯୋଗ୍ୟ ଛନ୍ଦସ୍ୱରେ କରି ଆବାହନ ॥ ୨୩
ଯଜ୍ଞରେ ସମର୍ପି ସର୍ବ ହବିର୍ଭାଗମାନ ।
ପୂଜିଲେ ସକଳେ କରି ଆହୁତି ପ୍ରଦାନ ॥ ୨୪
ବିପରୀତ କର୍ମ ଅବା ଅବିଧି ଯଜନ ।
ନୋହିଲା ସେ ଯଜ୍ଞଶାଳେ ଅଶାସ୍ତ୍ର ଅକର୍ମ ॥ ୨୫
ମନ୍ତ୍ର ଉଚ୍ଚାରଣେ ହେଲା ସକଳ ବିଧାନ ।
ତେଣୁ ନୋହିଲା ସେ ଯଜ୍ଞେ ଅପକର୍ମମାନ ॥ ୨୬
ମଙ୍ଗଳ ବିଧାନେ ସର୍ବଶାସ୍ତ୍ର ବିସ୍ତରଣ ।
ବେଦଜ୍ଞ ବ୍ରାହ୍ମଣେ କଲେ କର୍ମ-ସମ୍ପାଦନ ॥ ୨୭
ତ୍ୟାଗପୂତ ଋତ୍ୱିଜେ ସକଳ କର୍ମ କଲେ ।
ତହିଁ ସକଳ ବିଧାନ ଅବିଘ୍ନେ ସଞ୍ଚାଲେ ॥ ୨୮
ସକଳେ ବେଦ ପାରଗ ଶତ ଶିଷ୍ୟେ ଗୁରୁ ।
ବେଦ ମନ୍ତ୍ର ସାଧନରେ ଯେହ୍ନେ ଦେବଗୁରୁ ॥ ୨୯
ଶ୍ରମେ କ୍ଳାନ୍ତ ନୋହିଲେକ କେହି ସେ ଯଜ୍ଞରେ ।
ଅଥବା ଭୋଜନ ପାନେ ଅବା ବିଶ୍ରାମରେ ॥ ୩୦
କାହାରି ବଦନ ନ ଦିଶିଲା କ୍ଷଣେ ମ୍ଳାନ ।
ତେଣୁ ଜଣାଗଲା ଯଜ୍ଞ ହେଲା ସୁସମ୍ପନ୍ନ ॥ ୩୧
ନିତ୍ୟ ବ୍ରାହ୍ମଣ ବୈଷ୍ଣବ ଅତିଥି ଭୋଜନ ।
ହେଉଥିଲା ଯଥାବିଧି ଯଜ୍ଞକର୍ମେ ପୁଣ ॥ ୩୨
କ୍ଷତ୍ରିୟ ବୈଶ୍ୟ ଶୂଦ୍ରାଦି ଯେତେକ ଆଗତ ।
ସର୍ବେ ସୁମିଷ୍ଟ ଆହାରେ ହେଲେ ପ୍ରମୋଦିତ ॥ ୩୩
ତାପସ ଶ୍ରମଣଗଣ ଯେତେ ଥିଲେ ଆସି ।
ସର୍ବେ ଭୋଜନ ପାନରେ ରହିଲେ ପ୍ରତୋଷି ॥ ୩୪
ବୃଦ୍ଧ ରୋଗୀ ଶିଶୁଗଣେ ପାଇ ଦିବ୍ୟ ଅନ୍ନ ।
ସରବେ ଭଣିଲେ ଉଚ୍ଚେ ନୃପ ଜୟଗାନ ॥ ୩୫
ବାରବାର ଲଭି ମିଷ୍ଟ ସୁସ୍ୱାଦୁ ଭୋଜନ ।
ପୁଣ ପୁଣ ସର୍ବେ ଆବୋରିଲେ ଦିବ୍ୟ ଅନ୍ନ ॥ ୩୬

ଦ୍ରବ୍ୟ ଭୋଜନେ ସକଳେ ହୋଇଣ ସନ୍ତୋଷ ।
ପୁଣଃ ପୁଣଃ ଲଭିବାକୁ ବଳାଇଲେ ଆଶ ॥ ୩୭
ସକଳ ଦେଶରୁ ଆସିଥିଲେ ନୃପଗଣ ।
ଲଭିଲେ ସକଳେ ଯଥାଯୋଗ୍ୟ ଭୋଜ୍ୟମାନ ॥ ୩୮
ସନ୍ତୁଷ୍ଟ ହୋଇଲେ ସର୍ବେ ସୁମିଷ୍ଟ ଆହାରେ ।
ନୋହିଲେ ଅତୃପ୍ତ କେହି ରାଜନ ଯଜ୍ଞରେ ॥ ୩୯
ଅନ୍ନ ଦିଅ ବସ୍ତ୍ର ଦିଅ ବୋଲି ଉଚ୍ଚସ୍ୱରେ ।
ଆଦେଶିଲେ ମନ୍ତ୍ରୀଗଣେ ଆନନ୍ଦ ମନରେ ॥ ୪୦
ଭୋଜନଦ୍ରବ୍ୟ ସକଳ ପର୍ବତ ସମାନ ।
ଭଣ୍ଡାରେ ସମ୍ପାଦିଥିଲେ କର୍ମକୁଶଗଣ ॥ ୪୧
ଅତିଥି ଋଷି ବ୍ରାହ୍ମଣେ ପରମ ତୃପ୍ତିରେ ।
ଭୋଜନ ଶେଷରେ ପ୍ରଶଂସିଲେ ନୃପବରେ ॥ ୪୨
ସକଳ ମୁଖୁଁ ଶୁଭିଲା ଜୟ ଜୟ ସ୍ୱନ ।
ଧନ୍ୟ ଦଶରଥ ଧନ୍ୟ ଅଯୋଧ୍ୟା ରାଜନ ॥ ୪୩
ଧନ୍ୟ ଏ' ଯଜ୍ଞବିଧାନ ଧନ୍ୟ ଆୟୋଜନ ।
ସକଳେ ମିଳି ଆନନ୍ଦେ କଲେ ଜୟଗାନ ॥ ୪୪
ପରିବେଷଣରେ ରତ ଥିଲେ ଯେଉଁ ଜନ ।
ସରବେ ପାଟ-କୁଣ୍ଡଳ ଆଦି ସୁଭୂଷଣ ॥ ୪୫
ଲଭି ପରମ ଆନନ୍ଦେ ନୃପ ଯଶ-ଗୁଣ ।
ପରମ ଉଲ୍ଲାସେ କଲେ ଉଚ୍ଚସ୍ୱରେ ଗାନ ॥ ୪୬
ପ୍ରଥମ ସବନ ଅନ୍ତେ ଋଷି-ଦ୍ୱିଜଗଣ ।
ଉତ୍ତମ ଶାସ୍ତ୍ରବାଦରେ ନିବେଶିଣ ମନ ॥ ୪୭
ପାଣ୍ଡିତ୍ୟ ବିଷୟେ ସର୍ବେ ହୋଇ ତତ୍ପର ।
ଆରମ୍ଭିଲେ ତର୍କବାଦ ଯଥା ଶାସ୍ତ୍ରାନ୍ତର ॥ ୪୮
ସକଳେ ଷଡ଼ଙ୍ଗ ବେଦଶାସ୍ତ୍ରେ ସୁପ୍ରବୀଣ ।
ଥିବାରୁ ବ୍ରହ୍ମକର୍ମରେ ସର୍ବଦା ନିପୁଣ ॥ ୪୯
ଶାସ୍ତ୍ରବାଦେ କରୁଥିଲେ ସୁବିଦ୍ୟା ଭାଷଣ ।
ସଭାମଧ୍ୟେ ଗୁଞ୍ଜରିଲା ସଦା ବେଦଗାନ ॥ ୫୦

ସରବେ ନ୍ୟାୟ ମୀମାଂସା ଶାସ୍ତ୍ରରେ ଧୂରୀଣ ।
ଥିଲେ ତେଣୁ କରୁଥିଲେ ସୁବ୍ୟାଖ୍ୟାନମାନ ॥ ୫୧
ଏଥିଅନ୍ତେ ଶୁଣ ଆହେ ସୁଜନ ସିହାଣ !
ଆରମ୍ଭିଲେ ବପ୍ରେ ମିଳ ଯୂପ ପୂଜାମାନ ॥ ୫୨
ବିଲ୍ୱକାଷ୍ଠେ ନିର୍ମିତ ଯେ ଷଡ଼୍‌ଗୋଟି ଜାଣ ।
ସେତକ ସଂଖ୍ୟକ ଯୂପ ଖଦାରେ ନିର୍ମାଣ ॥ ୫୩
ପଳାଶ କାଷ୍ଠରେ ଷଡ଼୍‌ଯୂପ ଯତ୍ନ କରି ।
ପୋତିଲେକ ଯଜ୍ଞସ୍ଥାନେ ସକଳେ ବସ୍ତ୍ରର ॥ ୫୪
ବାହାଡ଼ା କାଷ୍ଠେ ନିର୍ମିତ ଯୂପ ଗୋଟି ପୁଣ ।
ଅଶ୍ୱମେଧ ଯଜ୍ଞେ ଯାହା ଅଟଇ ବିଧାନ ॥ ୫୫
ଦେବଦାରୁ ବୃକ୍ଷୁଁ ଦୁଇ ଯୂପ ସମ୍ପାଦିଲେ ।
ବାହୁ ପ୍ରସାରଣ ଦୁଇ ଯୂପକୁ ପୋତିଲେ ॥ ୫୬
ସୁବିଜ୍ଞ ବ୍ରାହ୍ମଣେ ମିଳ ସୂତ୍ରଧର ସଙ୍ଗେ ।
ସୁବର୍ଣ୍ଣ ଜଡ଼ାଇ ଯୂପ ଗଢ଼ାଇ ସରାଗେ ॥ ୫୭
ଶାସ୍ତ୍ରମତେ ଏକବିଂଶ ଯୂପର ବିଧାନ ।
ପାଞ୍ଚଶ ଚଉର ଉଚ୍ଚ ଅଙ୍ଗୁଳ ପ୍ରମାଣ ॥ ୫୮
ନାନା ରଙ୍ଗବସ୍ତ୍ରେ ବିଭୂଷିତ ସର୍ବ ଯୂପେ ।
ପୋତିଲେ ବେଦମନ୍ତ୍ରରେ ବେଦୀର ସମୀପେ ॥ ୫୯
ଚତୁର୍ଦ୍ଦିଗ ଚତୁଷ୍କୋଣେ ପୋତିଲେ ସକଳ ।
ବେଦମନ୍ତ୍ର ବିଧାନେ ପୂଜଣ ଦ୍ୱିଜବର ॥ ୬୦
ପୁଷ୍ପ ଚନ୍ଦନେ ସଜ୍ଜିତ ସର୍ବ ଯୂପମାନ ।
କରୁଥିଲେ ମୌନେ ଅବା ନୃପ ଯଶୋଗାନ ॥ ୬୧
ଆକାଶେ ଶୋଭିତ ଯେହ୍ନେ ସପ୍ତର୍ଷି ମଣ୍ଡଳ ।
ଅନୁରୂପ ଶୋଭାରେ ପୂରିଲା ଯଜ୍ଞସ୍ଥଳ ॥ ୬୨
ଅଷ୍ଟାଦରେ ଏକବିଂଶ ଯୂପ ଶୋଭାବନ ।
ଗାଇଲେ ମଜନେ ଦଶରଥ କୀର୍ତ୍ତିମାନ ॥ ୬୩
ସୁବିଜ୍ଞ ଯାଜ୍ଞିକ ବପ୍ରେ ସୂତ୍ରଶାସ୍ତ୍ରେ କ୍ଷମା ।
ଶାସ୍ତ୍ର ବିଧିମତେ କୁଣ୍ଡ ଥିଲେକ ନିର୍ମାଣି ॥ ୬୪

ପଞ୍ଚବର୍ଣ୍ଣ ମୃତ୍ତିକାରେ ସମ୍ପାଦି ସକଳ ।
ନିର୍ମାଣିଲେ ଶିଳ୍ପୀଗଣ କୁଣ୍ଡେ ଯଜ୍ଞେଶ୍ୱର ॥ ୬୫
ସତେ ଅବା ଗରୁଡ଼ ବଢ଼ାଇ ପକ୍ଷ ଦୁଇ ।
ଜଗି ହୋଇଛି ଯଜ୍ଞରେ ପୂର୍ବମୁଖ ହୋଇ ॥ ୬୬
ଶାସ୍ତ୍ରମତେ ଷଡ଼ବିଧ ଅଗ୍ନିର ପ୍ରସାର ।
ଅଶ୍ୱମେଧେ ଅଷ୍ଟାଦଶ ବହ୍ନିର ପ୍ରସ୍ତର ॥ ୬୭
କୁଣ୍ଡ ପୃଷ୍ଠଭାଗେ ସୁବର୍ଣ୍ଣରେ ବିନିର୍ମିତ ।
ଥିବାରୁ ପ୍ରଚ୍ଛତ ହୁଏ ବନିତାର ସୂତ ॥ ୬୮
ସୁବର୍ଣ୍ଣ ପୁଚ୍ଛେ ମଣ୍ଡିତ ପକ୍ଷୀରାଜ କିବା ।
ତେସନକ ଛବିରେ ମଣ୍ଡିଲେ କୁଣ୍ଡ ଶୋଭା ॥ ୬୯
ଯୂପସ୍ତମ୍ଭେ ଦେବତା ଜଳଚର ବଳମାନ ।
ପଶୁପକ୍ଷୀ ଆଦି ଜନ୍ତୁ ଯେ ଯାହା ବିଧାନ ॥ ୭୦
ସର୍ବ ସୁସଜ୍ଜାରେ ହୋଇଥିଲେ ସୁରକ୍ଷିତ ।
ଯଥା ଯୋଗ୍ୟ ସ୍ଥାନେ ହେବେ ବଳିର ନିଯୁକ୍ତ ॥ ୭୧
ତିନିଶତ ପଶୁ ସାଥେ ଅଶ୍ୱମେଧ ବାଜି ।
ଯୂପସ୍ତମ୍ଭେ ବନ୍ଧା ହୋଇଥିଲେ ପଶୁରାଜି ॥ ୭୨
ରାଣୀ କଉଶଲ୍ୟା ବିଧିମତେ ପୂଜା କରି ।
ପ୍ରୋକ୍ଷଣାଦି ସଂସ୍କାରେ ଅଶ୍ୱକୁ ଧୀରେ ଧରି ॥ ୭୩
ତିନିଗୋଟି ପୂଜିତ ଖଡ଼୍ଗ ଘେନି ହସ୍ତେ ।
ଛୁଆଁଇଲେ ଅଶ୍ୱର ମସ୍ତକେ ବିଧିମତେ ॥ ୭୪
ଧର୍ମର ପାଳନ ଅର୍ଥେ କଉଶଲ୍ୟା ରାଣୀ ।
ବିତାଇଲେ ଅଶ୍ୱର ନିକଟେ ରାତ୍ର ତିନି ॥ ୭୫
ତଦନ୍ତେ ଋତ୍ୱିକ ଅଶ୍ୱ ଧରି ମନ୍ତ୍ର ପଢ଼ି ।
ଛୁଆଇଁଲେ କୈକେୟୀ ସୁମିତ୍ରା ଆଦି କରି ॥ ୭୬
ଆବର ଥିଲେକ ଯେତେ ବୈଶ୍ୟ ଶୂଦ୍ର ଦାସୀ ।
ବାବାତା ପରିବୃତ୍ତି ଯେ ଆବର ସୁନ୍ଦରୀ ॥ ୭୭
ସମସ୍ତଙ୍କି ଛୁଆଇଁ ଅଶ୍ୱ ଋତ୍ୱିକ ବ୍ରାହ୍ମଣ ।
କରାଇଲେ ବିଧିମତେ ଖଡ଼୍ଗ ପୂଜନ ॥ ୭୮

ତହୁଁ ଋଷି ବିପ୍ରେ ବିଧିମତେ ପୂଜା କରି ।
ଅଶ୍ୱକନ୍ଦ ସିଝାଇଲେ ମନ୍ତ୍ରକୁ ଉଚ୍ଚାରି ॥ ୭୯
ଘେନ ସେ ଅଶ୍ୱକନ୍ଦକୁ କୁଣ୍ଡରେ ପକାଇ ।
ମନ୍ତ୍ରବଳେ ଆରାଧିଲେ ଘୃତାହୁତି ଦେଇ ॥ ୮୦
ଦଶରଥଙ୍କୁ ଡକାଇ ବିଭାଣ୍ଡକ ଶିଷ ।
ବୋଇଲେ ହେ ନୃପ ! ତୁମ୍ଭେ କୁଣ୍ଡପାଶେ ବସ ॥ ୮୧
ଏ' ଧୂମ ପବିତ୍ରକର ଅଟଇ ରାଜନ ।
ଏହାର ଆଘ୍ରାଣେ ହେବ ପାପ ବିମୋଚନ ॥ ୮୨
ସେ ବଚନ ଶୁଣି ଅଯୋଧ୍ୟାର ନୃପମଣି ।
ବସିଲେ କୁଣ୍ଡ ସମୀପେ ଋଷି ବାକ୍ୟ ମାନି ॥ ୮୩
ତହୁଁ ଷୋଡ଼ଶ ଋତ୍ୱିକେ ହବ୍ୟ-କବ୍ୟ ଆଣି ।
ହବମାପୁ ଦ୍ରବ୍ୟେ ହୋମ କଲେ ସ୍ରୁବ ଘେନି ॥ ୮୪
ପ୍ଲକ୍ଷଶାଖା ଆଣି ହୋମ କଲେ ବିଧି ମତ ।
ଅଶ୍ୱମେଧ ବିନୁ ଅନ୍ୟ ଯଜ୍ଞେ ଯା' ବିହିତ ॥ ୮୫
ତହୁଁ ବେତସ କାଷ୍ଠକୁ ପୂଜି ସବିଧିରେ ।
ହୋମ କଲେ ଯଜ୍ଞକୁଣ୍ଡେ ବୁଡ଼ାଇ ଘୃତରେ ॥ ୮୬
ଅଶ୍ୱମେଧ ଯଜ୍ଞେ ଯାହା ଅଟଇ ବିହିତ ।
ଋତ୍ୱିକେ ଆହୁତି ଦେଲେ ଯଜ୍ଞେ ବିଧି ମତ ॥ ୮୭
ସକଳ ବିଧି ଯା' ଅଛି କଳପ ସୂତ୍ରରେ ।
ଆଉର ବର୍ଣ୍ଣିତ ଯାହା ବ୍ରାହ୍ମଣ ଗ୍ରନ୍ଥରେ ॥ ୮୮
ଅଶ୍ୱମେଧ ଯଜ୍ଞରେ ବିହିତ କର୍ମମାନ ।
ଋତ୍ୱିକେ ବିହିଲେ ସର୍ବ ବେଦର ବିଧାନ ॥ ୮୯
ଅଗ୍ନିଷ୍ଟୋମ ଉକ୍ଥ୍ୟ ଅତିରାତ୍ର ଯେ ଆଉର ।
ଶାସ୍ତ୍ର ମତେ ସମ୍ପାଦିଲେ ଋଷି-ବିପ୍ରବର ॥ ୯୦
ଜ୍ୟୋତିଷ୍ଟୋମ ଆୟୁଷ୍ଟୋମ ଅଭିଜିତ ଆଦି ।
ବିଶ୍ୱଜିତ ଆପ୍ତଯାମ ସକଳ ସମ୍ପାଦି ॥ ୯୧
ଅଶ୍ୱମେଧ ଉତ୍ତାରୁ ଏ' ସମସ୍ତ ବିଧାନ ।
ଆରମ୍ଭିଲେ ପୂରେଶ୍ୱରେ କରି ବେଦଗାନ ॥ ୯୨

ଅଶ୍ୱମେଧ ବେଦମତେ ହୁଅନ୍ତେ ସମ୍ପୂର୍ଣ୍ଣ ।
ହୃଷ୍ଟଚିତ୍ତେ ଦଶରଥ ଦେଲେ ବହୁ ଦାନ ॥ ୯୩
ଶାସ୍ତ୍ରବିଧି ମତେ ଭୂମିଦାନ କଲେ ନୃପ ।
ଯେଉଁ ଗ୍ରାମମାନ ଥିଲା ଅଯୋଧ୍ୟା ସମୀପେ ॥ ୯୪
ଅଯୋଧ୍ୟା ପୂର୍ବଦିଗେ ଯେଉଁ ଗ୍ରାମମାନ ।
ହୋତାଙ୍କ ଶ୍ରୀକରେ ନୃପ କଲେ ସମର୍ପଣ ॥ ୯୫
ପଶ୍ଚିମ ଭାଗରେ ଗ୍ରାମ କରିଣ ପ୍ରଦାନ ।
ପ୍ରତୋଷିଲେ ଦଶରଥ ଅଧ୍ୱର୍ଯ୍ୟୁର ମନ ॥ ୯୬
ବ୍ରହ୍ମାସନେ ବସିଥିଲେ ଯେଉଁ ବିପ୍ରଗଣ ।
ତାଙ୍କୁ ସମର୍ପିଲେ ଦକ୍ଷିଣରେ ଗ୍ରାମମାନ ॥ ୯୭
ଉଦ୍‌ଗାତାଙ୍କୁ ଉତ୍ତର ଦିଗରେ ଦାନ ଦେଲେ ।
ପୂର୍ବେ ଯାହା ପ୍ରଜାପତି ଶାସ୍ତ୍ରରେ କହିଲେ ॥ ୯୮
ଅଶ୍ୱମେଧ ଯଜ୍ଞ କରି ଦେବ ପ୍ରଜାପତି ।
ଦକ୍ଷିଣା ରୂପେ ଯା' ଦେଇ ତୋଷିଥିଲେ ମତି ॥ ୯୯
ସେ ରୂପେ ବିଧି ବିଧାନେ ଅଯୋଧ୍ୟା ରାଜନ ।
ପ୍ରତୋଷିଲେ ଦକ୍ଷିଣା ଦିଆଇ ବିପ୍ରଗଣ ॥ ୧୦୦
ବିପ୍ରଗଣ ତୋଷ ଅର୍ଥେ କୋଶଳ ରାଜନ ।
ନିର୍ମଳ ମାନସେ କଲେ ଧରିତ୍ରୀ ପ୍ରଦାନ ॥ ୧୦୧
ଇକ୍ଷ୍ୱାକୁ-କୁଳ-ଭୂଷଣ ଅଯୋଧ୍ୟା ନରେଶ ।
ପୃଥ୍ୱୀଦାନ ଦେଇ ଚିତ୍ତେ ଲଭିଲେ ସନ୍ତୋଷ ॥ ୧୦୨
ବିପ୍ରେ ହରଷିତ ମନେ ବୋଇଲେ ସକଳ ।
ଆହେ ଭାନୁକୁଳଚନ୍ଦ୍ର ଦଶରଥ ବୀର ॥ ୧୦୩
ତୁମ୍ଭେ ଏକା ଅଟ ରାଜ୍ୟ ପାଳନେ ସମର୍ଥ
ଆମ୍ଭେ କି କରିବୁ ନେଇ ଏ' ରାଜ୍ୟ ସମସ୍ତ ॥ ୧୦୪
ସ୍ୱାଧ୍ୟାୟ ଯଜନ ଅଟେ ଆମ୍ଭର ବିଧାନ ।
ପ୍ରଜା ପାଳନେ କୁଶଳ ତୁମ୍ଭେ ନୃପଗଣ ॥ ୧୦୫
ଯଦି ବହୁ ଦାନେ ତବ ବଳନ୍ତି ମାନସ ।
ଲମ୍ଭ୍ୟ ଅନୁରୂପେ ଧନ ଦେଇ ମନ ତୋଷ ॥ ୧୦୬

ପାଳନ କରିତା ତୁମ୍ଭେ ଯେଣୁ ନୃପସାଇଁ ।
ଆମ୍ଭେ କି କରିବୁ ଏ' ସକଳ ରାଜ୍ୟ ନେଇ ॥ ୧୦୭
ଗୋ ଭୂମି ହିରଣ୍ୟ ଅବା ଆନ୍ୟ ଯେତେ ବିତ୍ତ ।
ଦେଇ ଆହେ ଦଶରଥ ! ତୋଷ ଆମ୍ଭ ଚିତ୍ତ ॥ ୧୦୮
ଏ' ରାଜ୍ୟ ସକଳେ ନାହିଁ କିଛି ପ୍ରୟୋଜନ ।
ଆମ୍ଭ ସନ୍ତୋଷରେ ନୃପ ! ଦିଅ ଅନ୍ୟ ଦାନ ॥ ୧୦୯
ବେଦଜ୍ଞ ବ୍ରାହ୍ମଣ ବୋଲେ ହୋଇ ହରଷିତ ।
ଦଶଲକ୍ଷ ଧେନୁ ଦାନ କଲେ ଦଶରଥ ॥ ୧୧୦
ଦଶକୋଟି ସ୍ୱର୍ଣ୍ଣମୁଦ୍ରା ଚତୁର୍ଗୁଣେ ରୌପ୍ୟ ।
ଦେଇ ସନ୍ତୋଷିଲେ ବିପ୍ରେ ଦଶରଥ ନୃପ ॥ ୧୧୧
ସକଳ ବିପ୍ରେ ସେ ଧନଧାନ୍ୟ ଧେନୁ ନେଇ ।
ସମର୍ପିଲେ ଋଷ୍ୟଶୃଙ୍ଗ ବଶିଷ୍ଠେ ବସାଇ ॥ ୧୧୨
ବୋଇଲେ ହେ ମୁନିବର ! ସମର୍ପିଲୁ ଧନ ।
ଅଶ୍ୱମେଧ ଶେଷେ ରାଜା ଦେଲେ ଯେଉଁ ଦାନ ॥ ୧୧୩
ଏଥିକୁ ବିଭାଗ କର ଅହେ ମୁନିବର !
ଉଚିତ ବିଭାଗ କରି ବାଣ୍ଟିଲେ ସକଳ ॥ ୧୧୪
ତହୁଁ ବିଭାଣ୍ଡକ ସୁତ ବିଧାତା-ନନ୍ଦନ ।
ବାଣ୍ଟି ଦେଲେ ବିପ୍ରଗଣେ ରାଜଦତ୍ତ ଧନ ॥ ୧୧୫
ସକଳ ଯାଜ୍ଞିକେ ଲଭି ଗୋପ ଲକ୍ଷ୍ମୀମାନ ।
ପ୍ରମୁଦିତ ମନେ ସର୍ବେ କରନ୍ତି କଲ୍ୟାଣ ॥ ୧୧୬
ଆହେ ନୃପ-କୁଳ-ଶିରୋମଣି ଦଶରଥ !
ଆମ୍ଭ ସୁକଲ୍ୟାଣେ ପୂର୍ଣ୍ଣ ହେଉ ମନୋରଥ ॥ ୧୧୭
ତଦନ୍ତେ ଅଯୋଧ୍ୟା ସାଇଁ ଭଣ୍ଡାରୁ ଆଣିଣ ।
ଏକକୋଟି ଜାମ୍ବୁନଦ ସ୍ୱର୍ଣ୍ଣ କଲେ ଦାନ ॥ ୧୧୮
ଦାନରେ ଧନ ଭଣ୍ଡାର ହୋଇଗଲା ଶୂନ୍ୟ ।
ଏ' ସମୟେ ଦାନ ମାଗେ ଏକଇ ବ୍ରାହ୍ମଣ ॥ ୧୧୯
ଦଶରଥ ନୃପ ନିଜ ହସ୍ତୁ ଅଳଙ୍କାରେ ।
ଉଲଗି ସମର୍ପି ଦେଲେ ବ୍ରାହ୍ମଣ ହସ୍ତରେ ॥ ୧୨୦

ତଦନ୍ତେ ଯା’ ହେଲା ଶୁଣ ରସିକ ସିହାଣ ।
ଦଶରଥ ଦାନେ ତୁଷ୍ଟ ହେଲେ ବିପ୍ରଗଣ ॥ ୧୨୧
ତହୁଁ ବିପ୍ରଗଣେ ରାଜା ହୋଇ ନିଜସ୍ଥଳ ।
ପ୍ରଣମିଲେ ସାଦରେ କୁଟୁମ୍ବ ସଙ୍ଗେ ମିଳି ॥ ୧୨୨
ବ୍ରାହ୍ମଣେ ଦଶରଥଙ୍କୁ କରି ସୁକଲ୍ୟାଣ ।
ହରଷେ ଚଳିଲେ ବେଗେ ନିଜ ନିଜ ସ୍ଥାନ ॥ ୧୨୩
ସଫଳ ଅଶ୍ୱମେଧରେ ହୋଇ ହରଷିତ ।
ଅଯୋଧ୍ୟା ରାଜନ ଚିତ୍ତେ ହେଲେ କୃତକୃତ୍ୟ ॥ ୧୨୪
ସ୍ୱର୍ଗ ମୋକ୍ଷ ସର୍ବ ଫଳ ଲଭି ହରଷିତେ ।
ଦଶରଥ ନୃପ ବୋଲେ ବିଭାଣ୍ଡକ ସୁତେ ॥ ୧୨୫
ଆହେ ଜିତେନ୍ଦ୍ରିୟ ବ୍ରହ୍ମ ମୁନି ତପୋଧନ !
ମୋ’ ବଂଶ ରକ୍ଷଣେ କର ସକଳ ବିଧାନ ॥ ୧୨୬
ଶୁଣି ଋଷ୍ୟଶୃଙ୍ଗ ନୃପ ବିନୟ ବଚନ ।
‘ତଥାସ୍ତୁ’ ବୋଇଲେ ହୋଇ ହରଷିତ ମନ ॥ ୧୨୭
ଆହେ ନୃପବର ! ତବ କୁଳର ଉଜ୍ଜ୍ୱଳେ ।
ଚାରିସୁତ ଜନମିବେ ରାଣୀଙ୍କର କୋଳେ ॥ ୧୨୮
ଇକ୍ଷ୍ୱାକୁ-କୁଳ-ଚନ୍ଦ୍ରମା ହେବେ ପୁତ୍ରଗଣ ।
ଏଥିରେ ଅନ୍ୟଥା କେବେ ନୋହିବ ରାଜନ ॥ ୧୨୯
ସୂର୍ଯ୍ୟବଂଶ ବର ଧନେ ହୋଇବେ ସହାୟ ।
ଶୂର ପଣେ ବିଖ୍ୟାତ ହୋଇବେ ତୋ’ ତନୟ ॥ ୧୩୦
ସସାଗର-ଧରାରେ ପାଳିବେ ପ୍ରଜାକୁଳ ।
ଅତରେ ଲଭିବ ସ୍ୱର୍ଗ ତନୟ ନ ଭୁଲ ॥ ୧୩୧
ଶୁଣି ପୀୟୂଷ ସମାନ ମୁନିଙ୍କ ବଚନ ।
ଆନନ୍ଦ ସାଗରେ ନୃପ ହୋଇଲେ ମଗନ ॥ ୧୩୨
ମହାମନା ଜିତେନ୍ଦ୍ରିୟ ରାଜା ଦଶରଥ ।
କରଯୋଡ଼ି ମୁନିପାଦେ ହୋଇ କୃତକୃତ୍ୟ ॥ ୧୩୩
ବୋଇଲେ ହେ ତପୋଧନ ! ସୁକଲ୍ୟାଣୁ ତବ ।
କିବା ଦ୍ରବ୍ୟ ଏ’ ସଂସାରେ ହୋଇବ ଦୁର୍ଲ୍ଲଭ ॥ ୧୩୪

ତଥାପି କହଇ ବେଦମତେ ପୁତ୍ରକାମ ।
ଯଜ୍ଞ କର ପ୍ରଭୁ ମୋହର ମନସ୍କାମ ॥ ୧୩୫
ଆହେ ଦ୍ୱିଜବର ! ତବ ଚରଣ-ପଙ୍କଜେ ।
ଯଜ୍ଞଦୀକ୍ଷା ଦେନ ନତ ସାଦରେ ମୁଁ ପୂଜେ ॥ ୧୩୬
ତେଣୁ କୃପାକର ଆହେ ବିଭାଣ୍ଡକ ସୁତ !
ପୁତ୍ରେଷ୍ଟି କରଣ ପ୍ରଭୁ ମୋ’ ମନୋରଥ ॥ ୧୩୭
ଅଜ୍ଞାନ ପୁରୁଷୋତ୍ତମ ହରଷେ ଏ’ ଗୀତ ।
ବିରଚଇ ଶ୍ରୀରାମ ଚରଣେ ଦେଇ ଚିତ୍ତ ॥ ୧୩୮

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଚତୁର୍ଦ୍ଦଶ ସର୍ଗ ।



# ପଞ୍ଚଦଶ ସର୍ଗ

## ଋଷ୍ୟଶୃଙ୍ଗଙ୍କ ପୁତ୍ରେଷ୍ଟି ଆରମ୍ଭ, ସ୍ୱର୍ଗରେ ଦେବଗଣଙ୍କ ବିଚାର ତଥା ବିଷ୍ଣୁଙ୍କ ଆଶ୍ୱାସନା ।

ବିଦ୍ୱଜ୍ଜନ ମହାମୁନି ବିଭାଣ୍ଡକ ସୁତ ।
ବେଦଜ୍ଞ ପଣ୍ଡିତ ଯେଣେ ଜଗତେ ବିଖ୍ୟାତ ॥ ୧
ରାଜାଙ୍କ ବଚନେ ମୁନି ହୋଇ ଧ୍ୟାନମଗ୍ନ ।
ବିଚାରଣ ଭଲ ମନ୍ଦ ବୋଇଲେ ବଚନ ॥ ୨
ଆହେ ନୃପବର ! ଶୁଣ ଉଦନ୍ତ ମୋହର ।
ଅଥର୍ବଣ ମନ୍ତ୍ରେ ମୁଁ ପୂଜିବ ସର୍ବେଶ୍ୱର ॥ ୩
ସେ ଯଜ୍ଞର ନାମ ଅଟେ ପୁତ୍ରେଷ୍ଟି ଯଜନ ।
ସର୍ବେଶ ପ୍ରସନ୍ନ ହେବ ତୁମ୍ଭେ ପୂର୍ଣ୍ଣକାମ ॥ ୪
ସେହି ଯଜ୍ଞ ସାଧିବାକୁ ବଳିଛି ମୋ’ ମନ ।
ଯଜ୍ଞର ଦ୍ରବ୍ୟ ସକଳ-କର ଆୟୋଜନ ॥ ୫

ଏମନ୍ତ ଭଣିଣ ମୁନି ଆରମ୍ଭିଲେ ଯାଗ ।
ଶ୍ରୀବିଧିରେ ଦେବଙ୍କୁ ଦେଲେ ହବିର୍ଭାଗ ॥ ୬
ଦେବ ସିଦ୍ଧ ମହର୍ଷି ଗନ୍ଧର୍ବଗଣ ଭୁଲେ ।
ଯଜ୍ଞରେ ପ୍ରବେଶି ନିଜ ଭାଗ ଆବୋରିଲେ ॥ ୭
ବ୍ରହ୍ମାଦି ସକଳ ଦେବେ ରାବଣ ଅଦୃଶ୍ୟେ ।
ବିଚାର କରନ୍ତି ମିଳି ଯଜ୍ଞର ଆବାସେ ॥ ୮
ଆହେ ଦେବ ପ୍ରଜାପତି ଜଗତପାଳକ !
ହେ ବରଦ ! ଅଟ ତୁମ୍ଭେ ଦେବଙ୍କ ରକ୍ଷକ ॥ ୯
ତବ ବରେ ବଳୀୟାନ ହୋଇଣ ରାବଣ ।
ପୀଡ଼ଇ ସତତ ସ୍ୱର୍ଗେ ଦେବ-ଋଷିଗଣ ॥ ୧୦
ତୁମ୍ଭ ବରେ ମହାବଳୀ ସେ ରଜନୀଚର ।
ବ୍ରାହ୍ମଣ ହୋଇଣ କରେ ବ୍ରକ୍ଷସ ଆସ୍ତର ॥ ୧୧
ଆମ୍ଭେ ଶକ୍ତିହୀନ ହୋଇ ରାବଣ ସମୀପେ ।
ହବାନଶି କମ୍ପୁଥାଉ ଅସୁରର ଦର୍ପେ ॥ ୧୨
ତବ ଅନୁକମ୍ପା ଯେଣୁ ଲଭିଛି ଅସୁର ।
ତେଣୁ ସୁରଗଣେ ସଦା ତା'ପଦେ କିଙ୍କର ॥ ୧୩
ବ୍ରହ୍ମବର ସମାଦର କରି ବିପ୍ରଗଣେ ।
ରାବଣର ଅତ୍ୟାଗ୍ଭର ସହନ୍ତି ମଉନେ ॥ ୧୪
ତିଲୋକେ ବିଶ୍ରବାସୁତ ଅଟେ କାଳ ସମ ।
ଦେବଙ୍କ ଦର୍ଶନେ ନିତ୍ୟ ବଢ଼ଇ ତା' ତମ ॥ ୧୫
ଆମ୍ଭ କୁଳେ ସଦା ଦ୍ୱେଷ କରଇ ଅସୁର ।
ସଦା ଇନ୍ଦ୍ର-ପରାଭବ ବିଗ୍ଭରେ ପାମର ॥ ୧୬
ଋଷି ବିପ୍ର ଯକ୍ଷ ଗନ୍ଧର୍ବ କାନ୍ନରେ ନିତି ।
ଅବିଗ୍ଭରେ ଅପମାନ ଦିଏ ଦୁଷ୍ଟମତି ॥ ୧୭
ତା' ପ୍ରତାପେ ଦିବାକର ସଙ୍କୋଚଇ ତେଜ ।
ବାୟୁ ବହଇ ସଧୀରେ ମନେ ବହି ଲାଜ ॥ ୧୮
ସଦା ଉତ୍ତାଳ ତରଙ୍ଗେ କମ୍ପିତ ସାଗର ।
ବିଶ୍ରବା କୁମର ଭୟେ ଏବେ ସେ ସୁସ୍ଥିର ॥ ୧୯

ମହାଭୟଙ୍କର ଅଟେ ରାବଣ ଅଧମ ।
ଆମ୍ଭଙ୍କୁ ଦଣଇ ଯେସନ୍ତ ମହାକାଳ ସମ ॥ ୨୦
ତେଣୁ ଆହେ ବିଧି ! ତା'ର ମରଣ ଉପାୟ ।
କର ନୋହିଲେ ଅସୁର ନାଶିବ ନିଶ୍ଚୟ ॥ ୨୧
ଦେବଙ୍କ ବଚନ ଶୁଣି ଚତୁର ଆନନ ।
କ୍ଷଣକାଳ ଚିନ୍ତି ଧୀରେ ବୋଇଲେ ବଚନ ॥ ୨୨
ଆହେ ଦେବଗଣ ! ଶୁଣ ମୋହର ଉଦନ୍ତ ।
ଯେ ଉପାୟେ ନାଶଯିବ ନିକଷାର ସୁତ ॥ ୨୩
ଦେବତା ଗନ୍ଧର୍ବ ଯକ୍ଷ ରକ୍ଷେ ନ ମରିବ ।
ଏମନ୍ତ ବର ଲଭିଛି ମନ୍ଦୋଦରୀ ଧବ ॥ ୨୪
ମନୁଷ'ଙ୍କୁ ତୁଚ୍ଛଜ୍ଞାନ କରଇ ସେ ଯେଣୁ ।
ମାନବ ହସ୍ତେ ମରିବ ବିଶ୍ରବାର ସୂନୁ ॥ ୨୫
ଅଛି ମାନବାୟୁ ଗୁଣେ ଯେହୁ ସୁପୁରୁଷ ।
ତାହାର କରେ ନିଧନ ଲଭିବ ରାକ୍ଷସ ॥ ୨୬
ଶୁଣି ବିଧାତା ବଚନ ଦେବ-ଋଷିଗଣ ।
ସମାଦରେ କଲେ ଧାତା ଚରଣେ ବନ୍ଦନ ॥ ୨୭
ଏ' ସମୟେ ଗରୁଡ଼ବାହନେ ବିଶ୍ୱକ୍‌ସେନ ।
ଦିଶିଲେ ଆକାଶେ ଯେହ୍ନେ ମେଘେ ବିକର୍ତ୍ତନ ॥ ୨୮
ଦୀପ୍ତତେଜେ ଲକ୍ଷ୍ମୀକାନ୍ତ ହୋଇ ବିମଣ୍ଡିତ ।
ପ୍ରବେଶିଲେ ସଭା ମଧ୍ୟେ ଅନନ୍ତ ଅଚ୍ୟୁତ ॥ ୨୯
ଅଙ୍ଗେ ପୀତାମ୍ବର ହସ୍ତେ ଶୋହେ ଗଦା ଅସି ।
ଶଙ୍ଖ କମଳେ ଶୋଭିତ ବନମାଳାଧାରୀ ॥ ୩୦
ସୁବର୍ଣ୍ଣକେୟୂରେ ବିଭୂଷିତ ଭୁଜ ଚାରି ।
ଦେଖି ତାଙ୍କୁ ପ୍ରଣମିଲେ ଦେବେ କରଯୋଡ଼ି ॥ ୩୧
ବିରାଜିଲେ ସଭା ମଧ୍ୟେ ଜଗତଜୀବନ ।
ସକଳେ ମଣିଲେ ନିଶ୍ଚେ ଆଶା ହେବ ପୂର୍ଣ୍ଣ ॥ ୩୨
ତହୁଁ ଯୋଡ଼ି ବେନିପାଣି ସକଳ ଅମର ।
ଋଷିଗଣ ତୁଲେ ସ୍ତୁତି କଲେ ବେଦବର ॥ ୩୩

ହେ ପରମେଶ୍ୱର ! ଚରାଚରପର ! ଜଗଦୀଶ !
ଆହେ ଜଗନ୍ନାଥ ! ପୁରୁଷୋତ୍ତମ ! ରମେଶ ! ॥ ୩୪
ତ୍ରିଲୋକର ହିତେ ଆମ୍ଭେ ଜଣାଉଁ ସକଳ ।
ସେନାହେଉ ଏ' ବଚନ ଆହେ ଅରିମର୍ଦ୍ଦନ ! ॥ ୩୫
ତ୍ରିଲୋକ ମଙ୍ଗଳେ ଯେତୁ ସଦା ତତପର ।
ପୁରାଇବେ ସେ ଅବଶ୍ୟ କାମନା ଆମ୍ଭର ॥ ୩୬
ଯେକଣ କାରଣେ ଅମ୍ଭେ କରୁଁ ନିବେଦନ ।
କୃପାମୟ ! ସେନାକର ହେ ମଧୁସୂଦନ ! ॥ ୩୭
ଅଯୋଧ୍ୟା ନରେଶ ଦଶରଥ ନୃପମଣି ।
ହ୍ରୀ, ଶ୍ରୀ କୀର୍ତ୍ତିର ସମାନ ତାଙ୍କ ତିନିରାଣୀ ॥ ୩୮
ଉଦାର ଧାର୍ମିକ ଗୁଣେ ପରମ ତପସ୍ୱୀ ।
ବ୍ରହ୍ମର୍ଷି ସମାନ ରାଜା ଅଟନ୍ତି ତେଜସ୍ୱୀ ॥ ୩୯
ଅପୁତ୍ରିକ ହେତୁ ନୃପ ସତତ ବ୍ୟାକୁଳ ।
ପୁତ୍ରକାମ ଯାଗେ ପୂଜେ ଆହେ ଅରିମର୍ଦ୍ଦନ ! ॥ ୪୦
ହେ କରୁଣାକର ! ହୋଇ ଚତୁର ମୂରତି ।
ତିନିରାଣୀ ଗର୍ଭେ ଜାତ ହୁଅ ଜଗତ୍ପତି ! ॥ ୪୧
ମନୁଷ୍ୟ ଶରୀର ବହି ଅଯୋଧ୍ୟା ନଗରେ ।
ଲୀଳାମୟ ! ଲୀଳା କର ମାନବ ଶରୀରେ ॥ ୪୨
ସେ ରୂପେ ବିନାଶି ପ୍ରଭୁ ବିଶ୍ରବା ନନ୍ଦନ ।
ଦେବକଣ୍ଟକେ ନିବାର ଶ୍ରୀବତ୍ସଲାଞ୍ଛନ ! ॥ ୪୩
ଦେବ ଯକ୍ଷ ଗନ୍ଧର୍ବ ମନୁଷ୍ୟ କ୍ଷୟକାରୀ ।
ରାବଣକୁ ବଧି ନାମ ବହ ରାବଣାରି ॥ ୪୪
ବ୍ରହ୍ମା ବରେ ମଦାନ୍ଧ ସେ ପ୍ରତାପୀ ଅସୁର ।
ଦେବ ନର ଗନ୍ଧର୍ବ ଯକ୍ଷ ଅହିତକର ॥ ୪୫
ସେପରି କଣ୍ଟକେ ନାଶି ସମର ପ୍ରାଙ୍ଗଣେ ।
ଦେବପ୍ରିୟ ! ଦେବହିତ ସାଧନ୍ତୁ ଆପଣେ ॥ ୪୬
ମହାମୂର୍ଖ ବିଶ୍ରବାନନ୍ଦନ ନିଜ ସମ ।
ଗଣେ ନାହିଁ କାହାରିକୁ ଆହେ ବିକ୍ରମ ! ॥ ୪୭

ଦେବଋଷି ଗନ୍ଧର୍ବ ଅପ୍‌ସରଗଣେ ନେଇ ।
ଲଙ୍କା ଭୁବନେ ରଖିଛି ମହାଦେବ ବନ୍ଧି ॥ ୪୮
ଏଣୁ ହେ ଜଗୁଜୀବନ ପ୍ରଭୁ ଜଗନ୍ନାଥ !
ଦେବ ସିଦ୍ଧ ଯକ୍ଷ ମୁନି ଗନ୍ଧର୍ବ ସମେତ ॥ ୪୯
ଶ୍ରୀଚରଣେ ହେ ଅନନ୍ତ ! କରୁଛୁଁ ଜଣାଣ ।
ରାବଣକୁ ବଧି ପୂର୍ଣ୍ଣକର ମନସ୍କାମ ॥ ୫୦
ପରମପାଳକ ପିତା ହେ ମଧୁସୂଦନ !
ରାବଣାର ରୂପେ କର ଧରଣୀମଣ୍ଡନ ॥ ୫୧
ଦୀନ ଆମ୍ଭ ନିବେଦନ ଆହେ ଚକ୍ରଧର !
ଅଯୋଧ୍ୟାମଣ୍ଡଳେ ଜାତ ହୁଅ ବିଶ୍ୱମ୍ଭର ॥ ୫୨
ଦେବଙ୍କ କରୁଣବାଣୀ ଶୁଣି ଜଗନ୍ନାଥ ।
ମନ୍ଦ୍ରସ୍ୱରେ ବୋଇଲନ୍ତି ଶୁଣ ହେ ତ୍ରିଦଶନାଥ ! ॥ ୫୩
ଦେବ ଦେବର୍ଷି ଗନ୍ଧର୍ବ ଯକ୍ଷଗଣ ଭୁଲେ ।
ଶୁଣ ମୋ' ବଚନ ଯାହା ବୋଲେ ତୁମ୍ଭ ଭଲେ ॥ ୫୪
ଆହେ ଦେବଗଣେ ! ହେଉ କଲ୍ୟାଣ ତୁମ୍ଭର ।
ରାବଣର ଭୟ ଏବେ ମନୁଁ କର ଦୂର ॥ ୫୫
ଅସୁରର ପୁତ୍ର ପୌତ୍ର ବାନ୍ଧବ ସହିତେ ।
ପ୍ରତିଜ୍ଞା କରୁଛି ବିନାଶିବି ତୁମ୍ଭ ହିତେ ॥ ୫୬
କ୍ରୂର ଅତ୍ୟାଗ୍ରହୀ ଆର୍ଯ୍ୟସଂସ୍କୃତି ଘାତକ ।
ରାବଣକୁ ବିନାଶିବି ନ ଭାଳ ତିଳେକ ॥ ୫୭
ଦେବ ଋଷି ବିପ୍ର ହିତେ ନାଶିବି ଅସୁରେ ।
ଏଗାର ସହସ୍ର ବର୍ଷ ବିତାଇ ମର୍ତ୍ତ୍ୟରେ ॥ ୫୮
ମାନବ ମେଳରେ ରହି ଲୀଳା ବିରଚିବି ।
କାଳ କାଳକୁ ମହୀରେ ଯଶ ରୁହାଇବି ॥ ୫୯
ଦେବଗଣେ ବର ଦେଇ ଦେବ ପୀତାମ୍ବର ।
ଭୂମଣ୍ଡଳେ ଜନ୍ମିବାକୁ କରଣ ବିସ୍ତର ॥ ୬୦
ଦଶରଥ ରାଜପୁରେ ହେବାକୁ ଜନମ ।
ନିଜ ତନୁ ଚାରିଭାଗ କଲେ ସତ୍ୟକାମ ॥ ୬୧

ଏମନ୍ତ ସମୟେ ସର୍ବ ଦେବ-ଋଷିଗଣେ ।
ଯକ୍ଷ ଗନ୍ଧର୍ବ ଅପ୍ସରା ଆଦି ରୁଦ୍ରମାନେ ॥ ୬୨

ସ୍ତୁତି ଆରମ୍ଭିଲେ ବିଭୁ ନାମ-ଗୁଣ ଗାଇ ।
ଆହେ ଯୋଗେଶ୍ୱର ! ମଧୁସୂଦନ ! ଗୋସାଇଁ ॥ ୬୩

ହେ ପ୍ରଭୁ ! କରୁଣାକର ! ପ୍ରତାପୀ ରାବଣ ।
ଉଦ୍ଦଣ୍ଡ ସ୍ୱଭାବ ତା'ର ଅତ୍ୟନ୍ତ ଦାରୁଣ ॥ ୬୪

ଅତି ଦର୍ପ ବାଳବଳେ ମଦାନ୍ଧ ଅସୁର ।
ତା' ଡରେ ସତତ କମ୍ପେ ଦେବ ସୁନାସୀର ॥ ୬୫

ତ୍ରିଲୋକଜନେ ତା' ତେଜେ କରନ୍ତି ରୋଦନ ।
ସାଧୁ ସନ୍ଥ ଜନେ ସଦା ପାଏ କ୍ଲେଶମାନ ॥ ୬୬

ଏସନ ଅସାଧୁ ନାଶି ରଖ ସାଧୁଜନ ।
ଏତିକି ବିନତି ଆମ୍ଭ ଶୁଣ ଜନାର୍ଦ୍ଦନ ! ॥ ୬୭

ଦେବକଣ୍ଟକକୁ ନାଶ ସମୂଳେ ହେ ଦେବ !
ଏତିକି ତବ ପଦରେ ମାଗୁଁ ରମାଧବ ! ॥ ୬୮

ଆହେ ନିଷ୍କଳଙ୍କ ରୂପ ! କଳୁଷ ନାଶନ !
ରାବଣକୁ ନାଶି ବେଗେ ଆସ ନିଜ ଧାମ ॥ ୬୯

ରାଗ ଦ୍ୱେଷ ଅହଙ୍କାର ବିବର୍ଜିତ ବିଭୁ !
ସବଂଶେ ରାବଣ ବଧି ଧର୍ମ ପାଳ ପ୍ରଭୁ ! ॥ ୭୦

ହେ ପ୍ରଭୁ ! ନିଷ୍କ୍ରିୟରୂପ ନିଷ୍କଳମହିମା ।
ଅସୁର ବିନାଶି ଫେଡ଼ ତ୍ରିଲୋକ କାଳିମା ॥ ୭୧

ଏତେ କହି ଦେବଗଣ ହୋଇଲେ ମଉନ ।
ଅନନ୍ତରେ ଆଶ୍ୱାସିଲେ ଦେବ ନାରାୟଣ ॥ ୭୨

ଆହେ ରାମ ରାଜୀବଲୋଚନ ! ଦୀନବନ୍ଧୁ !
ଅନାଥରକ୍ଷଣବାନା ଆହେ କୃପାସିନ୍ଧୁ ! ॥ ୭୩

କୃପାକର ରାମକଥା ଗୀତ ହେଉ ଶେଷ ।
ପୁରୁଷୋତ୍ତମ ବିନୟେ ନମେ ଜଗଦୀଶ ॥ ୭୪

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ପଞ୍ଚଦଶ ସର୍ଗ ।



# ଷୋଡ଼ଶ ସର୍ଗ

## ମନୁଷ୍ୟରୂପେ ଜାତ ହେବାକୁ ନାରାୟଣଙ୍କ ଆଶ୍ୱାସନା ଏବଂ ଯଜ୍ଞେଶ୍ୱରଙ୍କ ପାୟସ ଲାଭ କରି ରାଣୀଗଣଙ୍କ ଗର୍ଭ ସଞ୍ଚାର ।

ବିଧାତା ସହିତେ ଦେବଗଣ ସ୍ତୁତି ପରେ ।
ମେଘମନ୍ଦ୍ର ସ୍ୱରେ ପ୍ରଭୁ ଦେବ ଚକ୍ରପାଣି ॥ ୧
ସର୍ବଜ୍ଞ ଅନ୍ତର୍ଯ୍ୟାମୀ ଗଦା ପଦ୍ମଧର ।
ରାବଣବଧ ଉପାୟ ବିସ୍ମିତ ମନର ॥ ୨
ବୋଇଲେ ଅଭୟ କରେ ଆହେ ଦେବଗଣ !
କି ଉପାୟେ ବଧିବି ମୁଁ ଲଙ୍କାର ରାବଣ ॥ ୩
କେବଣ କୌଶଳେ ନାଶ ହେବ ସେ ଅସୁର ?
ପଦ୍ମଯୋନି ତୋଷେ ଯାକୁ ଦେଇଛନ୍ତି ବର ॥ ୪
କୁହ ହେ ଅମରଗଣ ! କରିଣ ବିସ୍ତର ।
କି ରୂପେ ମରିବ ଦେବ-କଣ୍ଟକ-ଅସୁର ॥ ୫
ଶୁଣି ଏସନକ ବାଣୀ ବୋଲନ୍ତି ତ୍ରିଦଶ ।
ଆହେ ଅବିନାଶୀ ପ୍ରଭୁ ଦେବ ଜଗଦୀଶ ! ॥ ୬
ତୁମ୍ଭେ କି ନ ଜାଣ ସ୍ୱାମି ! ଆମ୍ଭେ କି ବୋଲିବୁ ?
ତଥାପି ଜଣାଣ କରୁଅଛୁଁ ଆହେ ବିଭୁ ! ॥ ୭
ନରଲୋକେ ଅବତରି ମନୁଷ୍ୟ ଲୋକରେ ।
ରଣେ ଉଗ୍ରରୂପ ଧରି ବିନାଶ ଅସୁରେ ॥ ୮
କଠୋର ତପେ ତୋଷିଲା ଦେବ ଆଦିଭବ ।
ସେ କାରଣୁଁ ବର ସେ ଲଭିଲା ସୁଦୁର୍ଲ୍ଲଭ ॥ ୯
ସନ୍ତୋଷେ ବିଧାତା ତାକୁ ଦେଲେ ବରଦାନ ।
ଦେବ ଗନ୍ଧର୍ବ ରାକ୍ଷସେ ନୋହିବୁ ନିଧନ ॥ ୧୦
ମନୁଷ୍ୟ ଛୁରକୁ ତୋର ମନେ ଉପୁନାହିଁ ।
ଏହା ଶୁଣି ହରଷ ହୋଇଲା ଲଙ୍କସାଇଁ ॥ ୧୧

କମଳଯୋନି ମୁଖରୁ ଶୁଣି ଏ' ବଚନ ।
ବୋଇଲା ରାବଣ ମନେ ବହୁ ଅଭିମାନ ॥ ୧୨
ଘୋର ମନୁଷ୍ୟମାନଙ୍କୁ ତିଳେ ଭୟ ନାହିଁ ।
ସେ କିସ କରିବେ ମୋର ଆହେ ଦେବସାଇଁ ॥ ୧୩
ଆହେ ଦେବ ପୀତବାସ ! କରୁଣାନିଧାନ !
ଯାହାଙ୍କୁ କହନ୍ତି ମୁଖେ ବିଶ୍ରବାନନ୍ଦନ ॥ ୧୪
ସେ ରୂପ ଧରିଣ ପ୍ରଭୁ ! ନାଶ ଅସୁରକୁ ।
ରଖିବ ଅକ୍ଷୟ ଯଶ ଅନେକ କାଳକୁ ॥ ୧୫
ତ୍ରିଭୁବନ ଜନେ ସେହୁ ଦିଅଇ କଷଣ ।
ନିରପରାଧିନୀ ନାରୀ କରଇ ହରଣ ॥ ୧୬
ଏମନ୍ତ ପାପୀକୁ ନାଶ ନରରୂପ ଧରି ।
ମନୁଷ୍ୟ ହସ୍ତେ ମରିବ ତ୍ରିଦଶ-ବଇରି ॥ ୧୭
ସକଳ ଘଟରେ ଯା'ର ଅଟଇ ନିବାସ ।
ଦେବ ବାଣୀ ଶୁଣି ସେହି କମଳା ବିଳାସ ॥ ୧୮
ବୋଇଲେ ଅମୃତ ଜିଣା ବଚନେ ସଧୀରେ ।
ଆହେ ଦେବ ! ଶରଧା ମୋ' ବଳନ୍ତି ମନରେ ॥ ୧୯
ଅଯୋଧ୍ୟାର ନୃପମଣି ଦଶରଥ ନାମ ।
ତା' ପୁରେ ଜନମି ପୂରାଇବି ମନସ୍କାମ ॥ ୨୦
ପୁତ୍ର ଲାଳସାରେ ଯଜ୍ଞ କରଇ ନରେଶ ।
ଋଷ୍ୟଶୃଙ୍ଗେ ଆଣି ପୂଜେ ବିଧାନେ ଯଜ୍ଞେଶ ॥ ୨୧
ତେଣୁ ଅଯୋଧ୍ୟା ନଗରେ ହୋଇ ମୁଁ ଜନମ ।
ନାଶିବି ଦେବ-କଣ୍ଟକ ହେଲେହେଁ ବ୍ରାହ୍ମଣ ॥ ୨୨
ଏଥୁଅନ୍ତେ ବିଧି-ଦେବ-ଋଷିଗଣେ ମିଳି ।
ପ୍ରଭୁଙ୍କ ଅଭୟ ପଦେ କଲେ ନଜରୁଳି ॥ ୨୩
ଧାତାଙ୍କୁ ମେଲାଣି ମାଗି କମଳାରମଣ ।
ଦେବସଭା ମଧ୍ୟୁ ହୋଇଗଲେ ଅନ୍ତର୍ଦ୍ଧାନ ॥ ୨୪
ଦଶରଥ ପୁତ୍ର ରୂପେ ହେବାକୁ ବିଖ୍ୟାତ ।
ମନେ ମନେ ସଙ୍କଳ୍ପିଲେ ପ୍ରଭୁ ଜଗନ୍ନାଥ ॥ ୨୫

ଏଥୁ ଅନନ୍ତରେ ଶୁଣ ଅପୂର୍ବ ଚରିତ ।
ଦଶରଥ ପୁତ୍ରକାମ ଯଜ୍ଞେ ଯେ ବର୍ତ୍ତିତ ॥ ୨୬
ଋଷ୍ୟଶୃଙ୍ଗ ମୁନି ମନ୍ତ୍ର କରି ଉଚାରଣ ।
ଯଜ୍ଞପୁରୁଷେ ଅର୍ପିଲେ ଘୃତାହୁତମାନ ॥ ୨୭
ସେ ଯଜ୍ଞେ ଯଜ୍ଞପୁରୁଷ ସଦାନନ୍ଦ ହରି ।
ସନ୍ତୋଷେ ପ୍ରକଟ ହେଲେ ଶଙ୍ଖଚକ୍ରଧାରୀ ॥ ୨୮
ଯଜ୍ଞକୁଣ୍ଡ ମଧ୍ୟୁଁ ଦେବ ପ୍ରକଟ ହୋଇଲେ ।
କୋଟି ସୂର୍ଯ୍ୟ ଉଦେ ସମ ତେଜ ପ୍ରକାଶିଲେ ॥ ୨୯
କୌମୋଦକୀ ଗଦା ହସ୍ତେ ଧରି ଚକ୍ରଧର ।
ଅମିତ ବିକ୍ରମଶାଳୀ ଶାର୍ଙ୍ଗ ଶୋହେ କର ॥ ୩୦
ବିରାଟ ପୁରୁଷ ଶ୍ୟାମକାନ୍ତ ଚତୁର୍ଭୁଜ ।
ନୀଳମେଘ ପ୍ରକାଶ କି ଜିଣି ଅଗ୍ନିତେଜ ॥ ୩୧
ଅରୂପ ପ୍ରକଟ ହେଲେ ସ୍ୱପ୍ରରୂପ ଘେନି ।
ଶରୀରେ ଶୋହଇ ପୀତବାସ କଣ୍ଠେ ମଣି ॥ ୩୨
କମଳ ବଦନୁଁ ଝରେ ଅମୀପୂର ଧାରା ।
ଜଗମୋହନ ସ୍ୱରୂପ ମୁନିମନଚୋରା ॥ ୩୩
ଦୁନ୍ଦୁଭି ସମାନ ମନ୍ଦ୍ର ବାଣୀ ଗୁଞ୍ଜରିତ ।
କୁଞ୍ଚିତ ଅଳକାବଳୀ କପୋଳେ ଲମ୍ବିତ ॥ ୩୪
ଭୁବନମୋହନ ରୂପ ଧରି ଶ୍ରୀନିବାସ ।
ଯଜ୍ଞକୁଣ୍ଡ ମଧ୍ୟଗତେ ହୋଇଲେ ପ୍ରକାଶ ॥ ୩୫
ଶତକେଶରୀ ସମାନ ବିକ୍ରମେ କେ ସରି ।
ଏସନ ଉଦ୍ଦାମରୂପେ ପ୍ରକଟିଲେ ହରି ॥ ୩୬
ସକଳ ଶୁଭ ଲକ୍ଷଣେ ହୋଇଣ ସଂଯୁତ ।
ଦିବ୍ୟ ମନୋହର ଅଳଙ୍କାରେ ବିଭୂଷିତ ॥ ୩୭
ସିଂହ ଠାଣି ଜିଣି ଗତି ଅତି ମନୋହର ।
ଶଇଳ ଶିଖର ସମ ଆପୃତ ଶରୀର ॥ ୩୮
ମଦମତ୍ତ ମୃଗେନ୍ଦ୍ର ସମାନ ରୂପ ଅଙ୍ଗ ।
ଯଜ୍ଞକୁଣ୍ଡ ମଧ୍ୟେ ଦେବ ପାଇଲେକ ଶୋଭା ॥ ୩୯

କୋଟି ସୂର୍ଯ୍ୟ ସମ ଶୋଭେ ଯାଙ୍କ ତନୁକାନ୍ତି ।
କୋଟି ବୈଶ୍ୱାନର ଜିଣେ କଳେବର ଦୀପ୍ତି ॥ ୪୦
ଜାମ୍ବୁନଦ କନକେ ନିର୍ମିତ ଚରୁପାତ୍ର ।
ରଜତ ଘୋଡ଼ଣି ତହିଁ ଉପରେ ବିରାଜିତ ॥ ୪୧
ସେ ଦିବ୍ୟ ପାତ୍ରେ ପୂର୍ଣ୍ଣ ହୋଇଛି ପାୟସ ।
ତାକୁ ହୃଦାଲଗ୍ନ କରିଛନ୍ତି କମଳେଶ ୪୨
ସତେ ଅବା ପ୍ରାଣପ୍ରିୟା କମଳା ଧରି ।
ପ୍ରମୋଦେ ଆଲିଙ୍ଗିଛନ୍ତି ଦେବ ନରହରି ॥ ୪୩
ସେ ପାତ୍ରର ତେଜ ଚକ୍ଷୁ ଦିଏ ଝଲସାଇ ।
ସତେ ଅବା ମାୟାଧର ମାୟାରେ ମୋହଇ ॥ ୪୪
କ୍ଷୀରପାତ୍ର ଧରି କରେ ମଦନ ମୋହନ ।
ଦରହାସେ ନିରେଖିଲେ ନୃପଙ୍କ ବଦନ ॥ ୪୫
କୋମଳ ବଚନେ ତୋଷି କୋଶଳ-ରାଜନେ ।
ମନ୍ଦ୍ରସ୍ୱରେ ଭାବଗ୍ରାହୀ ବୋଲନ୍ତି ବଚନେ ॥ ୪୬
ଆହେ ନୃପତି-ତିଳକ ଅଯୋଧ୍ୟା ଈଶ୍ୱର !
ବ୍ରହ୍ମଲୋକୁଁ ଆସିଛି ମୁଁ ସକାଶୁଁ ତୁମ୍ଭର ॥ ୪୭
ପ୍ରଜାପତି ନାଥଙ୍କର ଆଜ୍ଞା ଘେନି କରି ।
ଆସିଛି ମୁଁ ଏଥି ଆହେ ନୃପତିକେଶରୀ ॥ ୪୮
ପରମ ହରଷେ ଦଶରଥ ଯୋଡ଼ି କର ।
ବୋଇଲେ ହେ ପ୍ରଭୁ ! କି କରିବି ଆଜ୍ଞା କର ॥ ୪୯
ସ୍ୱାଗତ ଜଣାଏଁ ପ୍ରଭୁ ଦେବ ଜନାର୍ଦ୍ଦନ !
କି ସେବା କରିବି କୁହ କମଳଲୋଚନ ॥ ୫୦
ଶୁଣି ନୃପତି ବଚନ ବୋଲେ ଯଜ୍ଞେଶ୍ୱର ।
ଶୁଣ ମୋ' ବଚନ ଆହେ ନୃପତିଶେଖର ॥ ୫୧
ଯେଣୁ ଅଟ ସଦା ଦେବ-ଦ୍ୱିଜ-ଆରାଧକ ।
ଦେବ-ପ୍ରସାଦ ଏ' ଘେନ ନୃପତିତିଳକ ॥ ୫୨
ତ୍ରିଦଶଗଣେ ସନ୍ତୋଷେ ଦେଇଛନ୍ତି ଯାହା ।
ସେ କ୍ଷୀର ଗ୍ରହଣ କରି ଆହେ ନରନାହା ॥ ୫୩

ତୁମ୍ଭେ ମନେ ବାଞ୍ଛା ଯାହା କରିଛ ରାଜନ !
ଏ କ୍ଷୀର ପ୍ରସାଦୁଁ ଲଭ ସୁଦିବ୍ୟ ନନ୍ଦନ ॥ ୫୪
ଧନଧାନ୍ୟ ଗୋପ ଲକ୍ଷ୍ମୀ ହୋଇବ ଅପାର ।
ମାତେରାଗ ହୋଇବ କ୍ଷୀର ପାନେ ନୃପବର ॥ ୫୫
ଦେବପ୍ରସାଦ ଏ' ଘେନ ଅଯୋଧ୍ୟା ନରେଶ !
ତବ ରାଣୀଗଣେ ପାନ କରନ୍ତୁ ପାୟସ ॥ ୫୬
ପାୟସ ଭକ୍ଷଣେ ହେବ ଗର୍ଭର ସଞ୍ଚାର ।
ଦେବ ପ୍ରସାଦୁ ଲଭିବେ ସୁଦିବ୍ୟ କୁମର ॥ ୫୭
ଯେଉଁ ପୁତ୍ରପ୍ରାପ୍ତି ଲାଗି ତୁମ୍ଭେ ଦୀକ୍ଷା ଘେନ ।
ଯଜ୍ଞେଶ୍ୱରେ ଆରାଧିଛ ଜାଳି ବ୍ରହ୍ମ ଅଗ୍ନି ॥ ୫୮
ସେ ପ୍ରସାଦୁ ଲଭ ତୁମ୍ଭେ ସୁରେଶ କୁମର ।
ଦେବଦୁର୍ଲ୍ଲଭ ସନ୍ତାନ ଦେବ-ପ୍ରୀତିକର ॥ ୫୯
ଶୁଣି ପ୍ରଭୁଙ୍କ ବଚନ ରାଜା ଦଶରଥ ।
'ଯଥା ଆଜ୍ଞା' ବୋଲି ଋଷି ନୁଆଁଇଲେ ମାଥ ॥ ୬୦
ଯଜ୍ଞ ପୁରୁଷଙ୍କ କରୁ ଘେନ ସ୍ୱର୍ଣ୍ଣଥାଳୀ ।
ଭକ୍ତିଭରେ ଲଗାଇଲେ ଆପଣା ମଉଳି ॥ ୬୧
ନମ୍ର ଉପରୁରେ ବନ୍ଦି ପ୍ରଭୁଙ୍କ ଚରଣେ ।
ପରିକ୍ରମା କଲେ ରାଜା ଯଜ୍ଞନାରାୟଣେ ॥ ୬୨
ଦେବତା ପ୍ରସାଦ କ୍ଷୀର ଲଭି ନୃପମଣି ।
ସତେ କି ଲଭିଲା ଆଜୀବନ-ଦୁଃଖୀ ଧନ ॥ ୬୩
ତେମନ୍ତ ପ୍ରକାରେ ରାଜା ହୋଇ ଉଜ୍ଜ୍ୱଳ ।
ବାରବାର ନୁଆଁଇଲେ ଆପଣା ମଉଳି ॥ ୬୪
ଏଥିଅନ୍ତେ ଦେବକାର୍ଯ୍ୟ ସାରି ନାରାୟଣ ।
ତକ୍ଷଣେ ସର୍ବ ସମ୍ମୁଖେ ହେଲେ ଅନ୍ତର୍ଦ୍ଧାନ ॥ ୬୫
ଅନ୍ତଃପୁରେ ରାଣୀଗଣ ଶୁଣି ଏ' ବାରତା ।
ହରଷରେ ମନେ ମନେ ହେଲେ ଉଲ୍ଲସିତା ॥ ୬୬
ଶ୍ରୀମୁଖ ବିକାଶେ ଯେସନ୍ତେ ପୂର୍ଣ୍ଣିମାର ଶଶୀ ।
ବିରାଜେ ଶରତ କାଳେ ଆକାଶରେ ହସି ॥ ୬୭

ରଜା ଦଶରଥ ସେହ କ୍ଷୀରପୂର୍ଣ୍ଣ ଥାଳୀ ।
ହରଷ ଉତ୍ସୁକ ମନେ ଅନ୍ତଃପୁରେ ମିଳି ॥ ୬୮
ବୋଇଲେ ହେ ପ୍ରିୟତମେ ! ସେହ ଏ' ପାୟସ ।
ପୁତ୍ରକାମ ଅର୍ଥେ ଯାହା ଦେଲେଣ ଦେବେଶ ॥ ୬୯
ଗ୍ରହଣ କର ଏ' କ୍ଷୀର ହରଷିତ ମନେ ।
ତନୟ ଲଭିବ ନିଶ୍ଚେ ମନୋରଥ ପୂର୍ଣ୍ଣେ ॥ ୭୦
ଏସନ କହିଲା ରାଜନ ହରଷ ଅନ୍ତରେ ।
ଅର୍ଦ୍ଧେକ ସମର୍ପି ଦେଲେ କଉଶଲ୍ୟା କରେ ॥ ୭୧
ତହୁଁ ଅର୍ଦ୍ଧଭାଗ ସୁମିତ୍ରା ଶ୍ରୀକରେ ଦେଇ ।
ପୁଣି ତହୁଁ ଅର୍ଦ୍ଧେ ଦେଲେ କୈକେୟୀରେ ନେଇ ।୭୨
ଆଉର ଯେତେକ କ୍ଷୀର ଥିଲା ସେ ପାତ୍ରରେ ।
ପୁଣି ସମର୍ପିଲେ ନୃପ ସୁମିତ୍ରାର କରେ ॥ ୭୩
ପରମ ସୁଜ୍ଞମା ଗୁଣୀ ଅଯୋଧ୍ୟା ନରେଶ ।
ଏ ରୂପେ ବାଣ୍ଟିଲେ କ୍ଷୀର ହୋଇଣ ସନ୍ତୋଷ ॥ ୭୪
ରାଣୀଗଣ କ୍ଷୀର ଲଭି ହରଷ ଅନ୍ତରେ ।
ଇଷ୍ଟଦେବ ସ୍ମରି ସଭକ୍ତିରେ ପାନ କଲେ ॥ ୭୫
ପାୟସ ଭକ୍ଷଣେ ରାଣୀ ହୋଇ ଉଲ୍ଲସିତା ।
ଆପଣା ସୌଭାଗ୍ୟ ଲଭେ ପୂଜିଲେ ଦେବତା ॥ ୭୬
ନୃପତି ପ୍ରଦତ୍ତ ଦେବ-ପ୍ରସାଦ ଭକ୍ଷଣେ ।
ଗର୍ଭବତୀ ହେଲେ ରାଣୀ ସେ ଶୁଭଲଗନେ ॥ ୭୭
ଗର୍ଭୋଦୟେ ରାଣୀଗଣ ଶୋଭିଲେ ତେମନ୍ତ ।
ଯେସନ୍ତେ ଅଗ୍ନି-ବିକର୍ତ୍ତନ ତେଜେ କଲେ ମର୍ତ୍ତ୍ୟ ॥ ୭୮
ରାଣୀଙ୍କ ଗର୍ଭସଞ୍ଚାର ଜାଣି ନୃପବର ।
ମଣିଲେ ନିଜକୁ ମର୍ତ୍ତେ ମହାଭାଗ୍ୟବାନ ॥ ୭୯
ଭାବିଲେ ଯଜ୍ଞେଶ ବରେ ମୋର ମନୋରଥ ।
ସଫଳ ହୋଇଲା ଶୁଭାଷିଲେ ଜଗନ୍ନାଥ ॥ ୮୦
ସିଦ୍ଧ-ଋଷି ଦେବଗଣେ ହୋଇଣ ପୂଜିତ ।
ଯେସନ୍ତେ ନାରାୟଣ ମନେ ହୋନ୍ତି ଆନନ୍ଦିତ ॥ ୮୧

ଏମନ୍ତ ପ୍ରକାରେ ଅଯୋଧ୍ୟାର ନରବର ।
ହରଷ ହୋଇଲେ ଲଭି ପ୍ରଭୁ ସୁକଲ୍ୟାଣ ॥ ୮୨
ସିଦ୍ଧ-ଋଷି-ବ୍ରାହ୍ମଣରେ ଲଭି ଶୁଭାଶିଷ ।
ପ୍ରମୁଦିତ ହେଲେ ମନେ ଅଯୋଧ୍ୟା ନରେଶ ॥ ୮୩
ଅଜ୍ଞାନୀ ପୁରୁଷୋତ୍ତମ ରାମପଦ ଚନ୍ଦ୍ର ।
ଭଣନ୍ତି ସାହସ ରଚିବାକୁ ରାମଗୀତ ॥ ୮୪

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଷୋଡ଼ଶ ସର୍ଗ ।



## ସପ୍ତଦଶ ସର୍ଗ

### ବ୍ରହ୍ମାଙ୍କ ଆଦେଶରେ ଦେବଗଣଙ୍କ ମର୍ତ୍ତ୍ୟମଣ୍ଡଳେ ଜନ୍ମ ।

ଏଥୁ ଅନନ୍ତରେ କଥା ଶୁଣ ସୁଜ୍ଞଜନ ।
ରାମାୟଣ ଚରିତ ଏ' ଅମୃତ କଥନ ॥ ୧
ଅଯୋଧ୍ୟା ନରେଶ ସୁଧାର୍ମିକ ଦଶରଥ ।
ତାହାଙ୍କୁ ପାୟସ ଦେଇଗଲେ ପଦ୍ମହସ୍ତ ॥ ୨
ତାଙ୍କ ରାଣୀଙ୍କ ଉଦରେ ନାରାୟଣ ।
ଦେବତ୍ୱରେ ଜନମିବେ ଚତୁର୍ଦ୍ଧା ରୂପେଣ ॥ ୩
ଏ' ଗୋପନ ତଥ୍ୟ ଜାଣି ଦେବ ପ୍ରଜାପତି ।
ସକଳ ଦେବଙ୍କୁ ରାଇ ବୋଇଲେ ତତ୍ତ୍ୱତି ॥ ୪
ଆହେ ଦେବଗଣ ! ଶୁଣ ମୋହର ବଚନ ।
ସତ୍ୟପ୍ରତିଜ୍ଞ ଅଚିନ୍ତ୍ୟ ଦେବ ନାରାୟଣ ॥ ୫
ପରମ ପୁରୁଷ ମହାବୀର ଶାର୍ଙ୍ଗଧର ।
ସଙ୍କଟେ କରନ୍ତି ଦେବକୁଳେ ଉପକାର ॥ ୬

ଦେବ-ଋଷି-ସନ୍ଥଜନ ସ୍ତୁତେ ଚକ୍ରଧର ।
ମର୍ତ୍ତ୍ୟଲୋକେ ମହାପ୍ରଭୁ ହେବେ ଅବତାର ।। ୭
ନରଲୋକେ ସଂହାରିବେ ବିଶ୍ରବା ନନ୍ଦନ ।
ଏଣୁ ଦେବଗଣେ ଘେନ ମୋହର ବଚନ ।। ୮
ପ୍ରଭୁଙ୍କ ସହାୟ ଲାଗି ହୋଇ ତତପର ।
ଦେବତୁଲ୍ୟ ମହାବୀର ପୁତ୍ର ସୃଷ୍ଟି କର ।। ୯
ଜଗତେ ହୋଇବେ ସେହୁ ମହା କୀର୍ତ୍ତିଧର ।
ବୁଦ୍ଧିମନ୍ତ ମାତ୍ତଜ୍ଞ ମାୟାବୀ ରୂପଧର ।। ୧୦
ପବନ ସମାନ ବଳୀ ଇଚ୍ଛାରୂପୀ ଶୂର ।
ଦିବ୍ୟାସ୍ତ୍ର ପ୍ରୟୋଗେ ହେବେ ମହାଧୁରନ୍ଧର ।। ୧୧
ବିଷ୍ଣୁ ସମ ପରାକ୍ରମୀ ସର୍ବଗୁଣେ ଦକ୍ଷ ।
ଅପରାଜିତ ହୋଇବେ ଶତ୍ରୁର ସମକ୍ଷ ।। ୧୨
ମାୟାବଳେ କାମଚର ହେବେ ଇଚ୍ଛାବଳେ ।
ମହାବଳୀ ହେବେ ଯେହ୍ନେ ସ୍ୱରଗେ ଅମରେ ।। ୧୩
ସକଳ ଗୁଣେ ଭୂଷିତ ଜିତେନ୍ଦ୍ରିୟ ବୀର ।
ଏମନ୍ତ ଲକ୍ଷଣବନ୍ତ ପୁତ୍ର ସୃଷ୍ଟି କର ।। ୧୪
ଅପ୍ସରା ଗନ୍ଧର୍ବୀ ଆଉ ଯକ୍ଷିଣୀ ବାନରୀ ।
ନାଗିନୀ କିନ୍ନରୀ ଋକ୍ଷନାରୀ ବିଦ୍ୟାଧରୀ ।। ୧୫
ଏହାଙ୍କ ଠାରେ ସୁପୁତ୍ର କରଅ ଉତ୍ପନ୍ନ ।
ହୋଇବେ ପ୍ରଭୁଙ୍କୁ ସହାୟକ ସେ ସନ୍ତାନ ।। ୧୬
ଶୁଣ ହେ ଅମରଗଣ ! ମୋହର ବଚନ ।
ଋକ୍ଷରାଜ ଜାମ୍ବବାନେ କରିଛି ଜନମ ।। ୧୭
ଦିନେକ ଅଳସବଶେ ଥିଲି ସଦନରେ ।
ହାଇ ମାରନ୍ତେ ସହସା ଜନ୍ମିଲ ମୁଖରେ ।। ୧୮
ଏସନ ବଚନ ଶୁଣି ଅମର ସକଳ ।
ଋକ୍ଷ-ବାନର ରୂପରେ ବହିଣ ଶରୀର ।। ୧୯
ଆପଣା ସମାନ ପୁତ୍ରରତ୍ନ ଜାତ କରି ।
ଅମର କାରଣ ରଖିଗଲେ ସୁରପୁରୀ ।। ୨୦

ସନ୍ଥୁ ମହାତମା ସିଦ୍ଧ ସ୍ବଢଣ ଗନ୍ଧର୍ବ ।
ବାନର ଋକ୍ଷ ସ୍ୱରୂପେ ହୋଇଣ ଉଦ୍ଭବ ॥ ୨୧
ପୁତ୍ର ଜନ୍ମାଇଲେ ଆପଣାର ସମସର ।
ଯାହାଙ୍କ ତୁଲେ ସମାନ ନୁହନ୍ତି କେଶରୀ ॥ ୨୨
ମଘବାନ ଔରସରୁ ଜନମିଲେ ବାଳୀ ।
ମହେନ୍ଦ୍ରଗିରି ସମାନ ମହାବପୁଧାରୀ ॥ ୨୩
ବଳବନ୍ତ ପଣେ ଶତ ସହସ୍ର କେଶରୀ ।
ବାନରରାଜଙ୍କ ତୁଲେ ନୁହନ୍ତି କେ ସରି ॥ ୨୪
ଜଗଜ୍ଜ୍ୟୋତି ତପନ ଔରସୁ ସୁଗ୍ରୀବର ।
ଜାତ ହେଲେ ମହାତେଜେ ବାନର ପ୍ରବର ॥ ୨୫
ଦେବଗୁରୁ ସ୍ୱଗୁଣ ସମାନ ପୁତ୍ରହୁ ।
ତାର ନାମେ ମହାବୀର କରାଇଲେ ଜନ୍ମ ॥ ୨୬
ବାନରବଳେ ସେ ତାର ମହାବଳୀୟାନ ।
ଯୂଥପତିଗଣେ ସେହୁ ହୋଇଲା ପ୍ରଧାନ ॥ ୨୭
ବୁଦ୍ଧିବଳେ ପିତାତୁଲ୍ୟ ମହାଧୀର ଶୂର ।
ପରମ ଉଦାର ଈଶ୍ୱରସ୍ତେ ଧୂରନ୍ଧର ॥ ୨୮
ଧନପତି କୁବେର ଏମନ୍ତ ବସ୍ତୁରଣ ।
ପୁତ୍ର ଜନ୍ମାଇଲେ ନାମ ଗନ୍ଧମାଦନ ॥ ୨୯
ଦେବଶିଳ୍ପୀ ବିଶ୍ୱକର୍ମା ସ୍ୱସମାନ ସୁତ ।
ଜାତ କଲେ ନଳ ନାମେ ସେହୁ ସୁବିଖ୍ୟାତ ॥ ୩୦
ତେଜସ୍ୱୀ ପଣରେ ସେହୁ ହୁତାଶନ ସମ ।
ଜାତ କରାଇଲେ ଅଗ୍ନି ନୀଳ ଯା'ର ନାମ ॥ ୩୧
ବାନରବୀର ପୁଙ୍ଗବେ ଅଟେ ମହାବଳୀ ।
ବଳବୀର୍ଯ୍ୟପଣେ ସେହୁ ବୀରଙ୍କ ମଣ୍ଡଳ ॥ ୩୨
ବରୁଣଠାରୁ ସୁଷେଣ ହେଲେ ଉତପନ ।
ପର୍ଜନ୍ୟ ଜନମ କଲେ ଶରଭକୁ ଜାଣ ॥ ୩୩
ଅଶ୍ୱିନୀକୁମାରେ ଜାତ କଲେ ଦୁଇ ସୁତ ।
ମଇନ୍ଦ ଦ୍ୱିବିଦ ନାମେ ହେଲେ ସେ ବିଖ୍ୟାତ ॥ ୩୪

ପବନ ଦେବତା ଆତ୍ମସମ ପୁତ୍ରରତ୍ନ ।
ଅଞ୍ଜନା ବାନରୀ ଗର୍ଭେ କରାଇଲେ ଜନ୍ମ ॥ ୩୫
ଅଶନି ସମାନ ଦୃଢ଼ ଯାହାର ଶରୀର ।
ବୀରପୁଙ୍ଗବଙ୍କ ମଧ୍ୟେ ଯେହୁ ମହାବୀର ॥ ୩୬
ବିହଗପତି ସମାନ ଆକାଶବିହାରୀ ।
ବୃହସ୍ପତି ସମ ଯେ ଅଟଇ ବୁଦ୍ଧିଶାଳୀ ॥ ୩୭
ଗୁଣଙ୍କ ବିଧାନ ପଣେ ଯେହୁ ଧୁରନ୍ଧର ।
ମହାକପେନ୍ଦ୍ର ହନୁମାନ ନାମ ଯା'ର ॥ ୩୮
ଅତୁଳ ବଳବିକ୍ରମ ସ୍ୱର୍ଣ୍ଣଗିରି ସମ ।
ହନୁଜବଳ-ବଳନେ ସାକ୍ଷାତ ସେ ଯମ ॥ ୩୯
ଏମନ୍ତ ସୁପୁତ୍ରଗଣେ କରାଇଣ ଜାତ ।
ସକଳ ଅମରବରେ ହେଲେ ହରଷିତ ॥ ୪୦
ଏମନ୍ତ ଶତ ସହସ୍ର ବାନରେ ସମ୍ଭବ ।
ହେବାରୁ ବିସ୍ମୟ କଲେ ମନେ ପଦ୍ମଭବ ॥ ୪୧
ଏକେ ଏକେ ମହାବଳୀ ଅଟନ୍ତି ବାନରେ ।
ସମର୍ଥ ଅଟନ୍ତି ବଧେ ବିଶ୍ରବାକୁମରେ ॥ ୪୨
ବାନର ବୀରଙ୍କ ବଳ ନ ଯାଇ କଳନ ।
ମନହୁଁ ବେଗବନ୍ତ ସେ ଅଟନ୍ତି ପୁଣ ॥ ୪୩
ଗଜବର-ଗିରିରାଜ ସମ ଯେ ଆକାର ।
ଇଚ୍ଛାଗତି ଅଟନ୍ତି ସେ ବାନର ପ୍ରକର ॥ ୪୪
ଋକ୍ଷ ମର୍କଟ ଆବର ଗୋଲାଙ୍ଗୁଳ ବୀରେ ।
ଜାତ ହେଲେ ସହସ୍ର ସହସ୍ର ମହୀତଳେ ॥ ୪୫
ଯେବଣ ଦେବତା ପୁତ୍ର ହୋଇଲେ ବାନରେ ।
ତହୁଁ ବଳ ରୂପଗୁଣ ଆବର ଶକ୍ତିରେ ॥ ୪୬
ଏମନ୍ତ ବୀରଙ୍କୁ ଲଭି କମ୍ପିଲା ଧରଣୀ ।
ସତେ ବା କ୍ଷଣକେ ନେବେ ସ୍ୱବଶକୁ କିଣି ॥ ୪୭
ମହର୍ଷି ଗନ୍ଧର୍ବ ଦେବ ନାଗ କିଂପୁରୁଷ ।
ସିଦ୍ଧ-ବିଦ୍ୟାଧରଗଣେ ହୋଇଣ ହରଷ ॥ ୪୮

ଅନେକ ବୀର ସନ୍ତାନ କଲେ ଉତପତ୍ତି ।
ଯାହାଙ୍କ ପାଦଘାତରେ ଝମକଇ ପୃଥ୍ୱୀ ॥ ୪୯
ଦେବ-ଯଶୋଗାନେ ଯେହ୍ନ ସତତ ନିରତ ।
ସ୍ମରଣ ଉତ୍ପନ୍ନ କରାଇଲେ ବହୁ ସୁତ ॥ ୫୦
ସରବେ ଭକ୍ଷିଣ ବନଜାତ ଫଳମୂଳ ।
ଅରଣ୍ୟ ମଧ୍ୟେ ନିବାସ କଲେ ମହାବୀର ॥ ୫୧
ଦେବ-କିନ୍ନର-ପନ୍ନଗ-ଯକ୍ଷନାରୀଗଣ ।
ଜାତ କଲେ ଶତଶତ୍ର ବାନରଙ୍କୁ ପୁଣ ॥ ୫୨
ଅପସରୀ ବିଦ୍ୟାଧରୀ ଆଉ ଋଷିନାରୀ ।
ଗର୍ଭରୁ ଜନମ ହେଲେ ଶାଖାମୃଗ ବଳୀ ॥ ୫୩
ସର୍ବେ ମହାବୀର କାମଚର ସୁଚତୁର ।
ସ୍ୱେଚ୍ଛାରେ ଲଙ୍ଘି ପାରନ୍ତି ମହାଗିରିବର ॥ ୫୪
ନାନା ରୂପ ଧରି ବନେ କରନ୍ତି ବିହାର ।
ତାହାଙ୍କ ବିକ୍ରମେ ଧରୀ କମ୍ପେ ଥରହର ॥ ୫୫
ସିଂହ ବ୍ୟାଘ୍ର ଦେଖି ସେ ବାନର ଋକ୍ଷବଳ ।
ଅନାୟାସେ ବିନାଶନ୍ତି ପ୍ରହାରି ପ୍ରସ୍ତର ॥ ୫୬
ଯୁଦ୍ଧମଦେ ହୁଙ୍କାରିଣ ପର୍ବତ ଉପାଡ଼ି ।
ଶବଦ କରନ୍ତି ଯେହ୍ନେ ମେଘ ଘଡ଼ଘଡ଼ି ॥ ୫୭
ଗିରିଶୃଙ୍ଗ ଉପାଡ଼ିଣ ନିଜ ଭୁଜବଳେ ।
ବିକ୍ରମି ଦମ୍ଭେ ପିଟନ୍ତି ଗିରିଶୃଙ୍ଗବରେ ॥ ୫୮
ନଖଦନ୍ତେ ବିଦାରିଣ ଗଜରାଜ ଶିରେ ।
କନ୍ଦୁକ ପ୍ରାୟେ ଫିଙ୍ଗନ୍ତି ପର୍ବତ ଉପରେ ॥ ୫୯
ସକଳ ଦିବ୍ୟ ଆୟୁଧ ପ୍ରୟୋଗେ ପାରଗ ।
ହୋଇଲେ ସେ ବନଚାରୀବେ ବଜ୍ର ସମ ଅଙ୍ଗ ॥ ୬୦
ବିଶାଳ ପାଦପେ ଉପାଡ଼ନ୍ତି କ୍ଷଣକରେ ।
ଧରୀ ଦୋହଲାଇ ଦ୍ୟନ୍ତି ଭୁଜ ବିକ୍ରମରେ ॥ ୬୧
ନିର୍ଝରିଣୀ ରତ୍ନାକରେ କରନ୍ତି ପ୍ରବେଶ ।
ପୃଥ୍ୱୀ ବିଦାରନ୍ତି ନଖେ କରିଣ ବିନୋଦ ॥ ୬୨

କ୍ଷଣକେ ପାରନ୍ତି ମହାସାଗରକୁ ଲଙ୍ଘି ।
ବଳଦର୍ପେ ପର୍ବତ ଉପାଡ଼ି ଦ୍ୟନ୍ତି ଫିଙ୍ଗି ॥ ୬୩
ଲମ୍ଫ ପ୍ରଦାନେ ଛୁଅନ୍ତି ଆକାଶମଣ୍ଡଳ ।
ହସ୍ତ ପ୍ରସାରି ଧରନ୍ତି ଘୋର ମେଘମାଳ ॥ ୬୪
ମତ୍ତଗଜ ଦେଖି ବେଗେ ଧାଆନ୍ତି ପଛରେ ।
ଧରି ଗଜପୁଚ୍ଛ ଖେଳୁଥା'ନ୍ତି କୁତୂହଳେ ॥ ୬୫
ଗଜରାଜ କରନ୍ତି ଆୟତ୍ତ ଶୁଣ୍ଢ ମୋଡ଼ି ।
ବଳ କଷନ୍ତି ପର୍ବତେ ପର୍ବତ କଚାଡ଼ି ॥ ୬୬
ସିଂହରଡ଼ି ଶୁଣି ତାଙ୍କ ବ୍ୟୋମଚରଗଣ ।
ମହାଭୟେ ତଳେ ପଡ଼ି ତେଜନ୍ତି ପରାଣ ॥ ୬୭
ଏମନ୍ତ ପ୍ରକାରେ ବଳଦର୍ପେ ହୋଇ ମତ୍ତ ।
ଜନ୍ମିଲେ ଋକ୍ଷ-ମର୍କଟେ କୋଟି କୋଟି ଯୂଥ ॥ ୬୮
ବାନର-ଋକ୍ଷ ବନରେ ହୋଇ ଯୂଥ ଯୂଥ ।
ଥୋକେ ଆଶ୍ରେ କଲେ ଋକ୍ଷବାନ ପରବତ ॥ ୬୯
ରହିଲେ ଥୋକାଏ ବନଗିରି ଆଶ୍ରେ କରି ।
ବାନରରାଜ୍ୟ ସ୍ଥାପିଲେ ମହାବୀରେ ମିଳି ॥ ୭୦
ଇନ୍ଦ୍ରତନୟ ବାଳୀକୁ ଦେଲେ ରାଜପଣ ।
ସେହିଲେ ସେବକପଣେ ଋକ୍ଷ-କପିଗଣ ॥ ୭୧
ତପନ-ତନୟ ସୁଗ୍ରୀବର ମହାବୀର ।
ଯୁବରାଜପଣେ ସେବେ ଭ୍ରାତାର ପୟର ॥ ୭୨
ନଳ ନୀଳ ତାର ଗନ୍ଧମାଦନ ବୀର ।
ମହାବୀର ହନୂମାନ ସହିତେ ସକଳ ॥ ୭୩
ଆଜ୍ଞା ପ୍ରମାଣେ ଖଟିଲେ ବାଳୀ ପାଦତଳେ ।
କମ୍ପିଲା ଧରଣୀ ଋକ୍ଷ-ବାନରଙ୍କ ଭରେ ॥ ୭୪
ବନେ ଭ୍ରମି ସିଂହବ୍ୟାଘ୍ରେ ଦଳି ଅନାୟାସେ ।
ଭୁଜବିକ୍ରମେ ଧରାରେ ଭ୍ରମିଲେ ହରଷେ ॥ ୭୫
ଶତସିଂହ-ପରାକ୍ରମୀ ଇନ୍ଦ୍ରର ନନ୍ଦନ ।
ରାଜପଦେ ବସି କଲେ ପ୍ରଜାରେ ପାଳନ ॥ ୭୬

ତାଙ୍କ ଭୁଜ ଆଶ୍ରେ କରି ଋକ୍ଷ କପିବଳ ।
ନିର୍ଭୟେ ଭ୍ରମିଲେ ବନେ ଫଳାଇ ଚନ୍ଦନ ॥ ୭୭
ସର୍ବ ଭିନ୍ନ ଭିନ୍ନ ବେଶ ଆକାର ଲକ୍ଷଣ ।
ସସାଗର-ଧରାରେ ବ୍ୟାପିଲେ କପିଗଣ ॥ ୭୮
ଭୟଙ୍କର ରୂପ ତେଜ ବିକ୍ରମ ଅତୁଳ ।
ଶ୍ରୀରାମ ସହାୟେ ସର୍ବେ ହୋଇଲେକ ଠୁଳ ॥ ୭୯
ପର୍ବତ ଶିଖର ସମ ଉଚ୍ଚ ମହାବଳୀ ।
ଋକ୍ଷ କପିବୀରେ ପୂରିଗଲେ ବନଗିରି ॥ ୮୦
ଦେବ ଅଂଶେ ଜାତ ଋକ୍ଷ ବାନରଁ ଚରିତ ।
ଶୁଣି ଜନେ ଏକମନେ ହୁଅ କୃତକୃତ୍ୟ ॥ ୮୧
ଅପୂର୍ବ ଆଖ୍ୟାନ ଏହୁ ରାମାୟଣ କଥା ।
ଶୁଣିଲେ ତୁଟଇ କ୍ଷଣେ ଭବବନ୍ଧବ୍ୟଥା ॥ ୮୨
ସପ୍ତଦଶ ସର୍ଗ ସତସ୍ତରିଶ ଶୋକକେ ।
ରଚିଲେ ତମସା ତୀରେ ଋଷି ବାଲ୍ମିକେ ॥ ୮୩
ଆଦିକାବ୍ୟ ଚରିତ ଏ' ଅମୃତ ସମାନ ।
ତେଣୁ ସାଧୁଜନେ ଏଥେ ଦିଅ ମନକର୍ଣ୍ଣ ॥ ୮୪
ବର୍ଣ୍ଣିତ ପୁରୁଷୋତ୍ତମ ଧ୍ୟାନ ଜ୍ଞାନ ସ୍ଥିର ।
ଦେଶଭାଷା ଗୀତବନ୍ଧେ କରଇ ପ୍ରଚାର ॥ ୮୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତଦଶ ସର୍ଗ ।



# ଅଷ୍ଟାଦଶ ସର୍ଗ

## ଋଷ୍ୟଶୃଙ୍ଗଙ୍କ ବିଦାୟ, ଶ୍ରୀରାମ, ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କ ଜନ୍ମ ତଥା ବିଶ୍ୱାମିତ୍ରଙ୍କ ଆଗମନ ।

ଦଶରଥ ଯାଗ ଶେଷେ ତ୍ରିଦଶେ ସକଳ ।
ନିଜ ନିଜ ହବିର୍ଭାଗେ ହୋଇ ତୋଷହୃଦ ॥ ୧
ଚଳିଲେ ଅମର ପୁରେ କରି ସୁକଲ୍ୟାଣ ।
ଆଦର ମନେ ସୁମରି ରାବଣ ନିଧନ । ୨
ଯଜ୍ଞକାଳ ଅନ୍ତେ ରାଜା ପତ୍ନୀଗଣ ସଙ୍ଗେ ।
ରାଜପୁରେ ପ୍ରବେଶିଲେ ମନର ସରାଗେ ॥ ୩
ସକଳ ସୈନ୍ୟ ସେବକ ଗମିଲେ ନଗର ।
ଅଯୋଧ୍ୟା ରାଜନବରେ ହେଲା ଚହଳ ॥ ୪
ଦୂରଦେଶୁ ଆସିଥିଲେ ଯେତେକ ରାଜନ ।
ବଶିଷ୍ଠ-ଋଷ୍ୟଶୃଙ୍ଗଙ୍କୁ କରି ବହୁ ମାନ୍ୟ ॥ ୫
ସୈନ୍ୟ ସେବକ ସଙ୍ଗେ ମିଳିଣ ସକଳେ ।
ଦଶରଥ ଗୁଣ ଘୋଷି ନିଜ ଦେଶେ ଗଲେ ॥ ୬
ଶୁଭ୍ରବେଶୀ ସେନାଗଣ ହୋଇ ହରଷିତ ।
ଗମିଲେ ନୃପତି ସଙ୍ଗେ ବେଢ଼ି ଦିବ୍ୟ ରଥ ॥ ୭
ନୃପଗଣ ଗମନ୍ତେ ଅଯୋଧ୍ୟା ନରସାଇଁ ।
ବେଦଜ୍ଞ ବ୍ରାହ୍ମଣ ମୁନି ଋଷି ସଙ୍ଗେ ନେଇ ॥ ୮

ପ୍ରବେଶିଲେ ରାଜପୁରେ ମନର ହରଷେ ।
ପୁତ୍ର ଜନମ ଭାବନା ଭାବି ହୃଦଦେଶେ ॥ ୯
ରାଜ ଦମ୍ପତିରେ ହୋଇ ବିଶେଷେ ସତ୍କୃତ ।
ଶାନ୍ତା ଘେନି ବନେ ଗଲେ ବିଭାଣ୍ଡକ ସୁତ ॥ ୧୦
ସଙ୍ଗେ ଘେନି ସେବକ ସାମନ୍ତ ନରସାଇଁ ।
ମୁନି ପଛେ ପଛେ ଗଲେ ଯୋଡ଼ହସ୍ତ ହୋଇ ॥ ୧୧
ପହଣ୍ଡ ମଣାଇଁ ମୁନିସୁତେ ଦଶରଥ ।
ଲେଉଟିଲେ ଆଶ୍ରମ ତ୍ରେ ହୋଇ ପ୍ରମୋଦିତ ॥ ୧୨
ଏଥିଅନ୍ତେ ଶୁଣ ଜନେ ଅପୂର୍ବ ଚରିତ ।
ଯାଗ ଶେଷ କରି ନରପତି ଦଶରଥ ॥ ୧୩
ବିଦାୟ ଦେଇ ଅତିଥି ଆତ୍ମୀୟ ସ୍ୱଜନେ ।
ନିଶ୍ଚିନ୍ତେ ରହିଲେ ନଗ୍ରେ ଘେନି ପୁରଜନେ ॥ ୧୪
ପୁତ୍ରଙ୍କ ଜନମ କଥା ଭାବଣ ମନରେ ।
ସୁଖେ ବିଶ୍ରମିଲେ ରାଜା ରାଜଲକ୍ଷ୍ମୀ କୋଳେ ॥ ୧୫
ଯଜ୍ଞ ସମାପନ ଅନ୍ତେ ଏକାଦଶ ମାସ ।
ବିତିଯାଇ ଦ୍ୱାଦଶ ଯେ ହୋଇଲା ପ୍ରବେଶ ॥ ୧୬
ଋତୁରାଜ ପ୍ରକଟିଲା ଭୁବନ ମଣ୍ଡଳେ ।
ଚଇତ୍ର ମାସ ନବମୀ ପକ୍ଷ ଯେ ଶୁକଳେ ॥ ୧୭
ନକ୍ଷତ୍ର ଯେ ପୁନର୍ବସୁ କର୍କଟ ଲଗନ ।
ତିଥିବାର ଯୋଗ ଯେ ହୋଇଛି ସୁଲକ୍ଷଣ ॥ ୧୮
ସୂର୍ଯ୍ୟ ଶନି ମଙ୍ଗଳ ଯେ ଶୁକ୍ର ବୃହସ୍ପତି ।
ପଞ୍ଚ ଗ୍ରହେ ଉଚ୍ଚସ୍ଥାନେ କରିଛନ୍ତି ସ୍ଥିତି ॥ ୧୯
ଲଗ୍ନରେ ଅଛନ୍ତି ତାରାଧିପ ଔଷଧୀଶ ।
ଏମନ୍ତ ସମୟେ ବାଜିଲକ ଉଚ୍ଚେ ଘୋଷ ॥ ୨୦
ବଡ଼ରାଣୀ କଉଶଲ୍ୟା ଗର୍ଭେ ଶୁଭ କ୍ଷଣେ ।
ଜନମିଲ ପୁତ୍ର ଏକ ଅତି ସୁଲକ୍ଷଣେ ॥ ୨୧
ବିଷ୍ଣୁ ସ୍ୱରୂପ ନନ୍ଦନ ଅତି ମନୋହର ।
ଇକ୍ଷ୍ୱାକୁକୁଳ-ଭୂଷଣ ତ୍ରୈଲୋକ୍ୟ ସୁନ୍ଦର ॥ ୨୨

ଅରୁଣାଭ ନେତ୍ର ଯୁଗ ଅଟେ ବ କଳକର ।
ବିମ୍ବଫଳ ଜିଣି ଓଷ୍ଠ ଅଟଇ ସୁନ୍ଦର ॥ ୨୩
ସୁବିଶାଳ ବାହୁଯୁଗ ବଚନ ଅମୃତ ।
ଦୁନ୍ଦୁଭି ଶବଦ ପ୍ରାୟେ ଶୁଭେ ଅବିରତ ॥ ୨୪
ଅମିତ-ତେଜସ୍ୱୀ ପୁତ୍ର ଲଭି କଉଶଣୀ ।
ଶୋଭିଲେ ଅଦିତ ଯେହ୍ନେ ଲଭି ବଜ୍ରପାଣି ॥ ୨୫
ରାଜପୁର ଜନେ ଦେଖି ବାଳକ ଲକ୍ଷଣ ।
କହିଲେ ବିଷ୍ଣୁପ୍ର ଜାତ ହେଲେ ନାରାୟଣ ॥ ୨୬
ତଦନ୍ତେ ଶୁଭବ୍ରତ ଭରତ କୁମର ।
ଜନମିଲେ କୈକେୟୀଙ୍କ ଉଦରୁ ସୁନ୍ଦର ॥ ୨୭
ବିଷ୍ଣୁ ଅଂଶେ ଜାତ ସେହୁ ସର୍ବ ସୁଲକ୍ଷଣ ।
ଜନ୍ମିଲେ ଉତ୍ତମ ଲଗ୍ନେ କୁମର ରତନ ॥ ୨୮
ତଦନ୍ତେ ସୁମିତ୍ରା ଗର୍ଭେ ସୁଲକ୍ଷଣେବନ୍ତ ।
ଲକ୍ଷ୍ମଣ ନାମରେ ପୁତ୍ର ହୋଇଲା ସମ୍ଭୂତ ॥ ୨୯
ଶତ୍ରୁବଳ ଗଞ୍ଜନରେ ହୋଏ ଯେ ସମର୍ଥ ।
ଶତ୍ରୁଘ୍ନ ନାମରେ ପୁତ୍ର ହୋଇଲେକ ଜାତ ॥ ୩୦
ବିଷ୍ଣୁ ଅଂଶୁ ସମ୍ଭୂତ ସେ କୁମର ଯୁଗଳ ।
ଦେଖି ତାଙ୍କ ଅପଘନ ପଡ଼ିଲା ଚହଳ ॥ ୩୧
ସର୍ବ ଅସ୍ତ୍ର ଶସ୍ତ୍ରେ ସୁକୁଶଳ ପୁତ୍ର ବେନି ।
ହରଷିତ ହେଲେ ତାଙ୍କୁ ଲଭି ସେ ରମଣୀ ॥ ୩୨
ପ୍ରସନ୍ନଚିତ୍ତ ଭରତ ସଦା ଶୁଭବ୍ରତ ।
ମୀନ ଲଗ୍ନେ ପୁଷ୍ୟା ନକ୍ଷତ୍ରରେ ସେହୁ ଜାତ ॥ ୩୩
କର୍କଟ ଲଗ୍ନରେ ଜାତ ସୁମିତ୍ରା କୁମରେ ।
ଗ୍ରହରାଜ ଅବସ୍ଥିତ ଥିଲେକ ଉଚ୍ଚରେ ॥ ୩୪
ଅଶ୍ଳେଷା ନକ୍ଷତ୍ରେ ଜାତ ବେନି ସହୋଦରେ ।
ଗୁଣବନ୍ତ ଶୀଳବନ୍ତେ ଅଟନ୍ତି ମହୀରେ ॥ ୩୫
ଦଶରଥ ରାଜଙ୍କର ଏ' ଚାରି କୁମର ।
ଭିନ୍ନ ଭିନ୍ନ ଗୁଣେ ହୋଇଥିଲେ ଶୁଭଙ୍କର ॥ ୩୬

ସକଳ ଶୁଭ ଲକ୍ଷଣେ ହୋଇଥିଲେ ଯୁକ୍ତ ।
ଭାଦ୍ରପଦ ଋଷ ସମ ଜଗତେ ବନ୍ଦିତ ।। ୩୭
ଜନମ ସମୟେ ଏଣୁ ଶୁଭପ୍ରଦଙ୍କର ।
ଗାଇଲେ ଗନ୍ଧର୍ବେ ଗୀତ ସୁସ୍ୱରେ ମଧୁର ।। ୩୮
ଅପ୍ସରସଗଣେ ନୃତ୍ୟ କଲେ ହୃଷ୍ଟମନେ ।
ଦେବଗଣ ଦୁନ୍ଦୁଭି ବାଇଲେ ମନ୍ଦସ୍ୱନେ ।। ୩୯
ଆକାଶରୁ ପୁଷ୍ପବୃଷ୍ଟି ହେଲା ଅକଳନ ।
ମହାନନ୍ଦେ ପୂର୍ଣ୍ଣ ହେଲା ଅମର ଭୁବନ ।। ୪୦
ଅଯୋଧ୍ୟା ନଗର ଜନେ ମହା ଆନନ୍ଦରେ ।
ଜୟ ଜୟ ନାଦ କଲେ ଉଚ୍ଛ୍ୱସିତ ସ୍ୱରେ ।। ୪୧
ରାଜପଥ-କ୍ଷୁଦ୍ରପଥେ ପୂରିଲା ଚହଳ ।
ସର୍ବତ୍ର ଶୁଭିଲା ନରନାରୀଙ୍କ ଗହଳ ।। ୪୨
ନଟ ନର୍ତ୍ତକ ନର୍ତ୍ତକୀ ମହା ମହୋଲ୍ଲାସେ ।
ନୃତ୍ୟ କଲେ କୁମରଙ୍କ ଜନମ ଉତ୍ସବେ ।। ୪୩
କଳାବନ୍ତ ଜନେ କଲେ କଳା ପ୍ରଦର୍ଶନ ।
ଆନନ୍ଦେ ଅଯୋଧ୍ୟା ପୁରୀ ହୋଇଲା ମଗନ ।। ୪୪
ପ୍ରଜାଜନ ହର୍ଷୋଲ୍ଲାସେ ପୂରିଲେ ଗଗନ ।
ଧନରତ୍ନେ ସୁଖୀ ହେଲେ ଦୀନ ଦୁଃଖୀ ଜନ ।। ୪୫
ହାଟ ବାଟ ପୂର୍ଣ୍ଣ ହେଲେ ରତନ ଭୂଷଣେ ।
ଆନନ୍ଦିତ ହେଲେ ସର୍ବେ ସମୁଚିତ ଦାନେ ।। ୪୬
ମହାରାଜ ଦଶରଥ ଆନନ୍ଦ ମନରେ ।
ସୂତ ମାଗଧ ବନ୍ଦୀଙ୍କୁ ତୋଷିଲେ ଧନରେ ।। ୪୭
ବ୍ରାହ୍ମଣ ବୈଷ୍ଣବ ଜନେ ଲଭିଲେ ଗୋଦାନ ।
ରତନ ଭୂଷଣ ଲଭି ହେଲେ ହୃଷ୍ଟମନ ।। ୪୮
ଦ୍ୱାଦଶଦିନ ଅନ୍ତରେ ଅଯୋଧ୍ୟା ରାଜନ ।
ମନ ସୁଖେ କରାଇଲେ ସେ ନାମକରଣ ।। ୪୯
କୁଳଗୁରୁ ବ୍ରହ୍ମସୁତ ବଶିଷ୍ଠ ମହର୍ଷି ।
ନାମକରଣ ବଖିଲେ ସୁମଙ୍ଗଳେ ବସି ।। ୫୦

କୌଶଲ୍ୟାଙ୍କ ଗର୍ଭେ ଜାତ ହୋଇଥିଲ ଯେହୁ ।
'ରାମ' ନାମ ଦିଲେ ବଶିଷ୍ଠ ମହାବାହୁ ॥ ୫୧
ପରମ ସୁଖଦ ଗୁଣେ ଯେହୁ ବିଭୂଷିତ ।
ବିଷ୍ଣୁ ଅଂଶେ ଜନ୍ମି ସେହୁ ହୋଇଲେକ ଖ୍ୟାତ ॥ ୫୨
ଶୁଭ ଯୋଗେ କୈକେୟୀ କ୍ରମରେ ଦେଲେ ନାମ ।
'ଭରତ' ନାମ ଯାହାର ହୋଇଲ ବିଧାନ ॥ ୫୩
ସୁମିତ୍ରା କୋଳରେ ବେନି କ୍ରମରେ ଯେ ଜନ୍ମ ।
ଉଭିଙ୍କର ନାମ ଦେଲେ 'ଲକ୍ଷ୍ମଣ' 'ଶତ୍ରୁଘ୍ନ' ॥ ୫୪
ଏ ରୂପେ ଚାରି କ୍ରମରେ ହୋଇଲେ ସୁଖ୍ୟାତ ।
ବିଷ୍ଣୁ ଅଂଶେ ଇକ୍ଷ୍ୱାକୁବଂଶେ ଯେଣୁ ହେଲେ ଜାତ ॥ ୫୫
ନାମକରଣ ଉତ୍ତାରୁ ଅଯୋଧ୍ୟା ରାଜନ ।
ବ୍ରାହ୍ମଣମାନଙ୍କୁ ଦେଲେ ଧନ ରତ୍ନ ଦାନ ॥ ୫୬
ପୁରଜନ ଜନପଦବାସୀଙ୍କୁ ତେବରେ ।
ଆପ୍ୟାୟିତ କରାଇଲେ ଭୂରି ଭୋଜନରେ ॥ ୫୭
ମହର୍ଷି ପ୍ରବର ବଶିଷ୍ଠ ଯେ ବ୍ରହ୍ମଜ୍ଞାନୀ ।
ଜାତକର୍ମାଦି ସଂସ୍କାର କରାଇଲେ ପୁଣି ॥ ୫୮
ଯଥା ସମୟରେ କରି ବୈଦିକ ସଂସ୍କାର ।
'ଜାତକ' କରାଇ ବୋଲନ୍ତି ଯେ ମୁନିବର ॥ ୫୯
ଜ୍ୟେଷ୍ଠସୁତ ଶ୍ରୀରାମ ଗୁଣରେ ଗରିଷ୍ଠ ।
ହୋଇ ପାଳିବେ ଅଯୋଧ୍ୟା ରଘୁକୁଳେ ଶ୍ରେଷ୍ଠ ॥ ୬୦
ରବିକୁଳ-ଧ୍ୱଜା ଉଡ଼ାଇବେ ଜଗତରେ ।
ପିତା ମାନସ ତୋଷିବେ ନିଜ ସୁଗୁଣରେ ॥ ୬୧
ସକଳ ଭୂତରେ ଯଥା ବ୍ରହ୍ମା ସୁପୂଜିତ ।
ଦଶରଥ ପୁତ୍ରେ ହେଲେ ଲୋକରେ ଆଦୃତ ॥ ୬୨
ପାରଗ ହୋଇଲେ ବେଦବିଦ୍ୟା ଅଧ୍ୟୟନେ ।
ସୁଖ୍ୟାତ ହୋଇଲେ ଚାରିପୁତ୍ର ଶୂରପଣେ ॥ ୬୩
ଲୋକ ଉପକାରେ କଲେ ସକଳ କରମ ।
ତେଣୁ ଜଗତେ ବ୍ୟାପିଲା ପୁତ୍ରଙ୍କର ନାମ ॥ ୬୪

ସର୍ବେ ଜ୍ଞାନବନ୍ତ ପୁଣି ସୁଗୁଣେ ଭୂଷିତ ।
ହୋଇଣ ସର୍ବଜନରେ ହେଲେ ସୁପୂଜିତ ॥ ୬୫
ପୁତ୍ରଙ୍କ ମଧ୍ୟରେ ଜ୍ୟେଷ୍ଠ ଶ୍ରୀରାମ କୁମର ।
ସତ୍ୟ ପରାକ୍ରମୀ ତେଜେ ଅତନ୍ତି ପ୍ରଖର ॥ ୬୬
ଦେଖି ପ୍ରଜାଗଣେ ରାମଚନ୍ଦ୍ର ଗୁଣମାନ ।
ଆଦରିଲେ ସର୍ବେ ଯେହ୍ନେ ପୁତ୍ରର ସମାନ ॥ ୬୭
ନକ୍ଷତ୍ରଙ୍କ ଚନ୍ଦ୍ର ସମ ହେଲେ ଶୋଭାଶାଳୀ ।
ଧନୁର୍ବିଦ୍ୟା ଅରଜନେ ମହା ଧନୁର୍ଦ୍ଧର ॥ ୬୮
କେବେ ବା ଗଜ ପୃଷ୍ଠରେ କେବେ ଅଶ୍ୱ ପରେ ।
ବିରାଜିଲେ ରାମଚନ୍ଦ୍ର କେବେ ବା ରଥରେ ॥ ୬୯
ସକଳ ଯାନବାହନ ଚାଳନେ ତତ୍ପର ।
ଧନୁର୍ବେଦ ଅଭ୍ୟାସେ ହୋଇଲେ ଧୁରନ୍ଧର ॥ ୭୦
ପିତୃ-ପରାୟଣ ହୋଇ ରାମଚନ୍ଦ୍ର ବୀର ।
ଦଶରଥ ମନ ଜାଣି ଖଟିଲେ ପ୍ରଚୁର ॥ ୭୧
ସୁଲକ୍ଷଣେ ହୋଇ ଯୁକ୍ତ କୁମାର ଲକ୍ଷ୍ମଣ ।
ଆବାଲ୍ୟରୁ ହେଲେ ସେହୁ ରାମ-ପରାୟଣ ॥ ୭୨
କାୟା ସାଥେ ଛାୟା ଯେହ୍ନେ ହୁଅଇ ସଞ୍ଚାର ।
ଲକ୍ଷ୍ମଣ ରହିଲେ ତେହ୍ନେ ଶ୍ରୀରାମ ସଙ୍ଗର ॥ ୭୩
ସଦା ଅନୁରାଗୀ ହୋଇ ବୀର ଲକ୍ଷ୍ମଣ ।
ଲୋକାଭିରାମ ଶ୍ରୀରାମେ ପଶିଲେ ଶରଣ ॥ ୭୪
ସତତ ଶ୍ରୀରାମ ପଦ-ସେବାରେ ନିରତ ।
ହୋଇଲେ ଲକ୍ଷ୍ମଣ ଯେହ୍ନେ ଅନୁଗତ ଭକ୍ତ ॥ ୭୫
ଶ୍ରୀରାମଙ୍କ ବହିର୍ଗତ ଆତ୍ମା ସଦୃଶରେ ।
ଲକ୍ଷ୍ମଣ କଳ୍ପିତ ହେଲେ ଜନ ମାନସରେ ॥ ୭୬
ଲକ୍ଷ୍ମଣ ବିନୁଁ ଶ୍ରୀରାମ ନ ଜାଣନ୍ତି ଆନ ।
ସର୍ବଦା ମଣନ୍ତି ତାଙ୍କୁ ଜୀବର ଜୀବନ ॥ ୭୭
ଶୟନେ ସ୍ୱପନେ ଅବା କର୍ମଠ ଜୀବନେ ।
ସର୍ବଦା ଇଚ୍ଛିଲେ ରାମ ସୁମିତ୍ରା ନନ୍ଦନେ ॥ ୭୮

ଲକ୍ଷ୍ମଣେ ନ ଦେଇ ରାମ କେବେ ସୁଭୋଜନ ।
ନ କରନ୍ତି ଯେଣୁ ସେ ଲକ୍ଷ୍ମଣେଗତ ପ୍ରାଣ ॥ ୭୯
ପାରଧି ନିମନ୍ତେ ରାମ ଗମନ୍ତେ ଅରଣ୍ୟ ।
ତାଙ୍କ ସୁରକ୍ଷାରେ ଦୃଷ୍ଟି ଦିଅନ୍ତି ଲକ୍ଷ୍ମଣ ॥ ୮୦
ହସ୍ତେ ଧନୁ ଆମଞ୍ଚଣ କରି ଧନୁର୍ଦ୍ଧର ।
ଶ୍ରୀରାମେ ଅନୁଗମନ କରନ୍ତି ସତ୍ୱର ॥ ୮୧
ଶତ୍ରୁଘ୍ନ ଭରତେ ସଦା କରି ସମାଦର ।
କାୟା ସଙ୍ଗେ ଛାୟା ପରି କରନ୍ତି ବିହାର ॥ ୮୨
ଭରତ ଦିଅନ୍ତି ଅନୁରୂପେ ସ୍ନେହପ୍ରୀତି ।
ଶତ୍ରୁଘ୍ନେ ମଣନ୍ତି ସେହୁ ଆପଣା ଶକତି ॥ ୮୩
ଗୁଣବନ୍ତ ଚାରିପୁତ୍ରେ ଲଭି ଦଶରଥ ।
ସଉଭାଗ୍ୟଶାଳୀ ବୋଲି ମଣନ୍ତି ସତତ ॥ ୮୪
ଇନ୍ଦ୍ର ଯମ ବରୁଣ କୁବେର ଆଦି ଦେବ ।
ଲଭି ଯେସନ୍ତେ ତୁଷ୍ଟ ହୋ'ନ୍ତି କମଳସମ୍ଭବ ॥ ୮୫
ସୁଲକ୍ଷଣେ ଲକ୍ଷିତ ସକଳ ଗୁଣେ ଗୁଣ ।
ସର୍ବଜ୍ଞ ଯଶସ୍ୱୀ ଲଜ୍ଜାଶୀଳ ଅଭିମାଣୀ ॥ ୮୬
ଦୂରଦର୍ଶୀ ଏଣେ ପୁତ୍ରେ ହେଲେ ସୁବିଦିତ ।
ଏମନ୍ତ ପୁତ୍ର ଲଭିଣ ରାଜା ଦଶରଥ ॥ ୮୭
ପ୍ରମୁଦିତ ହେଲେ ସଦା ମନେ ବହି ତୋଷ ।
ଲୋକ ସୃଜି ଯେସନ୍ତେ ତୁଷ୍ଟ ବିଧାତା ପୁରୁଷ ॥ ୮୮
ବେଦପାଠ ବିନୁ ପୁତ୍ରେ ନ ଜାଣନ୍ତି ଆନ ।
ଅବର ଧନୁର୍ବେଦରେ ହୁଅନ୍ତି ନିପୁଣ ॥ ୮୯
ସଦା ସେବନ୍ତି ପିଅର ପାଦେ ମନ ଜାଣି ।
ଏମନ୍ତ ସୁପୁତ୍ର ଲଭେ ତୁଷ୍ଟ ନୃପମଣି ॥ ୯୦
ଏକଦିନେ ରାଜା ଦଶରଥ ଦରବାରେ ।
ବିଚାର କରନ୍ତି ବସି ମନ୍ତ୍ରୀଙ୍କ ସଙ୍ଗରେ ॥ ୯୧
ପୁତ୍ରଙ୍କ ବିବାହ ଲାଗି କରନ୍ତେ ମନ୍ତ୍ରଣା ।
କୁଳଗୁରୁ ବଶିଷ୍ଠେ ପୁଚ୍ଛନ୍ତି ମହାମନା ॥ ୯୨

ଏସନ ସମୟେ ଗାଧିସୁତ ବିଶ୍ୱାମିତ୍ର ।
ସିଂହଦ୍ୱାରେ ଉଭା ହୋଇ ପେଷିଲେ ଉଦନ୍ତ ॥ ୯୩
ଆହେ ଦ୍ୱାରପାଳ ! ଶୀଘ୍ର ଯାଇ ରାଜା ପାଶେ ।
କୁହ ବିଶ୍ୱାମିତ୍ର ଆସିଛନ୍ତି ତୁମ୍ଭ ପାଶେ ॥ ୯୪
ଶୁଣି ସେ ବଚନ ଦ୍ୱାରପାଳେ ବେଗେ ଗଲେ ।
ଋଷି ବାକ୍ୟ ଶୁଣି ମନେ ପ୍ରମାଦ ଗଣିଲେ ॥ ୯୫
ପ୍ରବେଶି ରାଜାଙ୍କ ପାଶେ ବୋଲନ୍ତି ସଧୀର ।
ଆହେ ଦେବ ! ଦ୍ୱାରେ ବିଜେ ଗାଧିଙ୍କ କୁମର ॥ ୯୬
ତୁମ୍ଭଙ୍କ ଦର୍ଶନ ଆଶେ ଦେଲେ ପଠିଆଇ ।
ଆଜ୍ଞା ହୋଇଲେ ଆଣିବୁଁ ପଚଣ୍ଡ ମଣାଇଁ ॥ ୯୭
ଶୁଣି ଏ, ବଚନ ଦଶରଥ ନରେଶ୍ୱର ।
ଚକିତ ହୋଇଣ ମନେ କରନ୍ତି ବିଚାର ॥ ୯୮
କିମ୍ପା ମହାମୁନି ମୋର ପୁରେ ବିଜେ କଲେ ।
ଆଗହୁଁ କିମ୍ପାଇଁ ମୁନି ସନ୍ଦେଶ ନ ଦେଲେ ॥ ୯୯
ଏମନ୍ତ ମନରେ ଚିନ୍ତି ଅଯୋଧ୍ୟାର ସାଇଁ ।
ପୁରୋହିତ ମନ୍ତ୍ରୀ ତୁଲେ ବେଗେ ଗଲେ ଧାଇଁ ॥ ୧୦୦
ପଚଣ୍ଡ ମଣାଇଁ ପୁରେ ଆଣିଲେ ପାଶ୍ଚୋଟି ।
ଦେବରାଜ ଯେହ୍ନେ ନିବେଦନ୍ତି ପରମେଷ୍ଠୀ ॥ ୧୦୧
କଠୋର ବ୍ରତ ପାଳନେ ମହା ଧୁରନ୍ଧର ।
ଜଗତେ ବନ୍ଦିତ ତେଣୁ କୁଶିକ କୁମର ॥ ୧୦୨
ତେଜରେ ସୁଦୀପ୍ତ ତାଙ୍କ ବଦନ ମଣ୍ଡଳ ।
ଅବଲୋକନରେ ନୃପ ଲଭିଲେ ସୁଫଳ ॥ ୧୦୩
ହର୍ଷେ ପୁଲକିତ ହୋଇ ନୃପତି ଶେଖର ।
ପାଦ୍ୟ ଅର୍ଘ୍ୟ ଦାନେ ପୂଜି ମୁନିଙ୍କ ପୟର ॥ ୧୦୪
ଉତ୍ତମ ଆସନେ ବସାଇଣ ମୁନିମଣି ।
ସନ୍ତୋଷିଲେ ସବିଧିରେ ତାଙ୍କ ମନ ଜାଣି ॥ ୧୦୫
ଏଥିଅନ୍ତେ ବିଶ୍ୱାମିତ୍ର ହୋଇ ହରଷିତ ।
କଲ୍ୟାଣ କରି ରାଜାଙ୍କୁ ପୃଚ୍ଛନ୍ତି ଉଦନ୍ତ ॥ ୧୦୬

ଆହେ ନୃପବର ! ଅଯୋଧ୍ୟାର ପ୍ରଜାଗଣେ ।
କୁଶଳେ ଅଛନ୍ତି ଟିକି ତବ ସୁପାଳନେ ॥ ୧୦୭
ନଗର ଧନ ଭଣ୍ଡାର ଆବର ମଉଦେ ।
ସୁରକ୍ଷିତେ ଅଛନ୍ତି କି କହ ନୃପ ! ମୋତେ ॥ ୧୦୮
ପୁରବାସୀ ବନ୍ଧୁଗଣେ ସର୍ବେ କୁଶଳତ ?
ହେ ନୃପ ! କୁହ ବାରତା ନ କରି କପଟ ॥ ୧୦୯
ରାଜ୍ୟ ସୀମା ସଂରକ୍ଷଣେ ସଦା ତତ୍ପର ।
ଅଛନ୍ତି କି ସଇନ୍ୟ ହୋଇ ନିଷ୍ଠାପର ॥ ୧୧୦
ଶତ୍ରୁ ରାଜାଗଣେ କରି ମସ୍ତକ ନଉନ ।
ସେବନ୍ତିଟି ତୋ'ପାଦେ କହ ହେ ରାଜନ ! ॥ ୧୧୧
ଯାଗ ଯଜ୍ଞେ ଦେବଗଣ ପୂଜନେ ତତ୍ପର ।
ଅତିଥି ସେବନେ ଆହେ ନୃପତି ଶେଖର ! ॥ ୧୧୨
ଭୂମି ନନ୍ଦନ କର୍ମ ହୁଏ ବିଧିମତ ।
କୁହ ହେ ରାଜନ ! ସର୍ବ ମଙ୍ଗଳ ଚରିତ ॥ ୧୧୩
ତବ ସୁକୁଶଳ ଶୁଣିବାକୁ ବଳେ ମନ ।
କପଟ ନକରି କୁହ କୋଶଳ ରାଜନ ! ॥ ୧୧୪
ଏଥିଅନ୍ତେ ବିଶ୍ୱାମିତ୍ର ବଶିଷ୍ଠ ମିଳଣ ।
ହୃଷ୍ଟଚିତ୍ତେ କଲେ ସମାଦରେ ସମ୍ଭାଷଣ ॥ ୧୧୫
ସକଳ ମୁନିଙ୍କି ପୁଚ୍ଛିଲେକ ସୁକୁଶଳ ।
ଏଥିଅନ୍ତେ ଯାହା ହେଲା ଶୁଣ ସୁଜ୍ଜନର ! ॥ ୧୧୬
ରାଜା ଦଶରଥ ବସି ରାଜ ସିଂହାସନେ ।
ପୁଲକିତ ଅନ୍ତରେ ପ୍ରଶଂସି ଜଣେ ଜଣେ ॥ ୧୧୭
ବିଶ୍ୱାମିତ୍ରେ ନତଶିରେ ବୋଲନ୍ତି ବଚନ ।
ଆହେ ମୁନିବର ! ତବ ଶୁଭ ଆଗମନ ॥ ୧୧୮
ମୋ' ମନେ ଜାତ କରାଏ ଅଶେଷ ହରଷ ।
ମନୁଷ୍ୟ ଲଭିଲେ ଯେଉଁେ ଅମୃତ ସୁରସ ॥ ୧୧୯
ନିର୍ଜଳ ପ୍ରଦେଶେ ଯଥା ବରଷିଲେ ଜଳ ।
ହୁଏ ମୁଁ ପରମତୋଷ ତେହ୍ନେ ମୁନିବର ! ॥ ୧୨୦

ଅପୁତ୍ରିକ ଲଭେ ଯଥା ସୁପୁତ୍ର ସନ୍ତାନ ।
ସେହିରୂପେ ଆନନ୍ଦିତ ହୁଅଇ ମୋ’ ମନ ॥ ୧୨୧
ଆହେ ମୁନିବର ! ତବ ଶୁଭ ଆଗମନେ ।
କୃତକୃତ୍ୟ ହେଲି ଅଜ ପୁଲକିତ ମନେ ॥ ୧୨୨
କି ସେବା କରିବି କୁହ ତବ ଶ୍ରୀପଦରେ ।
କିବା କରିବି ମୁନିବର ! ତୋ’ ସେବାରେ ॥ ୧୨୩
ଆଜ୍ଞାକର ହେ ବ୍ରହ୍ମର୍ଷି ! ପାଳିବି ଆଦେଶ ।
ଦେବ ଋଷି-ବିପ୍ରେ ସେବି ଲଭିବି ସନ୍ତୋଷ ॥ ୧୨୪
ଆହେ ବ୍ରହ୍ମଋଷି ! ଆଜ ସୁଦିନ ମୋହର ।
ଅହୋ ଭାଗ୍ୟ ଦେଖିଲି ମୁଁ ତୁମ୍ଭ ଶ୍ରୀପଦ ॥ ୧୨୫
ଆଜ ମୋ’ ଜନ୍ମ ସଫଳ ହେଲା ମୁନିବର !
ତବ ପଦରଜେ ପୂତ ହେଲା ପୁର ମୋର ॥ ୧୨୬
ଧନ୍ୟ ହେଲି ମୁନିବର ! ଲଭି ତବ ସଙ୍ଗ ।
ସଫଳ ହୋଇଲା ମୋର ସକଳ ଉଦ୍ବେଗ ॥ ୧୨୭
ଗତ ରାତି ହୋଇଥିଲା ମୋ’ ଶୁଭ ରଜନୀ ।
ଆଜର ପ୍ରଭାତ ମୋର ସୁମଙ୍ଗଳ ପୁଣି ॥ ୧୨୮
ନୋହିଲେ କି ଦରଶନ ପାଆନ୍ତି ତୁମ୍ଭର ?
ଯୋଗେ ଯୋଗୀଶ୍ବର ତୁମ୍ଭେ ଆହେ ମୁନିବର ! ॥ ୧୨୯
ପୂର୍ବେ ରାଜର୍ଷିରେ ଖ୍ୟାତ ଥିଲେ ମହାମୁନି !
ଯେ ଗରିଷ୍ଠ ବଳେ ପୁଣି ହେଲ ବ୍ରହ୍ମମୁନି ॥ ୧୩୦
ରାଜର୍ଷି ବ୍ରହ୍ମର୍ଷି ରୂପେ ମୋର ସୁପୂଜିତ ।
ଆହେ ମହର୍ଷି ପ୍ରବର ! ହୋଇଲି କୃତାର୍ଥ ॥ ୧୩୧
କି କାରଣେ ମୁନୀଶ୍ବର ! ତେଜିଣ ଆଶ୍ରମ ।
ମୋ’ ପୁରେ ବିଜୟ କଲେ ମୁନିକୁଳୋତ୍ତମ ॥ ୧୩୨
ଉତ୍ତମ-ବ୍ରତରେ ବ୍ରତୀ ଆହେ ଯତିବର !
ଯାହା ତବ ମନେ ବାଞ୍ଛା ବେଗେ ଆଜ୍ଞା କର ॥ ୧୩୩
ତୁମ୍ଭ ଆଜ୍ଞା ପରମାଣେ ଭେଟିବି ସକଳ ।
ସନ୍ଦେହ ନ କର କୁହ କୁଶିକକୁମର ! ॥ ୧୩୪

ତବ ମନୋରଥ ହେବ ସକଳ ପୂରଣ ।
କହଇ ମୁଁ ମୁନିବର ! ଅନ୍ୟଥା ନମଣ ॥ ୧୩୫
ଅନୁଗୃହୀତ କରାଅ ଆହେ ମୁନିବର !
ଅତିଥି ସେବାରେ ଇଚ୍ଛା ବଳଛି ମୋହର ॥ ୧୩୬
ଅତିଥିରୂପୀ ଦେବତା ଆହେ ଗାଧିସୁତ !
ଯଥା ବିଧାନରେ ମୁଁ ହିଁ ପୂଜଇ ନରତ ॥ ୧୩୭
ସଫଳ କରାଅ ମୁନି ! ମୋର ମନୋରଥ ।
ଉତ୍ତମ ଫଳ ଲଭ ମୁଁ ହେବ କୃତକୃତ୍ୟ । ୧୩୮
ଶ୍ରେୟୋଦୟ ହେବ ମୋର ଅନୁଗ୍ରହେ ତବ ।
ସଙ୍କୋଚ ନକର କୃପ ଆହେ ବ୍ରହ୍ମଦେବ ! ॥ ୧୩୯
ମନସ୍ୱୀ ନରେଶ ବାଣୀ କର୍ଣ୍ଣସୁଖକର ।
ଅଧିକେ ଅଟଇ ପୁଣି ବଚନ ମଧୁର ॥ ୧୪୦
ମନେ ହୋଇଲେ ହରଷ ଶୁଣି ଗାଧିସୁତ ।
ଶମ-ଦମ-ଯଣ-ଗୁଣେ ଯେହୁ ବିଭୂଷିତ ॥ ୧୪୧
ମୁନି ବିଶ୍ୱାମିତ୍ର ତତେ କରଣ ପ୍ରଣତ ।
ପୁରୁଷୋତ୍ତମ ହରଷେ ଭଣଇ ଏ' ଗୀତ ॥ ୧୪୨
ଆହେ ସୁଜନରେ ! ଏହୁ ଅମୃତ ସମାନ ।
ଭବାବ୍ଧି ତରଣେ ତରଣୀ ଏ' ରାମାୟଣ ॥ ୧୪୩

ଇତ ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଅଷ୍ଟାଦଶ ସର୍ଗ ।



# ଊନବିଂଶ ସର୍ଗ

## ବିଶ୍ୱାମିତ୍ରଙ୍କ ବଚନରେ ଦଶରଥଙ୍କ ମୂର୍ଚ୍ଛା ।

ନୃପଶ୍ରେଷ୍ଠ ମହାରାଜ ଦଶରଥଙ୍କର ।
ମୁଖରୁ ଶୁଣିଣ ବାଣୀ ହର୍ଷେ ମୁନିବର ॥ ୧
ମନେ ମନେ ପୁଲକିତ ହୋଇଣ ସତ୍ୱର ।
ବୋଇଲେ ସମ୍ପ୍ରତେ ଶୁଣ ଆହେ ନୃପବର ! ॥ ୨
ଯା' ଶୁଣିଲି ତୁମ୍ଭ ମୁଖୁଁ ବିନୟ ବଚନ ।
ଆନ କେ ତା' ବୋଲିବାକୁ ହେବ କ ଭାଜନ ॥ ୩
ଆହେ ରାଜସିଂହ ! ତବ ବଚନ ଅମୃତ ।
ପାନ କରି ମହାସୁଖ ଲଭିଲି ମୋ' ଚିତ୍ତ ॥ ୪
ଇକ୍ଷ୍ୱାକୁକୁଳ ଭୂଷଣ ଅଟ ଦଶରଥ !
ଉପଦେଷ୍ଟା ଯହିଁ ଯା'ର ଛନ୍ତି ବଶିଷ୍ଠ ॥ ୫
ତୁମ୍ଭ ବିନୁ ଆନ ମୁଖୁଁ କେବେ ଏ' ବଚନ ।
ଶୁଣିବାକୁ ନ ମିଳିବ ଆହେ ଅଜନନ୍ଦନ ! ॥ ୬
ହେ ନୃପ ଶେଖର ! ଫେଡ଼ି କହୁଛି ମୁଁ ତାହା ।
ଆସିଅଛି ତୁମ୍ଭ ପାଶେ ମନେ କରି ଯାହା ॥ ୭
ଅଟଳ ପ୍ରତିଜ୍ଞ ତୁମ୍ଭେ ଅଟ ଦଶରଥ !
ବୋଲିଛ ସଫଳ ହେବ ମୋର ମନୋରଥ ॥ ୮
ମୁଁ ଯାହା ବୋଲିବି ତାହା ବେଗେ ପୂର୍ଣ୍ଣ କଲେ ।
ସତ୍ୟ ପ୍ରତିଜ୍ଞ ବୋଲି ମୁଁ ଘୋଷିବି ସଂସାରେ ॥ ୯
ସିଦ୍ଧି ପ୍ରାପ୍ତି ଲାଗି ମୁଁ କରୁଛି ଅନୁଷ୍ଠାନ ।
ଯହିଁରେ ହୋଇବ ସ୍ୱର୍ଗ-ମର୍ତ୍ତ୍ୟର କଲ୍ୟାଣ ॥ ୧୦

ସେ ଯଜ୍ଞ ନିର୍ବିଘ୍ନେ ହେବ ସମ୍ପୂର୍ଣ୍ଣ ଯେମନ୍ତ ।
ତେଣୁ ଆସିଅଛୁ ତୁମ୍ଭ ପାଶେ ନରନାଥ ! ॥ ୧୧
ମାୟାବୀ ଅସୁର ଦୁଇ ଅଛନ୍ତି ସେଠାରେ ।
ସ୍ୱରୂପ ଧରନ୍ତି ସେହୁ ଇଚ୍ଛା ଅନୁସାରେ ॥ ୧୨
କେତେବେଳେ କେଉଁ ରୂପ ଧରି ସେ ଅସୁରେ ।
ଯଜ୍ଞେ ବିଘ୍ନ କରି ପଳାବନ୍ତି ବନେ ଖରେ ॥ ୧୩
ତଥାପି ସକଳ ବିଘ୍ନ ଜାଣି ଋଷିଗଣେ ।
କରନ୍ତି ଯଜ୍ଞ ସାଧନ ଜଗତ କଲ୍ୟାଣେ ॥ ୧୪
ପୂର୍ଣ୍ଣାହୁତି କାଳ ଏବେ ଆସି ଉପସ୍ଥିତ ।
ହୋଇଛୁ ତେଣୁ ମୁଁ ଆସିଅଛୁ ନୃପନାଥ ! ॥ ୧୫
ସୁବାହୁ ମାରୀଚ ନାମେ ବଳିଷ୍ଠ ଅସୁର ।
ଅସ୍ତ୍ରଶସ୍ତ୍ର ଚାଳନେ ସେ ବେନି ଧୁରନ୍ଧର ॥ ୧୬
ଯଜ୍ଞବେଦୀ ଯଜ୍ଞକୁଣ୍ଡେ ଢାଳନ୍ତି ରୁଧିର ।
ମାଂସ ମେଦ ବରଷି ନାଶନ୍ତି ଯଜ୍ଞ ମୋର ॥ ୧୭
ଅବିଘ୍ନେ ନୋହିବ ଯେବେ ପୂର୍ଣ୍ଣାହୁତି କର୍ମ ।
ସକଳ ତପସ୍ୟା ନୃପବର ! ହେବ ଭ୍ରଷ୍ଟ ॥ ୧୮
ତେଣୁ ବ୍ୟାକୁଳ ହୋଇଣ ଆସିଛୁ ଏଥକୁ ।
ସହାୟ ହୁଅ ହେ ନୃପ ! ଜାଣି ଆପଦକୁ ॥ ୧୯
କ୍ରୋଧେ ଅବା ଅଭିଶାପ ନ ଦିଏ କାହାଇଁ ।
ତହିଁର କାରଣ ଶୁଣ ଆହେ ନୃପସାଇଁ ! ॥ ୨୦
ଯଜ୍ଞଦୀକ୍ଷା ସମୟେ ବିକ୍ଷିଲେ କ୍ରୋଧ ମନେ ।
ବିନଷ୍ଟ ହେବ ନିୟମ ବିଘ୍ନ ହେବ କର୍ମେ ॥ ୨୧
ତେଣୁ ହେ ନୃପକେଶରୀ ! ନ ଦିଅଇ ଶାପ ।
କ୍ରୋଧ ଫଳେ ବିଘ୍ନିତ ହୋଇବ ଜପ ତପ ॥ ୨୨
ତେଣୁ ମୁଁ ମାଗଇ ଆହେ ନୃପତିଶେଖର !
ତବ ଜ୍ୟେଷ୍ଠପୁତ୍ର ରାମେ ସମର୍ପ ମୋ' କର ॥ ୨୩
କାକପକ୍ଷଧର ସେହି ଅଦ୍ଭୁତ ବାଳକ ।
ସତ୍ୟବ୍ରତୀ ଶୂର ଶ୍ରେଷ୍ଠ ରକ୍ଷ ବିନାଶକ ॥ ୨୪

ମୋ' ଠାରୁ ଯେଉଁଣ ଦିବ୍ୟ ଅସ୍ତ୍ରଶସ୍ତ୍ର ଶିକ୍ଷା ।
ତହିଁରେ ନାଶିବ ଅସୁରଙ୍କୁ ଦେଇ ଶିକ୍ଷା ॥ ୨୫
ଆହେ ନରନାଥ ! ବହୁ ଗୁପ୍ତବିଦ୍ୟା ବଳେ ।
ନାଶିବେ ଶ୍ରୀରାମ ଅସୁରଙ୍କୁ ଅବହେଳେ ॥ ୨୬
ଏଥିରେ ସନ୍ଦେହ ନାହିଁ ହେ ଅଯୋଧ୍ୟା ସାଇଁ !
ଅନୁଗୃହୀତ କରଅ ପୁତ୍ର ମୋତେ ଦେଇ ॥ ୨୭
ସୁବିଦ୍ୟା ପ୍ରସାଦେ ରାମ ଜିଣିଣ ରାକ୍ଷସ ।
ତିନଲୋକେ ଉଡ଼ାଇବେ ରଘୁବଂଶ ଯଶ ॥ ୨୮
ରାକ୍ଷସ ଦୁହିଙ୍କ ପାଞ୍ଚି ପୋଛିଲଣି ଯମ ।
ଶରଘାତେ ସେ ଦୁହିଙ୍କି ନାଶିବେ ଶ୍ରୀରାମ ॥ ୨୯
ସମର୍ଥ ଅଟନ୍ତି ରାମ ଅସୁର ନାଶନେ ।
ନୃପନାଥ ! ସନ୍ଦେଶ ନକର ଏଥି ମନେ ॥ ୩୦
ମହାଧନୁର୍ଦ୍ଧର ରାମ ନାଶି ରକ୍ଷବଳ ।
ନିବାରିବେ ବିଘ୍ନ ଯଜ୍ଞ ହୋଇବ ସଫଳ ॥ ୩୧
ପୁତ୍ରସ୍ନେହେ ବ୍ୟାକୁଳ ନ ହୁଅ ନୃପବର !
ଅସାଧ୍ୟ ସାଧିବେ ରାମ ପ୍ରତିଜ୍ଞା ଏ' ମୋର ॥ ୩୨
ସତ୍ୟସନ୍ଧ ତେଜସ୍ୱୀ-ପ୍ରବର ତବ ସୁତ ।
ତାଙ୍କ ପ୍ରତାପରେ ନଶିବେ ଅସୁର ସମସ୍ତ ॥ ୩୩
ବଶିଷ୍ଠ ସହିତେ ଆମ୍ଭେ ସର୍ବ ମୁନିଗଣ ।
ଜାଣିଛୁଁ ଶ୍ରୀରାମ କିଏ ଆହେ ନରରାଣ ! ॥ ୩୪
ଶ୍ରୀରାମ ପ୍ରସାଦୁଁ ନୃପ ! ବ୍ୟାପିବ ସୁଯଶ ।
ଭୂମଣ୍ଡଳେ ଖ୍ୟାତ ହେବ ତବ ରଘୁବଂଶ ॥ ୩୫
ଏଥକୁ ବିଶ୍ବର ଆହେ ଅଯୋଧ୍ୟାନରେଶ !
ଶ୍ରୀରାମଙ୍କୁ ସମର୍ପିଣ ଦିଅ ମୋର ପାଶ ॥ ୩୬
କାକୁତ୍ସ୍ଥ-ନନ୍ଦନ ! ତୁମ୍ଭେ ମହାବୁଦ୍ଧିମନ୍ତ ।
ତଥାପି ପଚାର ବଶିଷ୍ଠଙ୍କୁ ଏ' ଉଦନ୍ତ ॥ ୩୭
ମନ୍ତ୍ରୀଗଣେ ପରାମର୍ଶ କର ନୃପବର !
ଶ୍ରୀରାମଙ୍କୁ ସମର୍ପିଣ ଦିଅ ମୋ' ହସ୍ତର ॥ ୩୮

ଦଶହକସେ ମୋ' ଯଜ୍ଞ ହୋଇବ ସମ୍ପୂର୍ଣ୍ଣ ।
ଶ୍ରୀରାମ ରକ୍ଷିଲେ ତହିଁ ଯଜ୍ଞ ହେବ ପୂର୍ଣ୍ଣ ॥ ୩୯
ବଳ-ବୁଦ୍ଧି-ବିଦ୍ୟାରେ ସେ ଅତ୍ୟନ୍ତ ପ୍ରବୀଣ ।
ଶ୍ରୀରାମଙ୍କୁ ଏ' ବିଷୟେ ଯତ୍ନର ଭାଜନ ! ॥ ୪୦
ଆସକ୍ତ ରହିତ ହୋଇ ସାରବଇ ରାମ ।
ନିଶ୍ଚୟେ କରିବେ ପୂର୍ଣ୍ଣ ମୋର ମନସ୍କାମ ॥ ୪୧
ଆହେ ନୃପତିତିଳକ ! ନ କର ଶୋଚନା ।
ଯାହା ମୁଁ କହୁଛି ସ୍ଥିରମନେ କର ସେନା ॥ ୪୨
ବିଳମ୍ବ ନୋହୁ ମୋ' ସିଦ୍ଧି ଆହେ ନୃପବର !
ଶୋକ-ମୋହ ତେଜ ଦିଅ ରାମଙ୍କୁ ସତ୍ୱର ॥ ୪୩
କଲ୍ୟାଣ ହୋଇବ ତବ ହେ ନୃପଶେଖର !
ଶୁଭ-ସତ୍ୟ କାର୍ଯ୍ୟେ ଆଜ ବିଳମ୍ବ ନକର ॥ ୪୪
ମହର୍ଷି ପ୍ରବର ଧର୍ମ-ଅର୍ଥଯୁକ୍ତ ବାଣୀ ।
କହି ନୃପତି ସମୀପେ ହୋଇଲେ ମଉନ ॥ ୪୫
ମୁନଙ୍କ ବଚନ ଶୁଣି ରାଜା ଦଶରଥ ।
ମଣିଲେ ସତେ କି ଶିରେ ହେଲା ବଜ୍ରାଘାତ ॥ ୪୬
ପୁତ୍ରଶୋକେ ବ୍ୟଥିତ ହୋଇଣ ନୃପମଣି ।
ଚେତନାହତ ହୋଇଣ ଲୋଟିଲେ ଧରଣୀ ॥ ୪୭
କ୍ଷଣକେ ଚେତନା ଲଭି ନୃପକୁଳନାଥ ।
ପୁତ୍ର ବିରହ ଦୁଃଖରେ ହୋଇଲେ ତାପିତ ॥ ୪୮
ହୃଦୟ ହେଲକ ସତେ ଶତଧା ବିଦୀର୍ଣ୍ଣ !
ପୁଣି ହରାଇଲେ ଦଶରଥ ଅମୃକ୍ଷନ ॥ ୪୯
ଆହେ ରାମ ରାଜୀବ ଲୋଚନ ରଘୁନାଥ ।
କରୁଛି ସାହସ ପୂରାଅ ମୋ' ମନୋରଥ ॥ ୫୦
ପୁରୁଷୋତ୍ତମ ହୃଦରେ ସ୍ମରି ରାମ ନାମ ।
ଆଦିକାଣ୍ଡେ ଊନବିଂଶ ସର୍ଗ କଲେ ପୂର୍ଣ୍ଣ ॥ ୫୧

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଊନବିଂଶ ସର୍ଗ । ●

# ତ୍ରିଂଶ ସର୍ଗ

## ଶ୍ରୀରାମଙ୍କୁ ଦେବା ପାଇଁ ଦଶରଥଙ୍କ ଅନିଚ୍ଛା ଓ ବିଶ୍ୱାମିତ୍ରଙ୍କ କୋପ ।

ଶୁଣି ବିଶ୍ୱାମିତ୍ରଙ୍କର ନିଷ୍ଠୁର ବଚନ ।
ଚେତନା ହରାଇ ଅଯୋଧ୍ୟାର ନରଗଣ ॥ ୧
ଦୁଇଦଣ୍ଡ ପରେ ସେହୁ ଲଭିଣ ଚେତନା ।
କି କରିବେ ବୋଲି ମନେ ହେଲେ ଆନମନା ॥ ୨
ଦୀର୍ଘଶ୍ୱାସ ତେଜି ରାଜା ପୋଛିଣ ବଦନ ।
ବୋଇଲେ ବିଶ୍ୱାମିତ୍ରଙ୍କୁ ଏସନ ବଚନ ॥ ୩
ଆହେ ମୁନିବର ! ଶୁଣ ମୋହର ବିନତି ।
ଅତି ସୁକୁମାର ମୋର କାକୁତ୍ସ ସନ୍ତତି ॥ ୪
ଷୋଡ଼ଶ ବର୍ଷୁଁ ଊଣା ଚନ୍ଦ୍ରିମା ବଦନ ।
କପଟ ମାରିବ ରଣେ ଦୈତ୍ୟ ବଳବାନ ॥ ୫
ଦୁଷ୍ଟ ରାକ୍ଷସ ଦଳନେ ନୁହଇ ସମର୍ଥ ।
କପଟ ପେଷିବ ରଣେ କ୍ରୂର ବିଶ୍ୱାମିତ୍ର ! ॥ ୬
ଅଛନ୍ତି ମୋହର ଅକ୍ଷୌହିଣୀ ସେନାଦଳ ।
ଯାହାର ଅଟେ ମୁଁ ସ୍ୱାମୀ ଆହେ ମୁନିବର ! ॥ ୭
ମୋ' ବାହିନୀ ଘେନି ମୁହିଁ ଯିବି ତୁମ୍ଭ ସଙ୍ଗେ ।
ରାକ୍ଷସଗଣେ ବଧିବି ଘୋର ରଣରଙ୍ଗେ ॥ ୮
ଏ' ମୋ' ଶୂରବୀର ସୈନ୍ୟବାହିନୀ ସକଳ ।
ଦୁର୍ଜୟ ଅରିଦଳନେ ଅଟନ୍ତି କୁଶଳ ॥ ୯

ରାକ୍ଷସଙ୍କୁ ଅନାୟାସେ କରିବେ ନିଧନ ।
ରାମଙ୍କୁ ନ ମାଗି ନିଅ ମୋର ସୈନ୍ୟଗଣ ॥ ୧୦
ଉଚିତ ନୁହଇ ଏହା ଆହେ ମୁନିବର !
ଶ୍ରୀରାମ ଯୁଦ୍ଧକୁ ଯିବା କାକପକ୍ଷଧର ॥ ୧୧
ସର୍ବ ସେନା ଘେନି ଯୁଦ୍ଧେ କରିବି ଗମନ ।
ରାକ୍ଷସଙ୍କୁ ବଧି ଯାଗ ରଖିବି ମୁଁ ପୁଣ ॥ ୧୨
ଯାବତ ଶରୀରେ ମୋର ସଞ୍ଚରଇ ପ୍ରାଣ ।
ତାବତ କରିବି ତବ ଯାଗ ସଂରକ୍ଷଣ ॥ ୧୩
ରାକ୍ଷସଗଣ ବଧିବି ସମର ପ୍ରାଙ୍ଗଣେ ।
ତବ ସିଦ୍ଧି ଅର୍ଥେ ପଶି ଘୋରତର ରଣେ ॥ ୧୪
ମୁଁ ରକ୍ଷା କରିବି ତବ ଯଜ୍ଞଶାଳା ଦ୍ୱାର ।
ନିର୍ବିଘ୍ନେ ଅର୍ଚ୍ଚିବ ତୁମ୍ଭେ ଯଜ୍ଞ ସୂତ୍ରଧାର ॥ ୧୫
ବିଘ୍ନ ନ ହୋଇବ କିଛି ଆହେ ଋଷିବର !
ଅବଶ୍ୟେ ପୂରିବ ତବ କାମନା ସକଳ ॥ ୧୬
ରାମଙ୍କୁ ନ ନେଇ ମୁନି ! ନିଅ ମୋତେ ସଙ୍ଗେ ।
ବଧିବି ରାକ୍ଷସକୁଳ ଆଜ ରଣରଙ୍ଗେ ॥ ୧୭
ସୁକୁମାର ବାଳକ ମୋ' ଅଟଇ ଶ୍ରୀରାମ ।
ଯୁଦ୍ଧବିଦ୍ୟା କଉଶଳ ନ ଜାଣେ ଉତ୍ତମ ॥ ୧୮
ବଳାବଳ ନ ଜାଣଇ ମୋହର ତନୁଜ ।
ନ ଜାଣଇ ଯୁଦ୍ଧ କଳା ଆହେ ମୁନିରାଜ ! ॥ ୧୯
ସମ୍ମୁଖ ସଂଗ୍ରାମେ ସେହୁ ନୋହେ ଧୂରନ୍ଧର ।
ଅଜ୍ଞାନ ବାଳକେ ମୋର କ୍ଷମ ମୁନିବର ॥ ୨୦
ବିକଟ ମାୟାଯୁଦ୍ଧରେ ଅଟନ୍ତି ପ୍ରବୀଣ ।
କୂଟ କପଟେ ରାକ୍ଷସେ ଅତ୍ୟନ୍ତ ନିପୁଣ ॥ ୨୧
ତେଣୁ ଆହେ ମୁନିବର ! କରେ ମୁଁ ବିନତି ।
କ୍ଷମ ଅପରାଧ ମୋର ପଦେ କରେ ନତି ॥ ୨୨
ଶ୍ରୀରାମ ବିହୁନେ ଦଣ୍ଡେ ନ ଧରିବି ପ୍ରାଣ ।
ତେଣୁ ମୁଁ ପଦ୍ମରେ ନିବେଦୁଛି ମୁନିରାଣ ! ॥ ୨୩

ଅଥବା ଶ୍ରୀରାମେ ଯଦ୍ଧ ବଳନ୍ତି ମାନସ ।
ରାକ୍ଷସ ନିଧନେ ତାର ଲୁହାଇବ ଯଶ ॥ ୨୪
ଚତୁରଙ୍ଗ ସେନା ସଙ୍ଗେ ଆଜ୍ଞାଦିଅ ମୁନି ।
ଚଳିବି ମୁଁ ରଣରଙ୍ଗେ ଶ୍ରୀରାମଙ୍କୁ ଘେନି ॥ ୨୫
ଏହି ଆଜ୍ଞା କର ଆହେ ବ୍ରହ୍ମର୍ଷି ପ୍ରବର !
ବିନତି କରଇ ଦେବ ! ତବ ଶ୍ରୀପଦ୍ମର ॥ ୨୬
ଷାଠିଏ ସହସ୍ର ବୟଃ ହେଲଣି ମୋହର ।
ବହୁକଷ୍ଟେ ଚାରି ପୁଏ ଧରନ୍ତି କୋଳର ॥ ୨୭
ଜ୍ୟେଷ୍ଠ ରାମ ସର୍ବଗୁଣଧାମ ଏ' ତନୟ ।
କପଟ ତେଜିବି କୁହ ମୁନି ମହାଶୟ ॥ ୨୮
ଜ୍ୟେଷ୍ଠପୁତ୍ର ଅଟଇ ସେ ଧର୍ମର ନନ୍ଦନ ।
ତେଣୁ ସେ ପିତୃ ସ୍ନେହର ଅଧିକେ ଭାଜନ ॥ ୨୯
ଅତ୍ୟନ୍ତ ସ୍ନେହରେ ତାକୁ କରଇ ପାଳନ ।
କେମନ୍ତେ ତେଜିବି କୁହ ଆହେ ତପୋଧନ ! ॥ ୩୦
କେବଣ ରାକ୍ଷସ ସେହୁ କାହାର ନନ୍ଦନ ।
କାହାର ସାହସେ ଅଟେ କେତେ ବଳବାନ ॥ ୩୧
ନ ଜାଣି ସକଳ ଏହା ଆହେ ମୁନିବର !
କପରି ପେଷିବି ରଣେ ପୁତ୍ର ସୁକୁମାର ॥ ୩୨
କପରି ସେ ଦୈତ୍ୟଗଣେ ହେବ ସମ୍ମୁଖୀନ ।
ନ ଜାଣଇ କୂଟ ଯୁଦ୍ଧ ମୋ' ବାଳ-ନନ୍ଦନ ॥ ୩୩
ନେଇ ମୋ' ସକଳ ସେନା ଭଆର ତାହାରେ ।
କପରି ବଧିବେ ଯୁଦ୍ଧେ ରାକ୍ଷସଗଣରେ ॥ ୩୪
ସୁଦୟ କର ମୋ' ଠାରେ କୁହ ବ୍ରହ୍ମମୁନି !
କପରି ରାକ୍ଷସେ ଯିବେ ପୁରନ୍ଦରମଣୀ ॥ ୩୫
କେବଣ ପ୍ରକାରେ ତାଙ୍କୁ ସାଧିବ ସମରେ ।
କୁହ ଆହେ ମୁନିବର ! ଦୟା କରି ମୋରେ ॥ ୩୬
କପଟ ମାୟାରେ ସେହୁ ଅଟନ୍ତି ନିପୁଣ ।
ସହଜେ ଅଟନ୍ତି ଦୈତ୍ୟେ ମହାବଳବାନ ॥ ୩୭

ଶୁଣି ଦଶରଥଙ୍କର କରୁଣ ଜଳ୍ପନ୍ତ ।
ଭାଷିଲେ ସକ୍ରୋଧେ ଗିର ମୁନି ବିଶ୍ୱାମିତ୍ର ॥ ୩୮
ଆହେ ନୃପ ! ରାବଣ ନାମରେ ଏକ ଦୈତ୍ୟ ।
ପୁଲସ୍ତ୍ୟ ଋଷି ବଂଶରେ ହୋଇଛି ସମ୍ଭୂତ ॥ ୩୯
ବିଶ୍ରବା ମୁନିଙ୍କ ପୁତ୍ର ଅଟଇ ରାବଣ ।
ଯା'ର ଜ୍ୟେଷ୍ଠଭ୍ରାତା ଲୋକେ ଖ୍ୟାତ ଯକ୍ଷରାଜ ॥ ୪୦
ବ୍ରହ୍ମାବରେ ବଳୀୟାନ ରାବଣ ରାକ୍ଷସ ।
ମହାବଳଶାଳୀ ବୋଲି ଘୋଷନ୍ତି ତ୍ରିଦଶ ॥ ୪୧
ଅନେକ ରାକ୍ଷସେ ଯୁକ୍ତ ହୋଇ ମହାବୀର ।
ତ୍ରିଲୋକ ମଧ୍ୟରେ ସେହୁ ଅଟେ ଭୟଙ୍କର ॥ ୪୨
ବ୍ରାହ୍ମଣ ସନ୍ତାନ ହୋଇ ଯଜ୍ଞ ବିଘ୍ନେ ମୋର ।
ବଳିଛି ମାନସ ତା'ର ଆହେ ନୃପବର ! ॥ ୪୩
କିନ୍ତୁ ସେ ନ ଆସି ଏଥେ ପେଷିଅଛି ଚର ।
ସୁବାହୁ ମାରୀଚ ବୋଲି ନାମ ତାହାଙ୍କର ॥ ୪୪
ଅତି ତୁଚ୍ଛ କର୍ମ ଏହୁ ମଣଇ ଅସୁର ।
ନ ଆସି ତେଣୁ ସେ ପଠାଇଛି ନିଶାଚର ॥ ୪୫
ତା'ର ବଳେ ବଳୀୟାନ ରକ୍ଷ ବେନି ଭାଇ ।
ଯଜ୍ଞ ବିନାଶନେ ବନେ ଫଶନ୍ତି ଧ୍ୱଂସାଇ ॥ ୪୬
ଶୁଣି ଏସନ ବଚନ ବୋଲେ ଦଶରଥ ।
ଯୁଦ୍ଧେ ମୁଁ ରାବଣ ତୁଲେ ନୁହଇ ସମର୍ଥ ॥ ୪୭
ତେଣୁ କରଯୋଡ଼ି ଶ୍ରୀପଦରେ ମୁଁ ବିନତ ।
କରଇ ସୁଦୟା କର ଆହେ ବିଜ୍ଞ ଯତି ! ॥ ୪୮
ସୁଜ୍ଞାମ ପ୍ରବର ଅଟ ତୁମ୍ଭେ ମୁନିରାଣ ।
ଅନୁଗ୍ରହ କର ମୋରେ ପୁତ୍ରର ସମାନ ॥ ୪୯
ଦେବତୁଲ୍ୟ ଅଟ ଆହେ ଧାର୍ମିକ ପ୍ରବର ।
ଗୁରୁଜନ ତୁମ୍ଭେ ଯେଣୁ ଏ' ରଘୁବଂଶର ॥ ୫୦
ସେ ସକାଶୁଁ ମୁନୀଶ୍ୱର ! ଘେନ ମୋ' ଜଣାଣ ।
ପୁତ୍ର ତୁଲ୍ୟ କ୍ଷମ ମୋତେ କରି ସୁକଲ୍ୟାଣ ॥ ୫୧

ଜାଣେଁ ମୁଁ ରାବଣର ଭୁଜେ ଯୁଦ୍ଧ କରି ।
ଦେବ-ଯକ୍ଷ-ନାଗବଳେ ଯାଇଛନ୍ତି ହାରି ॥ ୫୨
ଗନ୍ଧର୍ବ ଗରୁଡ଼ ପୁଣ ଦାନବ ସକଳେ ।
କେହି ନୁହନ୍ତି ସମର୍ଥ ରାବଣର ଭୁଜେ ॥ ୫୩
ମନୁଷ୍ୟ ମାତର ମୁହିଁ ଅଟଇ ହେ ଦେବ !
କିପରି ଅସମ୍ଭବକୁ କରିବି ସମ୍ଭବ ॥ ୫୪
ଶୁଣିଛୁ ମୁଁ ଯୁଦ୍ଧକ୍ଷେତ୍ରେ ପ୍ରତାପୀ ରାବଣ ।
ବଳିଷ୍ଠ ଶତ୍ରୁରେ କରେ ବଳବୀର୍ଯ୍ୟହୀନ ॥ ୫୫
କିପରି ତା' ଭୁଜେ ମୁହିଁ କରିବି ସମର ।
ପୁଣ ସଙ୍ଗତରେ ଘେନି ଚତୁରଙ୍ଗ ବଳ ॥ ୫୬
ଆହେ ବ୍ରହ୍ମମୁନି ! ଘେନ ମୋ' ବିନୟ ବାଣୀ ।
ଅନଭିଜ୍ଞ ପୁତ୍ର ମୋର ହୁଅଇ ଜାରେଣି ॥ ୫୭
ଅଳପ ବୟସ ପୁଣି ଅତି ସୁକୁମାର ।
ନୟନ ପିତୁଳୀ ଅଟଇଟି ମୋହର ॥ ୫୮
ତେଜି ନ ପାରିବି କେବେ ମୋ' ହୃଦରତନ ।
କରଯୋଡ଼ି ଶ୍ରୀଛାମୁରେ କରେ ନିବେଦନ ॥ ୫୯
ସୁନ୍ଦ ଉପସୁନ୍ଦ ନାମେ ରାକ୍ଷସ ପ୍ରବର ।
ମାରୀଚ ସୁବାହୁ ଦୁହେଁ ତାହାଙ୍କ କୁମର ॥ ୬୦
ମହା ପରାକ୍ରମୀ ସେହୁ ଶ୍ରେଷ୍ଠ ଧନୁର୍ଦ୍ଧର ।
ରଣେ ପ୍ରଜ୍ୱଳିତ ଯେହ୍ନେ ରବିର କୁମର ॥ ୬୧
ସେ ବେନି ଅଟନ୍ତି ତବ ଯଜ୍ଞ-ବିଘ୍ନକାରୀ ।
ସେ ଦୁହିଁଙ୍କୁ ପାରିବ କି ମୋ' ପୁତ୍ର ସଂହାରି ॥ ୬୨
ଅସମ୍ଭବ ଅନୁରୋଧ କର ମୁନିବର !
ଜାଣୁ ଜାଣୁ କି ପେଷିବ ମୋ' ହୃଦଚନ୍ଦନ ॥ ୬୩
ମାୟାଯୁଦ୍ଧେ ସୁନିପୁଣ ବେନି ରକ୍ଷବୀର ।
କି କରିପାରିବ ରାମ ସମରେ ତାଙ୍କର ॥ ୬୪
ସେ ଦୁହିଁଙ୍କ ମଧ୍ୟୁଁ ଏକ ଭୁଜେ ମୁହିଁ ରଣ ।
କରିବ ସମ୍ମୁଖ-ଯୁଦ୍ଧ ଘେନି ବନ୍ଧୁଗଣ ॥ ୬୫

ଯଦି ହେନା ନ କରିବ ମୋହର ଜଣାଣ ।
ବନ୍ଧୁବର୍ଗ ସଙ୍ଗତରେ ପଶି ମୁଁ ଭେଣ ॥ ୬୬
ଅଭସୁ ମାଗିବ ତବ ଶ୍ରୀଚରଣ ତଳେ ।
ନ ପାରିବ ଅସୁର ଦୁଷ୍ଟଙ୍କୁ ଏକାବେଳେ ॥ ୬୭
ପେଷି ନ ପାରିବ ରଣେ ଶ୍ରୀରାମଙ୍କୁ ମୋର ।
ହେନ ମୋ' ବନତ ରେଷ ତେଜ ମୁନିବର ! ॥ ୬୮
ରାଜନ ବଚନ ଶୁଣି କୁଶିକନନ୍ଦନ ।
କ୍ରୋଧ ଜର୍ଜରତେ ହୋଇ ଆରକ୍ତ ନୟନ ॥ ୬୯
ସ୍ଫୁରିଲ ଅଧର କୋପେ ଅରୁଣ ବଦନ ।
ଘୃତଧାର ଲଭି ଯେହ୍ନେ ଜଳେ ହୁତାଶନ ॥ ୭୦
ତେସନ ପ୍ରକାରେ କୋପ କରି ମୁନିବର ।
ହୃଦୟ ଆବେଶେ ପୁଣ ହୋଇଲେ ଅସ୍ଥିର ॥ ୭୧
ସେ ମୁନିଙ୍କ କୋପାନଳ ଦଗ୍ଧ ମୋ' ଦୁରିତ ।
ଦ୍ୱିଜ ଶ୍ରୀପୁରୁଷୋତ୍ତମ ଭଣେ ରାମଗୀତ ॥ ୭୨

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ବିଂଶ ସର୍ଗ ।



# ଏକବିଂଶ ସର୍ଗ

## ବିଶ୍ୱାମିତ୍ରଙ୍କ କ୍ରୋଧ ଓ ଦଶରଥଙ୍କୁ ବଶିଷ୍ଠଙ୍କ ଆଶ୍ୱାସନା ।

ଶୁଣ ଆହେ ସୁଜନରେ ! ଶ୍ରୀରାମ ଚରିତ ।
ଯେ ଗାଥା ଶ୍ରବଣେ ନାଶ ହୁଅଇ ଦୁରିତ ॥ ୧
ତଦନ୍ତେ କୁଶିକସୁତ ଶୁଣି ନୃପ ବାଣୀ ।
ପୁତ୍ରସ୍ନେହେ ସିକ୍ତ ଯାହା ହୋଇଥିଲା ପୁଣି ॥ ୨

କହନ୍ତି ସରୋଷେ ଗୁହ୍ଣି ନୃପତି ବଦନ ।
ବଚନ ଫୁଟୁଛ ହୋଇ ରଘୁକୁଳେ ଜନ୍ମ ॥ ୩
ପ୍ରତିଜ୍ଞା କରଣ ଏବେ ଭଣ୍ଡୁଛ ରାଜନ !
ଅଟଇ କି ଏହା ତୁମ୍ଭ କୁଳର ଭୂଷଣ ? ॥ ୪
ରଘୁବଂଶେ କେହ୍ନ କେବେ ଏପରି ଦୂଷଣ ।
କରିନାହ୍ନି ଯାହା ତୁମେ କରୁଛ ରାଜନ ! ॥ ୫
ପ୍ରତିଜ୍ଞା ପାଳନେ ଖ୍ୟାତ ରଘୁବଂଶଧର !
ଏ' କଥା କି ନଜାଣ ହେ ନୃପତି ଶେଖର ! ॥ ୬
ଜାଣୁ ଜାଣୁ ଅପଯଶ କରୁଛ ସ୍ୱାଗତ ।
ଏ' କି ତବ କୁଳାଗ୍ରର ଆହେ ଦଶରଥ ॥ ୭
ଚାହୁଁଛ କପଟ ତୁମ୍ଭେ ଏ' ଉତ୍ତମ ମାର୍ଗ ।
ସୁମଣ ଲଭିବ ବନ୍ଧୁ କରି ସତ୍ୟଭଙ୍ଗ ॥ ୮
ତେବେ ମୁଁ ଯାଉଛି ଫେରି ଆହେ ନୃପବର !
ରୁହ ସୁଖେ ରାଜପୁରେ ଘେନି ପରିଜନ ॥ ୯
କୁଶିକ ନନ୍ଦନ କୋପେ କମ୍ପିଲା ଧରଣୀ ।
ତ୍ରିଦଶେ ଗଣିଲେ ଦୁଃଖେ ମୁନିକୋପ ଶୁଣି ॥ ୧୦
ବ୍ରହ୍ମଶାପୁଁ ଜଗତକୁ ପାଳିବାର ସଧେ ।
ଭଣିଲେ ବଶିଷ୍ଠ ଧୀରେ ବସି ସଭାମଧ୍ୟେ ॥ ୧୧
ଜ୍ଞାନ-ଗୁଣାଗ୍ରରେ ଯେହ୍ନ ଅନନ୍ତ ତତ୍ପର ।
ଭାଷିଲେ ସଧୀରେ ସେହ୍ନ ବଧାତା କୁମର ॥ ୧୨
ଇକ୍ଷ୍ୱାକୁକୁଳଭୂଷଣ ଧର୍ମ ଅବତାର ।
ଧୈର୍ଯ୍ୟଶୀଳ ବ୍ରତାଗ୍ରହ ଅଟ ନୃପବର ॥ ୧୩
ଅଷ୍ଟ ଅଇଶ୍ୱର୍ଯ୍ୟେ ତୁମ୍ଭେ ମହା ମହାସ୍ୱାନ ।
ଯା' ନର୍ମଳ ଯଶ ବ୍ୟାପିଅଛି ତ୍ରିଭୁବନ ॥ ୧୪
ରଘୁକୁଳେ ଜନ୍ମ ଲଭି ନୃପ ଦଶରଥ !
କପଟ ଲଙ୍ଘିବ କୁହ ଏଡ଼େ ସତ୍ୟବ୍ରତ ॥ ୧୫
ଧର୍ମ-ଧ୍ୱଜା ଉଡ଼େ ତବ ତ୍ରିଲୋକେ ରାଜନ !
କେମନ୍ତେ ଏ' ସତ୍ୟ ତୁମ୍ଭେ କରିବ ଲଙ୍ଘନ ॥ ୧୬

ରଘୁବଂଶ-ଭୂଷଣ ଏ’ ରଜା ଦଶରଥ ।
ହୋଇ ଦେବ-ପକ୍ଷ-ନରେ ଖ୍ୟାତନ୍ତି ସତତ ; ୧୭
ତେମନ୍ତ ଯଶସ୍ୱୀ ହୋଇ ତୁମ୍ଭେ ନୃପବର !
କେଉଁ ମୁଖେ ଅସତ୍ୟରେ କରିବ ବରଣ ॥ ୧୮
ପ୍ରତିଜ୍ଞା କରିଣ ଯେହୁ ନ ପାଳେ ବଚନ ।
ଯାଗ ଯଜ୍ଞ ଦାନ ପୁଣ୍ୟ ହୁଏ ତା’ର କ୍ଷୁଣ୍ଣ ॥ ୧୯
କୂପ ତଡ଼ାଗ ଖୋଦନ ଆଦି ଯେତେ ପୁଣ୍ୟ ।
ସକଳ ବିନଷ୍ଟ ହୁଏ ବୁଝ ନୃପବର ! ॥ ୨୦
ତେଣୁ ମୋର ବୋଲ ମାନ ଆହେ ନୃପନାଥେ !
ଶ୍ରୀରାମଙ୍କୁ ସମର୍ପଣ କର ମୁନିହସ୍ତେ ॥ ୨୧
ଜାଣନ୍ତୁ ଅଥବା ନ ଜାଣନ୍ତୁ ରଣରଙ୍ଗ ।
ନୋହିବେଟି ରାମଚନ୍ଦ୍ର ରଣେ ପୃଷ୍ଠଭଙ୍ଗ ॥ ୨୨
ପ୍ରଜ୍ୱଳିତ ଅଗ୍ନି ସଂରକ୍ଷଣେ କେ ଅମୃତ ।
ପାନ କରିବାକୁ ଅବା ହୋଇବ ସମର୍ଥ ॥ ୨୩
ଦୀପ୍ତ-ହୁତାଶନ ସମ କୁଶିକନନ୍ଦନ ।
ଯୋଗ-ତପୋବଳେ ଯେହୁ ମହା ଦୀପ୍ତିମାନ ॥ ୨୪
ସେହୁ ଅଟନ୍ତି ରକ୍ଷକ ରାମଚନ୍ଦ୍ରଙ୍କର ।
କ’ ବା ଅନିଷ୍ଟ ପାରିବେ ଏ’ ରାକ୍ଷସେ ଘୋର ॥ ୨୫
ଏହୁ ବିଶ୍ୱାମିତ୍ର ମୁନି ମହା ଶକ୍ତିଧର ।
ଧାର୍ମିକ ପଟେ ସାକ୍ଷାତ ଧର୍ମ ଅବତାର ॥ ୨୬
ଅତ୍ୟନ୍ତ ବଳିଷ୍ଠ ପୁଣ ମହାଧୈର୍ଯ୍ୟବାନ ।
ତପୋବଳେ କରିଛନ୍ତି ଅସାଧ୍ୟ ସାଧନ ॥ ୨୭
ବିଦ୍ୟାବଳେ ଧରଣୀରେ ଯାହାଙ୍କ ପୂରଣ ।
ବ୍ୟାପିଛି ତାହାଙ୍କୁ ତୁଚ୍ଛ ନ ମଣ ନରେଶ ! ॥ ୨୮
ଚରାଚରେ ଅଛି ଯେତେ ଦ୍ରବ୍ୟ ଅସ୍ତ୍ରମାନ ।
କରିଛନ୍ତି ବିଶ୍ୱାମିତ୍ର ସକଳ ସାଧନ ॥ ୨୯
ତାଙ୍କ ବିନୁ ଆନ କେହି ନ ଜାଣନ୍ତି ଏହା ।
ନ ପାରିବେ ଜାଣି ତ୍ରିଭୁବନେ ସାଧି ଯାହା ॥ ୩୦

ସକଳ ଅସ୍ତ୍ରଶସ୍ତ୍ରରେ ସେହୁ ସୁପଣ୍ଡିତ ।
ତାଙ୍କୁ ସାମାନ୍ୟ ନ ମଣ ଆହେ ନରନାଥ ॥ ୩୧
ଦେବ ଗନ୍ଧର୍ବ ରାକ୍ଷସ ଯକ୍ଷ ନାଗକୁଳ ।
ନ ଜାଣନ୍ତି ବିଶ୍ବାମିତ୍ର ପ୍ରଭାବ ସକଳ ॥ ୩୨
ଜାଣିଛ କି ନୃପ ! ସର୍ବ ଅସ୍ତ୍ରଶସ୍ତ୍ରମାନ ।
ପ୍ରଜାପତି କୃଶାଶ୍ବଙ୍କ ଅଟନ୍ତି ଅଧୀନ ॥ ୩୩
ପୁତ୍ର ସମ ପାଳୁଥା'ନ୍ତି କୃଶାଶ୍ବ ସେମାନ ।
ବିଶ୍ବାମିତ୍ର ସେହି ଅସ୍ତ୍ରବଳେ ବଳୀୟାନ ॥ ୩୪
ରାଜାରୂପେ ସିଂହାସନେ ବସିଥିଲେ ଯେବେ ।
କୃଶାଶ୍ବ ସମର୍ପି ଦେଲେ ସର୍ବ ଅସ୍ତ୍ର ଲବେ ॥ ୩୫
ସେହି ରାଜ ଋଷି ବିଶ୍ବଦେବ ନୃପବର ।
ବିଶ୍ବାମିତ୍ର ରୂପେ ଯୋଗ ସାଧନେ ତତ୍ପର ॥ ୩୬
ସକଳ ଦିବ୍ୟ ଅସ୍ତ୍ରରେ ଅଟନ୍ତି ନିପୁଣ ।
ମୋ ବାଣୀ ଅସତ୍ୟ ନୋହେ ଜାଣ ନୃପରାଣ ॥ ୩୭
ଆବର କହୁଛି ଶୁଣ ପୁରାଣ ବଚନ ।
ଦକ୍ଷ ପ୍ରଜାପତିଙ୍କର ବେନି କନ୍ୟା ଜାଣ ॥ ୩୮
ଜୟା ସୁପ୍ରଭା ନାମରେ ସେହୁ କୀର୍ତ୍ତିମନ୍ତ ।
ସକଳ ଅସ୍ତ୍ରେ କୁଶଳ ତାହାଙ୍କ ସନ୍ତତ ॥ ୩୯
କୃଶାଶ୍ବଙ୍କ ପତ୍ନୀ ସେହୁ ଅଟନ୍ତି ନିସୃତ ।
ତାଙ୍କ ସୁତେ ଅସ୍ତ୍ରଶସ୍ତ୍ର ରୂପେ ହେଲେ ଜାତ ॥ ୪୦
ସାମାନ୍ୟ ନୁହଇ ସେହୁ ଅସ୍ତ୍ରଶସ୍ତ୍ର ଗୁଣ ।
ସ୍ବତେଜେ କରନ୍ତି ସେହୁ ଅସୁରେ ସାଧନ ॥ ୪୧
ସଂହାରିବ ପଞ୍ଚାଶତ ସୁପ୍ରଭା-କୁମର ।
ପଞ୍ଚାଶ ନନ୍ଦନ ପୁଣି ଜୟା ଦେବୀଙ୍କର ॥ ୪୨
ସର୍ବେ ଦିବ୍ୟ ଅସ୍ତ୍ର ପୁଣି ଅଟନ୍ତି ପ୍ରଧାନ ।
ସେ ସକଳ ଅସ୍ତ୍ରେ ଦକ୍ଷ କୁଶିକ ନନ୍ଦନ ॥ ୪୩
ଜଗତେ ଅଦ୍ୟାପି ଯାହା ନୋହେ ପ୍ରଚଳନ ।
ସେପରି ଦିବ୍ୟାସ୍ତ୍ରେ ବିଶ୍ବାମିତ୍ର ସୁନିପୁଣ ॥ ୪୪

ଭୂତ ଭବିଷ୍ୟତ ଜ୍ଞାତା ଅଟନ୍ତି ସେ ପୁଣି ।
ଧର୍ମବଳେ ସାଧିଛନ୍ତି ମହାଯୋଗ ମୁନି ॥ ୪୫

ଏମନ୍ତ ଯଶସ୍ୱୀ ଯେହୁ ଅଟନ୍ତି ଜଗତେ ।
ଶ୍ରୀରାମେ ସମର୍ପ ଶଙ୍କା ତେଜ ତାଙ୍କ ହସ୍ତେ ॥ ୪୬

ଅସ୍ତ୍ର ଜାଣନେ ସେହୁ ଅଟନ୍ତି ସମର୍ଥ ।
ଆସି ଅଛନ୍ତି ତଥାପି ମାଗି ତୁମ୍ଭ ସୁତ ॥ ୪୭

ଶ୍ରୀରାମ ହୋଇଣ ତାଙ୍କ କଲ୍ୟାଣ ଭାଜନ ।
ସକଳ କାର୍ଯ୍ୟ ସାଧନେ ହେବେ ସୁନିପୁଣ ॥ ୪୮

ବଶିଷ୍ଠଙ୍କ ମୁଖୁଁ ଶୁଣି ଏସନ ବଚନ ।
ପ୍ରସନ୍ନ ହଶିଲ୍ଲ ନୃପ ମଳିନ ବଦନ ॥ ୪୯

ପରମ ଆନନ୍ଦେ ତୃପ୍ତ ହୋଇ ଦଶରଥ ।
ହରଷରଲେ ମୁନିହସ୍ତେ ସମର୍ପିବ ସୁତ ॥ ୫୦

ଉଲ୍ଲସିତେ ଶ୍ରେଳ ହୋଇ ଅଯୋଧ୍ୟାର ସାଇଁ ।
ବନ୍ଦିଲେ ମୁନି ଚରଣଯୁଗ ହସ୍ତୁ ଧ୍ୟାୟି ॥ ୫୧

ଆହେ ରାମ ! ଲକ୍ଷ୍ମଣ ସହିତେ ହୋଇ ଯୁତ ।
କୃପା କରି ପୂରାଅ ସକଳ ମନୋରଥ ॥ ୫୨

ଅଧମ ପୁରୁଷୋତ୍ତମ ରାମଗୁଣ ଧ୍ୟାୟି ।
ଦେଶଭାଷାରେ ଏ’ ରାମାୟଣ ବିରଚଇ ॥ ୫୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକବିଂଶ ସର୍ଗ ।



# ଦ୍ୱାବିଂଶ ସର୍ଗ

## ବିଶ୍ୱାମିତ୍ରଙ୍କ ସହିତ ରାମ ଲକ୍ଷ୍ମଣଙ୍କ ଗମନ ଓ ବଳା ଅତିବଳା ବିଦ୍ୟା ପ୍ରାପ୍ତି ।

ବଶିଷ୍ଠ ବଚନେ ନୃପ ହୋଇ ହୃଷ୍ଟମନ ।
ଡକାଇଲେ ରାଜପୁରୁଁ ଶ୍ରୀରାମ ଲକ୍ଷ୍ମଣ ॥ ୧
ମାତା କଉଶଲ୍ୟା ଆଉ ପିତା ଦଶରଥ ।
ସ୍ୱସ୍ତି ବାଚନ କରନ୍ତେ ବେଦପୂତ ମାଥ ॥ ୨
ବଶିଷ୍ଠ ପଢ଼ିଲେ ମନ୍ତ୍ର ମଙ୍ଗଳ ଇଷ୍ଟକ ।
ଶୁଭଲଗ୍ନେ ଦେଲେ ନୃପ ସେ ବେନିବାଳକ ॥ ୩
ମସ୍ତକ ଆଘ୍ରାଣି ଦଶରଥ ନୃପସାଇଁ ।
ରାମଲକ୍ଷ୍ମଣେ ଅର୍ପିଲେ ମୁନିକରେ ନେଇ ॥ ୪
ସେ ସମୟେ ଅନୁକୂଳେ ବହଇ ପବନ ।
ସଧୀରେ ଚଳଇ ବାୟୁ ହୋଇ ଧୂଳିଶୂନ୍ୟ ॥ ୫
କମଳନୟନ ରାମ ବିଶ୍ୱାମିତ୍ର ସଙ୍ଗେ ।
ଚଳନ୍ତେ ଅମରଗଣେ ମନର ସରାଗେ ॥ ୬
କୁସୁମ ବରଷି କଲେ ଜୟଜୟ ନାଦ ।
ଶୁଭିଲା ଦେବଦୁନ୍ଦୁଭି ଶଙ୍ଖର ଶବଦ ॥ ୭
ନାଗରା ବାଜିଲା ମୋଦେ ଡବଡବ କରି ।
ଜୟ ଶବଦେ ପୂରିଲା ବାରସ୍ତୀ ପୁରୀ ॥ ୮
ଆଗେ ଚଳିଲେ କୌଶିକ ପଦଣ୍ଡ ମଣାଇଁ ।
ଅନୁସରି ଗଲେ ଯୋଏ ଆଗପଛ ହୋଇ ॥ ୯

ପୃଷ୍ଠ ଦେଶରେ ତୂଣୀର ହସ୍ତେ ଧନୁର୍ବାଣ ।
ଜୟ ଶବଦେ ପୂରିଲା ଦଶ ଦିଗମାନ ॥ ୧୦
ସତେ ଅବା ତିନିଫଣା ଏକ ଅହିବର ।
ଚଳଇ ମୁନିଙ୍କ ପଛେ ଅତି ଖରତର ॥ ୧୧
ଧନୁର୍ଦ୍ଧର ତୂଣୀର ମସ୍ତକ ମିଶି ତିନି ।
ତ୍ରିଶିର ପରି ଶୋଭିତ ହୁଅନ୍ତି ମେଦନୀ ॥ ୧୨
ଅନୁପମ ସୁଶୀଳ ସୁନ୍ଦର କାନ୍ତିଧର ।
ବିଶ୍ୱାମିତ୍ର ପଛେ ରାମ ଗମନ୍ତି ସତ୍ୱର ॥ ୧୩
ଅଶ୍ୱିନୀକୁମାରେ ଅବା ପ୍ରଜାପତି ପଛେ ।
ତେସନେ ରାମ ଲକ୍ଷ୍ମଣ ଯାନ୍ତି ମନସ୍ୱଚ୍ଛେ ॥ ୧୪
ବସନ ଭୂଷଣେ ଶୋଭା ପାନ୍ତି ବେନିଭାଇ ।
ଧନୁଶର ହସ୍ତେ ଧରି ଗମନ୍ତି ଚତୋଇ ॥ ୧୫
ଗୋଧିଚର୍ମେ ନିର୍ମିତ କରେ କରତ୍ରାଣ ।
ଶୋହିଲେ ମୁନି ସଙ୍ଗତେ ଶ୍ରୀରାମଲକ୍ଷ୍ମଣ ॥ ୧୬
କଟୀରେ ଶୋହଇ ଖଣ୍ଡଧାର ତରବାରି ।
ଅନିନ୍ଦ୍ୟ ସୁନ୍ଦର ରୂପ ଅତି ମନୋହାରୀ ॥ ୧୭
ଅଙ୍ଗ ଶୋଭାରେ ଝଟକେ ଦଶଦିଗମାନ ।
କୁଶିକ ନନ୍ଦନ ପଛେ କରନ୍ତି ଗମନ ॥ ୧୮
ଶିବ ପଛେ ବିଶାଖ ସ୍କନ୍ଦ କି ଚଳିଯାନ୍ତି ।
ତେସନ ପ୍ରକାରେ ଶୋହେ ବେନିସୁତ କାନ୍ତି ॥ ୧୯
ଅଗ୍ନିକୁମାର ବେନି କି ଯା'ନ୍ତି ମୁନି ସଙ୍ଗେ ।
ଦେଖନ୍ତି ନଗର ବାସୀ ମନର ସରାଗେ ॥ ୨୦
ଅଯୋଧ୍ୟା ନଗରୁଁ ଯାଇ ଷଡ଼କୋଶ ଦୂରେ ।
ପ୍ରବେଶିଲେ ତିନିଜଣ ସରଯୂତଟରେ ॥ ୨୧
ଶ୍ରୀରାମେ ବତ୍ସ ବୋଲନ୍ତି କୁଶିକ ନନ୍ଦନ ।
ନଦୀଜଳେ ରାମ ବେଗେ କର ଆଚମନ ॥ ୨୨
ଶୁଭକାର୍ଯ୍ୟେ ବିଳମ୍ବ ନକର ରାମଧନ !
ବଳା ଅତିବଳା ବିଦ୍ୟା କରିବ ଗ୍ରହଣ ॥ ୨୩

ଏ' ବିଦ୍ୟା ପ୍ରଭାବୁଁ ସର୍ବ ଶ୍ରମ ହେବ ଦୂର ।
ରୋଗ ବ୍ୟାଧି ନୋହିବ ହେବ ଶ୍ରୀଅଙ୍ଗ ସୁନ୍ଦର ॥ ୨୪
ବିକାଶିବ ମନୋହର କାନ୍ତି ତବ ଦେହେ ।
ଦୁର୍ଗତ ବା ତନ୍ଦ୍ରାଶୀଳ ନୋହିବ କେବେହେଁ ॥ ୨୫
ଶୟନ ସ୍ୱପନେ ଅତର୍କିତେ କେହି ଶତ୍ରୁ ।
ନୋହିବେ ସମର୍ଥ ଛୁଇଁବାକୁ ତବ ବପୁ ॥ ୨୬
ଏ' ମହୀମଣ୍ଡଳେ କେହି ତୁମ୍ଭ ସମସମ ।
ନୋହିବେ ହେଲେହେଁ ଯେତେ ପରାକ୍ରମୀ ରାମ ! ॥ ୨୭
ବଳା ଅତିବଳା ଅଭ୍ୟାସରୁ ରାଘବର !
ସମର୍ଥ ହୋଇବ ତୁମ୍ଭେ ତ୍ରିଭୁବନର ॥ ୨୮
ଏ' ବିଦ୍ୟା ପ୍ରସାଦୁ ହେବ ସଉଭାଗ୍ୟ ବୃଦ୍ଧି ।
ଜ୍ଞାନ ବିଜ୍ଞାନରେ ନିଶ୍ଚେ ଲଭିବ ପ୍ରସିଦ୍ଧି ॥ ୨୯
ବୁଦ୍ଧିମନ୍ତ ଜଣେ କେହି ନୋହିବେ ସକ୍ଷମ ।
ଉତ୍ତର ପ୍ରଦାନେ ହେବ ତୁମ୍ଭପ୍ରତି ସମ ॥ ୩୦
ଚତୁର ପଣରେ ତୁମ୍ଭେ ହେବ ଅଦ୍ୱିତୀୟ ।
ଧାରଣାଶକ୍ତିର ବଳେ ହୋଇବ ଅଜେୟ ॥ ୩୧
ଏ' ବିଦ୍ୟା ପ୍ରଭାବୁଁ ହେବ ସର୍ବ ଗୁଣେ ଗୁଣୀ ।
ଯେଣୁ ବଳା ଅତିବଳା ବିଦ୍ୟାଙ୍କ ଜନନୀ ॥ ୩୨
କ୍ଷୁଧାତୃଷା ନ ବାଧିବ ହେବ ନିରାମୟ ।
ତେଣୁ ଏ' ବିଦ୍ୟା ସାଧନ କର ହେ ନିଶ୍ଚୟ ॥ ୩୩
ହେ ରଘୁନନ୍ଦନ ! ବଳା ଅତିବଳା ପାଇଁ
ଜଗତ ଘୋଷିବ ତୁମ୍ଭ ଯଶ ରଘୁନାଇଁ ॥ ୩୪
ତ୍ରିଲୋକ ରକ୍ଷଣେ ଆହେ ରଘୁବଂଶ ବୀର !
ଏ' ବିଦ୍ୟାସାଧନେ ତୁମ୍ଭେ ହୁଅ ତତପର । ॥ ୩୫
ଯଶସ୍ୱୀ ହୋଇବ ଲୋକେ ଏ' ବିଦ୍ୟାଯୋଗେ ।
ଯେଣୁ ଏ' ଅଟଇ ମହାବିଦ୍ୟା ତ୍ରିଭୁବନେ ॥ ୩୬
ପ୍ରଜାପତିଙ୍କର ଯେଣୁ ଅଟନ୍ତି ନନ୍ଦନା ।
ତେଣୁ ବଳା ଅତିବଳା ତ୍ରିଲୋକ ବନ୍ଦନା ॥ ୩୭

କକୁତ୍ସ୍ଥ ନନ୍ଦନ ଆହେ ଶ୍ରୀରାମ ଲକ୍ଷ୍ମଣ !
ବୁଝିଲଣ ଏ' ବିଦ୍ୟାର ସକଳ ଲକ୍ଷଣ ॥ ୩୮
ମହା ତପୋବଳେ ମୁହିଁ ଅର୍ଜିଛି ଜ୍ଞାନ ।
ସମର୍ପି ଦେବି ତୁମ୍ଭଙ୍କୁ ହେ ରଘୁନନ୍ଦନ ! ॥ ୩୯
ସର୍ବ ଗୁଣେ ଗୁଣୀ ତୁମ୍ଭେ ସୁଯୋଗ୍ୟ ସୁଜ୍ଞାନୀ ।
ଯଶସ୍ୱୀ ହେବ ଧରାରେ ଏହୁ ବିଦ୍ୟା ଘେନି ॥ ୪୦
ଉତ୍ତମ ଗୁଣରେ ଯେହୁ ହୋ'ନ୍ତି ବିଭୂଷିତ ।
ଅନାୟାସେ ତାଙ୍କୁ ଏହା ହୁଅଇ ପ୍ରାପତ ॥ ୪୧
ମୋ' ତପସ୍ୟାବଳେ ଏହୁ ହୋଇ ଇଚ୍ଛାରୂପୀ ।
ଯା' ଇଚ୍ଛା କରିବ କରେ ଦେବେ ଏ' ସମର୍ପି ॥ ୪୨
ଅନେକ ସୁଫଳ ତୁମ୍ଭେ ଲଭିବ ଶ୍ରୀରାମ !
ତେଣୁ ମୁଁ କରଇ ଏହା ତୁମ୍ଭଙ୍କୁ ଅର୍ପଣ ॥ ୪୩
ଏ' ବିଦ୍ୟା ପ୍ରଭାବୁଁ ତୁମ୍ଭେ ହେବ ପୂର୍ଣ୍ଣକାମ ।
ଶୁଦ୍ଧଚିତ୍ତେ ମନ ସ୍ଥିରେ ଘେନାକର ରାମ ! ॥ ୪୪
ଶୁଣି ମୁନିଙ୍କ ବଚନ ଦଶରଥ ସୁତ ।
ସରଯୂରେ ସ୍ନାନସାରି ହେଲେ ଶୁଦ୍ଧଚିତ୍ତ ॥ ୪୫
ତଦନ୍ତେ ନବେଶି ମୁନି ଦେଯୁଗେ ଶିର ।
ବଳା ଅତିବଳା ବିଦ୍ୟା ଘେନିଲେ ସତ୍ୱର ॥ ୪୬
ସେ ବିଦ୍ୟା ପ୍ରସାଦୁ ରାମ ହେଲେ ତେଜସ୍କର ।
ଶରଦ କାଳେ ଯେସନେ ମଧ୍ୟାହ୍ନ ଭାସ୍କର ॥ ୪୭
ଅଙ୍ଗେ ଅଙ୍ଗେ ପ୍ରକଟିତ ହେଲେ ମହାଶକ୍ତି ।
ବିଚ୍ଛୁରିତ ହେଲା ଅଙ୍ଗେ ସୁନିର୍ମଳ ଜ୍ୟୋତି ॥ ୪୮
ଏଥୁ ଅନନ୍ତରେ ବିଶ୍ୱାମିତ୍ର ମହାମୁନି ।
ସରଯୂ ନଦୀତଟରେ ଯାପିଲେ ରଜନୀ । ॥ ୪୯
ଗୁରୁଙ୍କ ଚରଣେ ସେବା କଲେ ରଘୁବର ।
ପୁଲକିତ ଅଙ୍ଗେ ଘେନି ଲକ୍ଷ୍ମଣ ସଙ୍ଗର ॥ ୫୦
ତୃଣଶଯ୍ୟା ପରେ ବିଶ୍ରାମିଲେ ବେନିଭାଇ ।
ରାଜପୁତ୍ର ବୋଲି ତଳେ ଅଭିମାନୀ ନୋହି ॥ ୫୧

ଅପତ୍ୟ ସ୍ନେହରେ ସିକ୍ତ କଲେ ମୁନିବର ।
ପରମ ସନ୍ତୋଷ ହେଲେ ସେ ବେନି କୁମର ॥ ୫୨
ସୁମିତ୍ରାନନ୍ଦନ-ରାମ ପଦଯୁଗେ ଧ୍ୟାୟି ।
ଅଧମ ପୁରୁଷୋତ୍ତମ ଏ' ଗୀତ ରଚଇ ॥ ୫୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଦ୍ୱାତ୍ରିଂଶ ସର୍ଗ ।



# ତ୍ରୟୋତ୍ରିଂଶ ସର୍ଗ

## ସରଯୂ ଓ ଗଙ୍ଗାର ସଙ୍ଗମ ସ୍ଥଳରେ ବିଶ୍ୱାମିତ୍ରଙ୍କ ସହିତ ଶ୍ରୀରାମ ଲକ୍ଷ୍ମଣଙ୍କ ରାତ୍ରି ଯାପନ ।

ନିଶା ଅବସାନେ ହେଲା ତପନ ଉଦୟ ।
ଉଠିଲେ କୁଶିକପୁତ୍ର ବ୍ରହ୍ମେ କରି ଲୟ ॥ ୧
ତୃଣଶଯ୍ୟାପରେ ଶୋଇଥିଲେ ଯେ ଶ୍ରୀରାମ ।
ଲକ୍ଷ୍ମଣ ସହିତେ ତାଙ୍କୁ ବୋଧି ତପୋଧନ ॥ ୨
କହିଲେ ହେ ରଘୁକୁଳଭୂଷଣ ଶ୍ରୀରାମ !
ଲଭିଣ ତୁମ୍ଭଙ୍କୁ ଧନ୍ୟ ଏ' ଅଯୋଧ୍ୟାଧାମ ॥ ୩
ଧନ୍ୟ ତୁମ୍ଭର ଜନନୀ କୋଶଳ କୁମାରୀ ।
କଉଶଲ୍ୟା ଗୁଣବତୀ ଥିଲେ ଗର୍ଭେ ଧରି ॥ ୪
ଉଠି ଆହେ ବତ୍ସ ! କର ସନ୍ଧ୍ୟା ତରପଣ ।
ବହୁଦୂର ପଥ ଆମ୍ଭେ କରିବା ଗମନ ॥ ୫
ଦେବପୂଜା ବିଧି ସବୁ କର ସମାପନ ।
ପ୍ରାତଃ ସନ୍ଧ୍ୟାକାଳ ଏହୁ ହେ ରାମ ଲକ୍ଷ୍ମଣ ! ॥ ୬
ମହର୍ଷିଙ୍କ ପରମ ଉଦାର ବଚବାଣୀ ।
ପ୍ରାତଃକାଳେ ନଦୀକୂଳେ ବେନିସୁତେ ଶୁଣି ॥ ୭

ପରମାନନ୍ଦ ଚିତ୍ତରେ ପଶି ନଦୀଜଳେ ।
ମନ୍ତ୍ର ଉଚ୍ଚାରଣ ଦୁହେଁ ସ୍ନାହାନ ସାରିଲେ ॥ ୮
ଦେବପୂଜା ତରପଣ ସାରିଣ ସକଳ ।
ଗାୟତ୍ରୀମନ୍ତ୍ର ଜପିଲେ ନାଶି ମନମଳ ॥ ୯
ଅହ୍ନିକ ବିଧି ସାରିଣ ରାମ ଲକ୍ଷ୍ମଣ ।
ଭକ୍ତିଭରେ ପ୍ରଣମିଲେ ମୁନିଙ୍କ ଚରଣ ॥ ୧୦
ମୁନିଙ୍କ ଅନୁକ୍ରମରେ ଗମନେ ଉଦ୍ୟତ ।
ହୋଇଲେ ବେନିକୁମରେ ଲଭି କୃତକୃତ୍ୟ ॥ ୧୧
ବହୁଦୂର ପଥ ଅତିକ୍ରମି ମହାବୀରେ ।
ପ୍ରବେଶିଲେ ଗଙ୍ଗା- ସରଯୂ ସଙ୍ଗମ ସ୍ଥଳେ ॥ ୧୨
ଉତ୍ତର ବାହିନୀ ଗଙ୍ଗା ବିଶାଳ ଶରୀର ।
ତ୍ରିପଥଗା ସୁଶୀତଳା ମହାପୁଣ୍ୟନୀର ॥ ୧୩
ସେ ସଙ୍ଗମସ୍ଥଳେ ଏକ ମହର୍ଷି ଆଶ୍ରମ ।
ଦେଖି ପୁଲକିତ ହେଲେ ଲକ୍ଷ୍ମଣ ଶ୍ରୀରାମ ॥ ୧୪
ଅନେକ କାନ୍ତ ମୁନିଏ ବସିଣ ସେଠାରେ ।
ତପସ୍ୟା କରନ୍ତି ସଦା ଧ୍ୟାୟିଣ ବ୍ରହ୍ମରେ ॥ ୧୫
ଶ୍ରୀରାମ ଲକ୍ଷ୍ମଣ ଦେଖି ମୁନିଙ୍କ ଆଶ୍ରମ ।
କୁତୂହଳେ ପଚାରିଲେ ଆହେ ତପୋଧନ ! ॥ ୧୬
କାହାର ଆଶ୍ରମ ଏହୁ କଏ ମୁନିବର ।
କେତେ କାନ୍ତ ତପସ୍ୟା ଏ' କରନ୍ତି ଏଠାର ॥ ୧୭
ଶୁଣିବାକୁ କୁତୂହଳ ଜାଗିଛି ମନର ।
ସୁଦୟା ଚିତ୍ତେ ବଖାଣି କହ ତପୀଶ୍ବର ! ॥ ୧୮
ଶୁଣି ଶ୍ରୀରାମ ବଚନ ହସି ବିଶ୍ବାମିତ୍ର ।
ଫିଟାଇ କହିଲେ ତପୋବନର ବୃତ୍ତାନ୍ତ ॥ ୧୯
ଆହେ ରାମ ! ରାଜୀବଲୋଚନ କାର୍ମୁକଧର !
କହୁଛି ଆଶ୍ରମ ଥିଲା ପ୍ରଥମେ କାହାର ॥ ୨୦
ସୁଜନେ ଯାହାକୁ କାମ କାମେ ଅଭିହିତ ।
କରନ୍ତି ସେ ପୂର୍ବକାଳେ ଥିଲା ମୂର୍ତ୍ତିମନ୍ତ ॥ ୨୧

ଶଙ୍ଖରଧାଙ୍କ ଚରି ବନ୍ଧ ଅବସ୍ଥିତ ।
ବୁଲୁଥିଲ ଉଡିପଡି ମନେ ବନ୍ଧ ଗନ୍ଧ ॥ ୨୨
ତ୍ରିଲୋକ ଈଶ୍ବର ଦେବଦେବ ମହେଶ୍ବର ।
ସମାଧି ଯୋଗ ସାଧନେ ଅଟନ୍ତି ପ୍ରବର ॥ ୨୩
ଏ' ଆଶ୍ରମେ ଏକାଗ୍ର ଚିତ୍ତରେ ବସି କରି ।
ତପ ସାଧୁଥିଲେ ଶୁଣ ଆହେ ଶୂପଧାରୀ ! ॥ ୨୪
ଏକ ଦିନେ ସମାଧି ଅନ୍ତରେ ଯୋଗେଶ୍ବର ।
ମନ ସୁଖେ ଭ୍ରମୁଥିଲେ ଏ' ବନ ଭିତରେ ॥ ୨୫
ମରୁତଗଣଙ୍କ ସଙ୍ଗେ କରି ସୁଖାଳାପ ।
ଏ' ସମୟେ କାମଦେବ ଧରି ଫୁଲଚାପ ॥ ୨୬
ନିର୍ବୋଧ ପଣେ ବିନ୍ଧିଲ ଶିବ ଅଙ୍ଗେ ବାଣ ।
ନିରେଖି ଶଙ୍କର ହୋଧେ ହୋଇ ହୁତାଶନ ॥ ୨୭
ହୁଙ୍କାର କରିଣ ଶିବ ଦେଲେକ ଅନାଇଁ ।
ତାଙ୍କ କୋପାନଳେ ଭସ୍ମ ହେଲ ରତିସାଇଁ ॥ ୨୮
ସେହିନୁଁ ଅନଙ୍ଗ ନାମେ କାମଦେବ ଖ୍ୟାତ ।
ହୋଇଲ ହେ ରାମ ! ଶୁଣ ଅପୂର୍ବ ଚରିତ ॥ ୨୯
ସେ ଘଟଣା ବଶରୁ ଏ' ଆଶ୍ରମର ନାମ ।
ଅନଙ୍ଗ ଆଶ୍ରମ ହେଲ ଆହେ ରଘୁତ୍ତମ ! ॥ ୩୦
ଏ' ଦେଶର ନାମ ତେଣୁ ହେଲ ଅଙ୍ଗଦେଶ ।
ଯେଣୁ କାମଦେବ ଅଙ୍ଗ ଦହିଲ ହୁତାଶ ॥ ୩୧
ପୁଣ୍ୟାଶ୍ରମ ସେହି ଦିନୁଁ ଅଛି ଏ' ସ୍ଥାନରେ ।
ନିବାସ କରନ୍ତି ଏଥି ମହାଯୋଗେଶ୍ବରେ ॥ ୩୨
ଶିବଙ୍କ ଚରଣ ରେଣୁ ବନ୍ଦି ମସ୍ତକରେ ।
ଅଛନ୍ତି ଏ' ସ୍ଥାନେ ସିଦ୍ଧପୁରୁଷ ନିକର ॥ ୩୩
ଶିବଙ୍କ ପ୍ରସାଦୁଁ ଯୋଗେ ଏଠୁ ମୁନିଗଣ ।
ତପ ସାଧନେ କରନ୍ତି ଅସାଧ୍ୟ ସାଧନ ॥ ୩୪
ହେ ଶୁଭଦର୍ଶନ ରାମ ! ଶୁଣ ମୋ' ବଚନ ।
ରଜନୀ ଯାପିବା ଏଥି ଲଭି ମୁନିଜନ ॥ ୩୫

ସନ୍ଧ୍ୟାତର୍ପଣାଦି ଜପଯଜ୍ଞ ପୂଜାମାନ ।
ସାରିବା ଏଠାରେ ପୁଣ୍ୟଜଳେ କରି ସ୍ନାନ ॥ ୩୬
ଦେଖୁ ହେ ରାଘବ ! ରହ୍ମ ଆଜକ ରଜନୀ ।
କାଲି ପ୍ରଭାତୁଁ ଚଳିବା କହ୍ମ ହେଲେ ଗୁନି ॥ ୩୭
ଏସନ ସମୟେ ଆଶ୍ରମର ମୁନିଗଣ ।
ଯୋଗବଳେ ଜାଣିଲେ ଆସନ୍ତି ତିନିଜଣ ॥ ୩୮
ରାମ ଲକ୍ଷ୍ମଣ ସହିତେ ବିଶ୍ୱାମିତ୍ର ମୁନି ।
ଆସନ୍ତି ଆଶ୍ରମେ ଯାପିବାକୁ ରଜନୀ ॥ ୩୯
ଏମନ୍ତ ଜାଣିଣ ମନେ ହୋଇ ହରଷିତ ।
ଉତ୍ସୁକେ ଆସିଲେ ଭେଟିବାକୁ ବିଶ୍ୱାମିତ୍ର ॥ ୪୦
ପାଦ୍ୟ ଅର୍ଘ୍ୟ ମଧୁପର୍କେ ପୂଜି ମୁନିବରେ ।
ଛାନ୍ଦେ ସର୍ଙ୍କୋଳି ନେଲେ ସେ ରେଣୁ କୁମରେ ॥ ୪୧
ମହାସମାଦରେ କରି ଅତିଥି ସତ୍କାର ।
ପୁଲକିତ ହେଲେ ସେ ଆଶ୍ରମ ମୁନିବର ॥ ୪୨
ମନୋଜ୍ଞ ବଚନେ ନାନା ବାକ୍ୟାଳାପ କରି ।
ତୋଷିଲେ ଅତିଥି ଜନେ ଆଶ୍ରମ ବିହାରୀ ॥ ୪୩
ଏଥିଅନ୍ତେ ସନ୍ଧ୍ୟାକାଳ ହେଲା ଉପସ୍ଥିତ ।
ସକଳ ମୁନିଏ ବସି କଲେ ସନ୍ଧ୍ୟାବ୍ରତ ॥ ୪୪
ବିଶ୍ୱାମିତ୍ର ସୁଖାସନେ ବସି ସନ୍ଧ୍ୟା କଲେ ।
ହରଷେ ମୁନି ଗହଣେ କୁମାରଙ୍କ ଭୁଲେ ॥ ୪୫
ଭୋଜନ ଅନ୍ତରେ ସର୍ବ ଆଶ୍ରମବିହାରୀ ।
ଉତ୍ତମ ସ୍ଥାନରେ ଅତିଥିଙ୍କ ଶଯ୍ୟା ପାରି ॥ ୪୬
ଶୟନ ନିମିତ୍ତ କରଯୋଡ଼ି ଆବାହନ ।
ଜଣାଇଲେ ଅତିଥିଙ୍କୁ ସର୍ବ ମୁନିଜନ ॥ ୪୭
ଶ୍ରୀରାମ ଲକ୍ଷ୍ମଣ ସାଥେ ମୁନି ବିଶ୍ୱାମିତ୍ର ।
ଯାପିଲେ ରଜନୀ କହ୍ମ ମନୋଜ୍ଞ ଚରିତ ॥ ୪୮
ଶ୍ରୀରାମ ଲକ୍ଷ୍ମଣ ମୁନି ପାଦପଦ୍ମ ବନ୍ଦେ ।
ମୂରୁଖ ପୁରୁଷୋତ୍ତମ ଭଣେ ରାମଗୀତ ॥ ୪୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ତ୍ରୟୋବିଂଶ ସର୍ଗ । ●

# ଚତୁର୍ବିଂଶ ସର୍ଗ

## ଗଙ୍ଗା ପାରି ହେବା ସମୟରେ ଜଳର କଳକଳ ଧ୍ୱନି ଶୁଣି ଶ୍ରୀରାମଙ୍କ ପ୍ରଶ୍ନ, ବିଶ୍ୱାମିତ୍ରଙ୍କ ଉତ୍ତର ତଥା ତାଡ଼କା ବଧ ଲାଗି ଆଜ୍ଞା ପ୍ରଦାନ ।

ପ୍ରାତଃକାଳେ ଶଯ୍ୟା ତ୍ୟାଗ କରି ମୁନିବର ।
ବେନି କୁମରଙ୍କୁ ଉଠାଇଲେ ତତପର ॥ ୧
ମୁନିଙ୍କ ସଙ୍ଗତେ ଦୁଇଭାଇ ସଜ ହୋଇ ।
ଭାଗୀରଥୀ ତୀରେ ଧୀରେ ପ୍ରବେଶିଲେ ଯାଇ ॥ ୨
ଶୁଦ୍ଧ ବ୍ରହ୍ମଚର୍ଯ୍ୟ ଆଶ୍ରମର ମୁନିଗଣ ।
ଆଣାଇଲେ ତରଣୀଏ କରିଣ ଯତନ ॥ ୩
ସୁସଜ୍ଜିତ ନୌକା ଥୋଇ ଗଙ୍ଗାନଦୀ ତୀରେ ।
ଭାଷିଲେ ଆଶ୍ରମବାସୀ ବିନମ୍ର ବାଣୀରେ ॥ ୪
ଆହେ ମୁନିବର ! ରାମ ଲକ୍ଷ୍ମଣଙ୍କୁ ଘେନି ।
ବିଜେ କର ମନ ସୁଖେ ଆଣିଛୁ ତରଣୀ ॥ ୫
ଅବିଘ୍ନେ ହୁଅନ୍ତୁ ପାରି ଜହ୍ନୁସୁତା ନୀର ।
ନିବେଦିଲୁଁ ମୁନିବର ! ବିଳମ୍ବ ନ କର ॥ ୬
ନାବ ଦେଖି ବିଶ୍ୱାମିତ୍ର ହୋଇଣ ହରଷ ।
ହେଉ ବୋଲି ସୁକଲ୍ୟାଣ କଲେ ମୁନିଈଶ ॥ ୭
ଅନେକ ପ୍ରକାରେ ତାଙ୍କୁ ପ୍ରଶଂସା କରିଣ ।
ବିଜେ ତରଣୀରେ ରାମ ସଙ୍ଗତେ ଲକ୍ଷ୍ମଣ ॥ ୮
ମୁନିବର ବିଶ୍ୱାମିତ୍ର ପୁଲକିତ ହୋଇ ।
ନଉକାରେ ବିଜେ କଲେ ବିଭୁପଦ ଧ୍ୟାୟି ॥ ୯
ସମୁଦ୍ରଗାମିନୀ ଗଙ୍ଗା ନିର୍ମଳ ସଲିଳା ।
ମଧ୍ୟରେ ତରଣୀ ଧୀରେ ସମୀରେ ବହିଲ ॥ ୧୦

ଏ’ ସମୟେ ଜଳମଧ୍ୟୁଁ ଉଠିଲାକ ଧ୍ୱନି ।
ବିସ୍ମିତ ହୋଇଲେ ଶୁଣି ରଘୁକୁଳମଣି ॥ ୧୧
କାହିଁ ଜାତ ଏ’ ଶବଦ କି ଅବା କାରଣ ।
ବୁଝି ନ ପାରି ଚକିତେ ଶ୍ରୀରାମ ଲକ୍ଷ୍ମଣ ॥ ୧୨
କରଯୋଡ଼ି ବିନୟ ବଚନେ ରଘୁବର ।
ପଚାରନ୍ତି ତପସ୍ୱୀଙ୍କୁ କାରଣ ଏହାର ॥ ୧୩
ଆହେ ମୁନିବର ! କିହ ଏଥିର କାରଣ ।
ପରସ୍ପର ଜଳାଘାତେ ଧ୍ୱନି କମ୍ପା ପୁଣ ॥ ୧୪
କମ୍ପା ଏ’ ତୁମୁଳଧ୍ୱନି ଉଠଇ ଜଳରୁ ।
ବୁଝି ନ ପାରିଲୁ ଏହା କେବଳକୁଦ୍ରୁ ! ॥ ୧୫
ଏହାର କାରଣ ମୁନି ! କହ ହେ ବୁଝାଇ
ଶୁଣି କୁତୂହଳ ପ୍ରଶ୍ନ ଭାଷନ୍ତି ଗୋସାଇଁ ॥ ୧୬
ଆହେ ସୁଶୀଳ ସୁନ୍ଦର ସତ୍ୟବ୍ରତ ରାମ !
କହୁଛି ବୁଝାଇ ଜଳଧ୍ୱନିର କାରଣ ॥ ୧୭
କୈଳାସ ପର୍ବତେ ଅଛି ଏକ ସରୋବର ।
ପୂର୍ବେ ଯାହା ନିର୍ମାଣି ଅଛନ୍ତି ବେଦବର ॥ ୧୮
ମନ ସଙ୍କଳ୍ପରୁ ହୋଇଥିବାରୁ ସମ୍ଭୂତ ।
ମାନସରୋବର ନାମେ ହୋଇଲା ଖ୍ୟାତ ॥ ୧୯
ତହିଁରୁ ନିର୍ଗତ ହେଲା ଏକ ସ୍ରୋତସ୍ୱିନୀ ।
ସରଯୂ ନାମ ତାହାର ଆହେ ରଘୁମଣି ॥ ୨୦
ଅଯୋଧ୍ୟାପୁରୀ ନିକଟେ ବହେ ଯେ ତଟିନୀ ।
ବ୍ରହ୍ମସରୁ ବାହାରି ସେ ପୁଣ୍ୟ ପୟସ୍ୱିନୀ ॥ ୨୧
ସେହି ନଦୀ ଜଳ ଏବେ ମିଶେ ଗଙ୍ଗାଜଳେ ।
ତେଣୁ ଉଠଇ ଏ ଧ୍ୱନି ଊର୍ମି ସଂଘର୍ଷରେ ॥ ୨୨
ଉଭୟ ପୁଣ୍ୟ ସଲିଳା ସମୁଦ୍ର ଗାମିନୀ ।
ପ୍ରଣାମ କର ଶ୍ରଦ୍ଧାରେ ଆହେ ୱାରମଣି ! ॥ ୨୩
ଏ’ ସଙ୍ଗମ ଅଟେ ସର୍ବ ପୁଣ୍ୟର ଆକର ।
ଭକ୍ତିଭରେ ଜଳ ଛୁଇଁ ନମ ରଘୁବର ॥ ୨୪

ଶୁଣି ମୁନିଙ୍କ ବଚନ ଶ୍ରୀରାମ ଲକ୍ଷ୍ମଣ ।
ସଭକ୍ତିରେ ସଙ୍ଗମକୁ କଲେକ ପ୍ରଣାମ ॥ ୨୫
ଏ' ସମୟେ ଗଙ୍ଗାର ଦକ୍ଷିଣତଟେ ଯାଇ ।
ଲଗନ୍ତେ ନଉକା ଗଲେ ସଭଏଁ ଓହ୍ଲାଇ ॥ ୨୬
ମୁନି ସଙ୍ଗେ ଦୁଇ ଭାଇ ଚଳି କିଛି ଦୁର ।
ପ୍ରବେଶିଲେ ଯାଇ ଘୋର ବନସ୍ତ ଭିତର ॥ ୨୭
ଜନମାନବଙ୍କ ଯହିଁ ନାହିଁ ଗତାଗତ ।
ନିବିଡ଼ ଅରଣ୍ୟ ଦେଖି ପୁଚ୍ଛେ ରଘୁନାଥ ॥ ୨୮
ଆହେ ଗୁରୁଦେବ ! ବନ ଅତି ଭୟଙ୍କର ।
ଅଦ୍ଭୁତ ଦୁର୍ଗମ ପୁଣି ସନ୍ଦ୍ର ମନୋହର ॥ ୨୯
ବନଗହନୁ ଶୁଭଇ ଝିଲ୍ଲୀର ଝଙ୍କାର ।
ମନେହୁଏ ହିଂସ୍ରଜନ୍ତୁ ଅଛନ୍ତି ଅପାର ॥ ୩୦
ମନୋରମ କୂଜନ ନ ଶୁଭେ ବନଦେଶୁ ।
ଭୟଙ୍କର ରବେ ସଦା ରତ ବନ୍ୟପଶୁ ॥ ୩୧
ସିଂହ ବ୍ୟାଘ୍ର ଶୂକର ମହିଷ ଆଦି ଜୀବ ।
ଏ' ବନ ମଧ୍ୟେ ଅନେକ ଅଛନ୍ତି ହେ ଦେବ ! ॥ ୩୨
ଅଶ୍ୱକର୍ଣ୍ଣ ଅର୍ଜୁନ ପାଟଳ ବିଲ୍ୱ ଆଦି ।
କେନ୍ଦୁ ଶାଳ ତମାଳ ବୃକ୍ଷରେ ଅଛି ଭେଦି ॥ ୩୩
କି ନାମ ଏହାର କୁହ ଆହେ ମୁନିବର !
ଶୁଣିବାକୁ କୁତୂହଳ ଜାଗଇ ମନର ॥ ୩୪
ଶୁଣି ଶ୍ରୀରାମ ବଚନ କହନ୍ତି ମହର୍ଷି ।
ଏ' କାନନ ରହସ୍ୟ ଶୁଣ ହେ ରଘୁବଂଶୀ ! ॥ ୩୫
ମହାଭୟଙ୍କର ଏହୁ ନିବିଡ଼ କାନନ ।
ଏଥିରେ ବୃତ୍ତାନ୍ତ କହେଁ ଶୁଣ ଦେଇ ମନ ॥ ୩୬
ପୂର୍ବେ ମଳଦ କରୂଷ ନାମେ ଜନପଦ ।
ଥିଲେ ଏଥି ଦୁଇଗୋଟି ଦେବତା ସମ୍ପଦ ॥ ୩୭
ଦେବ ନିର୍ମିତ ଏ' ଜନପଦରେ ବାସବ ।
ବୃତ୍ରାସୁର ବଧି ରହିଥିଲେ ହେ ରାଘବ ! ॥ ୩୮

ବ୍ରହ୍ମହତ୍ୟା ପାପେ ଦେହ ହୋଇଲା ମଳିନ ।
କ୍ଷୁଧାରେ ପୀଡ଼ିତ ପୁଣି ହୋଇଲେ ବୃତ୍ରଘ୍ନ ॥ ୩୯
ତହୁଁ ଦେବ-ଋଷିଗଣେ ମିଳଣ ଏଠାରେ ।
ଇନ୍ଦ୍ରଙ୍କୁ ସ୍ନାହାନ କରାଇଲେ ଗଙ୍ଗାମାରେ ॥ ୪୦
ପବିତ୍ର ସଲିଳ ପରଶରୁ ଇନ୍ଦ୍ର ଦେହୁ ।
ମଳ କରୁଷ ନିର୍ଗତ ହେଲା ମହାବାହୁ ! ॥ ୪୧
ପାପ-କ୍ଷୁଧା ନିବାରଣ ହେଲା ଏଥି ସହୁଁ ।
ମଳଦ କରୁଷ ନାମ ରଖିଲେକ ତହୁଁ ॥ ୪୨
ଇନ୍ଦ୍ର ସନ୍ତୋଷ ହୋଇଣ ଦେଲେ ବରଦାନ ।
ଏହୁ ଜନପଦ ହେଉ ସର୍ବଦା ସମ୍ପନ୍ନ ॥ ୪୩
ଧନ ଧାନ୍ୟ ଗୋପ ଲକ୍ଷ୍ମୀ ବଢ଼ୁ ଦିନୁଁ ଦିନ ।
ସକଳ ବିଭବେ ପୂର୍ଣ୍ଣ ହେଉ ଏହି ସ୍ଥାନ ॥ ୪୪
ଏମନ୍ତ ବର ବଳିଲେ ସେ ପାକଶାସନ ।
ଏଥିଅନ୍ତେ ଯାହା ହେଲା ଶୁଣ ଦେଇ ମନ ॥ ୪୫
କେତେକାଳ ଅନ୍ତେ ଏକ ସ୍ୱେଚ୍ଛାବିହାରିଣୀ ।
ଏ' ନଗରେ ପ୍ରବେଶିଲା ଅଦ୍ଭୁତ ଯକ୍ଷିଣୀ ॥ ୪୬
ବିକଟ ଯୌବନା ନାରୀ ବିକୃତ ବେଶରେ ।
ଏକସହସ୍ର ମତ୍ତଗଜ ବଳ ତା' ଶରୀରେ ॥ ୪୭
ନାମ ତା' ତାଟକା ଭୟଙ୍କର ନିଶାଚରୀ ।
ସୁନ୍ଦ ନାମେ ଦାନବର ଅଟେ ସହଚରୀ ॥ ୪୮
ଇନ୍ଦ୍ର ସମ ବଳଶାଳୀ ପୁତ୍ର ତା ମାରୀଚ ।
ଭୁବନ କମ୍ପଇ ସେହୁ ଧଇଲେ ନାରାଚ ॥ ୪୯
ପ୍ରଚଣ୍ଡ ଶରୀର ତା'ର ସୁବିଶାଳ ଭୁଜ ।
ଭୟଙ୍କର ରୂପ ପୁଣ ଅସହ୍ୟ ତା' ତେଜ ॥ ୫୦
ପିତା ମାତା ପୁତ୍ରେ ମିଳି ଏହି ଜନପଦେ ।
ବିନାଶିଲେ ଜନପ୍ରାଣୀ ସକଳ ସମ୍ପଦେ ॥ ୫୧
ତହୁଁ ପ୍ରାଣଭୟେ ଜନପଦ ନରନାରୀ ।
ପଳାଇଲେ ଏଥୁଁ ଶୁଣ ଆହେ ରଘୁଧାରୀ ! ॥ ୫୨

ଜନ ମାନବ ବସ୍ତି ନ ହୋଇଲା ଏ' ଦେଶ ।
ପଳାଇଲେ ସର୍ବ ଜନେ ଲଭି ଦୈତ୍ୟ-ତ୍ରାସ ॥ ୫୩
ଷଡ଼କ୍ରୋଶ ବ୍ୟାପି ବନେ ରହଇ ଯକ୍ଷିଣୀ ।
ଶୁଣିଲତ ଦୁଃଖଦ ସମ୍ବାଦ ରଘୁମଣି ! ॥ ୫୪
ମଳଦ କରୂଷ କମ୍ପା ହୋଇଲା ଅରଣ୍ୟ ।
ଯେ କାରଣୁ ଜନପଦ ହେଲା ଜନ ଶୂନ୍ୟ ॥ ୫୫
ଆହେ ରାମ ! ରାଜୀବଲୋଚନ ଗୁଣଧାମ !
ତାଡ଼କା ବନକୁ ଆମ୍ଭେ ଯିବା ବେଗ କରି ॥ ୫୬
ସେ ବନେ ପ୍ରବେଶି ତୁମ୍ଭେ ରଘୁକୁଳମଣି ।
ତଳେ ଦୟା ନ ବହିଣ ସଂହାର ଯକ୍ଷିଣୀ ॥ ୫୭
ମୋ' ଆଦେଶେ ସାଧ ରାମ ! ଏହୁ ଦେବ କର୍ମ ।
ଦୁରାଚାରିଣୀ ବଧରେ ନୋହିବ ଅଧର୍ମ ॥ ୫୮
ମଳଦ କରୂଷ ପୁଣି ହେବ ନିଷ୍କଣ୍ଟକ ।
ପୂର୍ବ ପରି ନିବାସ କରିବେ ଏଥି ଲୋକ ॥ ୫୯
ହସି ଉଠିବ ଏ' ଜନଶୂନ୍ୟ ବନ ଘୋର ।
ତୁମ୍ଭ ପ୍ରସାଦରୁ କରି ଆହେ ରଘୁବର ! ॥ ୬୦
ମୁନି ମୁଖୁଁ ଏ' ବଚନ ଶୁଣି ରଘୁମଣି ।
ପ୍ରସ୍ତୁତ ହୋଇଲେ ବଧିବାକୁ ସେ ଯକ୍ଷିଣୀ ॥ ୬୧
ଆହେ ନବ ନୀରଦ ବରଣ ଘନଶ୍ୟାମ !
ବଳନ୍ତୁ ମାନସ ପୂରଅ ମୋ ମନସ୍କାମ ॥ ୬୨
ବାମନ ହୋଇ ଚନ୍ଦ୍ରକୁ ବଢ଼ାଇଛୁ ହାତ ।
ମୋ' ଆଶା ପୂରଣ କର ଆହେ ରଘୁନାଥ ! ॥ ୬୩
ସେବକ ପୁରୁଷୋତ୍ତମ ଯୋଡ଼ି ବେନିକର ।
କରଇ ଦଣ୍ଡବତ ରଘୁମଣି ! ସେନାକର ॥ ୬୪

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଚତୁର୍ବିଂଶ ସର୍ଗ ।



# ପଞ୍ଚବିଂଶ ସର୍ଗ

## ତାଡ଼କା ଜନ୍ମ, ସ୍ୱରୂପ ଓ ବିବାହାଦି ବର୍ଣ୍ଣନ ।

ଶୁଣ ଆହେ ସୁଜ୍ଞଜନେ ! ଅପୂର୍ବ ଚରିତ ।
ଶୁଣିଲେ ପାତକ ଦହେ ରାମ-କଥାମୃତ ।। ୧
ଅପରିମିତ ପ୍ରଭାବଶାଳୀ ବିଶ୍ୱାମିତ୍ର ।
ବୋଇଲେ ଶ୍ରୀରାମେ କର ତାଡ଼କାକୁ ହତ ।। ୨
ଶୁଣି ମୁନିଙ୍କ ବଚନ ରଘୁକୁଳମଣି ।
ବୋଇଲେ ମୁନିଙ୍କି ଧୀରେ ମନେ ମନେ ଗୁଣି ।। ୩
ଆହେ ଗୁରୁଦେବ ! ତୁମ୍ଭେ ବୋଇଲଟି ଯାହା ।
ତାଡ଼କା ଯକ୍ଷିଣୀ ନାରୀଟାଏ ମୁନିନାହା ! ।।.୪
ଅବଳା ନାରୀ ସହଜେ ଅଟଇ ରାକ୍ଷସୀ ।
କିପରି ଲଭିଲା ଶକ୍ତି କେଉଁ ଦେବେ ତୋଷି ? ।। ୫
ବୋଇଲ ହେ ମୁନିବର ! ସହସ୍ର ହସ୍ତୀର ।
କିପରି ରାକ୍ଷସୀ ଲଭିଅଛି ଏତେ ବଳ ? ।। ୬
ମହା ତେଜସ୍ୱୀ ଶ୍ରୀରାମ ମୁଖୁଁ ଏହୁ ବାଣୀ ।
ଶୁଣି ସଧୀରେ ଭାଷନ୍ତି ବିଶ୍ୱାମିତ୍ର ମୁନି ।। ୭
ହେ ରଘୁନନ୍ଦନ ! ଶୁଣ ଅପୂର୍ବ ଚରିତ ।
ଯେ ରୂପେ ଲଭିଲା ବଳ ରାକ୍ଷସୀ ଅଦ୍ଭୁତ ।। ୮
ଦେବ ବର ବଳୁଁ କେହି ନୋହେ ଶକ୍ତିଧରା
ତେଣୁ ରାକ୍ଷସୀ ଲଭିଛି ଅଲୌକିକ ବଳ ।। ୯
ଅବଳା ହୋଇଣ ସେହି ବର ପରସାଦେ !
ସବଳା ହୋଇ ବୁଲଇ ବନା ପରମାଦେ ।। ୧୦
ପୂର୍ବର ଚରିତ ଶୁଣ ଆହେ ରଘୁବଳା ।
ସୁକେତୁ ନାମରେ ଏକ ଯକ୍ଷବର ଥିଲା ।। ୧୧

ସନ୍ତାନ ବଞ୍ଛାନେ ଯକ୍ଷ ଅତ୍ୟନ୍ତ ଆତୁରେ ।
ତପସ୍ୟା ସାଧିଲା ବସି ଅରଣ୍ୟ ମଧ୍ୟରେ ।। ୧୨
ମହାବଳୀ ଯକ୍ଷ ଥିଲା ଆତ୍ମରେ ନପୁଣ ।
ତେଣୁ ସେ ତପ ସାଧନେ ବଳାଇଲା ମନ ।। ୧୩
ପ୍ରଜାପତିଙ୍କି ଏକାନ୍ତେ ଭଜିଲା ସୁକେତୁ ।
ତା'ର ତପେ ତୁଷ୍ଟ ହୋଇ ଆସି କୁଶକେତୁ ।। ୧୪
ବୋଇଲେ ସୁକେତୁ ! ଶୁଣ ମୋହର ବଚନ ।
ଜାଣେ ମୁଁ ତୋ ଅଭିଳାଷ ମାଗୁଛୁ ସନ୍ତାନ ।। ୧୫
ଲଭିବୁ କନ୍ୟା ରତନ ଆହେ ଯକ୍ଷବର !
ସେ କନ୍ୟା ଲଭିବ ବଳ ସହସ୍ର ହସ୍ତୀର ।। ୧୬
କପଟ କରଣ ବିଧି ଦେଲେ କନ୍ୟାଦାନ ।
ନୋହିଲେ ସୁକେତୁ ମାଗିଥା'ନ୍ତା ସୁନନ୍ଦନ ।। ୧୭
ମହା ବଳଶାଳୀ କ୍ରୂର ଦାନବ ପ୍ରଧାନ ।
ତେଣୁ ବିଧ ତା କପଟେ ମୋହିଲେ ତା'ମନ ।। ୧୮
ଦେବକୂଟ-ମାୟା ଯାହା ହୋଇବ ବିଧାନ ।
ଯକ୍ଷ କି କରିବ ଯହିଁ ବିଧି ବଳବାନ ।। ୧୯
ଦିନୁ ଦିନ ଶୁକ୍ଳପକ୍ଷ ଶଶାକର ପରି !
ବଢ଼ିଲା ସେ କନ୍ୟା ହୋଇ ଜନମନୋହାରୀ ।। ୨୦
ଯକ୍ଷ ବୀର ନାମ ତା'ର ଦିହିଲେ ତାଟକା ।
ସକଳେ ପ୍ରବଧ ହେଲେ ଶୁଣିଣ ତା'ଡକା ।। ୨୧
ରୂପ ଯଉବନବନ୍ତୀ ହୋଇଲା ସୁହସ୍ତୀ ।
ତହୁଁ ପିତା ସୁକେତୁ ଆଣିଲା ବର ବରି ।। ୨୨
ଜମ୍ଭ ଦୈତ୍ୟ ସୁତ ଯା'ର ଅଟେ ସୁନ୍ଦ ନାମ ।
ତା'କରେ ଅର୍ପିଲା ଯକ୍ଷ ସେ କନ୍ୟା ରତନ ।। ୨୩
କତି ଦିନ ଅନ୍ତେ ସେ ଯକ୍ଷିଣୀ ଗର୍ଭ ହେଲା ।
ମାରୀଚ ନାମରେ ଏକ ସୁତ ପ୍ରସବିଲା ।। ୨୪
ଦୁର୍ଜୟ ହୋଇଲା ପୁତ୍ର ମହା ବଳବାନ ।
ତେଣୁ ହିତାହିତ ଜ୍ଞାନ ଛାଡ଼ିଲା ନନ୍ଦନ ।। ୨୫

ଅଗସ୍ତ୍ୟ ମୁନିଙ୍କି ଯନ୍ତ୍ରୁଁ କଲା ହତାଦର ।
ମୁନି ଶାପୁଁ ଲଭିଲା ସେ ରାକ୍ଷସ ଶରୀର ॥ ୨୬
ସୁନ୍ଦ ଦୈତ୍ୟ ମୁନି ଶାପୁଁ ହେଲା ପ୍ରାଣେ ହତ ।
ତେଣୁ ମୁନି ବଧିବାକୁ ଗଲେ ମାତା-ପୁତ୍ର ॥ ୨୭
ତାଡ଼କା ମାରୀଚ ମିଳି କଲେ ଘୋରନାଦ ।
ଅଗସ୍ତ୍ୟଙ୍କୁ ବଧିବାକୁ ବଳାଇଲେ ସଧ ॥ ୨୮
ମାରୀଚକୁ ଶାପଦେଇ ବୋଲେ ମୁନିବର ।
ରାକ୍ଷସ ସ୍ୱଭାବ କଲୁ ଲଭିବୁ ସେ ଫଳ ॥ ୨୯
ଦେବତ୍ୱ ତେଜ ତୁ ହେଲୁ ରାକ୍ଷସ ପ୍ରଧାନ ।
ତେଣୁ ତୁ ଅବଜ୍ଞା କଲୁ ମୋତେ ରେ ଅଧମ ! ॥ ୩୦
ବୋଇଲେକ ମୁନି ତାଡ଼କାକୁ ଦେଇ ଶାପ ।
ସେ ଫଳ ଭୁଞ୍ଜିବୁ ନାରି ! କରିଛୁ ଯେ ପାପ ॥ ୩୧
ଅବଳା ହୋଇ ସବଳା ପ୍ରାୟେ କର୍ମ କଲୁ ।
ଗୁରୁ ମୁନି ବିପ୍ର ଜନେ ଅବଜ୍ଞା କରିଲୁ ॥ ୩୨
ସେହି ପାପୁଁ ତେଜ ତୋର ଏ' ସୁନ୍ଦର ତନୁ ।
ବୁଲିବୁ ରାକ୍ଷସୀ ହୋଇ ଶଙ୍କା ତେଜି ମନୁ ॥ ୩୩
ବିକୃତ ବଦନା ଉଗ୍ରଚଣ୍ଡୀ ରୂପ ଧରି ।
ବୁଲିବୁ ଘୋର ବିପିନେ ହୋଇଣ ଅସୁରୀ ॥ ୩୪
ନରମାଂସ ପ୍ରିୟା ହୋଇ ଭ୍ରମିବୁ କାନନ ।
ଦେବ-ନରେ ଭୟ ତୋର ନ ରହିବ ମନେ ॥ ୩୫
ନିଶାଚରୀ ହୋଇ ଜନେ ଦଣ୍ଡିବୁ ନିରତ ।
ଶାପ ଦେଇ ତାଡ଼କାକୁ ଚଳିଲେ ଅଗସ୍ତ୍ୟ ॥ ୩୬
ଶୁଣି ମୁନିଙ୍କ ବଚନ କୋପେ ଦଇତୁଣୀ ।
ବନେ ବନେ ଭ୍ରମିଲା ବିକଟ ରୂପ ଘେନି ॥ ୩୭
ମହାକୋପେ ସେ ରାକ୍ଷସୀ ଧ୍ୱଂସି ଜନପଦ ।
ଅଗସ୍ତ୍ୟ ମୁନିଙ୍କ ସଙ୍ଗେ ସାଧିଲେକ ବାଦ ॥ ୩୮
ଯେଉଁ ବନେ ଅଗସ୍ତ୍ୟ ସାଧିଲେ ଯୋଗ ବସି ।
ପ୍ରତିଶୋଧେ ସେ ଅଞ୍ଚଳ ଧ୍ୱଂସିଲା ରାକ୍ଷସୀ ॥ ୩୯

ହେ ରଘୁନନ୍ଦନ ! କାଳସର୍ପିଣୀ ସେ ନାରୀ ।
ଗୋ-ବ୍ରାହ୍ମଣ-ଋଷି ହିତ ସାଧ ତାକୁ ମାରି ॥ ୪୦
ଏ' ପକ୍ଷିଣୀ ଥିବାଯାଏଁ ନୋହିବ କା' ହିତ ।
ତେଣୁ ଦୁରାଚାରିଣୀକୁ ନାଶ ରଘୁନାଥ ! । ୪୧
ତ୍ରିଲୋକବନ୍ଦନ ଆହେ ରଘୁକୁଳମଣି !
ତ୍ରିପୁରେ କେ କ୍ଷମ ନୋହେ ବଧିବ ପକ୍ଷିଣୀ ॥ ୪୨
କେବଳ ତୁମ୍ଭର କରେ ମରିବ ରାକ୍ଷସୀ ।
ଅନ୍ୟ କେହି ବଧିବାକୁ ନୋହିବେ ସାହସୀ ॥ ୪୩
ନାରୀ ବଧେ ଶଙ୍କା ନ କର ହେ ବୀରବର !
ତୁମ୍ଭେ ଦୟା କଲେ ଏହୁ ନାଶିବ ସଂସାର ॥ ୪୪
ବ୍ରହ୍ମ କ୍ଷତ୍ର ବୈଶ୍ୟ ଶୂଦ୍ର ହିତେ ରଘୁବର !
ନାରୀ ହେଲେହେଁ ତାହାକୁ ସୁଦୟା ନ କର ॥ ୪୫
ଅବଳା ସବଳା ହେଲେ ବୁଡ଼ଇଟି ହେଳା ।
ଏଣୁ ତାଡ଼କା ବିନାଶେ ନ କର ତୁ ହେଳା ॥ ୪୬
ତୁମ୍ଭେ ରାଜପୁତ୍ର ପୁଣି ଅଟ ହେ କ୍ଷତ୍ରିୟ ।
ବିପଦୁଁ ଉଦ୍ଧର ଜନେ ହୋଇଣ ସଦୟ ॥ ୪୭
ପରଜା ରକ୍ଷଣ ହେତୁ ଜାଣି ନରେଶ୍ୱର ।
ହେଲେହେଁ କ୍ରୂର କରମ କରନ୍ତି ନିକର ॥ ୪୮
ସନ୍ତତି ପାଳନେ ନୃପ ସଦୋଷ କରମ ।
କରନ୍ତି ହେଲେ ହେଁ ତାହା ବିହିତ ଧର୍ମ ॥ ୪୯
ରାଜ୍ୟ ସମ୍ପାଦନ ଅଟେ ରାଜାର କରମ ।
ସେ ଲାଗି କରନ୍ତି ନୃପ ସମୁଚିତ ଧର୍ମ ॥ ୫୦
ପାପ କର୍ମ ହେଲେ ହେଁ ନ କରନ୍ତି ହେଳନ ।
ଯେଣୁ ଶ୍ରେଷ୍ଠବ୍ରତ ଅଟେ ପରଜା ପାଳନ ॥ ୫୧
ଅଧର୍ମାଚାରିଣୀ ଏହୁ ତାଡ଼କା ରାକ୍ଷସୀ ।
ମହାପାପିନୀ ଏହାକୁ ଯଶ ଲଭ ନାଶି ॥ ୫୨
ଶୁଣିଛୁ ପୁରାଣ ବାଣୀ ହେ ରଘୁନନ୍ଦନ !
ପୂର୍ବକାଳେ ଥିଲା ରାଜା ନାମ ବିରୋଚନ ॥ ୫୩

ତା'ର ଦୁହିତା ମନ୍ଥରା ଥିଲା ଭୟଙ୍କରୀ ।
ପୃଥିବୀ ନାଶିବ ବୋଲି ଭାବିଲା ଅସୁରୀ ॥ ୫୪
ଦେବରାଜ ଜାଣି ତା'ର ଅମଙ୍ଗଳ ଚିନ୍ତା ।
ବଜ୍ରେ ତାକୁ ସଂହାରିଲେ କରିଣ ଅହନ୍ତା ॥ ୫୫
ଆହୁରି କଥାଏ ଶୁଣ ରଘୁବଂଶ ବୀର !
ଶୁକ୍ରାଚାର୍ଯ୍ୟ ମାତା ପତ୍ନୀ ଅଟଇ ଭୃଗୁର ॥ ୫୬
ଇନ୍ଦ୍ର ବିରୋଧିନୀ ହୋଇ ସେ ମୁନି ଘରଣୀ ।
ଇନ୍ଦ୍ରଶୂନ୍ୟ କରିବାକୁ ପାଞ୍ଚିଲା ତରୁଣୀ ॥ ୫୭
ତା' ଅନିଷ୍ଟ ଚିନ୍ତା ଜାଣି ପ୍ରଭୁ ଚକ୍ରଧରେ ।
ମୁନିପତ୍ନୀ ବଧ କଲେ ନିର୍ଦ୍ଦୟ ମନରେ ॥ ୫୮
ଆହୁରି ଅନେକ ଅଛି ଏସନ ବୃତ୍ତାନ୍ତ ।
ତେଣୁ ନାରୀ ବଧେ ନ ଭାବ ହେ ରଘୁନାଥ ! ॥ ୫୯
ଅନେକ ମହାମନସ୍ୱୀ ଅଛନ୍ତି ଜଗତେ ।
ନାରୀବଧେ ରତ ହୋଇଛନ୍ତି ଜନହିତେ ॥ ୬୦
ହେ ରଘୁପୁଙ୍ଗବ ! ମନୁ ତେଜ ଶଙ୍କା ଦୟା ।
ରାକ୍ଷସୀକୁ ବିନାଶ ନ କର ଦୟାମାୟା ॥ ୬୧
ଏ' ମୋର ଆଦେଶ ଘେନ ଆହେ ନୃପଧାରୀ !
ଯଶ ଅରଜନେ ବେଗେ ବିନାଶ ଅସୁରୀ ॥ ୬୨
ଆହେ ରାମ ପଙ୍କଜନୟନ ! ହୃଷୀକେଶ !
ବିପ୍ର ପୁରୁଷୋତ୍ତମର ପୂରାଅ ମାନସ ॥ ୬୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ପଞ୍ଚବିଂଶ ସର୍ଗ ।



# ଷଡ୍‌ବିଂଶ ସର୍ଗ

## ତାଡ଼କା ବଧ ।

ଶୁଣି ମୁନିଙ୍କ ମୁଖରୁ ସୁସ୍ବରୁ ବଚନ ।
ଦୃଢ଼ବ୍ରତ ସତ୍ୟଧର୍ମୀ ଶ୍ରୀରଘୁନନ୍ଦନ ॥ ୧
କରଯୋଡ଼ି ବୋଲନ୍ତି ହେ ଶୁଣ ମୁନିବର !
ଯାହା ମୋତେ ଆଜ୍ଞା ଦେଇଛନ୍ତି ମୋ' ପିତର ॥ ୨
ତାହାଙ୍କ ଆଦେଶ ଏହୁ ଆହେ ତପୀବର !
ଗୁରୁଙ୍କ ଆଜ୍ଞା ପାଳିବ ନ କରି ବିଚାର ॥ ୩
ରଘୁକୁଳ ଯଶ ବୃଦ୍ଧି ହେବ ଏ କାରଣୁ ।
ହେ ଋଷିପ୍ରବର ! ଆଜ୍ଞା ପାଳିବି ତୋ' ତେଣୁ ॥ ୪
ହେଲେ ହେଉ ଅସମ୍ଭବ କରିବି ଅବଶ୍ୟ ।
ମହୀତଳେ ରହାଇବି ରଘୁକୁଳ ଯଶ ॥ ୫
ତବ ଆଜ୍ଞା ଶିରେ ଧରି ବଧିବି ରାକ୍ଷସୀ ।
ନ କର ସନ୍ଦେହ ମନେ ଆହେ ବ୍ରହ୍ମଋଷି ! ॥ ୬
ଗୋ-ଦେବ-ଦ୍ୱିଜ ମଙ୍ଗଳେ ପାଳିବି ମୁଁ ଏହା ।
ମହତ ବଚନେ ହେବେ ପରମେଶ ସାହା ॥ ୭
ଆହେ ଜିତେନ୍ଦ୍ରିୟ ମୁନିଗଣଙ୍କ ଈଶ୍ୱର !
ପାଳିବି ଆଦେଶ ତବ ସନ୍ଦେହ ନ କର ॥ ୮
ଏମନ୍ତ ବୋଲିଣ ରାମଚନ୍ଦ୍ର ବୀରବର ।
ହସ୍ତେ ଧନୁଧରି ଦୃଢ଼ମୁଷ୍ଟି କଲେ କର ॥ ୯
ଧନୁର୍ଗୁଣ ଆକର୍ଷିଣ କରନ୍ତେ ଟଙ୍କାର ।
ଦଶଦିଗ ପୂରି ଉଚ୍ଛୁଳିଲା ସେ ଝଙ୍କାର ॥ ୧୦
ସେ ଟଙ୍କାର ଶବଦେ ପୂରିଲା ବନଦେଶ ।
ତାଡ଼କାବନେ ପ୍ରାଣୀଏ ମନେ କଲେ ତ୍ରାସ ॥ ୧୧
ତାଡ଼କା ଶୁଣିଣ ଏହୁ ଶବ୍ଦ ମହାଘୋର ।
ମନେ ମନେ ପ୍ରମାଦ ଗଣିଲା ନାସ୍ୱବର ॥ ୧୨

କଣ୍ଟକବନ ମଣ୍ଡଳରେ ରହିଣ ତାଡ଼କା ।
ଗରଜିଲା କୋପବଶେ ହୋଇଣ ନିଃଶଙ୍କା ॥ ୧୩
ମୂର୍ଚ୍ଛିତା ପରାୟେ ହୋଇ ଅଧର କାମୋଡ଼ ।
ରୋଷଭରେ ଯକ୍ଷିଣୀ ଛାଡ଼ିଲା ଘୋର ରଡ ॥ ୧୪
ଯେଉଁ ଦେଶୁ ଶବଦ ଶୁଭିଲା ସେହି ଦିଗେ ।
ଧାଇଁଲା ଅସୁରୀ ଶସ୍ତ୍ର ଧରି ଅତି ବେଗେ ॥ ୧୫
ତାଳବୃକ୍ଷ ପ୍ରମାଣେ ସେ ଅସୁରୀ ଶରୀର ।
ବିକଟାଳ ରୂପ ଚକ୍ଷୁ ରକ୍ତବର୍ଣ୍ଣ ତା'ର ॥ ୧୬
କ୍ରୋଧଭରେ ଅସୁରୀର କମ୍ପଇ ଶରୀର ।
ଚଣ୍ଡବେଗେ ଅଗ୍ନିବୃଷ୍ଟି କରେ ଖରତର ॥ ୧୭
ଏମନ୍ତ ବିକୃତବେଶା ରାକ୍ଷସୀକୁ ଚାହିଁ ।
ଲକ୍ଷ୍ମଣଙ୍କୁ ବୋଲନ୍ତି ଶ୍ରୀରାମ ରଘୁସାଇଁ ॥ ୧୮
ଦେଖ ରେ ଲକ୍ଷ୍ମଣ ! ଏ' ଅସୁରୀ ଆସେ ମାଡ଼ି ।
ଜଟଛି ଶବଦ କରଇ କ'ବା ଘଡ଼ଘଡ଼ି ॥ ୧୯
ଭୟଙ୍କର ଦିଶଇ ତା' କରାଳବଦନ ।
ବିକୃତ ଦଶନ କ୍ରୋଧେ ବୁଲଏ ନୟନ ॥ ୨୦
କରାଳ ରୂପ ଏହାର ଅତି ଭୟଙ୍କର ।
ଶିଶୁଜନେ ଦେଖି ମନେ ହୁଅନ୍ତି ବ୍ୟାକୁଳ ॥ ୨୧
ହୃଦୟ ବିଦୀର୍ଣ୍ଣ ହେବ ଦେଖିଲେ ଏ' ରୂପ ।
ବିଧାତା ଗଢ଼ିଛି କେମନ୍ତେ କରଣେ କୁରୂପ ॥ ୨୨
ମାୟାବନ୍ତ ଅସୁରର ଅସମ୍ଭବ ବଳ ।
ଅତ୍ୟନ୍ତ ଦୁର୍ଜୟ ଅଟେ ଶରୀର ଏହାର ॥ ୨୩
ଦେଖ ଆରେ ସଉମିତି ! ମୋର ଧନୁର୍ବାଣେ ।
ପରାଭବ ଦେବି କାଟି ଏହା ନାକ କାନେ ॥ ୨୪
ମୋର ଶରଘାତେ ଏ' ଯକ୍ଷିଣୀ ଭୟ ପାଇ ।
ପରାଣ ବିକଳେ ଯିବ ବନକୁ ପଳାଇ ॥ ୨୫
ଯକ୍ଷିଣୀ ନାରୀ ଅଟଇ ସେଣୁ ଏ କୁରୂପା ।
ତେଣୁ ମୋ' ମନେ ଜାଗଇ ଅସୁରୀରେ କୃପା ॥ ୨୬

ବିସ୍ମରଇ ମନେ କାଟି ଏହା ହସ୍ତପାଦ ।
ଛାଡ଼ିଦେବି ବନସ୍ତରେ ପଡ଼ି ଲଭୁ ଖେଦ ॥ ୨୭
ଗମନଶକ୍ତି ବିହୀନା ହେଲେ ଏ’ ରାକ୍ଷସୀ ।
ମନସ୍ତାପେ ରୋଦନ କରିବ ବନେ ବସି ॥ ୨୮
ନିଜ ପାପ କର୍ମଫଳ କରିବ ସ୍ମରଣ ।
ତେଣୁ ଏ’ ରାକ୍ଷସୀ ପ୍ରାଣ ନ ନେବି ଲକ୍ଷ୍ମଣ ! ॥ ୨୯
ଏମନ୍ତ ସମୟେ ଦୁରାଚାରିଣୀ ରାକ୍ଷସୀ ।
ହସ୍ତ ଉଞ୍ଚାଇ ସରୋଷେ ପ୍ରବେଶିଲା ଆସି । ୩୦
ଗର୍ଜନ କରେ ତାଡ଼କା ମନେ ବହୁ ରୋଷ ।
ସତେ ବା ପ୍ରଳୟକାଳ ହେଲା କି ପ୍ରବେଶ ॥ ୩୧
ତାଡ଼କା ଗର୍ଜନ ଶୁଣି ବିଶ୍ୱାମିତ୍ର ମୁନି ।
ହୁଙ୍କାର କରିଣ ଉଚ୍ଚେ କହିଲେ ଏ’ ବାଣୀ ॥ ୩୨
ରଘୁକୁଳ-ଭୂଷଣ ଏ’ ଶ୍ରୀରାମ-ଲକ୍ଷ୍ମଣ ।
ସୁଯଶ ଲଭନ୍ତୁ ଏଥି ମୋର ସୁକଲ୍ୟାଣ ॥ ୩୩
ବିଜୟକେତନ ଉଚ୍ଚେ ଫରଫର ହୋଇ ।
ଉଡ଼ୁ ରଘୁବଂଶ କୀର୍ତ୍ତି ଗଗନ କମ୍ପାଇ ॥ ୩୪
ରାକ୍ଷସୀ ବଧିଣ ରଘୁକୁଳ-ଶିରୋମଣି ।
ବିଜୟୀ ହୁଅନ୍ତୁ ଏହା ମୋ’ ଆଶିଷ ବାଣୀ ॥ ୩୫
ତହୁଁ ମୋହ-ମାୟା ପେଲି ତାଡ଼କା ରାକ୍ଷସୀ ।
ଗଗନ-ପବନେ ଆଚ୍ଛାଦିଲା ତମରାଶି ॥ ୩୬
ଧୂଳି ଧୂସର ଦିଶିଲା ନିବିଡ଼ ଅରଣ୍ୟ ।
ଆକାଶରେ ଲୁଚିଗଲେ ଦେବ ବିକର୍ତ୍ତନ ॥ ୩୭
ଧୂଳିଝଡ଼ ହେବା ପ୍ରାୟେ ସଭିଏଁ ମଣିଲେ ।
ଶ୍ରୀରାମ ଲକ୍ଷ୍ମଣ ମୋହମାୟା ଗ୍ରସ୍ତ ହେଲେ ॥ ୩୮
ତହୁଁ ପ୍ରଚଣ୍ଡ ରାକ୍ଷସୀ ମାୟାଜାଲ ଫାନ୍ଦ ।
ପଥର ବରଷାଇଲା ଘୋରତମ ଭେଦ ॥ ୩୯
ଏସନ ମାୟା ଦେଖିଣ ପ୍ରଭୁ ରଘୁନାଥ ।
କୁପିତ ହୋଇ ଛେଦିଲେ ସବୁ ମାୟାତନ୍ତ୍ର ॥ ୪୦

ଶ୍ରୀଗୁରୁ ସୁମରି କାଣ୍ଡେ ନାରାଚ ବସାଇ ।
କ୍ଷଣକରେ ମୋହମାୟା ଦେଲେକ ମିଳାଇ ॥ ୪୧
ତହୁଁ ଘୋର ଗରଜନ କରି ମାୟାବିନୀ ।
ଧାଇଁଲା ରାମଙ୍କୁ ଦେଖି କରେ ଶିଳା ଘେନି ॥ ୪୨
ତୀକ୍ଷ୍ଣ ନାରାଚ ପ୍ରହାରେ ରଘୁକୁଳନାଥ ।
ତକ୍ଷଣେ ଛେଦିଲେ ରାକ୍ଷସୀର ଦୁଇହାତ ॥ ୪୩
ଦୁଇକର ସହୁଁ ଛେଦିଦେଲେ ରଘୁବର ।
ମହାରୋଷେ ତାଡ଼କା ଗର୍ଜିଲା ଅତି ଘୋର ॥ ୪୪
ଯକ୍ଷିଣୀର କୋପ ଦେଖି ସୁମିତ୍ରାକୁମର ।
ଏକାବାଣକେ ଛେଦିଲେ ନାସାକର୍ଣ୍ଣ ତା'ର ॥ ୪୫
କାମରୂପ ଧାରିଣୀ ସେ ପ୍ରଚଣ୍ଡ ଯକ୍ଷିଣୀ ।
ନାନାରୂପ ଧରି ମାୟା କଲା ମାୟାବିନୀ ॥ ୪୬
ଘୋର ମାୟାବଳେ ମୋହିବାକୁ ବେନଭାଇ ।
ଅନେକ ମାୟା ରଚିଲା ଭେଳକୀ ଲଗାଇ ॥ ୪୭
କ୍ଷଣକେ ଅଦୃଶ୍ୟ ହୋଇ ତାଡ଼କା ରାକ୍ଷସୀ ।
ଗଗନମାର୍ଗରୁ ବରଷିଲା ଶିଳାରାଶି ॥ ୪୮
ରାକ୍ଷସୀର ମାୟା ଦେଖି କୁଶିକ ନନ୍ଦନ ।
ଉଚ୍ଚେ ଡାକି ବୋଲନ୍ତି ହେ ଶ୍ରୀରାମ ଲକ୍ଷ୍ମଣ ! ॥ ୪୯
ପାପାଚାରିଣୀ ଦୁଷ୍ଟାକୁ ବିନାଶ ଏକ୍ଷଣି ।
ନୋହିଲେ ତା' ମାୟାଜାଲ ବିସ୍ତାରିବ ପୁଣି ॥ ୫୦
ଦୟା ମାୟା ତେଜ ବେଗେ ଅସୁରୁଣୀ ନାଶ ।
ନୋହିଲେ କ୍ଷଣକେ ବିସ୍ତାରିବ ମାୟାପାଶ ॥ ୫୧
ଏ' ଦୁରାଚାରିଣୀ ଦୁଷ୍ଟା ପତିତା ରାକ୍ଷସୀ ।
ଉନ୍ମତ୍ତ ହୋଇଛି ବହୁ ଋଷି-ଯଜ୍ଞ ନାଶି ॥ ୫୨
ସନ୍ଧ୍ୟାକାଳ ଆସି ଏବେ ହେବ ପରବେଶ ।
ମନୁ ଦୟା ତେଜ ବେଗେ ରାକ୍ଷସୀ ବିନାଶ ॥ ୫୩
ସନ୍ଧ୍ୟାକାଳେ ରାକ୍ଷସୀଏ ହୁଅନ୍ତି ପ୍ରବଳ ।
ତେଣୁ ଦିନକର ଥାଉଁ ନାଶ ଶତ୍ରୁବଳ ॥ ୫୪

ଶୁଣି ଏସନ ବଚନ ବିଶ୍ବାମିତ୍ରଙ୍କର ।
ଶବ୍ଦଭେଦୀ ନାରାଚ ପେଷିଲେ ରଘୁବର ॥ ୫୫
ଶରଜାଳେ ଆଚ୍ଛାଦିଣ ଅସୁରୀ ଶରୀର ।
ଅବରୁଦ୍ଧ କଲେ ଦଶଦିଗୁଁ ମହାବୀର ॥ ୫୬
ନାରାଚ ସମୂହେ ତଡ଼ପାଣ୍ଡୁ ରୁଦ୍ଧ ହୋଇ ।
ମଣିହର ଫଣୀ ପରି ଯକ୍ଷଣୀ ଗର୍ଜଇ ॥ ୫୭
ଉପାୟ ନ ଦେଖି ଆନ ତାଡ଼କା ତକ୍ଷଣେ ।
ଆକ୍ରମିବାକୁ କଳ୍ପିଲ ଶ୍ରୀରାମ ଲକ୍ଷ୍ମଣେ ॥ ୫୮
ଆକାଶମାର୍ଗୁ ପାପିନୀ ପଡ଼ିଲକ ଡେଇଁ ।
ଶ୍ରୀରାମ ଲକ୍ଷ୍ମଣେ ବୃଷ୍ଟି ପଶିଲ ଝସାଇ ॥ ୫୯
ଇନ୍ଦ୍ରାୟୁଧ ବଜ୍ର ପରି ବେଗେ ସୁନ୍ଦନାରୀ ।
ବେନି ରାଜପୁତ୍ର ପାଶେ ଧାଇଁଲ ଅସୁରୀ ॥ ୬୦
ଏହା ଦେଖିଣ ଶ୍ରୀରାମ ହୋଇ କୋପଭର ।
ଶୀଘ୍ର ରୁ ସୁମର ବନ୍ଧିଲେକ ତୀକ୍ଷ୍ଣଶର ॥ ୬୧
ବଜ୍ରସମ ଶରଘାତେ ସୁକେତୁ ଦୁଲଣୀ ।
କାଟିଲ ବୃକ୍ଷ ପରାୟେ ଲୋଟିଲ ଧରଣୀ ॥ ୬୨
ମୂର୍ଦ୍ଧନା ଫାଟି ଅସୁରୀ ଜୀବ ଗଲ ଛୁଡ଼ି ।
ଶବଦେ କମ୍ପାଇ ଧରା ଯେସନ୍ତେ ଘଡ଼ଘଡ଼ି ॥ ୬୩
ରାକ୍ଷସୀ ନିଧନ ଦେଖି ସ୍ବର୍ଗେ ସୁରବରେ ।
ଜୟ ଜୟ ଶବଦେ ପ୍ରଶଂସି ରଘୁବୀରେ ॥ ୬୪
ବୋଇଲେ ଗାଧିନନ୍ଦନେ ଦେବ ସୁନାସୀର ।
ଦଶଦିଗପାଳ ଆଦି ଦେବଗଣ ସଙ୍ଗର ॥ ୬୫
ଆହେ ମୁନିବର ! ହେଉ ତବ ସୁକଲ୍ୟାଣ ।
ତୁମ୍ଭ ପ୍ରସାଦରୁ ଗଲ ରାକ୍ଷସୀର ପ୍ରାଣ ॥ ୬୬
ଦେବତାଙ୍କ ଆନନ୍ଦ ବର୍ଦ୍ଧନ କଲ ଯେଣୁ ।
ଅକ୍ଷୟ କୀରତି ଲଭ ମୁନିବର ! ତେଣୁ ॥ ୬୭
ତବ ସ୍ନେହ ଅଧିକାରୀ ଅଟନ୍ତି ଶ୍ରୀରାମ ।
ଆବର ଅଟନ୍ତି ସଉମିତ୍ରି ପ୍ରାଣ ସମ ॥ ୬୮

ବେନି କୁମାରଙ୍କୁ ମୁନି ! ଦିଅ ଶୁଭାଶିଷ ।
ତୁମ୍ଭ ସୁକଲ୍ୟାଣୁ ତାଙ୍କ ବ୍ୟାପିବ ସୁଯଶ ॥ ୬୯
ତପୋବଳେ ସୁବିଖ୍ୟାତ କୃଶାଶ୍ୱ ନନ୍ଦନେ ।
ଅସ୍ତ୍ରରୂପୀ କୁମାରଙ୍କୁ ସମର୍ପ ଶ୍ରୀରାମେ ॥ ୭୦
ଶ୍ରୀରାମଙ୍କୁ ସମର୍ପଣ କଲେ ଅସ୍ତ୍ରଶସ୍ତ୍ର ।
ମହାବଳୀ ରକ୍ଷଗଣେ ହୋଇବେ ତ୍ରସ୍ତ ॥ ୭୧
ଶ୍ରୀରାମ ଲକ୍ଷ୍ମଣ ବେନି ଯୋଗ୍ୟ ପାତ୍ର ଜାଣି ।
ସକଳ ବିଦ୍ୟାସ୍ତ୍ର ଶିଖାଅ ମୁନିମଣି ! ॥ ୭୨
ସହଜେ ଅଟନ୍ତି ତୁମ୍ଭ ଶିଷ୍ୟ ବେନିଜନ ।
ସଦା ପାଦେ ଖଟୁଥା'ନ୍ତି ଦେଇ ମନପ୍ରାଣ ॥ ୭୩
ଏମନ୍ତ ସୁଯୋଗ୍ୟ ଶିଷ୍ୟେ ଦିଅ ବିଦ୍ୟାଦାନ ।
ସାଧିବେ ଦେବଙ୍କ ହିତ ବିଦ୍ୟାସ୍ତ୍ର ଲଭିଣ ॥ ୭୪
ଜାଣ ତୁମ୍ଭେ ମହାମୁନି ! ଶ୍ରୀରାମଙ୍କ ଗୁଣ ।
ରଖିବେ ଅମରଗଣେ ସଙ୍କଟୁ ତାରଣ ॥ ୭୫
ଆହେ ବିଶ୍ୱାମିତ୍ର ! ଆଉ ବିଳମ୍ବ ନ କର ।
ରଘୁନରେ ମଣ୍ଡି ଦିଅ ବିଦ୍ୟାସ୍ତ୍ର ସକଳ ॥ ୭୬
ଏତେ ବୋଲିଣ ବିନୟେ ଦେବ ବଜ୍ରଧର ।
ଅମର ଗହଣେ ଚଳିଗଲେ ସ୍ୱର୍ଗପୁର ॥ ୭୭
ହରଷେ ବିଶ୍ୱାମିତ୍ରଙ୍କୁ ପ୍ରଣମି ସକଳ ।
ଜୟ ଶବଦେ କମ୍ପାଇ ଦେଲେ ସ୍ୱର୍ଗପୁର ॥ ୭୮
ଏଥିଅନ୍ତେ ପ୍ରିୟାକାନ୍ତ ଭୁବନଭାସ୍କର ।
ପ୍ରବେଶିଲେ ଅସ୍ତାଚଳେ ଜାଣି ସନ୍ଧ୍ୟାକାଳ ॥ ୭୯
ତାଡ଼କା ବଧରେ ମୁନି ହୋଇ ହରଷିତ ।
ଶିର ଆଘ୍ରାଣି ରାମଙ୍କୁ ବୋଲନ୍ତି ଉଦନ୍ତ ॥ ୮୦
ଆହେ ରାମ ରାଜୀବଲୋଚନ ରୂପଧାରୀ !
ଆଜ ଏ' ବନରେ ଆମ୍ଭେ ଯାପିବା ଶର୍ବରୀ ॥ ୮୧
କାଲି ପ୍ରଭାତରୁ ଉଠି ସାରି ନିତ୍ୟକର୍ମେ ।
ମନସୁଖେ ବନପଥେ ଚଳିବା ଆଶ୍ରମେ ॥ ୮୨

ଶୁଣି ମୁନିଙ୍କ ବଚନ ଦଶରଥ ସୁତ ।
ପୁଣ ପୁଣ ମୁନିପାଦେ ହୋଇ ପ୍ରଣମିତ ॥ ୮୩
ତାଡ଼କାବନେ ସାନନ୍ଦେ ଯାପିଲେ ରଜନୀ ।
ଅତି ସ୍ନେହବଶେ ଭାଇ ଲକ୍ଷ୍ମଣଙ୍କୁ ଘେନି ॥ ୮୪
ଶାପମୁକ୍ତ ହୋଇ ଜନପଦ ସେହିକ୍ଷଣ ।
ରମଣୀୟ ଶୋଭାରେ ମୋହିଲା ଜନମନ ॥ ୮୫
ଚୈତ୍ରରଥବନ ପରି ଅତି ମନୋରମ ।
ଶ୍ରୀରାମ ପ୍ରସାଦୁ ଯେହ୍ନେ ଶୋଭିଲା ନନ୍ଦନ ॥ ୮୬
ରମଣୀୟ ଛଟାରେ ମୋହିଲା ତ୍ରିଭୁବନ ।
ମୁଗ୍ଧହେଲେ ସିଦ୍ଧ ବିଦ୍ୟାଧର ଦେବଗଣ ॥ ୮୭
ଯକ୍ଷକନ୍ୟା ତାଟକା ବିନାଶେ ରଘୁନାଥ ।
ତ୍ରୈଲୋକ୍ୟ ମଧ୍ୟେ ପ୍ରଶଂସା ଲଭିଲେ ବହୁତ ॥ ୮୮
ଲକ୍ଷ୍ମଣ ବିଶ୍ବାମିତ୍ରଙ୍କ ସଙ୍ଗତେ ରାଘବ ।
ଯାପିଲେ ରଜନୀ ମନେ ଚିନ୍ତି ଭୁବିଧବ ॥ ୮୯
ଆହେ ରାମ ! ଜଗତ ମୋହନ ତାଡ଼କାରି !
ପୁରୁଷୋତ୍ତମ କାମନା ଦିଅ ପୂର୍ଣ୍ଣ କରି ॥ ୯୦

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଷଡ଼୍ବିଂଶ ସର୍ଗ ।



# ସପ୍ତବିଂଶ ସର୍ଗ

## ଶ୍ରୀରାମଙ୍କ ଦ୍ୱାରା ସକଳ ଦିବ୍ୟାସ୍ତ୍ର ଲାଭ
## ତଥା
## ମନୋଜ୍ଞ ବନ ବିଷୟରେ ପ୍ରଶ୍ନ ।

ତାଡ଼କାବନେ ସେ ରଜନୀ ଯାପି ବିଶ୍ୱାମିତ୍ର ।
ବିହସି ମଧୁରସ୍ୱରେ ବୋଲନ୍ତି ଉଦାନ୍ତ ॥ ୧
ଅହେ ରାମ ! ତାଡ଼କାରି ଯଶସ୍ୱୀ କୁମାର !
ତୁମ୍ଭ ସୁଗୁଣ ସାହସ ମନମୁଗ୍ଧକର ॥ ୨
ତୁମ୍ଭ ଯୋଗୁଁ ମୁନିଗଣ ହୋଇଲେ ଆଶ୍ୱସ୍ତ ।
ଯଜ୍ଞ ସାଧିବେ ଅରଣ୍ୟେ ହୋଇ ହରଷିତ ॥ ୩
ସେ କାରଣୁ ମନ ମୋର ଆନନ୍ଦେ ଉତ୍‌ଫୁଲ୍ଲ ।
ସମର୍ପିବି ତୁମ୍ଭଙ୍କୁ ମୁଁ ଦିବ୍ୟାସ୍ତ୍ର ସକଳ ॥ ୪
ଏ' ବିଦ୍ୟା ପ୍ରସାଦେ ତୁମ୍ଭେ ହେବ ବଳୀୟାନ ।
ଦେବତା ଗନ୍ଧର୍ବ ଦୈତ୍ୟେ ହୋଇବେ ଅଧୀନ ॥ ୫
ଯେତେ ବଡ଼ ବୀର ହେଲେ ନୁଆଁଇବ ମଥା
ହେବ ସକଳ ଶସ୍ତ୍ରରେ ତୁମ୍ଭେ ସାମରଥା ॥ ୬
ରଣକ୍ଷେତ୍ରେ ସଦା ତୁମ୍ଭ କୀରତି କେତନ ।
ଉଡ଼ିବ ହେ ରଘୁନାଥ ! କରେ ସୁକଲ୍ୟାଣ ॥ ୭
ହେ ଶ୍ରୀରାମ ! ରଘୁବଂଶ କୀର୍ତ୍ତିକଳାକର !
ଦେଉଛି ମୁଁ ଯେଉଁ ଅସ୍ତ୍ରଶସ୍ତ୍ର ହେତୁ କର ॥ ୮
ଦଣ୍ଡଚକ୍ର ଧର୍ମଚକ୍ର କାଳଚକ୍ର ବୀର !
ଭୟଙ୍କର ବିଷ୍ଣୁଚକ୍ର ଇନ୍ଦ୍ରଚକ୍ର ଆର ॥ ୯
ଇନ୍ଦ୍ରଙ୍କ ବଜ୍ରାସ୍ତ୍ର ପୁଣ ଶିବଙ୍କ ତ୍ରିଶୂଳ ।
ଆବର ଅଟଇ ଅସ୍ତ୍ର ନାମ ବ୍ରହ୍ମଶିର ॥ ୧୦
ଐଷିକାସ୍ତ୍ର ସଙ୍ଗତେ ରାଘବ ! ବ୍ରହ୍ମଅସ୍ତ୍ର ।
ପ୍ରଦାନ କରେ ତୁମ୍ଭଙ୍କୁ ହୋଇ ମୁକ୍ତହସ୍ତ ॥ ୧୧

ଆବର ଅଛଇ ଦୁଇଗଦା ରଘୁବର !
ମୋଦକୀ ଶିଖରୀ ନାମ ଅଟଇ ତାଙ୍କର ॥ ୧୨
ହେ ପୁରୁଷବର ! ଅଛୁ ତିନଗୋଟି ପାଶ ।
ପ୍ରଥମରେ ଧର୍ମପାଶ ଦୁଜେ କାଳପାଶ ॥ ୧୩
ତୃତୀୟ ପାଶର ନାମ ବରୁଣ ଅଟଇ ।
ଦେଉଅଛି ବଧାନେ ରାମ ! ନଅ ତୋଷବନ୍ତ ॥ ୧୪
ଦ୍ୱିବିଧ ଅଶନି ତୁମ୍ଭେ ଘେନ ରଘୁନାଥ !
ଶୁଷ୍କ-ଆର୍ଦ୍ର ଗୁଣେ ଯାହା ଜଗତେ ବିଦିତ ॥ ୧୫
ଆବର ଅଛୁ ପିନାକ-ନାରାୟଣ ଶର ।
ଶ୍ରୀରାମନେ ରଘୁନାଥ ! ଘେନ ଏହୁ ବର ॥ ୧୬
ଅଗ୍ନିଙ୍କର ପ୍ରିୟତମ ନାମ ଆଗ୍ନେୟାସ୍ତ୍ର ।
ଆବର ଅଛଇ ଏକଶର ଶିଖରାସ୍ତ୍ର ॥ ୧୭
ସକଳ ଅସ୍ତ୍ରରେ ବାୟବ୍ୟାସ୍ତ୍ର ଯେ ପ୍ରଧାନ ।
ତୁମ୍ଭ ଅଙ୍ଗମତେ ଏହୁ ହୋଇବ ଚଳନ ॥ ୧୮
ଏ' ଅସ୍ତ୍ର ସୃଚତ୍ରେ ଘେନ ଆହେ ରଘୁରାଣ !
ନର୍ମଳ ମାନସେ ସର୍ବ କରୁଛୁ ପ୍ରଦାନ ॥ ୧୯
ଉପନକୁଳଭୂଷଣ ! ଘେନ ଏହୁ ଶକ୍ତି ।
ହୟଶିର କ୍ରୌଞ୍ଚ ନାମେ ଅଛୁ ଯା'ର ଖ୍ୟାତି ॥ ୨୦
ରାକ୍ଷସ ନିଧନେ ଏହା ହେବ ସହାୟକ ।
ସେ ସକଳ ଅସ୍ତ୍ର ଘେନ ହେ ରଘୁନାୟକ ॥ ୨୧
କଙ୍କିଣୀ ନାମରେ ଖ୍ୟାତ ଏକ ଅସ୍ତ୍ରବର ।
ଦ୍ୱିତୀୟ ଅଦ୍ଭୁତ ଅସ୍ତ୍ର ନାମ ତା' କଙ୍କାଳ ॥ ୨୨
ତୃତୀୟ ଅସ୍ତ୍ରର ନାମ ଅଟଇ କପାଳ ।
ଚତୁର୍ଥ ସୁଖ୍ୟାତ ଅଟେ ନାମ ତା'ର ଘୋର ॥ ୨୩
ମୁଷଳ ନାମେ ପଞ୍ଚମ ଅସ୍ତ୍ର ବିଦ୍ୟମାନ ।
ଅନାୟାସେ କରିବ ସେ ରାକ୍ଷସେ ନିଧନ ॥ ୨୪
ବିଦ୍ୟାଧରଗଣେ ଯାହା ସତତ ଆଦୃତ ।
ନନ୍ଦନ ନାମ ଯାହାର ଜଗତେ ବିଦିତ ॥ ୨୫

ସେ ଖଡ୍‌ଗ ଦେଉ ହେ ରଘୁମଣି ! ହରଷରେ ।
ସୁଯୋଗ୍ୟ ସୁପାତ୍ରେ ଯାହା ଦଏ ମୁଁ ଆଦରେ ॥ ୨୬
ଗନ୍ଧର୍ବଗଣେ ଆଦୃତ ଏହୁ ବ୍ରୂଣଶର ।
ସମ୍ମୋହନ ପ୍ରସ୍ୱାପନ ପ୍ରଶମନ ଵର ॥ ୨୭
ଚତୁର୍ଥ ଶରର ନାମ ଅଟଇ ଯେ ସୌମ୍ୟ ।
ଏ' ଅସ୍ତ୍ର ଲଭିଲେ ତୁମ୍ଭେ ହେବ ପୂର୍ଣ୍ଣକାମ ॥ ୨୮
ଯଶସ୍ୱୀ ପୁରୁଷବର ! ହେ ନୃପ ନନ୍ଦନ !
ବର୍ଷଣ ଶୋଷଣ ସନ୍ତାପନ ବିଳାପନ ॥ ୨୯
ମାନବାସ୍ତ୍ର ମୋହନାସ୍ତ୍ର ଅସ୍ତ୍ର ଯେ ମାଦନ ।
କାମଦେବ-ଗନ୍ଧର୍ବେ ଯା' ପ୍ରୟୋଗେ ନିପୁଣ ॥ ୩୦
ଏହୁ ସପ୍ତ ଅସ୍ତ୍ର ଦେଇ ନିର୍ମଳ ମାନସେ ।
ଏ' ଅସ୍ତ୍ର ପ୍ରଭାବେ ନାଶ ହୋଇବେ ରାକ୍ଷସେ ॥ ୩୧
ହେ ଅଯୋଧ୍ୟା-ନରେଶ-ନନ୍ଦନ ରଘୁବର !
ଆବର ଅଛଇ ଯେତେ ଯେତେ ଗୁପ୍ତଶର ॥ ୩୨
ସେ ସକଳ ଦେଉ ଆହେ ଲକ୍ଷ୍ମଣ ଅଗ୍ରଜ !
ଯେ ଅସ୍ତ୍ର ପ୍ରଭାବେ ନାଶ ହେବ ଦୈତ୍ୟ ତେଜ ॥ ୩୩
ଗୋଟି ଗୋଟି ଶିଖାଇ କହୁଛୁ ରଘୁନାଥ !
ମାୟାମୟ ମହାବଳୀ ତାମସ ଯେ ସତ୍ୟ ॥ ୩୪
ପଞ୍ଚମ ଅସ୍ତ୍ରର ନାମ ଅଟଇ ସୌମନ ।
ଷଷ୍ଠରେ ମୌଷଳ ଆଉ ସମ୍ବର୍ତ୍ତ ସପ୍ତମ ॥ ୩୫
ଅଦ୍‌ଭୁତ ଅସ୍ତ୍ରେକ ଅଛି ନାମ ତେଜପ୍ରଭ ।
ଯା' ପ୍ରୟୋଗ ଜାଣନ୍ତି କେବଳ ସୂର୍ଯ୍ୟଦେବ ॥ ୩୬
ସେ ସକଳ ଅସ୍ତ୍ରଶସ୍ତ୍ର କରୁଛୁ ପ୍ରଦାନ ।
ଶତ୍ରୁର ମାନ ମର୍ଦ୍ଦନେ ଯେହ୍ନେ ପୂର୍ଣ୍ଣକାମ ॥ ୩୭
ସୋମ ଦେବତାଙ୍କ ଶସ୍ତ୍ର ନାମ ଯେ ଶିଶିର ।
ଦାରୁଣ ନାମକ ଶସ୍ତ୍ର ବିଶ୍ୱକର୍ମାଙ୍କର ॥ ୩୮
ଭଗ ଦେବତାଙ୍କ ଶସ୍ତ୍ର ନାମ ଭୟଙ୍କର ।
ଶୀତେଷୁ ନାମରେ ଶସ୍ତ୍ର ଅଟେ ମନୁଙ୍କର ॥ ୩୯
ଏ' ସକଳ ଅସ୍ତ୍ରଶସ୍ତ୍ର ଦେଉ ହେ ଶ୍ରୀରାମ !
କାମରୂପୀ ଅସ୍ତ୍ରଗଣ ଦ୍ୟନ୍ତୁ ପୂର୍ଣ୍ଣକାମ ॥ ୪୦

ପରମ ଉଦାରଗୁଣେ ସର୍ବେ ସମନ୍ୱିତ ।
ଯୋଗ୍ୟପାତ୍ରେ ସଦାକାଳେ ହୋ'ନ୍ତୁ ବଶୀଭୂତ ।। ୪୧
ଏତେ ବୋଲି ତପସ୍ୱୀପ୍ରବର ବିଶ୍ୱାମିତ୍ର ।
ପୂର୍ବମୁଖ ହୋଇ ଉଚ୍ଚାରିଲେ ବେଦମନ୍ତ୍ର ।। ୪୨
ସମସ୍ତ ପ୍ରକ୍ରିୟା ଶେଷେ ମହାମୁନିବରେ ।
ଜଳ ହସ୍ତେ ଘେନ ଦେଲେ ଶ୍ରୀରାମ ହସ୍ତରେ ।। ୪୩
ରାଘବଙ୍କୁ ଦେଲେ ଉପଦେଶ ଅସ୍ତ୍ରମନ୍ତ୍ରେ ।
ରଘୁନାଥ ଘେନିଲେ ସକଳ ଶୁଦ୍ଧଚିତ୍ତେ ।। ୪୪
ଦେବଙ୍କୁ ଦୁର୍ଲ୍ଲଭ ଯେଉଁ ଅସ୍ତ୍ର ସଂଗ୍ରହଣ ।
ବିଶ୍ୱାମିତ୍ର ସେ ସକଳ କଲେକ ପ୍ରଦାନ ।। ୪୫
ଜପ ଆରମ୍ଭ କରନ୍ତେ ସର୍ବ ଶସ୍ତ୍ରଗଣେ ।
ସଶରୀରେ ଉଭା ହେଲେ ଶ୍ରୀରାମ ଚରଣେ ।। ୪୬
କରଯୋଡ଼ି ବିନୟରେ ବୋଲନ୍ତି ବଚନ ।
ଆହେ ବୀର ଚୂଡ଼ାମଣି ! ହେଉ ତୋ' କଲ୍ୟାଣ ।। ୪୭
ସେବକ ଆମ୍ଭେ ତୁମ୍ଭର ହେ ବୀରପୁଙ୍ଗବ !
କିଙ୍କର ପରାୟେ ସେବିବୁଁ ହେ ରଘୁଧବ ! ।। ୪୮
କି ସେବା କରିବୁଁ ଶୀଘ୍ର କର ହେ ବିଧାନ ।
ଶ୍ରୀରାମ ହରଷ ହେଲେ ଶୁଣି ସେ ବଚନ ।। ୪୯
ପରମ ପ୍ରଭାବବନ୍ତ ସର୍ବ ଅସ୍ତ୍ରଶସ୍ତ୍ର ।
ଗ୍ରହଣ କଲେ ଶ୍ରୀରାମ ବଢ଼ାଇଣ ହସ୍ତ ।। ୫୦
ବୋଇଲେ ବିନୟେ ରାମ ରାଜୀବଲୋଚନ ।
ମୋ' ମନେ ନିବାସ କର ହେ ଦିବ୍ୟାସ୍ତ୍ରଗଣ ! ।। ୫୧
ତଦନ୍ତେ ମୁନିଙ୍କ ପଦେ ପ୍ରଣମି ଶ୍ରୀରାମ ।
ଯାତ୍ରା ଆରମ୍ଭିଲେ ଲକ୍ଷ୍ୟସ୍ଥଳେ ତିନିଜଣ ।। ୫୨
ହେ କାଣ୍ଡ-କୋଦଣ୍ଡଧର ରଘୁବଂଶନାଥ !
ପୁରୁଷୋତ୍ତମ ଚିନ୍ତଇ ପୂରୁ ମନୋରଥ ।। ୫୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତବିଂଶ ସର୍ଗ ।



# ଅଷ୍ଟବିଂଶ ସର୍ଗ

## ଅସ୍ତ୍ରସଂହାର ବିଧି ସମ୍ପର୍କରେ ଶ୍ରୀରାମଙ୍କୁ ବିଶ୍ୱାମିତ୍ରଙ୍କ ଉପଦେଶ ତଥା ନୂତନ ଅସ୍ତ୍ର ପ୍ରଦାନ ।

ମହା ଓଜଶୀଳ ଅସ୍ତ୍ରମାନ ଲଭି ରାମ ।
ପରମ ଆନନ୍ଦେ ହେଲେ ଉଲ୍ଲସିତ ମନ ॥ ୧
ଶ୍ରୀମୁଖ ପଙ୍କଜ ତାଙ୍କ ହେଲା ବିକଶିତ ।
ମନେ ମନେ ପ୍ରମୁଦିତ ହେଲେ ରଘୁନାଥ ॥ ୨
ମାର୍ଗ ଗମନ କାଳରେ ହୋଇଣ ଉତ୍ସୁକ ।
ପଚାରିଲେ ମୁନିଙ୍କି ଶ୍ରୀରାମୁକୁଳତିଳକ ॥ ୩
ଆହେ ଗୁରୁଦେବ ! ତବ କୃପାରୁ କରୁଣ ।
ଲଭିଲି ଦେବ ଦୁର୍ଲ୍ଲଭ ଦିବ୍ୟ ଅସ୍ତ୍ରମାନ । ୪
ଏହା ପ୍ରସାଦରୁ ମୁହିଁ ଆହେ ମୁନିବର !
ହୋଇଲି ଦୁର୍ଜୟ ଦେବକୁଳେ ହୋଇ ନର । ୫
ଏହାର ସଂହାର ବିଧି ଜାଣ ଏବେ କହ ।
ସଂହାର ବିଧି ବିହୀନେ ଏ' ଅସ୍ତ୍ର ନ ବହ ॥ ୬
ଶୁଣି ଏ' ବଚନ ତପୀବର ବିଶ୍ୱାମିତ୍ର ।
ବୋଇଲେ ସଂହାର ବିଧି ଶୁଣହ ବତ୍ସ ॥ ୭
ଏହା ଭଣି ମୁନିବର କାକୁତ୍ସ୍ଥ ଶ୍ରୀରାମେ ।
ବ୍ରତବନ୍ତ ଧୈର୍ଯ୍ୟଶୀଳ ସର୍ବଗୁଣ କ୍ଷମେ ॥ ୮
ଅସ୍ତ୍ରର ପ୍ରୟୋଗ ପୁଣ ସଂହାର କୌଶଳ ।
ଅତି ସସ୍ନେହେ ଶିଖାଇଲେ କୁଶିକ କୁମର ॥ ୯
ତହୁଁ ଶ୍ରୀରଘୁନନ୍ଦନେ କରୁଣ କଲ୍ୟାଣ ।
ବୋଇଲେ ତପସ୍ୱୀବର ଶୁଣ ରଘୁରାଣ ! ॥ ୧୦
ଯୋଗ୍ୟପାତ୍ରେ ଅରପିଲି ଅସ୍ତ୍ର ବିଦ୍ୟାମାନ ।
ଶୁଣ ଧୀର ତତ୍ତ୍ୱେ ସେମାନଙ୍କ ନାମ ଗୁଣ ॥ ୧୧

ସତ୍ୟବାନ ସତ୍ୟକୀର୍ତ୍ତି ଧୃଷ୍ଟ ଯେ ରଭସ ।
ପ୍ରତିହାରତର ଲକ୍ଷ୍ୟ ପିତ୍ର୍ୟ ସୌମନସ ॥ ୧୨
ପ୍ରାଙ୍ମୁଖ ଯେ ଅବାଙ୍ମୁଖ ଅଲକ୍ଷ୍ୟ ସୁନାଭ ।
ଦଶଶୀର୍ଷ ଶତୋଦର ଆଉ ଦୃଢ଼ନାଭ ॥ ୧୩
ଦଶାକ୍ଷ ଯେ ଶତବକ୍ତ୍ର ଜ୍ୟୋତିଷ ଶକୁନ ।
ଧୃତମାଳୀ ସାର୍ଚ୍ଚିମାଳୀ ପରଖାର ଧନ ॥ ୧୪
ଦଇତ୍ୟ ନାଶକ ଯୌଗନ୍ଧର ଯେ ବିମଳ ।
ପନ୍ଥାନ ବରୁଣ ମୋହ ମକର ଆବର ॥ ୧୫
ବିଧୂତ ପରଖାର ଯେ ଧାନ୍ୟ ଶୁଚିବାହୁ ।
କାମରୂପ କାମରୁଚି ଇତି ମହାବାହୁ ॥ ୧୬
ସର୍ପନାଥ ଜୃମ୍ଭକ ଯେ ଆବର ବରୁଣ ।
ଯୌଗନ୍ଧର ଶତବକ୍ତ୍ର ଅସ୍ତ୍ର ଆବରଣ ॥ ୧୭
ନିଷ୍କଳୀ ବିରୁଚ ଆଦି ଦିବ୍ୟ ଅସ୍ତ୍ରମାନ ।
ଆବର ଅଟଇ ମହାଶସ୍ତ୍ର ଯେ ପନ୍ଥାନ ॥ ୧୮
ଏ’ ଅସ୍ତ୍ରଶସ୍ତ୍ର ସକଳ କାମରୂପୀ ହୋଇ ।
ଶିକ୍ଷାକାଙ୍କ୍ଷାର ବଇରୀ ସମୂଳେ ନାଶଇ ॥ ୧୯
ପ୍ରଜାପତି କୃଶାଶ୍ୱଙ୍କ ଅଟନ୍ତି ନନ୍ଦନ ।
ତେଜସ୍ୱୀ ମହାଶକ୍ତିରେ ଯେତୁ ସୁନିପୁଣ ॥ ୨୦
ଏ’ ସକଳ ଅସ୍ତ୍ର ଶିକ୍ଷା ଦେଲି ରଘୁନାଥ !
ତୁମ୍ଭେ ହୋଣୁ ଅଟ ସର୍ବ କର୍ମରେ ସମର୍ଥ ॥ ୨୧
ଏ’ ଅସ୍ତ୍ରଶସ୍ତ୍ର ସଂଯୋଗେ ଆହେ ଧନୁର୍ଦ୍ଧର !
ଜିଣିବ ପନ୍ନଗ ଦେବ ଗନ୍ଧର୍ବ ଅସୁର ॥ ୨୨
ହେନାକର ଚୂଡ଼ାମଣି ! ହୋଇ ଶୁଚିବନ୍ତ ।
ସଉମିତ୍ର ସହିତରେ ହେବ କୃତକୃତ୍ୟ ॥ ୨୩
ଯଥା ଆଜ୍ଞା ତବ ଆହେ ସୁପୂଣ୍ୟ ପ୍ରବର !
ହେନା କଲି ଶିକ୍ଷା ମନେ ସଂଶୟ ନ କର ॥ ୨୪
ଏସନ ଭାଷିଣ ରାମ ଲକ୍ଷ୍ମଣ ଅଗ୍ରଜ ।
ହେନଲେ ସେ ଅସ୍ତ୍ରଶସ୍ତ୍ର ବହ୍ନି ଦିବ୍ୟ ତେଜ ॥ ୨୫

ପ୍ରଖର ତେଜ ମଣ୍ଡିତ ଅସ୍ତ୍ରଶସ୍ତ୍ରଗଣ ।
ମୁନି ଆଜ୍ଞାରେ ବନ୍ଦିଲେ ଶ୍ରୀରାମ ଚରଣ ॥ ୨୬
ମୂର୍ତ୍ତିମନ୍ତ ଦିବ୍ୟ ଅସ୍ତ୍ର ପ୍ରଚଣ୍ଡ ତେଜରେ ।
ମୋହିଲେ ଜଗତଯାକ ଶ୍ରୀରାମ ପୟରେ ॥ ୨୭
ଜଗତ ସୁଖଦାୟକ ଅତ୍ୟନ୍ତ ଯେ ପୁଣ ।
ମହାତେଜେ ବିରାଜିଲେ ଧରଣୀ-ଗଗନେ ॥ ୨୮
ଅଙ୍ଗାର ସଦୃଶ କେତୁ ଧୂମକାନ୍ତି କା'ର ।
ରବିଚନ୍ଦ୍ର ପରି କେହି ଦିଶନ୍ତି ଭାସ୍ୱର ॥ ୨୯
ସକଳ ଅସ୍ତ୍ର ବିନୟେ ଯୋଡ଼ି ବେନିକର ।
ଜଣା ହେଲେ ମୂର୍ତ୍ତିମନ୍ତେ ଶ୍ରୀରାମ ଛାମୁର ॥ ୩୦
ସର୍ବେ କୃତାଞ୍ଜଳିପୂର୍ବେ କଲେକ ଜଣାଣ ।
ଆହେ ପୁରୁଷ ଶାର୍ଦ୍ଦୂଳ ! ରାମ ରଘୁରାଣ ॥ ୩୧
ମୁନିଙ୍କ ଆଜ୍ଞାରୁ ଆମ୍ଭେ ହୋଇ ତବ ଦାସ ।
ରହିବୁଁ ସର୍ବଦା ପାଶେ ଯା'ଦେବ ଆଦେଶ ॥ ୩୨
ଆଜ୍ଞା ଅନୁସାରେ କାର୍ଯ୍ୟ ସାଧିବୁ ନିଶ୍ଚୟ ।
ଏ' କଥାରେ ତିଳେ ମିଥ୍ୟା ନାହିଁ ରଘୁରାୟ ॥ ୩୩
କୁହ କି କରିବୁ ସେବା ଆହେ ରୂପଧାରୀ !
ଆଜ୍ଞା ଦେଲେ ତିନିପୁର ଦେବୁ ଧ୍ୱଂସ କରି ॥ ୩୪
ତାହା ଶୁଣି ରଘୁନାଥ ପରମ ହରଷ ।
ହୋଇ ଘେନିଲେ ଦିବ୍ୟାସ୍ତ୍ର ଲଭି ପଉରୁଷ ॥ ୩୫
ତହୁଁ ରାଜୀବଲୋଚନ ବୋଇଲେ ଏ' ବାଣୀ ।
ଆହେ ଦିବ୍ୟ ଅସ୍ତ୍ରେ ! ତୁମ୍ଭେ ଯାଅ ଏବେକ୍ଷଣି ॥ ୩୬
ନିଜ ବାସେ ମନସୁଖେ କର ହେ ନିବାସ ।
ସ୍ମରଣ ମାତ୍ରକେ ବେଗେ ମିଳିବ ମୋ' ପାଶେ ॥ ୩୭
ବିପଦେ ସହାୟ ମୋତେ ହେବ ଅସ୍ତ୍ରଗଣ ।
ଏତିକି ମାଗୁଣି ମୋର ସୁଚିତ୍ତରେ ଘେନ ॥ ୩୮
ତହୁଁ ଅସ୍ତ୍ରଗଣ ରାମେ ପ୍ରଦକ୍ଷିଣ କରି ।
ମନ ସୁଖେ ଚଳିଗଲେ ଯେ ଯାହାର ପୁରୀ ॥ ୩୯

ଯେ ନିବାସୁଁ ଆସିଥିଲେ ଶ୍ରୀରାମଙ୍କ ପାଶ ।
ଚଳିଲେ ସେ ସ୍ଥାନେ ମନେ ଲଭି ପରିତୋଷ ॥ ୪୦
ସକଳ ଅସ୍ତ୍ରଶସ୍ତ୍ରରେ ହୋଇଣ ଦୀକ୍ଷିତ ।
ବୋଇଲେ ଶ୍ରୀରାମ ଧୀରେ ଆହେ ବିଶ୍ୱାମିତ୍ର ! ॥ ୪୧
ଆହେ ବ୍ରହ୍ମଜ୍ଞାନୀ ! ଘେନାକର ମୋ' ବଚନ ।
ଅଗ୍ରେ ପର୍ବତ ସମୀପେ ଦିଶୁଛି ଯେ ବନ ॥ ୪୨
ଶ୍ୟାମଳ ମେଦୁରଘଟା ପରାୟ ସୁନ୍ଦର ।
କେବଣ କାନନ ସେହୁ ଆହେ ଗୁରୁବର ! ॥ ୪୩
ଅତି ମନୋରମ ଘନଗୁଳ୍ମ ବିମଣ୍ଡିତ ।
ନାନା ଦ୍ରୁମ-ଲତାରେ ହୋଇଛି ସୁଶୋଭିତ ॥ ୪୪
ଜାଣିବାକୁ ମନେ ମୋର ଜାଗେ କୁତୂହଳ ।
ସଂଶୟ ଫେଡ଼ାଇ କୁହ ଅଟେ କେଉଁ ସ୍ଥଳ ॥ ୪୫
ମୃଗ ବରାହ ସହିତେ ନାନା ପଶୁଗଣ ।
ବିଚରି ଏ' ବନେ ତୃପ୍ତ କରନ୍ତି ନୟନ ॥ ୪୬
ନାନା ଜାତି ପକ୍ଷୀଗଣ କଳ କୂଜନରେ ।
ବୃକ୍ଷଲତା ପରେ ବିହରନ୍ତି ଆନନ୍ଦରେ ॥ ୪୭
ସେ ମଧୁର କଳ କୂଜନରେ ମୋର ଚିତ୍ତ ।
ଆହେ ମୁନିବର ! ହେଉଅଛି ଉଲ୍ଲୋଳିତ ॥ ୪୮
ମନେ ହୁଏ ଏହୁ ବନ ଅଟେ ଅନ୍ୟ ସ୍ଥାନ ।
ଦୁର୍ଗମ ତାଡ଼କାବନ ନୁହଇ ଏସନ ॥ ୪୯
ଏ' ବନ ମଧ୍ୟରେ ଅଛି ମୁନିଙ୍କ ଆଶ୍ରମ ।
ତେଣୁ ଶୀତ ବାତ ବହି ଆଣେ ଯଜ୍ଞଧୂମ ॥ ୫୦
କାହାର ଆଶ୍ରମ ଏହୁ କୁହ ମୁନିବର !
କିଏ ସେ ମହାତ୍ମା ଯୋଗ ସାଧନ୍ତି ଏଠାର ॥ ୫୧
କେଉଁ ଆଶ୍ରମେ ରହିଣ କରନ୍ତି ସାଧନ ।
ଯଜ୍ଞ କ୍ରିୟା କର୍ମେ ସଦା ହୋଇଣ ନିପୁଣ ॥ ୫୨
ତୁମ୍ଭ ଯଜ୍ଞଶାଳା ଏଠାରୁ କେତେଦୂର ।
ଉତ୍ପାତ କରନ୍ତି ଯହିଁ କ୍ରୂର ନିଶାଚର ॥ ୫୩

ଯେବଣ ଯଜ୍ଞ ରକ୍ଷଣେ ପିଅର ମୋହର ।
ପେଷିଛନ୍ତି ଏ' ବନକୁ ଆହେ ମୁନିବର ! ॥ ୫୪
ସକଳ ବୃତ୍ତାନ୍ତ ଶୁଣିବାକୁ ଇଚ୍ଛା ମୋର ।
ଆଦ୍ୟ ପ୍ରାନ୍ତ କର କୁହ ତପସ୍ୱୀଶେଖର ! ॥ ୫୫
ଏତେ କହି ରଘୁନାଥ ହୋଇଲେ ମଉନ ।
ସନ୍ତୋଷ ଲଭିଲେ ମୁନି ଶୁଣି ତାଙ୍କ ପ୍ରଶ୍ନ ॥ ୫୬
ବ୍ରହ୍ମମୁନି ବିଶ୍ୱାମିତ୍ର-ରଘୁବର ପାଦେ ।
ପ୍ରଣମି ପୁରୁଷୋତ୍ତମ ଭଣେ ମନ ମୋଦେ ॥ ୫୭

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଅଷ୍ଟବିଂଶ ସର୍ଗ ।



## ଊନତ୍ରିଂଶ ସର୍ଗ

### ସିଦ୍ଧାଶ୍ରମ ବର୍ଣ୍ଣନ ତଥା ଶ୍ରୀରାମ-ଲକ୍ଷ୍ମଣଙ୍କ ସିଦ୍ଧାଶ୍ରମ ପ୍ରବେଶ ।

ତେଜ ଓଜଶୀଳ ରଘୁନାଥଙ୍କ ବଚନ ।
ଶୁଣିଣ ବୋଲନ୍ତି ବିଶ୍ୱାମିତ୍ର ତପୋଧନ ॥ ୧
ଆହେ ମହାବାହୁ ରଘୁକୁଳ ନିଶାକର !
କହଇ ପୁରାଣ କଥା ଏହୁ ଆଶ୍ରମର ॥ ୨
ପୁରା କାଳେ ଦେବପୂଜ୍ୟ ପ୍ରଭୁ ଚକ୍ରଧର ।
ତପସ୍ୟା ଆଚରନ୍ତି ଏଥି କଲେ ଉପସ୍କର ॥ ୩
ଶତସହସ୍ର ଯୁଗ ବ୍ୟାପି ପ୍ରଭୁ ଭଗବାନ ।
ତପସ୍ୟା ସାଧନେ ଏଥି ନିମଜ୍ଜିଲେ ଜାଣ ॥ ୪
ବାମନାବତାର ପୂର୍ବ କାଳେ ବିଷ୍ଣୁନାଥ ।
ଏ' ଆଶ୍ରମ ବସାଇଲେ ଚିନ୍ତି ମନୋରଥ ॥ ୫

ତେଣୁ ଏ’ ଆଶ୍ରମ ଅଟେ ଅତି ପୁରାତନ ।
ସିଦ୍ଧାଶ୍ରମ ବୋଲି ନାମ ହୋଇଲା ବିଧାନ ॥ ୬
ପରମ ତପସ୍ୱୀ ସିଦ୍ଧି ଲଭିଲେକ ଯେଣୁ ।
ଏ’ ଆଶ୍ରମ ନାମ ରାମ ! ସିଦ୍ଧାଶ୍ରମ ତେଣୁ ॥ ୭
ବିଷ୍ଣୁଙ୍କ ତପସ୍ୟାକାଳେ ବିରୋଚନ ସୁତ ।
ବୈରୋଚନ ବଳି ନାମେ ହୋଇଲା ବିଖ୍ୟାତ ॥ ୮
ମହାବଳୀ ଦୈତ୍ୟ ଶିରୋମଣି କୋପଭରେ ।
ଇନ୍ଦ୍ରାଦି ଦେବତାଗଣେ ଜିଣିଲା ଗର୍ବରେ ॥ ୯
ମରୁତଗଣ ସହିତେ ଯେତେ ଦେବଗଣ ।
ବଳିର ସମରେ ସର୍ବେ ହେଲେ ହୀନବଳ ॥ ୧୦
ଦେବତାମାନଙ୍କୁ ଜିଣି ବିରୋଚନ ସୁତ ।
ସ୍ୱର୍ଗରାଜ୍ୟ ମହାଦର୍ପେ କଲା କରାୟତ୍ତ ॥ ୧୧
ମହାଯଜ୍ଞ ଆୟୋଜନ କଲା ସେ ଅସୁର ।
ତାହା ଜାଣି ମନେ ଚିନ୍ତାକରି ବୈଶ୍ୱାନର ॥ ୧୨
ବିଷ୍ଣୁଙ୍କ ତପୋବନରେ ପ୍ରବେଶିଲେ ଯାଇ ।
ସଙ୍ଗରେ ସକଳ ଦେବଗଣଙ୍କୁ ଘେନାଇ ॥ ୧୩
ଆଶ୍ରମେ ପ୍ରବେଶି ଦେବେ ବୋଇଲେ ବଚନ ।
ଆହେ ପ୍ରଭୋ ଜନାର୍ଦ୍ଦନ ! ଆର୍ତ୍ତ ଭଞ୍ଜନ ॥ ୧୪
ବିରୋଚନ ସୁତ ବଳି ମହା ଆଡ଼ମ୍ବରେ ।
କରିବାକୁ ମହାଯଜ୍ଞ ଆୟୋଜନ କରେ ॥ ୧୫
ଯଜ୍ଞରେ ସଫଳ ଯେବେ ହୋଇବ ଅସୁର ।
ଅରକ୍ଷ ହୋଇବୁଁ ଆମ୍ଭେ ଦେବତା ସକଳ ॥ ୧୬
ଯଜ୍ଞେ କୃତକାର୍ଯ୍ୟ ହେବା ପୂର୍ବରୁ ଦାନବ ।
ଯଥାଯୋଗ୍ୟ ପ୍ରତିକାର ସାଧିବାକୁ ହେବ ॥ ୧୭
ବଳି ସେ ଯଜ୍ଞେ ଯାଚକେ ଦିଏ ବହୁ ଦାନ ।
ଗୋ ଭୂମି ହିରଣ୍ୟ ଅନ୍ନ ବସ୍ତ୍ର ତୁଳାଦାନ ॥ ୧୮
ଅଥବା ଅତିଥି ଯାହା କରଇ ଯାଚନ ।
ବିଧିମତେ ସମର୍ପଇ ଅସୁର ରାଜନ ॥ ୧୯

ଯାହା ଯେ ମାଗଇ ବଳି କରେ ସମର୍ପଣ ।
ତେଣୁ ଅପୂର୍ବ ସୁଯୋଗ ଦେବ ନାରାୟଣ ! ॥ ୨୦
କପଟେ ବାମନ ରୂପ ଧରି ଯଜ୍ଞ ସ୍ଥଳେ ।
ପ୍ରବେଶ ହୁଅ ହେ ଦେବ ! ଯୋଗମାୟା ବଳେ ॥ ୨୧
ଦେବକୁଳ ଉପକାରେ ଘେନ ଅବତାର ।
ଏତିକି ବିନତି ଆମ୍ଭେ କରୁଁ ଚକ୍ରଧର ! ॥ ୨୨
ହେ ଶ୍ରୀରାମ ରଘୁକୁଳ ବିଭୂଷଣମଣି !
ଏ' ସମୟେ ପ୍ରବେଶିଲେ ବିଶ୍ୱପତି ମୁନି ॥ ୨୩
ହୁତାଶନ ସମ ତେଜଶାଳୀ ମୁନିବର ।
କଶ୍ୟପ ନାମରେ ଯେହ୍ନ ଖ୍ୟାତ ତ୍ରିଲୋକର ॥ ୨୪
ଅଦିତି ସଙ୍ଗତେ ମୁନି ମିଳିଲେ ସେଠାରେ ।
ସହସ୍ରେ ଦିବ୍ୟବରଷ ତପ ସାଧି ଘୋର ॥ ୨୫
ବରଦାୟକର ପ୍ରଭୁ ଦେବ ନାରାୟଣେ ।
ଆରମ୍ଭିଲେ ସ୍ତୁତି ଋଷି ବିନୟ ବଚନେ ॥ ୨୬
ଆହେ ତପେମୟ ଦେବ ତପସ୍ୱୀପ୍ରବର !
ତପୋରାଶି ଜ୍ଞାନମୟ ମହାତପୀବର ! ॥ ୨୭
ସହସ୍ର ଦିବ୍ୟବରଷ ତପୋବଳେ ଦେବ !
ସ୍ୱରୂପ ଦର୍ଶନେ ଆସିଅଛି ରମାଧବ ! ॥ ୨୮
ହେ ପୁରୁଷୋତ୍ତମ ପ୍ରଭୋ ଦେବ ଜଗନ୍ନାଥ !
ତବ ଦରଶନେ ପୂର୍ଣ୍ଣ ହୋଏ ମନୋରଥ ॥ ୨୯
ଆହେ ଜଗଦୀଶ ! ମୁହିଁ ଅଖିଳ ସଂସାରେ ।
ପ୍ରତ୍ୟକ୍ଷ କରଇ ଦେବ ! ଏ' ତବ ଶରୀରେ ॥ ୩୦
ଅନାଦି ପରମନାଥ ଦେବ ଚକ୍ରଧର !
ଦେଶ କାଳ ବସ୍ତୁ ପର ଇନ୍ଦ୍ରି ଅଗୋଚର ॥ ୩୧
'ଇଦମିତ୍ଥ' ରୂପେ କେ ତା' କରିବ ନିର୍ଣ୍ଣୟ ।
ହେ ଅନନ୍ତ ଗୁଣାଶ୍ରିତ ଅବ୍ୟକ୍ତ ଅବ୍ୟୟ ! ॥ ୩୨
ସେ ପ୍ରଭୁ ପାଦପଙ୍କଜେ ପଶୁଛି ଶରଣ ।
ଘେନା ହେଉ ମୋ' ବିନତି ଦେବ ନାରାୟଣ ! ॥ ୩୩

ପ୍ରଭୁଙ୍କ ଦର୍ଶନେ ଜନ୍ମଜନ୍ମାନ୍ତର ପାପ ।
ଦୂର ହୁଅନ୍ତେ ଶରୀରୁ ତହୁଁ ବିଶ୍ୱରୂପ ॥ ୩୪
ଅମୃତ ନୟନେ ଚାହିଁ ଦେବ ବିଶ୍ୱକ୍ସେନ ।
ସସ୍ନେହ ମଧୁରବାକ୍ୟେ ବୋଲନ୍ତି ବଚନ ॥ ୩୫
ଆହେ ମୁନିବର ! ତବ ହେଉ ସୁକଲ୍ୟାଣ ।
ମନୋରଥ ସିଦ୍ଧି ଅର୍ଥେ ମାଗ ବାରଦାନ ॥ ୩୬
ଯାହା ତୁମ୍ଭ ଇଚ୍ଛା ମାଗି ଘେନ ତପୀବର !
ମୋ' ବସ୍ତୁରେ ଅଟ ତୁମ୍ଭେ ତପସ୍ୱୀପ୍ରବର ॥ ୩୭
ପରମପୁରୁଷ ବିଷ୍ଣୁ ଅମୃତ ବଚନ ।
ଶୁଣି ଅଦିତିରମଣ ହେଲେ ସୁପ୍ରସନ୍ନ ॥ ୩୮
ଅଦିତି ସହିତେ ମୁନି ଯୋଡ଼ି ବେନି କର ।
ବୋଇଲେ ହେ ଦେବ ଦେବ ! ପ୍ରସନ୍ନେ ତୁମ୍ଭର ॥ ୩୯
ସଫଳ ହୋଇଲା ଜନ୍ମ ପୂର୍ବ ପୁଣ୍ୟଫଳେ ।
ଦେଖିଲୁଁ ଏ' ତପୋମୟ ରୂପ ବେନି ଡୋଳେ ॥ ୪୦
ସର୍ବଦେବ ଦେବମାତା ଅଦିତି ସହିତେ ।
ମାଗୁଅଛୁଁ ବର ପ୍ରଭୋ ! ସୁରଗଣ ହିତେ ॥ ୪୧
ଆହେ ଦେବ ପରମପୁରୁଷ ନାରାୟଣ !
କରଯୋଡ଼ି ତବ ପଦେ କରୁଛୁଁ ଜଣାଣ ॥ ୪୨
ତ୍ରିଲୋକ କଲ୍ୟାଣେ ଆହେ ଦେବ ଚକ୍ରଧର !
ଜାତ ହୁଅ ବିଶ୍ୱମ୍ଭର ! ହୋଇ ମୋ' କୁମର ॥ ୪୩
ଅଦିତି ଗରଭେ ପ୍ରଭୋ ! ଘେନ ଅବତାର ।
ସଂସାରେ ଜାତ ହୋଇ ବାଞ୍ଛା ପୂର୍ଣ୍ଣକର ॥ ୪୪
ଉପେନ୍ଦ୍ର ନାମରେ ହୋଇ ଜଗତେ ବିଖ୍ୟାତ ।
ତ୍ରୈଲୋକ୍ୟ କଲ୍ୟାଣେ ଜାତ ହୁଅ ଜଗନ୍ନାଥ ॥ ୪୫
ଅସୁର ନାଶନ ବାନା ବହିଛ ଆପଣ ।
ସୁରଲୋକ ଶୋକ ହର ହେ ମଧୁସୂଦନ ! ॥ ୪୬
ଆହେ ଦେବେଶ୍ୱର ! ଲଭ ତବ ସିଦ୍ଧ କାମ ।
ଆଜଠୁଁ ଆଶ୍ରମ ନାମ ହେଉ ସିଦ୍ଧାଶ୍ରମ ॥ ୪୭

ତବ ତପରୂପ ପ୍ରଭୋ ! କରି ପରିହାରି ।
ତେଜ ଏ' ଆଶ୍ରମ ତଳ ବଇକୁଣ୍ଠପୁର ।। ୪୮
ଏଥୁ ଅନନ୍ତରେ ଶୁଣ ଆହେ ରଘୁନାଥ !
ସିଦ୍ଧାଶ୍ରମୁଁ ଚଳିଗଲେ ତହୁଁ ରମାକାନ୍ତ ।। ୪୯
ଅଦିତି ଗରଭୁଁ ପ୍ରଭୁ ହୋଇ ଜାତପନ୍ନ ।
ବାମନ ରୂପେ ମୋହିଲେ ସର୍ବ ପ୍ରାଣୀ ମନ ।। ୫୦
ବଟୁ ରୂପ ଧରି ପ୍ରଭୁ ଜଗତଜୀବନ ।
ବଳି ଯଜ୍ଞଶାଳେ ଯାଇ ପ୍ରବେଶିଲେ ପୁଣ ।। ୫୧
ତ୍ରିଲୋକକଣ୍ଟକଙ୍କ ନାଥ ପ୍ରଭୁ ଦଇତ୍ୟାରି ।
ବଳି ଦର୍ପ ଗଞ୍ଜିବାକୁ ମନରେ ବିଚାରି ।। ୫୨
ତ୍ରିପାଦ ମେଦିନୀ ଦାନ ମାଗିଲେକ ଛଳେ ।
ତ୍ରିଲୋକ ବ୍ୟାପିଲେ ପ୍ରଭୁ ଆତ୍ମ ମାୟାବଳେ ।। ୫୩
ବଳିଠାରୁ ଛଳେ ହରି ତ୍ରିଦଶ ଭୁବନ ।
ଇନ୍ଦ୍ର କରେ ସମର୍ପିଲେ ଶ୍ରୀଜଗମୋହନ ।। ୫୪
ତ୍ରିଲୋକବିହାରୀ ହରି କରୁଣା ସାଗର ।
ଦେବରାଜେ ଅଧିପତି କଲେ ତ୍ରିଲୋକର ।। ୫୫
ଆହେ ରାମ ! ଦଶରଥ ସୁତ ଧନୁଧାରୀ !
ଏ' ସିଦ୍ଧଆଶ୍ରମେ ଥିଲେ ଗୋଲୋକବିହାରୀ ।। ୫୬
ତେଣୁ ଏ ଆଶ୍ରମ ସର୍ବ ଶୋକ ନିବାରଣେ ।
ସମର୍ଥ ଅଟଇ ରାମ ! ଏକା ତ୍ରିଭୁବନେ ।। ୫୭
ଜଗବନ୍ଧୁ ବାମନଙ୍କ ପଦେ କରି ଆଶ ।
ଏହୁ ସିଦ୍ଧାଶ୍ରମେ ଏବେ କରିଛୁ ନିବାସ ।। ୫୮
ଆଶ୍ରମ ପ୍ରାଙ୍ଗଣେ ହୁଏ ଯଜ୍ଞ ବିଧିମାନ ।
ରାକ୍ଷସେ ଆସନ୍ତି ନିତ୍ୟେ କରିବାକୁ ବିଘ୍ନ ।। ୫୯
ହେ ପୁରୁଷସିଂହ ! କର ଏହା ପ୍ରତିକାର ।
ଶରଘାତେ ଅସୁରଙ୍କୁ ସମୂଳେ ସଂହାର ।। ୬୦
ଦୁଷ୍ଟ ଦୁରାଚାର ପାପୀ ଅଟନ୍ତି ରାକ୍ଷସ ।
ଆହେ ଧନୁଧାରୀ ! କରଣପେ ବେଗେ ନାଶ ।। ୬୧

ଆହେ ରଘୁନାଥ ! ସେହି ପୁଣ୍ୟ ସିଦ୍ଧାଶ୍ରମେ
ପ୍ରବେଶ ହୋଇଲେ ଆସି ଦେଖ ତୁ ନୟନେ ।। ୬୨
ଏହା ଭାଷି ସ୍ନେହଭରେ କୁଶିକକୁମର ।
ପ୍ରବେଶିଲେ ଧରି ରାମ ସଙ୍ଗମିସି କର ।। ୬୩
ସିଦ୍ଧାଶ୍ରମେ ପ୍ରବେଶି ସେ ଶୋଭିଲେ ତେସନ ।
ପୁନର୍ବସୁ ନକ୍ଷତ୍ରରେ ଚନ୍ଦ୍ରମା ଯେସନ ।। ୬୪
ବିଶ୍ୱାମିତ୍ର ଆଗମନ ଜାଣି ମୁନିଗଣ ।
ଆଶ୍ରମ କମ୍ପାଇ ଉଚ୍ଚେ କଲେ ଜୟଗାନ ।। ୬୫
ପ୍ରଫୁଲ୍ଲ ମାନସେ ସିଦ୍ଧାଶ୍ରମ ଋଷିଗଣ ।
ବିଶ୍ୱାମିତ୍ର ପାଦେ ପାଦ୍ୟ ଅର୍ଘ୍ୟ କଲେ ଦାନ ।। ୬୬
ତଦନ୍ତେ ବେନି କୁମରେ ଘେନି ସମାଦରେ ।
ଅତିଥି ସତ୍କାର କଲେ ଉତ୍ତମ ବେଶରେ ।। ୬୭
ବୋଇଲେ ମୁନିଏ ରାମ ପାଶେ ନିଉଚ୍ଛଳ ।
ସ୍ୱାଗତ ଆଶ୍ରମେ ତବ ଆହେ ତାଡ଼କାରି ! ।। ୬୮
ଏ' ଆଶ୍ରମ ଯେସନେ ଅଟଇ ଆମ୍ଭ ବାସ ।
ଅଟ ତୁମ୍ଭେ ଅନୁରୂପେ ଏହାର ଅଧୀଶ ।। ୬୯
ମୁନିଙ୍କ ସତ୍କାର ସ୍ନେହ ଶୁଭାଶିଷ ପାଇ ।
ବିଶ୍ରମିଲେ ସିଦ୍ଧାଶ୍ରମେ ମୋଦେ ବେନିଭାଇ ।। ୭୦
କତିକ୍ଷଣ ଉତ୍ତରେ ଶ୍ରୀରାଜୀବଲୋଚନ ।
କରଯୋଡ଼ି ମୁନି ପାଦେ କଲେ ନିବେଦନ ।। ୭୧
ଆହେ ମୁନିବର ! ଆଜ ଘେନ ଯଜ୍ଞ-ଦୀକ୍ଷା ।
ରକ୍ଷସେ ଲଭିବେ ଏଥୁଁ ସମୁଚିତ ଶିକ୍ଷା ।। ୭୨
ସିଦ୍ଧାଶ୍ରମେ ଯଜ୍ଞ ସିଦ୍ଧି ହେବ ତପୋଧନ ।
ଆଜଠାରୁ ହେବ ଏହା ସ୍ୱନାମରେ ଧନ୍ୟ ।। ୭୩
ତବ ବରଦାନ ଆଜୁଁ ହୋଇବ ପୂରଣ ।
ଶୁଭାଶିଷେ ବିନାଶ ଲଭିବେ ଦୈତ୍ୟଗଣ ।। ୭୪
ସୁକଲ୍ୟାଣ ମୁନିଙ୍କର ହୋଇବ ସଫଳ ।
ମହତ ବଚନ କେବେ ନୋହିବ ବିଫଳ ।। ୭୫

ଶ୍ରୀରାମ ବଚନେ ବିଶ୍ବାମିତ୍ର ମୁନିବର ।
ପରମ ଉଲ୍ଲାସେ ଦୀକ୍ଷା ନେଲେ ସତ୍ଵର ॥ ୭୬
ତଦେଉତ୍ତର ମହାମୁନି ଶିଷ୍ୟଗଣ ସାଥେ ।
ଯଜ୍ଞ ସାଧିବାକୁ ମନାସିଲେ ଦୃଢ଼ବ୍ରତେ ॥ ୭୭
ସେଦିନ ରଜନୀ ଅନ୍ତେ ଶ୍ରୀରାମ ଲକ୍ଷ୍ମଣ ।
ପ୍ରଭାତୁଁ ଉଠିଣ କଲେ ନିତ୍ୟକର୍ମମାନ ॥ ୭୮
ସ୍ନାନ ସାରି ଜପି ମନେ ଗାୟତ୍ରୀ ମନ୍ତ୍ରର ।
ବନ୍ଦିଲେ ହରଷ ମନେ ମୁନିଙ୍କ ପଦ୍ମର ॥ ୭୯
ବିଶ୍ବାମିତ୍ର ମୋଦଭରେ କଲେ ସୁକଲ୍ୟାଣ ।
ଅସାଧ୍ୟ ସାଧନ କର ହେ ରଘୁନନ୍ଦନ ! ॥ ୮୦
ଅକ୍ଷୟ କୀରତି ଲଭ ରଘୁବଂଶବୀର !
ତୁମ୍ଭ ଗୁଣେ ରଘୁକୁଳ ହେଉ ଯଶସ୍ବର ॥ ୮୧
ମୈତ୍ରେୟ ଗୋଷ୍ଠଜ ଭଗବାନ ସୁତ ଦୀନ ।
ପୁରୁଷୋତ୍ତମ ସବଗେ ଭଣେ ରାମାୟଣ ॥ ୮୨
ଆହେ ରାମ ! ଅଖିଳ ସୁଖଦ ନାରାୟଣ !
କୃପାକର ପୂର୍ଣ୍ଣ ହେଉ ତବ କୀର୍ତ୍ତିଗାନ ॥ ୮୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଊନତ୍ରିଂଶ ସର୍ଗ ।



## ତ୍ରିଂଶ ସର୍ଗ

### ଶ୍ରୀରାମଙ୍କଦ୍ୱାରା ଅସୁର ନିଧନ ପୂର୍ବକ ଯାଗରକ୍ଷା ।

ତଦେଶ କାଳ ଅଭିଜ୍ଞ ଶ୍ରୀରାମ ତାଡ଼କାରି ।
ଆପଣା ମନରେ ସର୍ବ ଘଟଣା ବିଚାରି ॥ ୧
ବୋଇଲେ ବିଶ୍ବାମିତ୍ରଙ୍କୁ ବିନୟ ବଚନ ।
ଯଜ୍ଞର ଆରମ୍ଭ କେବେ ହେବ ତପୋଧନ ? ॥ ୨

କେବଣ ସମୟେ ସେହି ଦୁର୍ଜୟ ଅସୁରେ ?
ଆକ୍ରମନ୍ତି ନିର୍ଭୟରେ ପଶି ଯଜ୍ଞଶାଳେ ॥ ୩
ସେ ସମୟ ହେଉ ମୁନିବର ! ଆମ୍ଭେ ଦୁଇ ।
ଧନୁଶର ଧରି ଜଗି ବସିବୁଁ ସେଠାଇଁ ॥ ୪
ନୋହିଲେ ରାକ୍ଷସେ ଅଟକିବେ ଆକ୍ରମଣ ।
କରି ଯଜ୍ଞଶାଳା ତବ ନାଶିବେ ତକ୍ଷଣ ॥ ୫
ତେଣୁ କର ସତ୍ୱରହୁଁ ଆହେ ମୁନିବର !
ରାକ୍ଷସଙ୍କ ଆଗମନ ବାସର ମନର ॥ ୬
ହସ୍ତେ ଧନୁ ଧରି ଆମ୍ଭେ ରହିବୁ ସଜାଗେ ।
ନୋହିଲେ ନାଶିବେ ଦୁଷ୍ଟେ ଯଜ୍ଞ-ବଳଯୋଗେ ॥ ୭
ଶୁଣି ରଘୁନନ୍ଦନଙ୍କ ଏସନ ବଚନ ।
ବ୍ରହ୍ମଋଷି ବିଶ୍ୱାମିତ୍ର ହେଲେ ହୃଷ୍ଟମନ ॥ ୮
ଢାଲ ତରବାରି ଆଉ ଶାଣିତ କୃପାଣ ।
ରାକ୍ଷସ ବିନାଶେ ସାଜ ଧନୁଶରମାନ ॥ ୯
ପ୍ରସ୍ତୁତ ହୁଅନ୍ତେ ଦେଖି ଶ୍ରୀରାମ ଲକ୍ଷ୍ମଣେ ।
ଯୁଦ୍ଧ ଲାଗି ଗରୁ ଠାଣ ଧରି ମନେ ମନେ ॥ ୧୦
ସିଦ୍ଧାଶ୍ରମବାସୀ ସର୍ବ ତପସ୍ୱୀ ପ୍ରବରେ ।
ପ୍ରଶଂସିଲେ ଶୁଭାଶିଷ ଭଣି ଉଚ୍ଚ ସ୍ୱରେ ॥ ୧୧
ମୁନିଗଣ ଧୀରେ ତାଙ୍କୁ ବୋଲନ୍ତି ଏସନ ।
ଆହେ ରାମ ରୂପଧାରୀ ସୁମିତ୍ରାନନ୍ଦନ ! ॥ ୧୨
ଯଜ୍ଞରେ ଦୀକ୍ଷିତ ହୋଇଲେଣି ଗୁରୁବର ।
ମଉନ ବ୍ରତ ସାଧିବେ ଯଜ୍ଞକର୍ମ ସାର ॥ ୧୩
ତେଣୁ ଆହେ ଧନୁର୍ଦ୍ଧର ! ଷଡ଼ଦିନ ଯାଏଁ ।
ଅଖଣ୍ଡ ଯଜ୍ଞ ହୋଇବ ଯେମନ୍ତେ ନିର୍ଭୟେ ॥ ୧୪
ତେମନ୍ତ ବିଧାନ ତୁମ୍ଭେ ଆଚରିବ ବୀର !
ଆମ୍ଭେ ବସି ଯଜ୍ଞରେ ପୂଜିବୁ ବୈଶ୍ୱାନର ॥ ୧୫
ଘୃତାହୁତି ବେଦମନ୍ତ୍ରେ ଦେବୁ ଦେବଗଣେ ।
ସଜ ହୋଇ ରୁହ ତୁମ୍ଭେ ଯାଗ ସୁରକ୍ଷଣେ ॥ ୧୬

ମୁନିଙ୍କ ବଚନ ଶୁଣି ରଘୁବଂଶ ବୀର ।
ଶ୍ରୀରାମ ଲକ୍ଷ୍ମଣ ସଜ ହୋଇଲେ ସତ୍ୱର ॥ ୧୭
ହସ୍ତେ ଧନୁ କଟିରେ ତୂଣୀର ବାନ୍ଧି ଖରେ ।
ତପୋବନ ଚଉପାଶେ ବୁଲିଲେ ନିର୍ଭରେ ॥ ୧୮
ଏମନ୍ତ ରୂପେ ସେ ଦଶରଥଙ୍କ କୁମରେ ।
ପଞ୍ଚ ଦିବସ ରହିଲେ ନିଶି ଜଜାଗରେ ॥ ୧୯
କେବେ ଅବା ବିଶ୍ୱାମିତ୍ର ପାଶେ ଉଭା ହୋଇ ।
କେବେ ବା’ ଯଜ୍ଞଶାଳାର ଦ୍ୱାରେ ଜଗି ରହି ॥ ୨୦
ପଞ୍ଚ ଦିବସ ବିତିଲା ଯଜ୍ଞ ନିର୍ବିଘ୍ନରେ ।
ଅଦ୍‌ଭୁତ ଘଟଣା ଘଟେ ଷଷ୍ଠ ଦିବସରେ ॥ ୨୧
ଅକସ୍ମାତେ ଯଜ୍ଞକୁଣ୍ଡୁ ଉଠିଲା ଜ୍ୱଳନ ।
ତା’ ଦେଖି ହୋଇ ଅଧୈର୍ଯ୍ୟ ହେଲେ ଛନ୍ନମନ ॥ ୨୨
ରାକ୍ଷସଙ୍କ ଆଗମନ ସୂଚନା ଏ’ ଜାଣି ।
ମନେ ମନେ ଆତଙ୍କିତ ହେଲେ ମୁନିମଣି ॥ ୨୩
କୁଶ ସମିଧ ସୁମନେ ହୋଇ ସୁଶୋଭିତ ।
ଯଜ୍ଞବେଦୀ ପରେ ବସିଥିଲେ ବିଶ୍ୱାମିତ୍ର ॥ ୨୪
ଦେଖିଣ ଉତପାତର ପୂର୍ବକ ସୂଚନା ।
ଆହବନୀୟ ଅଗ୍ନିରେ କଲେ ନିରାଜନା ॥ ୨୫
ପ୍ରଜ୍ୱଳିତ ହେଲା ଅଗ୍ନି ବିସ୍ତାରିଣ ଜିହ୍ୱା ।
ଘୃତାହୁତି ଦେଲେ ମୁନି ଅନ୍ତେ ଭଣି ସ୍ୱାହା ॥ ୨୬
ଏ ସମୟେ ଘୋର ଶବ୍ଦ ଶୁଣି ରଘୁବୀର ।
ବୋଇଲେ ଆହେ ଲକ୍ଷ୍ମଣ ! ହୁଅ ସାବଧାନ ॥ ୨୭
ଅଦୂରେ ଶୁଭଇ ଶୁଣ ବିକଟ ଚିତ୍କାର ।
ଆସିଲେଣି ଦୈତ୍ୟଗଣେ ଘେନି ନିଜ ବଳ ॥ ୨୮
ଏକାଗ୍ର ଚିତ୍ତରେ ଦୃଷ୍ଟି ଦେଇ ଚଉପାଶେ ।
ଜଗି ରହି ଯଜ୍ଞଶାଳା ଅପୂର୍ବ ସାହସେ ॥ ୨୯
ମୁନିଗଣ ଯଜ୍ଞକୁଣ୍ଡେ ଦେଇ ଘୃତାହୁତି ।
ଶଙ୍କିତ ମାନସେ ଆରମ୍ଭିଲେ ପୂର୍ଣ୍ଣାହୁତି ॥ ୩୦

ମୁହୂର୍ତ୍ତେ ଶୁଭିଲାକ ଭୟଙ୍କର ସ୍ୱନ ।
ତାହା ଶୁଣି ମୁନିଗଣେ ହେଲେ ଛନ୍ନମନ ।। ୩୧
ଅଦଭୁତେ କଳାମେଘ ପରାୟେ ରାକ୍ଷସେ ।
ଦେଖାଦେଲେ ଅଦୂରରେ ରହିଣ ଆକାଶେ ।। ୩୨
ମାରୀଚ ସୁବାହୁ ବେନି ମହାଭୟଙ୍କର ।
ସଙ୍ଗେ ଘେନି ଅଗଣନ ଦୁଷ୍ଟ ନିଶାଚର ।। ୩୩
ଯଜ୍ଞଶାଳା ଚଉପାଶେ ବେଢ଼ିଣ ସତ୍ୱର ।
ଗଗନମଣ୍ଡଳୁ ବୃଷ୍ଟି କଲେ ରକ୍ତଧାର ।। ୩୪
ରୁଧିର ଧାରରେ ଯଜ୍ଞଶାଳା ଚଉପାଶ ।
ସିକ୍ତ ହେବା ଜାଣି ରଘୁନାଥ ବହି ରୋଷ ।। ୩୫
ଲକ୍ଷ୍ମଣଙ୍କୁ ଉଆରଣ କହିଲେ ଏସନେ ।
ହେ ସୌମିତ୍ର ! ତୁହ୍ନିଁ ଦେଖ ପୂର୍ବ ଗଗନେ ।। ୩୬
ରକ୍ତ ମାଂସ ଲୋଭୀ ନିଶାଚର ନିର୍ଭୟରେ ।
ବହନି ଆସନ୍ତି ବିନାଶିବେ ଏ' ଯଜ୍ଞରେ ।। ୩୭
ସାବଧାନ ହୋଇ ତୁମ୍ଭେ ରୁହ ସଉମିତ୍ର !
ରାକ୍ଷସ ନିଧନେ ମୋର ନ ବଳଇ ମତି ।। ୩୮
ତେଣୁ ମାନବାସ୍ତ୍ରେ ଉଡ଼ାଇଣ ଏ' ସକଳେ ।
ରଘୁକୁଳ ଯଶ ରୁହାଇବି ଅବନୀରେ ।। ୩୯
ବାୟୁବେଗେ ଯେହ୍ନେ ଆକାଶରେ ମେଘମାନେ ।
ଛିନ୍ନଭିନ୍ନେ ଅସହାୟେ ଉଡ଼ନ୍ତି ପ୍ରଖରେ ।। ୪୦
ତେସନେ ଉଡ଼ାଇ ଏହୁ ଦୁଷ୍ଟ ନିଶାଚରେ ।
ଅଷ୍ଟୟୁ କାରଣ ରକ୍ଷିଯିବ ରବିକୁଳେ ।। ୪୧
ଏତେ କହି ରଘୁନାଥ ମାନବାସ୍ତ୍ର ଧରି ।
ସନ୍ଧାନ କଲେ ଧନୁରେ ଶ୍ରୀଗୁରୁ ସୁମରି ।। ୪୨
ମହାବେଗବନ୍ତ ପୁଣ ପ୍ରଚଣ୍ଡ ଅସ୍ତ୍ରରେ ।
ଉଡ଼ାଇଲେ ମାରୀଚକୁ ଦେଖନ୍ତି ଅମରେ ।। ୪୩
ଶୀତଳ ମାନବଅସ୍ତ୍ର ପ୍ରହାରେ ଅସୁର ।
ଘୂର୍ଣ୍ଣିବାତ୍ୟା ପରି ଘୂରି ଘୂରି ହେଲା ଦୂର ।। ୪୪

ସ୍ତୁରଶତ କ୍ରୋଶ ଦୂର ସମୁଦ୍ର ମଧ୍ୟରେ ।
ପଡ଼ିଲା ତାଡ଼କା ସୁତ ସଭୟ ଅନ୍ତରେ ।। ୪୫
ଦେଖି ଏ’ ବିଚିତ୍ର ଦୃଶ୍ୟ ଦଶରଥ ନାନ ।
ବୋଲନ୍ତି ଦେଖ ଅସୁର ଦଶା ରେ ଲକ୍ଷ୍ମଣ ! ।। ୪୬
ମାନବାସ୍ତ୍ର ପ୍ରହାରେ ମାରୀଚ ମୂର୍ଚ୍ଛା ଯାଇ ।
ପବନ ବେଗେ ଅସୁର ଉଡ଼େ ଦେଖ ଭାଇ ।। ୪୭
କିନ୍ତୁ ଏହି ଅସ୍ତ୍ର ତା’ର ନ ନେବ ପରାଣ ।
ମହାଶିକ୍ଷା ଲଭିବ ସେ ତାଡ଼କା ନନ୍ଦନ ।। ୪୮
ମନୁଙ୍କ ନିର୍ମିତ ଏହୁ ମାନବାସ୍ତ୍ର ଜାଣ ।
ମୂର୍ଚ୍ଛିତ କରେ ଶତ୍ରୁରେ ନ ନେଇ ପରାଣ । ।। ୪୯
ଆବର ଯେତେକ ଦୈତ୍ୟେ ଛନ୍ତି ରଣାଙ୍ଗନେ ।
ନିମିଷକେ ସେମାନଙ୍କୁ ବଧିବି ମୁଁ ରଣେ । ।। ୫୦
ଏତେ ଭାଷି ଶ୍ରୀରାମ କାଢ଼ିଲେ ଅଗ୍ନି ଶର ।
ଶ୍ରୀଗୁରୁ ସୁମରି ସନ୍ଧାନିଲେ ସେ ସତ୍ୱର ।। ୫୧
ସୁବାହୁ ଦଇତ୍ୟ ଅଟେ ମହା ବଳବାନ ।
ଅଗ୍ନି ଶର ବିନ୍ଧି ରାମ ନେଲେ ତା’ ପରାଣ ।। ୫୨
ବକ୍ଷସର ବକ୍ଷ ସ୍ଥଳ ଦେଲେକ ଫିଟାଇ ।
ପ୍ରାଣ ହାରି ସୁବାହୁ ପଡ଼ିଲା ତଳେ ଯାଇ ।। ୫୩
ପୁଣି ବାୟୁବାସ୍ତ୍ର ବିନ୍ଧି ଦଶରଥ ସୁତ ।
ରଣାଙ୍ଗନେ ଦୈତ୍ୟବଳେ କଲେକ ନିପାତ ।। ୫୪
ଅସୁର ନିଧନେ ସିଦ୍ଧାଶ୍ରମ ମୁନିଗଣ ।
କରତାଳି ଦେଇ ହେଲେ ଆନନ୍ଦେ ମଗନ ।। ୫୫
ଯଜ୍ଞ ବିଘ୍ନକାରୀ ଦୈତ୍ୟେ ବିନାଶି ସମରେ
ଶ୍ରୀରାମ ପୂଜିତ ହେଲେ ସିଦ୍ଧ ଆଶ୍ରମରେ ।। ୫୬
ପୂର୍ବେ ଦେବରାଜ ଜାଣି ଅସୁର ସକଳେ ।
ସୁପୂଜିତ ହୋଇଥିଲେ ଯେହ୍ନେ ଦେବବଳେ ।। ୫୭
ଯଜ୍ଞ ସମାପନ କରି କୁଶିକ ନନ୍ଦନ ।
ଦେଖିଲେ ହୋଇଛି ସବୁ ବିଘ୍ନ ବିନାଶନ ।। ୫୮

ତହୁଁ ସ୍ନେହଭରେ ମୁନି ଭାଷିଲେ ବଚନ ।
କୃତକୃତ୍ୟ କଲ ମୋତେ କୌଶଲ୍ୟା ନନ୍ଦନ !! ୫୯
ମହା ଯଶସ୍ୱୀ ହେ ବୀର ଶ୍ରୀରାମ ! ତୁମ୍ଭଙ୍କୁ ।
ଶିଷ୍ୟ ପଣେ ଲଭି ଧନ୍ୟ ମଣେ ଆପଣାକୁ ।। ୬୦
ଶିଷ୍ୟ ଧର୍ମ ପାଳନ କରିଛ ଗୃହଧାମ ।
ଅକ୍ଷୟ ଯଶ ଲଭିଛ ଅସୁରଙ୍କୁ ମାରି ।। ୬୧
ତୁମ୍ଭ ଯୋଗୁଁ ସିଦ୍ଧାଶ୍ରମ ହେଲା ନିରାପଦ ।
ସାର୍ଥକ ହୋଇଲା ଆଜ ସିଦ୍ଧାଶ୍ରମ ପଦ ।। ୬୨
ଏସନ ଭଙ୍ଗେ ପ୍ରଶଂସି ବିଶ୍ୱାମିତ୍ର ମୁନି ।
ସନ୍ଧ୍ୟା ଆରମ୍ଭିଲେ ରାମ ଲକ୍ଷ୍ମଣଙ୍କୁ ଘେନି ।। ୬୩
ଆହେ ତାଡ଼କାରି ରାମ ! ସୁବାହୁର ଯମ !
ପୁରୁଷୋତ୍ତମ ମାଗଇ ଆଶା କର ପୂର୍ଣ୍ଣ ।। ୬୪

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ତ୍ରିଂଶ ସର୍ଗ ।



## ଏକତ୍ରିଂଶ ସର୍ଗ

### ବିଶ୍ୱାମିତ୍ରଙ୍କ ଗହଣରେ ଶ୍ରୀରାମଙ୍କ ମିଥିଳା ଗମନ ତଥା ଶୋଣଭଦ୍ର ତଟରେ ବିଶ୍ରାମ ।

ଯଜ୍ଞ ରକ୍ଷା କରି ରାମ ଲକ୍ଷ୍ମଣ ସଙ୍ଗତେ ।
ଆନନ୍ଦେ ଯଜ୍ଞଶାଳାରେ ରହିଲେ ସେ ରାତ୍ରେ ।। ୧
ଅତ୍ୟନ୍ତ ପ୍ରସନ୍ନ ଚିତ୍ତେ ଥିଲେ ଦୁଇ ଭାଇ ।
ହରଷ ଉଲ୍ଲାସେ ମନ ଥିଲା ପୂର୍ଣ୍ଣ ହୋଇ ।। ୨
ରଜନୀ ପାହିଲା ହେଲା ପ୍ରଭାତ ସମୟ ।
ଅନ୍ଧକାର ଭେଦି ରବି ହୋଇଲେ ଉଦୟ ।। ୩
ଇକ୍ଷ୍ୱାକୁ ପୁତ୍ର ଦୁଇ ଭାଇ ତପସ ତେଜଣ ।
ପ୍ରାତଃ ସନ୍ଧ୍ୟା ଆହ୍ନିକାଦି କଲେ ସମାପନ ।। ୪

ଚଳନ୍ତେ ଲକ୍ଷ୍ମଣ ସାଥେ ଶ୍ରୀରଘୁନନ୍ଦନ ।
ମୁନି ବିଶ୍ୱାମିତ୍ର ପାଶେ କଲେକ ଗମନ ॥ ୫
ବୈଶ୍ୱାନର ସମ ଦୀପ୍ତିମନ୍ତ ବିଶ୍ୱାମିତ୍ର ।
ଶ୍ରଦ୍ଧାଭରେ ତାଙ୍କ ପାଦେ କଲେ ପ୍ରଣିପାତ ॥ ୬
ପୁଣି ବିନୟ ମଧୁରେ ବୋଇଲେ ବଚନ ।
ଆହେ ଗୁରୁଦେବ ! ଆମ୍ଭେ ତବ ଆଜ୍ଞାଧୀନ ॥ ୭
ଆଜ୍ଞା ଦିଅ କ କରିବୁ ତୁମ୍ଭ ସେବା ଲାଗି ।
ମୁନିସେବା ଫଳେ ଆମ୍ଭେ ହେବୁ ସଜ୍ଜଭାଗୀ ॥ ୮
ଶ୍ରୀରାମ ବିନୟବାଣୀ ଶୁଣି ବିଶ୍ୱାମିତ୍ର ।
ସ୍ନେହଭରେ ବୋଲନ୍ତି ଶୁଣ ହେ ରଘୁନାଥ ! ॥ ୯
ମିଥିଳାଦେଶ ରାଜନ ସୁଜ୍ଞମା ଜନକ ।
ସେ ଆରମ୍ଭି ଛନ୍ତି ଧର୍ମମୟ ଯଜ୍ଞ ଏକ ॥ ୧୦
ନିମନ୍ତ୍ରଣ କରିଛନ୍ତି ବିଦେହ ରାଜନ ।
ଶିଷ୍ୟଗଣ ସାଥେ ତହିଁ କରିବି ଗମନ ॥ ୧୧
ହେ ପୁରୁଷବର ! ତୁମ୍ଭେ ସୌମିତ୍ରି ସହିତ ।
ଅମ୍ଭ ସଙ୍ଗେ ଚଳିବ ମୁଁ ବିଚାରେ ଏମନ୍ତ ॥ ୧୨
ରାଜର୍ଷି ଜନକ ପୁରେ ଅଛି ଧନୁ ଏକ ।
ଏ' ଧରାଧାମରେ ସେହୁ ବିରଳ ଶାୟକ ॥ ୧୩
ଦେଖିବା ଉଚିତ ତବ ଆହେ ତାଡ଼କାରି !
ତେଣୁ ସଜ ହୁଅ ଯିବା ମିଥିଳା ନଗରୀ ॥ ୧୪
ଆହେ ରଘୁନାଥ ! ଅଦଭୁତ ଏ' ଚରିତ ।
କେମନ୍ତେ ଜନକ ଧନୁ ହୋଇଲେ ପ୍ରାପତ ॥ ୧୫
ପୂର୍ବେ ଯଜ୍ଞେ ଦେବତାଙ୍କୁ ତୋଷି ମିଥିଳେଶ ।
ଦେବବର ରୂପେ ଲଭିଥିଲେ ଏ' ଧନୁଷ ॥ ୧୬
କେଡ଼େ ପ୍ରକାଣ୍ଡ ପ୍ରଚଣ୍ଡ ଅଟେ ସେ ଶାୟକ ।
ଦେଖିଲେ ଜାଣିବ ତୁମ୍ଭେ ହେ ରଘୁନାୟକ ! ॥ ୧୭
ତେଜୋଦୀପ୍ତ ମହାଗୁରୁ ଅଟଇ ସେ ଧନୁ ।
ତା' ଦର୍ଶନେ ସଭୟେ କମ୍ପଇ ଥାଉ ତନୁ ॥ ୧୮

ମନୁଷ୍ୟଙ୍କୁ ବଳେ କେବା କରଇ ଗଣନ ।
ଦେବତା ଗନ୍ଧର୍ବ ଦୈତ୍ୟ ମହାବୀରଗଣ ॥ ୧୯
ସମର୍ଥ ନୋହିଲେ କେହି ଆହେ ରଘୁବୀର !
ଚଢ଼ାଇବାକୁ ଧନୁରେ ବାନ୍ଧିବାକେ ଗୁଣ ॥ ୨୦
ମର୍ତ୍ତ୍ୟରେ ରାଜନ ମହାବୀର ରାଜପୁତ୍ରେ ।
ଧନୁରେ ଗୁଣ ଦେବାକୁ ଭୟ କଲେ ଚିତ୍ତେ ॥ ୨୧
ସେ ଧନୁର ତେଜଶକ୍ତି ଅଟଇ ଅପାର ।
ଦର୍ଶନ ମାତ୍ରକେ ହତପ୍ରଭ ହେଲେ ବୀର ॥ ୨୨
ତେଣୁ ହେ ଇକ୍ଷ୍ୱାକୁକୁଳ ଭୂଷଣ ଶ୍ରୀରାମ !
ଚଳ ଆମ୍ଭ ସଙ୍ଗେ ଦେଖିବ ସେ ଧନୁବାଣ ॥ ୨୩
ମିଥିଳା ନରେଶଙ୍କର ଅଦଭୁତ ଯାଗ ।
ଦେଖିବ କୌତୁକ ମନେ ଆହେ ମହାଭାଗ ! ॥ ୨୪
ମହା ଭାଗ୍ୟବନ୍ତ ସେହୁ ରାଜର୍ଷି ଜନକ ।
ଯଜ୍ଞ ଚତଫଳେ ଲଭିଛନ୍ତି ସେ ଶାସ୍ତ୍ରକ ॥ ୨୫
ଶଙ୍କର ବର ପ୍ରସାଦେ ରାଜା ମିଥିଳେଶ ।
ଭାଗ୍ୟବନ୍ତ ଲଭିଛନ୍ତି ସେ ବର-ଧନୁଷ ॥ ୨୬
ମଧ୍ୟଭାଗ ସେ ଧନୁର ଅତି ଚମତ୍କାର ।
ଦେଖିଲେ ଜାଣିବ କେତେ ଧନୁ ବୀରବର ॥ ୨୭
ଆହୁରି କୌତୁକ କଥା ଶୁଣ ରଘୁନାଥ !
ଜନକପୁରେ ସେ ଧନୁ ଯତ୍ନେ ସୁରକ୍ଷିତ ॥ ୨୮
ଦେବତା ସମାନ ତାକୁ ମଣନ୍ତି ରାଜନ ।
ନିତ୍ୟ ପୂଜନ୍ତି ଧନୁରେ ହୋଇ ତୋଷମନ ॥ ୨୯
ଗନ୍ଧ ପୁଷ୍ପ ଧୂପ ଦୀପ ନଇବେଦ୍ୟ ଦେଇ ।
ପୂଜନ୍ତି ଭକତିଭରେ ବଦେହ-ଗୋସାଇଁ ॥ ୩୦
ଏମନ୍ତ ବୋଲିଣ ବିଶ୍ୱାମିତ୍ର ତପୋଧନ ।
ସଇତରେ ବନଦେବୀଙ୍କ ଅନୁଜ୍ଞା ମାଗିଣ ॥ ୩୧
ପ୍ରିୟଶିଷ୍ୟ ରାମ ଲକ୍ଷ୍ମଣଙ୍କୁ ସଙ୍ଗେ ନେଇ ।
ବାହାରିଲେ ମିଥିଳାକୁ ଋଷିଙ୍କ ତନୟି ॥ ୩୨

ଗମନ ସମୟେ ମୁନି ଯୋଡ଼ି ବେନିକର ।
ବନଦେବତା ସୁମରି ଭାଷିଲେ ହରଷର || ୩୩
ମାତ ବନଦେବି ! ଯଜ୍ଞ କରି ସମାପନ ।
ସିଦ୍ଧାଶ୍ରମ ତେଜି ଆଜ କରୁଛୁ ଗମନ || ୩୪
ଜାହ୍ନବୀ ଉତ୍ତରତଟ ମାର୍ଗେ ଚଳିଯାଇ ।
ହିମାଳୟ ପାଦଦେଶେ ପହଞ୍ଚିବି ମୁହିଁ || ୩୫
ତୁମ୍ଭେ ରକ୍ଷା କରିବ ମୋ' ପୂତ ସିଦ୍ଧାଶ୍ରମ ।
ଯାଉଛୁ ମିଥିଳାପଥେ ଘେନ ମୋ' ପ୍ରଣାମ || ୩୬
ଏମନ୍ତ ଜଣାଇ ମହାମୁନି ବିଶ୍ୱାମିତ୍ର ।
ରାମ ଲକ୍ଷ୍ମଣଙ୍କ ସାଥେ ବାହିଗଲେ ପଥ || ୩୭
ମହା ସମ୍ଭବରେ ଚଳିଲେ ସେ ମହାମୁନି ।
ଶତ ଶତ ଶକଟରେ ଦ୍ରବ୍ୟମାନ ଘେନି || ୩୮
ସଙ୍ଗେ ପରମତପସ୍ୱୀ ବ୍ରହ୍ମବାଦୀଗଣ ।
ଆଗ ପଛ ହୋଇ ପଥେ କରନ୍ତି ଗମନ || ୩୯
ମୁନିଙ୍କ ଗମନ ଦେଖି ପଶୁପକ୍ଷୀଗଣ ।
ସିଦ୍ଧାଶ୍ରମ ତେଜି କଲେ ସେ ଅନୁଗମନ || ୪୦
କିଛି ପଥ ବାହିଯା'ନ୍ତେ ତପସ୍ୱୀପ୍ରବର ।
ଲେଉଟାଇ ଦେଲେ ପଶୁପକ୍ଷୀଙ୍କୁ ସତ୍ୱର || ୪୧
ଲୋତକପୂର୍ଣ୍ଣ ଚକ୍ଷୁରେ ବନଜୀବମାନେ ।
ମୁନିଙ୍କ ଇଙ୍ଗିତେ ଫେରି ଆଇଲେ ସ୍ୱସ୍ଥାନେ || ୪୨
ବହୁଦୂର ପଥ ଅତିକ୍ରମି ମୁନିଗଣ ।
ଶୋଣଭଦ୍ର ତଟେ ଯାଇ ମିଳିଲେ ତକ୍ଷଣ || ୪୩
ରବି ଅସ୍ତକାଳ ଜାଣି ତପସ୍ୱୀପ୍ରବର ।
ଆଦେଶିଲେ ମୁନିଗଣେ ଯାତ୍ରା ଶେଷକରି || ୪୪
ଆଜକ ଏଠାରେ ରହି ଯାପିଣ ରଜନୀ ।
କାଲି ପ୍ରଭାତରୁ ଯାତ୍ରା ଆରମ୍ଭିବା ପୁଣି || ୪୫
ତୁଠାଇ ଧରଣୀମାୟା କଶ୍ୟପନନ୍ଦନ ।
ଅସ୍ତାଚଳେ ସବେଗରେ କରନ୍ତେ ଗମନ || ୪୬

ବ୍ରହ୍ମର୍ଷିଗଣେ ଶୋଣ ଜଳେ କରି ସ୍ନାନ ।
ବେଦମନ୍ତ୍ର ପଢ଼ି କଲେ ଆହ୍ନିକ ବିଧାନ ॥ ୪୭
ଅଗ୍ନିହୋତ୍ର ପୂଜା ସ୍ତୋତ୍ର ସାରି ମୁନିଗଣେ ।
ବିଶ୍ୱାମିତ୍ରଙ୍କୁ ଆବୋରି ବସିଲେ ସେ ସ୍ଥାନେ ॥ ୪୮
ଶ୍ରୀରାମ ଲକ୍ଷ୍ମଣ ବିଶ୍ୱାମିତ୍ର ମୁନି ପାଦେ ।
ଆହ୍ନିକ ଶେଷେ ପ୍ରଣାମ କଲେକ ଆନନ୍ଦେ ॥ ୪୯
ପରମ ଶ୍ରଦ୍ଧେୟ ଯୁବା ଦଶରଥ ସୁତ ।
ମୁନିବର ଆଗେ ବସି କହନ୍ତି ଉଦନ୍ତ ॥ ୫୦
ଆହେ ଗୁରୁଦେବ ! କୁହ ସଂଶୟ ଫେଡ଼ିଣ ।
ସବୁଜମାରେ ପୂରିତ ଶୋଭାଶାଳୀ ବନ ॥ ୫୧
କିସ ନାମ ଏହାର ଏ' ଅଟେ କେଉଁ ଦେଶ ?
ଶୁଣିବାକୁ କୁତୂହଳ ଜାଗେ ମୁନିଈଶ ॥ ୫୨
ସୁଦୟା କରିଣ କୁହ ଆହେ ତପୀଶ୍ୱର !
ଏ' ରହସ୍ୟ ଜାଣିବାକୁ ଆଗ୍ରହ ମୋହର ॥ ୫୩
ଶ୍ରୀରାମ ବିନୟବାଣୀ ଶୁଣି ବିଶ୍ୱାମିତ୍ର ।
କହିଲେ ସାନନ୍ଦମନେ ନିଖିଳ ଉଦନ୍ତ ॥ ୫୪
ସକଳ ସଂଶୟ ଛେଦ କୁଶିକ ନନ୍ଦନ ।
ବଖାଣିଲେ ଆଦ୍ୟପ୍ରାନ୍ତ କରି ସେ ଆଖ୍ୟାନ ॥ ୫୫
ରାମ ଲକ୍ଷ୍ମଣ ସମେତ ବିଶ୍ୱାମିତ୍ର ପାଦେ ।
ପ୍ରଣମି ପୁରୁଷୋତ୍ତମ ଭାଷଇ ଆନନ୍ଦେ ॥ ୫୬

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକତ୍ରିଂଶ ସର୍ଗ ।



# ଦ୍ୱାତ୍ରିଂଶ ସର୍ଗ

## ବ୍ରହ୍ମପୁତ୍ର କୁଶ, ବସୁ ଭୂମି ତଥା କୁଶନାଭକନ୍ୟାଙ୍କ ଦୁର୍ଦ୍ଦଶା ବର୍ଣ୍ଣନ ।

ବୋଇଲେ ଶ୍ରୀରାମେ ବିଶ୍ୱାମିତ୍ର ମୁନିବର ।
ଯାହା ପଚାରିଲ ଶୁଣ କୌଶଲ୍ୟା କୁମର ॥ ୧
ପୂର୍ବକାଳେ ଥିଲେ ରାଜର୍ଷି କୁଶ ନାମ ।
ସାକ୍ଷାତେ ଅଟନ୍ତି ସେହୁ ବ୍ରହ୍ମାଙ୍କ ନନ୍ଦନ ॥ ୨
ମହାତପସ୍ୱୀ ସୁଜ୍ଞାନ କୁଶ ନରନାଥ ।
ଅକ୍ଳେଶେ ପୂରଇ ତାଙ୍କ ସର୍ବ ମନୋରଥ ॥ ୩
ସଙ୍କଳ୍ପବ୍ରତେ ନିପୁଣ ସେହୁ ନୃପବର ।
ଧର୍ମଜ୍ଞ ସୁପୁରୁଷ ଆଦରେ ତତ୍ପର ॥ ୪
ସୁକୁଳ ସମ୍ଭୂତା ବଇଦର୍ଭି ରାଜନନ୍ଦିନୀ ।
ଥିଲେ ସେ ନୃପତିପ୍ରିୟା ସୁମନମୋହିନୀ ॥ ୫
ତାହାଙ୍କ ଗର୍ଭୁଁ ସୁଜ୍ଞାନୀ ଚାରୋଟି କୁମର ।
ସମ୍ଭବିଲେ କୁଶଙ୍କ ଔରସୁ ରଘୁବର ॥ ୬
ସେ ପୁତ୍ରମାନଙ୍କ ନାମ ଶୁଣ ମନଦେଇ ।
ସୁଗୁଣେ ଭୂଷିତ ଆଦ୍ୟ କୁଶାମ୍ବ ତନୟି ॥ ୭
ଦ୍ୱିତୀୟ ଧର୍ମଜ୍ଞପୁତ୍ର ଅଟେ କୁଶନାଭ ।
ଅସୂର୍ତ୍ତରଜସ ସୁତ ତା'ପରେ ସମ୍ଭବ ॥ ୮
ସେ ପୁତ୍ରର ଅନ୍ୟ ନାମ ଅମୂର୍ତ୍ତିରଜସ ।
ଅମୂର୍ତ୍ତରୟସ ବୋଲି ଘୋଷନ୍ତି କେ ଯଶ ॥ ୯
ଚତୁର୍ଥ ପୁତ୍ରର ନାମ ଅଟଇ ଯେ ବସୁ ।
ତେଜସ୍ୱୀ ଉଦାତ୍ତ ଗୁଣୀ ସାକ୍ଷାତେ ସେ ବସୁ ॥ ୧୦
ପ୍ରଜାପାଳନେ ତତ୍ପର କ୍ଷତ୍ରିୟ ପ୍ରଧାନ ।
ସ୍ୱଧର୍ମ ରକ୍ଷଣେ ପୁତ୍ରେ ରାଇ ଜଣେ ଜଣ ॥ ୧୧

ବୋଇଲେ ହେ ପୁତ୍ରେ ! କର ପରଜା ରଞ୍ଜନ ।
ଲଭିବ ସୁଯଶ ହେବ ଅଶେଷ କଲ୍ୟାଣ ॥ ୧୨
ସ୍ୱଧର୍ମ ପାଳନେ ଖ୍ୟାତି ଲଭିବ ଅପାର ।
କୀର୍ତ୍ତିଧର ହେବ ପୁତ୍ରେ ମହୀସ୍ଥଳେ ମୋର ॥ ୧୩
ପ୍ରଜା ସୁକଲ୍ୟାଣେ କୁଳେ ବଢ଼ିବ କୀରତି ।
ସୁକର୍ମ ସାଧନ ଫଳେ ହେବ ବ୍ରହ୍ମପ୍ରୀତି ॥ ୧୪
ସଦୁପଦେଶ ଲଭିଣ ପୁତ୍ର ସ୍ୱଜନେ ।
ନିଜ ନିଗି କଲେ ରମ୍ୟ ନଗରୀ ନିର୍ମାଣ ॥ ୧୫
ଲୋକପ୍ରିୟ ପୁତ୍ରଗଣେ ଶାନ୍ତ ପିତୃଗୁଣ ।
ସୁଯଶ ବିସ୍ତାରେ କର୍ମେ ହୋଇଲେ ନିପୁଣ ॥ ୧୬
ମହାତେଜସ୍ୱୀ କୁମାର କୁଶାମ୍ବ ଯେ ହୋଇ ।
'କୌଶାମ୍ବୀ' ନାମେ ନଗରୀ ବସାଇଲେ ସେହି ॥ ୧୭
ଧାର୍ମିକ ପ୍ରବର କୁଶନାଭ ଯେ କୁମର ।
'ମହୋଦୟ' ନାମେ ନିର୍ମାଣିଲ ସେ ନଗର ॥ ୧୮
ଅମୂର୍ତ୍ତିରଜସ ବୋଲି ଯେବଣ ସୁପୁତ୍ର ।
ପରମ ଧାର୍ମିକ ସେହୁ ବିଦ୍ୟା-ବୁଦ୍ଧିମନ୍ତ ॥ ୧୯
ନିଜ ବାହୁବଳେ ସେ ବସାଇଲ ପୁର ।
ଲୋକରେ ବିଦିତ 'ଧର୍ମାରଣ୍ୟ' ନାମ ତା'ର ॥ ୨୦
ବସୁ ନାମେ କୁମାର ଯେ ଚତୁର ସିହାଣ ।
ଆପଣା ଉଦ୍ୟମେ କଲା ନଗର ନିର୍ମାଣ ॥ ୨୧
ବସୁଙ୍କ ନଗର 'ଗିରିବ୍ରଜ' ନାମ ତାର ।
'ବସୁମତୀ' ନାମେ ଖ୍ୟାତ ଯେହୁ ଜଗତର ॥ ୨୨
ଏହା ଚଉଦିଗେ ପଞ୍ଚଗୋଟି ଗିରିବର ।
ତେଣୁ 'ଗିରିବ୍ରଜ' ନାମ ହୋଇଲା ତାହାର ॥ ୨୩
ସେ ପର୍ବତ ନାମ ଏବେ ଶୁଣ ରଘୁନାଥ ।
ବିପୁଳ ବରାହ ଆଉ ଋଷଭ ଯେ ଖ୍ୟାତ ॥ ୨୪
ଋଷିଗିରି ଚଇତକ ଏ' ପଞ୍ଚ ପର୍ବତ ।
ରମଣୀୟ ଗିରି ରୂପେ ଜଗତେ ବିଖ୍ୟାତ ॥ ୨୫

ପଞ୍ଚଗିରି ମଧ୍ୟ ଦେଇ ସଦାଗାମୀ ଶୋଣ ।
ବହୁ ଆସେ ମନ ଦେଇ ଶୁଣ ରାମଗଣ ! ॥ ୨୬
ମଗଧ ଦେଶରେ ଯେଣୁ ହୁଏ ପ୍ରବାହିତ ।
ସୁମାଗଧୀ ନାମେ ତେଣୁ ଲୋକରେ ବିଦିତ ॥ ୨୭
ପର୍ବତମାନଙ୍କ ମାଳାରୂପେ ସୁଶୋଭିନୀ ।
ଶୋଣଭଦ୍ରା ନାମ ଯାର ଜାଣ ରଘୁମଣି ! ॥ ୨୮
ମହାତ୍ମା ବସୁରାଜ ସମ୍ପତ୍ତି ଏହାର ।
ଉତ୍ପନ୍ନ ନିମିତ୍ତ ରାମ ଶୁଣ ରଘୁବୀର ! ॥ ୨୯
ଦକ୍ଷିଣ ପଶ୍ଚିମ ଦେଶୁ ଏହୁ ସ୍ରୋତସ୍ୱିନୀ ।
ଉତ୍ତର ପୂର୍ବ ଦିଗେ ବହିଯାଏ ପୁଣି ॥ ୩୦
ଉଭୟ ତଟ କାନନ କରି ସୁଶୋଭିତ ।
ସୁଶସ୍ୟମାଳିନୀ ନଦୀ ବହଇ ନିରତ ॥ ୩୧
ତଟବାସୀ ଜନେ ଲଭି ଶ୍ୟାମଳା ଧରଣୀ ।
ସଦା ନିବସନ୍ତି ମନେ ସତେ କି ଜନନୀ ॥ ୩୨
ହେ ରଘୁକୁଳ ବର୍ଦ୍ଧନ ରାମ ରଘୁମଣି !
ଏ' ଉତ୍ତରୁ ଯାହା ହେଲା ଶୁଣ ଦେଇ ମନ ॥ ୩୩
କୁଶନାଭ ପ୍ରାଣପ୍ରିୟା ଘୃତାଚୀ ଅପ୍ସରା ।
ତା' ଗର୍ଭେ ଶତକନ୍ୟା ଜନ୍ମିଲେ ସୁନ୍ଦରୀ ॥ ୩୪
ସିତପକ୍ଷ ଶଶୀ ପରି ବଢ଼ିଲେ ସେ କନ୍ୟା ।
ରୂପ ଗୁଣ ଯଉବନେ ହୋଇ ଲୋକେ ଧନ୍ୟା ॥ ୩୫
ସୁନ୍ଦର ପଣରେ ସର୍ବେ ମୋହିଲେ ଧରଣୀ ।
ନାନାରତ୍ନେ ବିଭୂଷିତା ହୋଇ ସେ କାମିନୀ ॥ ୩୬
ଉଦ୍ୟାନସ୍ଥଳୀରେ ପଶି ସେହି କନ୍ୟାଗଣେ
ବିଦ୍ୟୁନ୍ମାଳା ପରି ଶୋଭା ଦିଶିଲେ ଗଗନେ ॥ ୩୭
ପ୍ରମୋଦ ଉଦ୍ୟାନେ ମିଳି ସର୍ବ କନ୍ୟାଗଣ
ନୃତ୍ୟ ଗୀତ ବାଦ୍ୟେ ମୋହିଲେ ସେ ଜନମନ ॥ ୩୮
ବିଳାସ ରଙ୍ଗିଣୀ ରାଜସୁତା ହୋଇ ମେଳ ।
ସରାଗେ ନୃତ୍ୟ କରନ୍ତି ଦେଇ କରତାଳ ॥ ୩୯

ଅନନ୍ୟ ସୁନ୍ଦରୀ ନୃପଜେମା ଶଶୀମୁଖୀ ।
ଅନଙ୍ଗ ମୋହିତ ହୁଏ ସେ ଲାବଣ୍ୟ ଦେଖି ॥ ୪୦
ରୂପଗୁଣେ ଅନୁପମା ସୁନ୍ଦରୀ ତରୁଣୀ ।
ତାଙ୍କ ତୁଲେ ସମସର ନାହିଁ କେ ଧରଣୀ ॥ ୪୧
ଭୁବନମୋହିନୀ ଶତକନ୍ୟା ଚାରୁଶୀଳା ।
ମେଘମାଳେ କ୍ଷଣପ୍ରଭା ପ୍ରାୟେ ଦିଶି ତୋଷ ॥ ୪୨
ମୋହିଲେ ଦେବ ଦାନବ ଗନ୍ଧର୍ବ କିନ୍ନର ।
ରୂପ ଯଉବନେ ତାଙ୍କ ନାହିଁ ପଟାନ୍ତର ॥ ୪୩
ହାସ ବିଳାସ ଭଙ୍ଗିମା ଦେଖି ତାହାଙ୍କର ।
ମନେ ମନେ ବଡ ମୋହିତ ହୋଇଲେ ସମୀର ॥ ୪୪
ପ୍ରାଣୀ ପ୍ରାଣଧର ଗନ୍ଧବହ ଧୀରେ ଆସି ।
ସେ କନ୍ୟାଙ୍କ ଚାରୁଅଙ୍ଗ ଲାବଣ୍ୟେ ବିଳସି ॥ ୪୫
ଆତ୍ମହରା ହୋଇ ପ୍ରେମେ ବୋଇଲେ ବଚନ ।
ଆଗୋ ଚାରୁଶୀଳେ ! ଶୁଣ ଏ' ମୋ ନିବେଦନ ॥ ୪୬
ଜଗତଜନଙ୍କ ପ୍ରାଣ ଅଟେ ମୁଁ ପବନ ।
ତୁମ୍ଭ ରୂପ ଯଉବନ ମୋହିଲା ମୋ' ମନ ॥ ୪୭
ପ୍ରାଣପ୍ରିୟା ହୁଅ ତୁମ୍ଭେମାନେ ଗୋ ମୋହର ।
ବଳନ୍ତି ଶରଧା ମନେ ଶୁଣ ସମାଚାର ! ॥ ୪୮
ମାନବୀ ଜନମ ଲଭି ତୁମ୍ଭେ ଶତକନ୍ୟା ।
ମୋ' ଅଙ୍ଗସଙ୍ଗରୁ ହୋଇବଟି ଦେବାଙ୍ଗନା ॥ ୪୯
ଅଜର ଅମର ହେବ ଶୁଣ ପ୍ରାଣପ୍ରିୟେ !
ଅନଙ୍ଗ ଦହଇ ଦେହ ହୁଅସି ସଦୟେ ॥ ୫୦
ଜାଣିଛ ମାନବ ଅଙ୍ଗେ ଅକ୍ଷୟ ଯୌବନ ।
ନ ରହଇ କେବେହେଲେ ଏ' ଧ୍ରୁବ ବଚନ ॥ ୫୧
ମରଣଶରେ ଜନମି ଚାରୁସୁହାସିନି !
ଶମନପୁର କଦନ କେ ପାରିବ ଜିଣି ? ॥ ୫୨
ମୋ' ମନୋହାରିଣୀ ଯେବେ ହୋଇବ କାମିନି !
ଅକ୍ଷୟ ଯୌବନେ ଥିବ କଳ୍ପକଳ୍ପ ପୁଣି ॥ ୫୩

ମହତପୁରୁଷ ବାୟୁ ଜଗତଜୀବନ ।
ପ୍ରାଣୀ ପ୍ରାଣପ୍ରଦ ତେଣୁ ଅଟନ୍ତି ମହାନ ।। ୫୪
ଶୁଣି ତାଙ୍କ ସବିନୟ ପ୍ରେମ ନିବେଦନ ।
ସୁନ୍ଦର ପଣରେ ଗର୍ବ ବହ୍ନ କନ୍ୟାଗଣ ।। ୫୫
ଉପହାସ ଛଳେ ସର୍ବେ ବୋଇଲେ ବଚନ ।
ହେ ଜଗତପ୍ରାଣ ! ଶୁଣ କଶ୍ୟପନନ୍ଦନ ! ।। ୫୬
ସୁର ଶିରୋମଣି ତୁମ୍ଭେ ଆହେ ଦିତିସୁତ !
ଜଗତେଜନେ ପ୍ରଭଞ୍ଜନ ନାମେ ତୁଅ ଖ୍ୟାତ ।। ୫୭
ତବ ବଳ ଗୁଣ ତେଜ ଜାଣୁଁ ଆମ୍ଭେ ଭଲେ ।
ତଥାପି କହୁଛୁଁ ଶୁଣ ହେ ପବନ ! ଧୀରେ । ୫୮
ତୁମ୍ଭେ ଅଟ ସର୍ବପ୍ରାଣ-ବିହାରୀ ଜଗତେ ।
ଅନ୍ତର୍ଯ୍ୟାମୀ ନାଥ ରୂପେ ଥାଅ ଆତ୍ମାସାଥେ ।। ୫୯
ତେଣୁ ତୁମ୍ଭେ କପଟ ନ ଜାଣ ଅମ୍ଭ ମନ ।
ଜାଣେ ହେଲେ ତୁମ୍ଭ ପ୍ରତି ନାହିଁ ଆକର୍ଷଣ ।। ୬୦
ତଥାପି କପଟ ତବ କଳୁଷ ମାନସ ?
ଲଭିବାକୁ ପତ୍ନୀରୂପେ କରୁଛ ସାହସ ।। ୬୧
ଅନୁଚିତ ପ୍ରସ୍ତାବ ଏ’ ପବନ ଦେବତା ।
କି ବୋଲିବେ ଶୁଣି ଏହା ଅମ୍ଭ ପିତା ମାତା ।। ୬୨
କୁଳକଳଙ୍କିନୀ ବୋଲି ନିନ୍ଦିବ ଜଗତ ।
ଅମ୍ଭ ଯୋଗୁଁ ନିନ୍ଦାଭାଗୀ ହେବେ ତାତ ମାତ ।। ୬୩
ତୁମ୍ଭ ଅନୁଚିତ ଅନୁନୟେ ଆମ୍ଭେମାନେ ।
ଅପମାନିତା ହୋଇଛୁଁ ଏ’ ରମ୍ୟକାନନେ ।। ୬୪
ଜାଣିଛ କି କୁଳ ଗୋତ୍ର ଅମ୍ଭର ପବନ !
କାହାର ଦୁଲଣୀ ଅଟୁ କେଉଁ ବଂଶେ ଜନ୍ମ ।। ୬୫
ରାଜର୍ଷି ଧାର୍ମିକ ଯୋଗୀବର କୁଶନାଭ ।
ତାହାଙ୍କ ଦୁଲଣୀ ଆମ୍ଭେ ଶୁଣ ବାୟୁଦେବ ! ।। ୬୬
ଇଚ୍ଛା କଲେ ଶାପବଳେ କରି ପଦଚ୍ୟୁତ ।
ଇତର ଜନ ପରାୟେ ହରିବୁଁ ମହତ ।। ୬୭

କନ୍ତୁ ସେ ସ୍ୱାନକାମନା ନାହିଁ ଆମ୍ଭ ମନେ ।
ଅସଙ୍ଗତ ନୋହୁ ଆମ୍ଭେ ମନେ ବା ବଚନେ ।। ୬୮
ତପୋବନ ଅନ୍ତ ଯତ୍ନେ ରଖିଛୁଁ ସାଇତ ।
ବୃଥା କାର୍ଯ୍ୟେ କ୍ଷୟ୍ନ ନ କରିବୁଁ ସେ ଶକତ ।। ୬୯
ଦୁର୍ମତି ପଣରେ ତୁମ୍ଭେ କଲ ଯେ ପ୍ରସ୍ତାବ ।
କ ବୋଲି ବୋଲିବେ ପିତା ଜାଣି ଆମ୍ଭ ଭାବ ।। ୭୦
ଧାର୍ମିକ ପ୍ରବର ସେହୁ ଅଟନ୍ତି ପବନ !
କାମବଶେ କପରି ଡେଜିବୁ ତାଙ୍କୁ ପୁଣ     ।। ୭୧
ସତ୍ୟବାଦୀ ପରମ ବଦୁଷ ଆମ୍ଭ ପିତା ।
କ ବୋଲିବେ ସ୍ୱେଚ୍ଛାରେ ବରିବୁ ଯେବେ ଭର୍ତ୍ତା ।। ୭୨
ଅନାସ୍ଥିର ଅଟେ ଏହା ଆହେ ସମୀରଣ !
ଜାଣି ଶୁଣି କର କମ୍ପା ମନ୍ଦ ଆଚରଣ     ।। ୭୩
ପିତା ଆମ୍ଭ ଗୁରୁ ପ୍ରଭୁ ବସ୍ତୁଙ୍କ ସମାନ ।
ଯାହାଙ୍କୁ ବରିବେ ଆମ୍ଭ ଲାଗି ସେହୁ ପୁଣ   ।। ୭୪
ସେ ହେବେ ଆମ୍ଭର ପ୍ରାଣପ୍ରିୟ ମନୋହାରୀ ।
ଶୁଣ ହେ ପବନ ! ବୃଥା ନକର ଗୁହାରି   ।। ୭୫
ଏସନ କନ୍ୟାଙ୍କ ମୁଖୁଁ ଶୁଣି ଦୁର୍ବଚନ ।
ମନେ ମନେ ଅଗ୍ନିବର୍ଣ୍ଣା ହେଲେ ପ୍ରଭଞ୍ଜନ ।। ୭୬
ପ୍ରାଣ ରୂପେ ପ୍ରବେଶି ସେ ସର୍ବ କନ୍ୟା ଅଙ୍ଗେ ।
ମୋଡ଼ିମାଡ଼ି କୁବ୍ଜ କଲେ ତାଙ୍କୁ କେତେ ରଙ୍ଗେ ।। ୭୭
ପବନ ପ୍ରକୋପେ ସର୍ବେ ହୋଇ କ୍ଷୀଣ ଅଙ୍ଗ ।
ଭୟେ ତରସ୍ତ ହୋଇଣ ପଳାଇଲେ ବେଗ ।। ୭୮
ଅଙ୍ଗଭଙ୍ଗେ କନ୍ୟାଗଣ ହୋଇଣ ଲଜ୍ଜିତା ।
ରାଜପ୍ରାସାଦେ ମିଳିଲେ ମନେ ଉତ୍ପୀଡ଼ିତା   ।। ୭୯
ନୟନରୁ ଅଶ୍ରୁ ତେଜି କରନ୍ତି ବେଦନ ।
କନ୍ୟାଙ୍କ ଦୁର୍ଦ୍ଦଶା ଦେଖି ତରସ୍ତ ରାଜନ   ।। ୮୦
ଦେଖି ତାଙ୍କ ଦାରୁଣ ବେଦନା କୁଶନାଭ ।
ଚକିତେ ରହିଲେ କ୍ଷଣେ ହୋଇ ହତପ୍ରଭ   ।। ୮୧

ଉପୁ ବଚ୍ଚନତ ମନେ ପୃଚ୍ଛନ୍ତି ନୃପତି ।
କୁହ ଆଗୋ ମାତ ! କଏ ଦେଲା ଏ' ଦୁର୍ଗତି ॥ ୮୨
କେଉଁ ଅପରାଧେ କେହୁ ଦଣ୍ଡିଲା ତୁମ୍ଭଙ୍କୁ ?
ଜୀବ ଥାଉଁ ଥାଉଁ କେବା ଏଡ଼ିଲା ଧର୍ମକୁ ॥ ୮୩
ସୁନ୍ଦର ରୂପରେ କଏ କଲା ଏଡ଼େ କର୍ମ ?
ସୂର୍ଯ୍ୟ ଚନ୍ଦ୍ର ଥାଉଁ ତାକୁ ସହିବଟି ଧର୍ମ ॥ ୮୪
କୁବୁଜା କେ କଲା ମୋର ନୟନପିତୁଳୀ ।
କଏ ସେ ଚଣ୍ଡାଳ କୁହ କହୁଛି ବାଁ ନ ଭାଳ ॥ ୮୫
କନ୍ୟାଙ୍କ ମୁଖୁଁ ନ ଶୁଣି କହୁଛି ବଚନ ।
କେତେ କେତେ କୁଶନାଭ ମନ କଲେ ଛନ୍ନ ॥ ୮୬
କଷ୍ଟାଇଁ ନ କୁହ କହୁ କ ଭାଳ ମନରେ ?
ଏତେ ଭାଷି ରାଜନ ବସିଲେ ଭୂମି ପରେ ॥ ୮୭
ଶୁଣିବା ପାଇଁ କନ୍ୟାଙ୍କ ମୁଖରୁ ବଚନ ।
ବସିଲେ ନୃପତି ଘେନ ଶତ କନ୍ୟାଜନ ॥ ୮୮
ଅତି ମନସ୍ତାପେ ବସି ଭାଳନ୍ତି ରାଜନେ ।
କେହୁ ହତାଦର କଲା ମୋ' କନ୍ୟାରତନେ ॥ ୮୯
ସୁନ୍ଦର ରୂପରେ କେବା ବାହିଲା କଳଙ୍କ ?
କେମନ୍ତେ ସହିବ ଧର୍ମ କେ ସେ ଅବିବେକ ॥ ୯୦
ଶ୍ରୀରାମ ଆଗେ ଭାଷନ୍ତି ମୁନି ବିଶ୍ୱାମିତ୍ର ।
ଦ୍ୱାତ୍ରିଂଶ ସର୍ଗେ ଯାହା ହୋଇଛି ବର୍ଣ୍ଣିତ ॥ ୯୧
ବାଲ୍ମିକି ବଚନ ଏ' ସୁଧାରସମୟ ।
ପ୍ରଫୁଲ୍ଲ ମାନସେ ସାଧୁଜନେ ଏହା ପିଅ ॥ ୯୨
ମୈତ୍ରେୟ ପୁରୁଷୋତ୍ତମ ଭଗବାନ ସୂନୁ ।
ନ ଚହଇ ଆନ ରାମ ପାଦପଦ୍ମ ବିନୁ ॥ ୯୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଦ୍ୱାତ୍ରିଂଶ ସର୍ଗ ।



# ତ୍ରୟସ୍ତ୍ରିଂଶ ସର୍ଗ

## କୁଶନାଭଙ୍କ ଦ୍ୱାରା କନ୍ୟାଙ୍କୁ ଧୈର୍ଯ୍ୟ ପ୍ରଦାନ ତଥା ବ୍ରହ୍ମଦତ୍ତଙ୍କ ସହ କନ୍ୟାଗଣଙ୍କ ବିବାହ ।

ଶୁଣି ପିଅରଙ୍କ ମୁଖୁଁ ଏସନ ବଚନ ।
ଅଶ୍ରୁମୁଖୀ କନ୍ୟାଗଣ ନମିଣ ଚରଣ ॥ ୧
ବୋଇଲେ କରୁଣସ୍ୱରେ ଏସନକ ବାଣୀ ।
ଶୁଣ ହେ ପିଅର ! ଆମ୍ଭ ଦୁର୍ଭାଗ୍ୟ କାହାଣୀ ॥ ୨
ଜଗତର ପ୍ରାଣ ଗନ୍ଧବହ ବାୟୁଦେବ ।
ଉପବନେ ମିଳି ଯାହା କଲେ ଚିତ୍ତଦେବ ! ॥ ୩
ଅଶୁଭ ବଚନ ଆମ୍ଭେ କରୂପେ କହିବୁ ?
ଜଗତଜୀବନ ହୋଇ ବୋଇଲେ ଯା' ସବୁ ॥ ୪
ଆମ୍ଭ ରୂପ ଯଉବନେ ହୋଇ ବିମୋହିତ ।
ବଳତ୍କାରେ ହରିବାକୁ ବଳାଇଲେ ଚିତ୍ତ ॥ ୫
ଅଧର୍ମ ପଥକୁ କେହ୍ନେ ସହନ୍ତୁ ପିଅର !
ବୋଇଲୁ ପ୍ରଭଞ୍ଜନଙ୍କୁ ବିନୟେ ଉତ୍ତର ॥ ୬
ଆହେ ଦେବ ସର୍ବଗତ ! ଶୁଣ ଅମ୍ଭ ବୋଲ ।
ଆମ୍ଭଙ୍କୁ ଲଭିବ ଯଦ୍ଧ ପିତା ପାଶେ ଚଳ ॥ ୭
ତୁମ୍ଭ କରେ ସମର୍ପିଲେ ଆହେ ପ୍ରଭଞ୍ଜନ !
ପତ୍ନୀ ରୂପେ ଗ୍ରହିଥିବୁ ଦେଇ ମନ ପ୍ରାଣ ॥ ୮
କୁମାରୀକାଳେ କନ୍ୟକା ନୁହନ୍ତି ସ୍ୱାଧୀନ ।
ତେଣୁ ଆମ୍ଭେ ଅଟୁଁ ଦେବ ! ପିତାଙ୍କ ଅଧୀନ ॥ ୯
ପିତାମାତା ଆଜ୍ଞା ବିନୁ ବରିବୁଁ କେସନେ ?
ଏସନ ଉଚିତ ବାଣୀ ବୋଇଲୁଁ ପବନେ ॥ ୧୦
ଅଧର୍ମେ ନିରତ ବାୟୁ ନ ବୁଝିଲେ ତହେଁ ।
ବଳତ୍କାରେ ହରିବାକୁ ମନ ବଳାଇଲେ ॥ ୧୧

ନିରୋଧ କରନ୍ତେ ଦେଇ ବନସ୍ତେ ଉତ୍ତର ।
ସଦାଗତି ପବନ ଭଙ୍ଗିଲେ ଦଣ୍ଡ ଘୋର ॥ ୧୨
ଜଣାଇଲୁଁ ଶ୍ରୀଚରଣେ ଦୋଷ କର କ୍ଷମା ।
ଏମନ୍ତ ବୋଲନ୍ତେ ମିଳି କୁଶନାଭ ଜେମା ॥ ୧୩
କ୍ଷଣେ ମଉନ ରହିଣ ଧାର୍ମିକ ନୃପତି ।
କନ୍ୟାଗଣେ ଚାହିଁ ମୃଦୁ ବଚନେ ଭଣନ୍ତି ॥ ୧୪
କ୍ଷମାଶୀଳ ମହାତ୍ମା ସଦୃଶ କନ୍ୟାଗଣ !
ରଖିଛ ଯେ କାର୍ଯ୍ୟ ମନେ ନ ବହି ଦୂଷଣ ॥ ୧୫
ସର୍ବେ ଏକମନା ହୋଇ କରିଛ ସୁକର୍ମ ।
କୁଳମର୍ଯ୍ୟାଦା ରକ୍ଷଣେ ଆଚରିଛ ଧର୍ମ ॥ ୧୬
କାମ ବାସନାକୁ ମନୁଁ କରି ଦେଇ ଦୂର ।
କଲ ଆଜ ଯେଉଁ କର୍ମ ନାହିଁ ତଦନ୍ତର ॥ ୧୭
ନାରୀ ହେଉ ବା ପୁରୁଷ କ୍ଷମା ତା’ ଭୂଷଣ ।
କ୍ଷମାବଳେ ଜିଣିପାରେ ଏ’ ତ୍ରିଭୁବନ ॥ ୧୮
ପବନ ଦେବତାଙ୍କର ଅଶାନ୍ତି ଆଚାର ।
ସହିଷ୍ଣୁତା ବଳେ କ୍ଷମା କଲ ପୁଣି ! ମୋର ॥ ୧୯
ଯେ’ ଆଦର୍ଶ ଦେଖାଇଛ ତୁମ୍ଭେମାନେ ଆଜ ।
ପ୍ରଶଂସା କରିବେ ଏହା ଶୁଣି ଦେବରାଜ ॥ ୨୦
ଦେବଦୁର୍ଲ୍ଲଭ କ୍ଷମାରେ ବଳାଇଛ ମନ ।
ଏ’ କର୍ମେ ସାହା ହୋଇବେ ପ୍ରଭୁ ନାରାୟଣ ॥ ୨୧
କ୍ଷମା ଯଜ୍ଞ କ୍ଷମା ସତ୍ୟ କ୍ଷମା ଅଟେ ଦାନ ।
କ୍ଷମା ଯଶ ତଜରୁଷ ଗର୍ବ ଅଭିମାନ ॥ ୨୨
କ୍ଷମା ଜଗତରେ ଅଟଇ ସର୍ବଧର୍ମ ମୂଳ ।
କ୍ଷମାଗୁଣ ଅଟେ ପୁଣ ଜଗତ ଆଧାର ॥ ୨୩
ଇକ୍ଷ୍ୱାକୁକୁଳ ଭୂଷଣ ଆହେ ରଘୁନାଥ !
ଏ’ ଉତ୍ତରୁ ଯାହା ହେଲ ଶୁଣ ଦେଇ ଚିତ୍ତ ॥ ୨୪
କନ୍ୟାଙ୍କୁ ସାନ୍ତ୍ୱନା ଦେଇ ରାଜା କୁଶନାଭ ।
ପଠାଇଲେ ଅନ୍ତଃପୁରେ ମନେ ବହି କ୍ଷୋଭ ॥ ୨୫

କ କଣ୍ଡବେ ମନେ ମନେ କରଣ ବସୁର ।
ଡକାଇ ଆଣିଲେ ମନ୍ତ୍ରଦାତା ମନ୍ତ୍ରୀବର ॥ ୨୬
ପାଶେ ବସାଇ ମନ୍ତ୍ରୀଙ୍କି କହନ୍ତି ବଚନ ।
ଶୁଣ ଆହେ ମନ୍ତ୍ରୀବର ! କନ୍ୟାଙ୍କ ବିଧାନ ॥ ୨୭
ଆଦ୍ୟପ୍ରାନ୍ତ କହି ସର୍ବ କଥା ନୃପବର ।
କହିଲେ କନ୍ୟାଙ୍କ ଗୁଣ ବଖାଣି ସତ୍ୱର ॥ ୨୮
ଶୁଣି ସକଳ ଚରିତ ଅମାତ୍ୟପ୍ରବର ।
ବୋଇଲେ ହେ ନୃପବର ! କରିବା ବସୁର ॥ ୨୯
ଆମ୍ଭ ବସୁରରେ ବ୍ରହ୍ମଦତ୍ତ ନୃପବର ।
ବ୍ରହ୍ମତେଜେ ପାଳୁଛନ୍ତି କାମ୍ପିଲ୍ୟ ନଗର ॥ ୩୦
ରୂପଗୁଣେ ସମ କେହି ନାହାନ୍ତି ଜଗତେ ।
ବସୁରଣ କନ୍ୟାଦାନ କର ତାଙ୍କ ହସ୍ତେ ॥ ୩୧
ଧାର୍ମିକ ପ୍ରବର ସେହୁ ଅତ୍ୟନ୍ତ ମହାନ ।
ତବ ଇଚ୍ଛାମତେ ହେଉବେ ସେ କନ୍ୟାଦାନ ॥ ୩୨
ଏମନ୍ତ ବସୁର କରି ସର୍ବ ମନ୍ତ୍ରିଗଣ ।
ମନେ ମନେ ପ୍ରଶଂସିଲେ ରାଜକନ୍ୟା ଗୁଣ ॥ ୩୩
ଶୁଣି ଏସନ ଚରିତ ବୋଲନ୍ତି ଶ୍ରୀରାମ ।
ଅହେ ଗୁରୁଦେବ ! କୁହ ବ୍ରହ୍ମଦତ୍ତ ଜନ୍ମ ॥ ୩୪
କେଉଁ କୁଳେ କାହା ଗର୍ଭେ ହେଲେ ସେ ଜନମ ।
କେଉଁ ତପେ ହୋଇଲେ ସେ ସର୍ବ ଗୁଣଧାମ ॥ ୩୫
ବିସ୍ତାର କରଣ କୁହ ଆହେ ତପୀବର !
ଶୁଣିବାକୁ ଆମ୍ଭ ମନେ ଜାଗେ କୌତୂହଳ ॥ ୩୬
ଶୁଣି ତାହାଙ୍କ ପ୍ରଶନ ବିଶ୍ୱାମିତ୍ର ମୁନି ।
ବୋଲନ୍ତି ହେ ରାମ ! ଶୁଣ ଅପୂର୍ବ କାହାଣୀ ॥ ୩୭
ଚୂଳୀ ନାମେ ଥିଲେ ଏକ ବ୍ରହ୍ମର୍ଷି ପ୍ରବର ।
ଊର୍ଦ୍ଧ୍ୱରେତା ପଣେ ସେହୁ ଖ୍ୟାତ ଜଗତର ॥ ୩୮
ନୈଷ୍ଠିକ ସେ ବ୍ରହ୍ମଜ୍ଞ ବେଦଜ୍ଞ ମହାନ ।
ବ୍ରହ୍ମ ଚିନ୍ତନରେ ସଦା ଯାପନ୍ତି ଜୀବନ ॥ ୩୯

ସେ ସମୟେ ସୋମଦା ନାମରେ ଏକ କନ୍ୟା ।
ଗନ୍ଧର୍ବ କୁମାରୀ ରୂପ ଗୁଣେ ସେ ଅନନ୍ୟା ॥ ୪୦
ଊର୍ମିଳା ଅପ୍‌ସରା ଗର୍ଭୁଁ ହୋଇଥିଲା ଜାତ ।
ସେ କନ୍ୟା ସେବଲା ବ୍ରହ୍ମମୁନି ପାଦଗତ ॥ ୪୧
ପ୍ରତିଦିନ ସୋମଦା ଯାଇଣ ତପସ୍ଥାନେ ।
ସାନନ୍ଦେ ସେବଲା ଚୂଳୀମୁନିଙ୍କ ଚରଣେ ॥ ୪୨
କନ୍ୟାର ଉତ୍ତମଗୁଣ ଦେଖି ମୁନିବର ।
ସନ୍ତୋଷ ଲଭିଣ ତାକୁ ବୋଇଲେ ଉତ୍ତର ॥ ୪୩
ଆଗୋ କନ୍ୟେ ! ତବ ଗୁଣେ ଲଭିଛୁ ସନ୍ତୋଷ ।
ଇଚ୍ଛାସୁଖେ ବର ମାଗ ଯାହା ଅଭିଳାଷ ॥ ୪୪
ମୁନିଙ୍କ ବଚନେ କନ୍ୟା ହୋଇଣ ହରଷିତ ।
ବୋଇଲା ମଧୁରସ୍ୱରେ କରି ଦଣ୍ଡବତ ॥ ୪୫
ଆହେ ବ୍ରହ୍ମର୍ଷି ମୁନିବର ମହାଶୟ !
ତବ ଆଶ୍ୱାସନେ ଫେଡ଼ି ମନରୁ ସଂଶୟ ॥ ୪୬
ଲୋଡ଼ୁଛି ମାଗିବ ଏକ ଦୁର୍ଲ୍ଲଭ ରତନ ।
ଯେଉଁ ବରେ ଅଭିଳାଷ ହେବ ମୋର ପୂର୍ଣ୍ଣ ॥ ୪୭
ବ୍ରହ୍ମତେଜେ ତେଜୀୟାନ ଅଟ ମୁନିବର !
ବ୍ରହ୍ମଙ୍କ ପ୍ରସାଦେ ତୁମ୍ଭେ ସର୍ବ ଶକ୍ତିଧର ॥ ୪୮
ମାଗଇ ବପୁରେ ତବ କରିଣ ଜଣାଣ ।
ତବ ଔରସେ ଲଭିବ ଏକଇ ନନ୍ଦନ ॥ ୪୯
ଅବିବାହିତା ନୋହେ ମୁହିଁ ଅଟଇ କୁମାରୀ ।
ଆଜଯାଏଁ କନ୍ୟାଗୁଣ ରଖିଛି ଆଦରି ॥ ୫୦
ସର୍ବଜ୍ଞ ତପସ୍ୱୀ ତୁମ୍ଭେ ସର୍ବ ଗୁଣାଧାର ।
ଅନ୍ତର୍ଯ୍ୟାମୀ ରୂପେ ଜାଣ ସକଳ ଅନ୍ତର ॥ ୫୧
ତବ ସଙ୍ଗ ବିନୁ ଆନେ ବଳେନାହିଁ ମନ ।
ଏଥକୁ ବିଚାରି ବର ଦିଅ ତପୋଧନ ॥ ୫୨
ତୁମ୍ଭ ବ୍ରାହ୍ମୀଶକ୍ତି ମୋତେ କରିଛି ମୋହିତ ।
ସେ କାରଣୁ ମାଗେ ବର ଦିଅ ତପୋବନ୍ତ ॥ ୫୩

ତବ ତେଜେ ତେଜବନ୍ତ ହେବ ସେ କୁମର ।
ତାକୁ ପାଳ ଏ' ଜୀବନେ ଲଭିବ ସୁଫଳ ॥ ୫୪
ଗନ୍ଧର୍ବ କୁମାରୀ ବାଣୀ ଶୁଣି ଚୂଳୀମୁନି ।
ଧ୍ୟାନବଳେ ଜାଣିଲେ ସକଳ ମନେ ଗୁଣି ॥ ୫୫
ମୁନିଙ୍କ ପ୍ରସାଦୁ ପୁତ୍ର ଲଭିଲା କୁମାରୀ ।
ମାନସପୁତ୍ର ଗୋଟିଏ ଦେଲେ ବ୍ରହ୍ମଋଷି ॥ ୫୬
ବ୍ରାହ୍ମତେଜେ ବଢ଼ିଲା ସେ ଅପୂର୍ବ କୁମର ।
ସୋମଦା ରଖିଲା ବ୍ରହ୍ମଦତ୍ତ ନାମ ତାର ॥ ୫୭
କାମ୍ପିଲ୍ୟ ନଗରେ ସେହୁ ହୋଇଲା ରାଜନ ।
ଶୁଣିଲତ ରଘୁନାଥ ! ବ୍ରହ୍ମଦତ୍ତ ଗୁଣ ॥ ୫୮
ଅମରାବତୀରେ ସୁରରାଜ ସମ ସେହୁ ।
ପରଜା ପାଳନେ ମନ ଦେଲେ ମହାବାହୁ ॥ ୫୯
ରାଜଗୁଣେ ସର୍ବେ ବଶ ହେଲେ ପ୍ରଜାକୁଳ ।
ଜଗତେ ବ୍ୟାପିଲା ଯଶ ବ୍ରହ୍ମଦତ୍ତଙ୍କର ॥ ୬୦
ଆହେ ରାମ ରଘୁବର ! ଦୈତ୍ୟ ନିସୂଦନ !
କୁଶନାଭ ମନ୍ତ୍ରୀବାକ୍ୟ ଶ୍ରବଣିଲେ ମନ ॥ ୬୧
ଶତକନ୍ୟାଙ୍କ ବିବାହ ମନରେ ଚିନ୍ତଣ ।
ବରପଣେ ବରିଲେ ସେ କାମ୍ପିଲ୍ୟ ରାଜନ ॥ ୬୨
ସାଦରେ ନିମନ୍ତ୍ରି ତାକୁ ନୃପ କୁଶନାଭ ।
ସମର୍ପିଲେ ହୃଷ୍ଟ ଚିତ୍ତେ ଦୁହିତା ସରବ ॥ ୬୩
ଦେବରାଜ ସମ ଗୁଣୀ ନୃପ ବ୍ରହ୍ମଦତ୍ତ ।
ସାଦରେ ଘେନିଲେ କନ୍ୟା ହୋଇ ମୋଦ ଚିତ୍ତ ॥ ୬୪
ବେଦମନ୍ତ୍ରେ ପୂଜଣ ଦେବତା ବୈଶ୍ୱାନର ।
କୁଶନାଭ କନ୍ୟାଦାନ କଲେ ତତପର ॥ ୬୫
କନ୍ୟା କର ଧରନ୍ତେ କାମ୍ପିଲ୍ୟ ନୃପବର ।
ବାତଦୋଷ ତେଜ କନ୍ୟା ଦିଶିଲେ ସୁନ୍ଦର ॥ ୬୬
ଅପୂର୍ବ ରୂପଯୌବନେ ଶୋଭିଲେ ସକଳ ।
ପବନ-ଦେବତା ଶାନ୍ତ ହେଲେ ରଘୁବର ! ॥ ୬୭

ଲୁବ୍‌ଧଦୋଷ ମେଷଣ ଦେଖିଣ ନୃପଗଣ ।
ପବନଦେବଙ୍କୁ ସ୍ତୁତି କଲେ ମନେ ମନ ॥ ୬୮
ପରମ ହରଷେ ରଜା ହୋଇ ଆନନ୍ଦିତ ।
ବ୍ରହ୍ମଦତ୍ତେ ସମର୍ପିଲେ ଅକଳନ ବିତ୍ତ ॥ ୬୯
ବିବାହ ଉତ୍ସବୁ ସଙ୍ଖୋଳଣ କନ୍ୟାକର ।
କରଗିଲେ ବରକନ୍ୟା କାମ୍ପିଲ୍ୟ ନଗର ॥ ୭୦
ଗନ୍ଧର୍ବ ଦୁନ୍ଦୁଭି ନୃପଜନମା ସୋମଦା ।
ବଧୂଗଣେ ଦେଖି ମୋଦ ଲଭିଲେ ପ୍ରମଦା ॥ ୭୧
ଶଙ୍ଖ ହୁଳହୁଳି ନାଦେ ନବର କମ୍ପାଇ ।
ସଙ୍ଖୋଳିଲେ ବଧୂଗଣେ ହରଷିତ ହୋଇ ॥ ୭୨
ଦେଖି କନ୍ୟା ରୂପଗୁଣ ସୋମଦା ସୁନ୍ଦରୀ ।
ପ୍ରଶଂସିଲେ କୁଶନାଭେ ବହୁମାନ୍ୟ କରି ॥ ୭୩
କନ୍ୟାଙ୍କୁ ବନ୍ଦାଇ ମାତା ନେଲେ ଅନ୍ତଃପୁରେ ।
ସମ୍ଭାଳିଲେ ବନ୍ଦାପନା ବିଧି କୁଳାଚାରେ ॥ ୭୪
ଛନ୍ଦନ୍ତେ ପୁତ୍ରଙ୍କୁ କୋଳ କରି ସେ ସୁନ୍ଦରୀ ।
ଶୁଭାଶିଷ ଦେଇ ଅନ୍ତେ ଗଲେ ସୁରପୁରୀ ॥ ୭୫
ପୂଜି ସେ ବ୍ରହ୍ମମୁନଙ୍କ ଅଭୟ-ଚରଣ ।
ପୁରୁଷୋତ୍ତମ ରଚଇ ଆର୍ଷ ରାମାୟଣ ॥୭୬

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତତ୍ରିଂଶ ସର୍ଗ ।



# ଚତୁଃତ୍ରିଂଶ ସର୍ଗ

## ଗାଧିଙ୍କ ଉତ୍ପତ୍ତି ଓ କୌଶିକୀ ପ୍ରଶଂସା ।

ହେ ରଘୁନନ୍ଦନ ! ଏହୁ ଅପୂର୍ବ ଆଖ୍ୟାନ ।
ସେ ଉତ୍ତାରୁ ଯାହା ହେଲା ଶୁଣ ଦେଇ ମନ ॥ ୧
କନ୍ୟାବର ବିଦାୟ କରଣ ନୃପବର ।
ଅପୁତ୍ରକ କୁଶନାଭ ବଶ୍ବର ମନର ॥ ୨
ସର୍ବଗୁଣ ସୁଲକ୍ଷଣ ନନ୍ଦନ କାମରେ ।
ପୁତ୍ରକାମ ଯଜ୍ଞ ଆରମ୍ଭିଲେ ସୁଚିତ୍ତରେ ॥ ୩
ଯାଗ ଆରମ୍ଭ କରନ୍ତେ ବିଧାନେ ସେ ନୃପ ।
ବ୍ରହ୍ମଜ୍ଞାନୀ କୁଶ ରାଜା ମିଳିଲେ ସମୀପ ॥ ୪
ପରମ ସନ୍ତୋଷେ ବ୍ରହ୍ମବିଦ ନୃପବର ।
ବୋଇଲେ କୁଶନାଭଙ୍କୁ ବଚନ ମଧୁର ॥ ୫
ଆହେ ବତ୍ସ ! ତବ ତୁଲ୍ୟ ସୁଗୁଣ ଆକର ।
ଧର୍ମାତ୍ମା ପୁତ୍ର ଲଭିବୁ ସଂଶୟ ନ କର ॥ ୬
ଗାଧି ନାମେ ପାଇବୁ ସେ ତେଜସ୍ୱୀ କୁମରେ ।
ତା' ଗୁଣ-କୀର୍ତ୍ତି ବ୍ୟାପିବ ଏ' ମହୀମଣ୍ଡଳେ ॥ ୭
ତା' ସକାଶୁ କୁଳ ତୋର ହେବ କୀର୍ତ୍ତିମାନ ।
ପୁତ୍ର ଗୁଣେ ଲଭିବୁ ତୁ ଅଶେଷ ସମ୍ମାନ ॥ ୮
ଆହେ ରାମ ! ଏତେ ଭଣି ବ୍ରହ୍ମଜ୍ଞାନୀ କୁଶ ।
ବ୍ରହ୍ମଲୋକେ ଚଳିଗଲେ ଲଭିଣ ସନ୍ତୋଷ ॥ ୯
କତିଦିନ ଅନ୍ତେ କୁଶନାଭ ନୃପବର ।
ଲଭିଲେ ତନୟ ରତ୍ନ ମହା କୀର୍ତ୍ତିଧର ॥ ୧୦
ଗାଧି ନାମେ କୁଶନାଭ କଲେକ ପାଳନ ।
ଯଥାକାଳେ ରାଜ୍ୟେ ଗାଧି ହୋଇଲେ ରାଜନ ॥ ୧୧

ଆହେ ରାମ ! ସୁଗୁଣ ଭୂଷଣ ତାଡ଼କାରି !
ସେ ଗାଧି ନୃପ ପିଅର ଅଟଇ ମୋହର ॥ ୧୨
ଯେଣୁ ମୋହର ଜନମ କୁଶଙ୍କ ବଂଶରେ ।
କୌଶିକ ନାମରେ ମୁହିଁ ବିଦିତ ସଂସାରେ ॥ ୧୩
ଆହେ ରାମ ! ଦଶରଥ ନନ୍ଦନ ସୁଶୀଳ !
ସତ୍ୟବତୀ ନାମେ ଜ୍ୟେଷ୍ଠା ଭଗିନୀ ମୋହର ॥ ୧୪
ସୁଗୁଣବତୀ ସୁଶୀଳ ସୁବ୍ରତଚାରିଣୀ ।
ପତିରୂପେ ବରିଲା ରୁଚିକ ବ୍ରହ୍ମଜ୍ଞାନୀ ॥ ୧୫
ପତି ପରାୟଣା ସତୀ ବ୍ରତ ଅନୁଯୋଗେ ।
ସ୍ୱଦେହେ ଚଳିଲା ସ୍ୱାମୀ ସଙ୍ଗେ ସ୍ୱର୍ଗ ଭାଗେ ॥ ୧୬
ଆହେ ରାମ ! ନିଜ ପୁଣ୍ୟବଳେ ସତ୍ୟବତୀ ।
କଉଶିକୀ ନଦୀ ନାମେ ଲଭିଲା ପ୍ରଖ୍ୟାତି ॥ ୧୭
ଜଗତ ତାରଣେ ମୋର ଅଗ୍ରଜା ଭଗିନୀ ।
ହିମାଳୟୁ ସମ୍ଭବନ୍ତି ସଂସାର କାରିଣୀ ॥ ୧୮
ହେ ରଘୁନନ୍ଦନ ! ଭଗ୍ନୀ ସ୍ନେହେ ହୋଇ ବଶ ।
ତା' ତଟେ ପରମ ତୋଷେ କରୁଛି ନିବାସ ॥ ୧୯
ଗିରିରାଜ ହିମାଳୟୁ ଅତି ମନୋହର ।
କଉଶିକୀ ନଦୀ ତା'ର ଅଟେ ଗଳାହାର ॥ ୨୦
ତାହାର ସୁପୁଣ୍ୟ ତଟେ ତପସ୍ୟା ସାଧିଣ ।
ସୁଖେ ରହୁଥାଏଁ ତହିଁ ଭଗିନୀ ସ୍ନେହେଣ ॥ ୨୧
ପତିବ୍ରତା ପୁଣ୍ୟଶୀଳା ସୌଭାଗ୍ୟଶାଳିନୀ
ପୂର୍ବ ତପୋବଳେ ହେଲା ପୂତ କଲ୍ଲୋଳିନୀ ॥ ୨୨
ନଦୀମାନଙ୍କେ ଉତ୍ତମ କୌଶିକୀ ଅଟଇ ।
ତା' ତୀରେ ବସି ମୁଁ ଯୋଗକ୍ଷେମ ସାଧୁଛଇଁ ॥ ୨୩
ଯଜ୍ଞସିଦ୍ଧି କାମେ ତେଜି କଉଶିକୀ ତଟ ।
ସିଦ୍ଧାଶ୍ରମେ ଆସି ମୁଁ ଲଭିଲି ତୁମ୍ଭ ଭେଟ ॥ ୨୪
ତୁମ୍ଭ ପ୍ରସାଦୁଁ ହେ ରାମ ! ଲଭି ଯଜ୍ଞସିଦ୍ଧି ।
ଫେରିପିବି କଉଷିକୀ ତୀରେ ସବୁ ସାଧି ॥ ୨୫

ଆହେ ରଘୁବର ! ତୁମ୍ଭ ପ୍ରଶ୍ନର ଉତ୍ତର ।
ଏ' ରୂପେ ବର୍ଣ୍ଣିଲି ଶୋଣଭଦ୍ରା ଯଶ ସାର ॥ ୨୬
ଇହିଁ ସଙ୍ଗେ ଆପଣା କୁଳର ଗାଥାମାନ ।
କହିଲି ସଂକ୍ଷେପେ ହେଉ ଭଲ ଚିତ୍ତେ ଚେତ ॥ ୨୭
ହେ କାକୁତ୍ସ୍ଥ କୁଳରତ୍ନ ରାମଚନ୍ଦ୍ର ବୀର !
ଅର୍ଦ୍ଧରାତ୍ର ବିତିଲାଣି କଥା ପ୍ରସଙ୍ଗର ॥ ୨୮
ଯାଅ ବତ୍ସ ! ଶଯ୍ୟା ପାରି କରିବ ବିଶ୍ରାମ ।
ଶରୀରେ ବ୍ୟାଧି ଘଟାଏ ରାତ୍ରି ଜାଗରଣ ॥ ୨୯
ଅସୁସ୍ଥ ଦେହରେ ହେବ ଯାତ୍ରାକାଳ ବିଘ୍ନ ।
ଏଣୁ ଶୀଘ୍ର ଯାଇ ନିଅ ନିଦ୍ରାରେ ଶରଣ ॥ ୩୦
ଦେଖ ବୃକ୍ଷଲତାଗଣ ନିଶ୍ଚଳ ନିସ୍ପନ୍ଦ ।
ମାତୃ କୋଳେ ଆଶ୍ରୟି ଅଛନ୍ତି ପକ୍ଷୀବୃନ୍ଦ ॥ ୩୧
ଘନ ଅନ୍ଧକାରେ ବ୍ୟାପ୍ତ ହୋଇ ଦଗମାନ ।
ମାରିବେ ଅଛନ୍ତି ଘୂରି ଦେଖ ରଘୁଗଣ ॥ ୩୨
ଆମୋଦ ଦାୟିନୀ ସନ୍ଧ୍ୟା ପିନ୍ଧି ମାଳବାସ ।
କେତେକାଙ୍କୁ ହୋଇଲାଣି ଚକ୍ଷୁରୁ ଅଦୃଶ୍ୟ ॥ ୩୩
ଆକାଶେ ପୂରି ଅଛନ୍ତି ତାରକା ସକଳ ।
ସହସ୍ରାକ୍ଷ ଇନ୍ଦ୍ର ପରି ହୋନ୍ତି ଝଲମଲ ॥ ୩୪
ସହସ୍ର ନେତ୍ରେ ଗଗନ ପ୍ରକାଶଇ ଜ୍ୟୋତି ।
ଏକ୍ଷଣି ପ୍ରକାଶ ହେଲେ ବ୍ୟୋମେ ନିଶାପତି ॥ ୩୫
କୃଷ୍ଣପକ୍ଷ ନବମୀଟି ଆଜ ରଘୁନାଥ !
ତେଣୁ ଅର୍ଦ୍ଧରାତ୍ରି ଶେଷେ ଉଦେ ନିଶାକାନ୍ତ ॥ ୩୬
ଦେଖ ଗଗନ-ପ୍ରାଙ୍ଗଣୁ ତମ ହୋଏ ଦୂର ।
ଜଗ ଚରାଚର ଦିଶନ୍ତି ପ୍ରଶାନ୍ତ ନିର୍ମଳ ॥ ୩୭
ରାତ୍ରିଚର ଯକ୍ଷ ରକ୍ଷଗଣ ନିର୍ଭୟରେ ।
ବିଚରନ୍ତି ପିଶାଚଙ୍କୁ ଘେନିଣ ସଙ୍ଗରେ ॥ ୩୮
ଏତେ ଶୁଣି କଉଶିକ ହୋଇଲେ ମଉନ ।
ମନ୍ଦ୍ର ସ୍ୱରେ ସାଧୁବାଦ କଲେ ମୁନିଗଣ ॥ ୩୯

ବୋଇଲେ କୁଶିକ ବଂଶ ଜ୍ଞାନେ ଧ୍ୟାନେ ରତ ।
ଧାର୍ମିକ ପ୍ରବର ବୋଲି ଜଗତେ ବିଖ୍ୟାତ ॥ ୪୦
ତପେ ପିତାମହ ସମ ଅଟନ୍ତି ଏମାନେ ।
ତେଜସ୍ୱୀପଣରେ ଜିଣିଛନ୍ତି ବିକର୍ତ୍ତନେ ॥ ୪୧
ଆହେ ଗୁରୁବର ! ବିଶ୍ୱାମିତ୍ର ମହାମୁନି !
କୁଶିକ ବଂଶ ମଧ୍ୟରେ ଆପଣେ ଅଗ୍ରଣୀ ॥ ୪୨
ତବ ଅଗ୍ରଜା ଭଗିନୀ କୁଳର ଗୌରବ ।
ବିସ୍ତାର କରୁଅଛନ୍ତି ବଂଶ ଶ୍ରେଷ୍ଠ ଭାବ ॥ ୪୩
ମୁନିଗଣେ ପ୍ରଶଂସିତ ହୋଇ ବିଶ୍ୱାମିତ୍ର ।
ଅସ୍ତଗାମୀ ରବି ସମ ହେଲେ ନିଦ୍ରାଗତ ॥ ୪୪
ମୁନିଙ୍କ ବଚନ ଶୁଣି ଲକ୍ଷ୍ମଣ ସହିତ ।
ରଘୁକୁଳରତ୍ନ ରାମ ହୋଇଲେ ବିସ୍ମିତ ॥ ୪୫
ମନେ ମନେ ବିଶ୍ୱାମିତ୍ର ଗୁଣ କରି ଗାନ ।
ନିଦ୍ରାଦେବୀ କୋଳେ ସର୍ବେ କଲେକ ଶୟନ ॥ ୪୬
ନିଦ୍ରାରେ ଅଳସାୟିତ ଶ୍ରୀରାମଙ୍କ ପଦେ ।
ପୁରୁଷୋତ୍ତମ କଟଇ ଅତ୍ୟନ୍ତ ପ୍ରମୋଦେ ॥ ୪୭

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଚତୁସ୍ତ୍ରିଂଶ ସର୍ଗ ।



# ପଞ୍ଚତ୍ରିଂଶ ସର୍ଗ

## ଗଙ୍ଗା ଓ ଉମାଙ୍କ ଉତ୍ପତ୍ତି

ନିଶା ଅର୍ଦ୍ଧଭାଗ ଅନ୍ତେ ମୁନି ବିଶ୍ୱାମିତ୍ର ।
ନିଦ୍ରାଗଲେ ମୁନିଗଣେ ହୋଇଣ ବେଷ୍ଟିତ ॥ ୧
ଶୋଣଭଦ୍ରା କୂଳରେ ସେହୁ ବିତାଇ ରଜନୀ ।
ପ୍ରଭାତରୁ ଉଠି ଉଠାଇଲେ ରଘୁମଣି ॥ ୨

ଆହେ ରାମ ! ରାଜୀବଲୋଚନ ସୁଲକ୍ଷଣ ।
ଉଠି ବେଗେ ନିତ୍ୟକର୍ମ ସାର ସଲକ୍ଷ୍ମଣ ॥ ୩
ପ୍ରାଚୀ ସୀମନ୍ତ ବଦାନ୍ତ ଉଠିଲେଣି ଭାନୁ ।
ଉଠ ହେ ଶ୍ରୀରାମ ! ବେଗେ ଚଳିବା ଏ' ସ୍ଥାନୁ ॥ ୪
ଶୁଣି ମୁନିଙ୍କ ବଚନ ଶ୍ରୀରାମ ଲକ୍ଷ୍ମଣ ।
ବେଗେ ଶଯ୍ୟା ତେଜି କଲେ ଇଷ୍ଟ ମନ୍ତ୍ର ଧ୍ୟାନ ॥ ୫
ମୁନିଙ୍କ ଚରଣେ ନତ କରି ନିଜ ଶିର ।
ସ୍ନାନ ବନ୍ଦନାଦି ଶେଷ କଲେ ରଘୁବର ॥ ୬
ସନ୍ଧ୍ୟା ଆହ୍ନିକ ଶେଷରେ ଲକ୍ଷ୍ମଣ ସହିତ ।
ଉଭା ହେଲେ ଦଶରଥ ପାଶେ ରଘୁନାଥ ॥ ୭
ବୋଇଲେ ହେ ଗୁରୁଦେବ ! ଶୁଣ ମୋ' ବଚନ ।
ପୂର୍ଣ୍ଣଗର୍ଭା ଅଟଇ ଏ' କଲ୍ଲୋଳମା ଶୋଣ ॥ ୮
କପରି ଏହାକୁ ପାରି କରିବା ଗୋସାଇଁ !
କେଉଁ ମାର୍ଗେ ଯିବା ଏବେ କୁହ ତା' ବୁଝାଇ ॥ ୯
ଶୁଣି ଶ୍ରୀରାମ ବଚନ ମୁନି ଗାଧିସୁତ ।
ବୋଇଲେ ସଧୀରେ ଶୁଣ କଉଶଲ୍ୟା ସୁତ ! ॥ ୧୦
ଯେଉଁ ମାର୍ଗେ ମୁନିଗଣ ତରନ୍ତି ଏ' ଶୋଣ ।
ଦେଖ ସେହୁ ଏହି ସ୍ଥାନ ରାଜୀବଲୋଚନ ! ॥ ୧୧
ଜାଣିଛୁ ମୁଁ କହୁଥାଇଁ ଏ' ଘାଟ ବୃତ୍ତାନ୍ତ ।
ଏହି ସ୍ଥାନେ ପାରି ହୋଇଯିବା ନଦୀପଥ ॥ ୧୨
ମୁନିଙ୍କ ସହିତେ ସର୍ବେ ଶୋଣ ପାର ହୋଇ ।
ଗମିଲେ ସଧୀରେ ପଥେ ପଦଣ୍ଡ ମଣାଇଁ ॥ ୧୩
ଶୋଣଭଦ୍ରା ପାରି ହୋଇ ଶ୍ରୀରାମ ଲକ୍ଷ୍ମଣ ।
କାନନ ଶୋଭା ନିରେଖି କଲେକ ଗମନ ॥ ୧୪
ମହର୍ଷିଗଣ ଚଳିଲେ ଆଗପଛ ହୋଇ ।
ଦୂର ପଥ ଅତିକ୍ରମି ମଧ୍ୟାହ୍ନରେ ଯାଇ ॥ ୧୫
ପ୍ରବେଶ ହୋଇଲେ ପୁଣ୍ୟ ସଲିଳାର ତଟେ ।
ଗଙ୍ଗା ନାମେ ବିଖ୍ୟାତ ଯେ ହୋଇଛି ଜଗତେ ॥ ୧୬

ମୁନି ଜନେ ଯା’ ପବିତ୍ର ତଟେ ବାସ କରି ।
ସଦା ସୁମଙ୍ଗଳେ ଛନ୍ତି ବ୍ରହ୍ମ ନାମ ସ୍ମରି ॥ ୧୭
ପୂତ-କଲ୍ଲୋଳିନୀ ଗଙ୍ଗାତଟେ ହୋଇ ମେଳ ।
ଶ୍ରୀରାମ ହସ୍ତରେ ସ୍ପର୍ଶ କଲେ ଗଙ୍ଗାଜଳ ॥ ୧୮
ହଂସ ସାରସେ ମଣ୍ଡିତ ଦେଖି ସୁରନଦୀ ।
ପ୍ରମୁଦିତ ହେଲେ ସର୍ବ ମୁନି ବେଦବାଦୀ ॥ ୧୯
ଶ୍ରୀରାମ ଲକ୍ଷ୍ମଣ ବେନି ଦଶରଥ ଶିଷ୍ୟ ।
ସୁର-ସରିତ ଦର୍ଶନେ ଲଭିଲେ ସନ୍ତୋଷ ॥ ୨୦
ସେ ସମୟେ ସର୍ବେ ଗଙ୍ଗାତଟେ ବସିଲେ ।
ସବିଧିରେ ସ୍ନାନ ସାରି ନିତ୍ୟ କର୍ମ କଲେ ॥ ୨୧
ଦେବ-ପିତୃ-ଋଷିଗଣେ ଅରପି ତର୍ପଣ ।
ତଦନ୍ତେ ପୂଜିଲେ ହୋମେ ଦେବ ହୁତାଶନ ॥ ୨୨
ପୂଜା ଅରଚନା ଶେଷେ ମୁନି ଏକମେଳେ ।
ଶ୍ରୀରାମଲକ୍ଷ୍ମଣ ଭୁଲେ ହବିଷ୍ୟ ଭୁଞ୍ଜିଲେ ॥ ୨୩
ଭୋଜନ ଶେଷେ ସରବେ ହୋଇ ଏକମେଳି ।
ବସିଲେ ଜାହ୍ନବୀ ତଟେ ବିଶ୍ୱାମିତ୍ରେ ଘେରି । ॥ ୨୪
ସୁଖାସନେ ବସି ରାମ ରଘୁ-କୁଳନନ୍ଦନ ।
ଗାଧିସୁତେ ପୁଚ୍ଛା କଲେ କଉତୁକେ ପ୍ରଶ୍ନ । ୨୫
ଆହେ ମୁନିବର ! ଏହୁ ତ୍ରିପଥ ଗାମିନୀ ।
କପରି କେଉଁ ମାର୍ଗରେ ଚଳେ ସ୍ରୋତସ୍ୱିନୀ ॥ ୨୬
ନଦନଦୀଗଣେ ଏହୁ ଅଟେ ପୁଣ୍ୟବନ୍ତୀ ।
କେଉଁଣ ପ୍ରକାରେ ଲଭିଲ ଏ’ ସରିତ୍‌ପତି ॥ ୨୭
ତ୍ରିଲୋକପାବନୀ ଗଙ୍ଗା ଅମୃତ ଚରିତ ।
ଶୁଣାଇ ପବିତ୍ର ମୋତେ କର ଗାଧିସୁତ ! ॥ ୨୮
ଶୁଣି ଶ୍ରୀରାମ ବଚନ କୁଶିକନନ୍ଦନ ।
ବୋଲନ୍ତି ହେ ବତ୍ସ ! ତବ ଅଲୌକିକ ପ୍ରଶ୍ନ ॥ ୨୯
ପ୍ରମୁଦିତ ହେଲି ତୁମ୍ଭ ପ୍ରଶ୍ନେ ରଘୁମଣି !
କହୁଛି ମୁଁ ସୁରନଦୀ ଚରିତ ବଖାଣି ॥ ୩୦

ଆହେ ରଘୁନାଥ ! ହିମାଳୟ ଗିରିବର ।
ଗିରିରାଜ ନାମେ ଖ୍ୟାତ ଜଗତେ ଯାହାର ॥ ୩୧
ସକଳ ଧାତୁ ଦ୍ରବ୍ୟରେ ପୂର୍ଣ୍ଣ ଯା' ଶରୀର ।
ଜଗତ ହିତେ ଶୋହଇ ଯେ ପର୍ବତବର ॥ ୩୨
ତାହାଙ୍କର କନ୍ୟା ଦେନି ଜଗତ ବନ୍ଦିତା ।
ରୂପଗୁଣେ ସମସର ନାହାନ୍ତି କେ ପୁଣି ॥ ୩୩
ଏ' ଭୂମି ମଣ୍ଡଳେ ତାଙ୍କ ତୁଲେ ସରିସମ ।
ନାହିଁ ନ ଥିଲେ ନୋହିବେ ଶୋଭକୁ ଭାଜନ ॥ ୩୪
ମେରୁଗିରି ଦୁଲଣୀ ଯେ ମେନା ଶଶୀମୁଖୀ ।
ହୋଇଥିଲ ସେହୁ ଗିରିରାଜ ମନଲଖି ॥ ୩୫
ପରମା ସୁନ୍ଦରୀ ଘନ ଜଘନା ସୁନ୍ଦରୀ ।
ହିମବାନଙ୍କର ସେହୁ ଅଟେ ମନୋହାରୀ ॥ ୩୬
କହିଲ ପୁରାଣ କଥା ଶୁଣ ରଘୁମଣି !
ଦୁଇ କନ୍ୟାଙ୍କ ଅଟନ୍ତି ସେ ଗର୍ଭଧାରଣୀ ॥ ୩୭
ଗିରିରାଜଙ୍କ ଔରସୁ ମେନାଗର୍ଭୁଁ ଜାତ ।
ଜ୍ୟେଷ୍ଠା ଗଙ୍ଗା କନିଷ୍ଠା ଯେ ଉମା ନାମେ ଖ୍ୟାତ ॥ ୩୮
କେତେ କାଳ ଅନ୍ତେ ତ୍ରିଦଶ ସକଳେ ମିଳି ।
ଦେବ କାର୍ଯ୍ୟ ସିଦ୍ଧି ଲାଗି ହେଲେ କୃତାଞ୍ଜଳି ॥ ୩୯
ହିମାଳୟ ପାଶେ ଯାଇ ବିନୟେ ବୋଇଲେ ।
ଆହେ ଗିରିବର ! ଗଙ୍ଗା ଦିଅ ଆମ୍ଭ ଭୁଲେ ॥ ୪୦
ତ୍ରିପଥଗା ରୂପେ ସେହୁ କରିବ ବିହାର ।
ତ୍ରିଭୁବନ ଜନେ ଦେବ ! ନ ମଣ ବିଚାର ॥ ୪୧
ଶୁଣି ଦେବଙ୍କ ବିନୟବାଣୀ ଗିରିରାଜା ।
ସ୍ୱଚ୍ଛନ୍ଦଗାମିନୀ ସେହୁ ତିନଲୋକେ ପୂଜ୍ୟା ॥ ୪୨
ସ୍ୱଧର୍ମ ପାଳନେ ନୋହି ବିମୁଖ ରାଜନ ।
ଜାହ୍ନବୀଙ୍କୁ ସମର୍ପିଲେ ହୋଇ ତୋଷମନ ॥ ୪୩
ତେଣୁ ଜାହ୍ନବୀ ସେଦିନୁଁ ହୋଇ ସୁରନଦୀ ।
ବହିଲେ ତ୍ରିଲୋକ ମଧ୍ୟେ ବନଗିରି ଭେଦି ॥ ୪୪

ଅହେ ଶ୍ରୀରାମ ! ମେନାଙ୍କ ଦ୍ୱିତୀୟ ତନୁଜା ।
ତପସାଧନେ ନମନ୍ତି କଲେ ହରପୂଜା ॥ ୪୫
ତପୋଧନେ ସୁରକ୍ଷିତା ହୋଇ ଦେବୀ ଉମା ।
ଜାନେ ବର ଇଚ୍ଛା ସୁଖେ ହେଲେ ହରବାମା ॥ ୪୬
ଅହେ ରଘୁବର ! ଗିରିରାଜ ବେନି ସୁତା ।
ରୂପଗୁଣ କର୍ମେ ହେଲେ ଜଗତେ ବଢତା ॥ ୪୭
ସୁର ନର ନାଗ ଯକ୍ଷ ଗନ୍ଧର୍ବ କିନ୍ନର ।
ବେନି କନ୍ୟା ଚରଣେ ଖଟନ୍ତି ନିରନ୍ତର ॥ ୪୮
ସକଳ ଆଦରେ ଶିର ନୁଆଁନ୍ତି ଚରଣେ ।
ଶୁଣ ରଘୁନାଥ ! ଯାହା ଭଣିଲି ବଚନେ ॥ ୪୯
ହେ ପରମ ଗତିଶୀଳ ! ରାମ ରଘୁବର !
ଭଣିଲି ଗଙ୍ଗା ଉମାଙ୍କ ଚରିତ ଅପାର ॥ ୫୦
ତ୍ରିପଥଗାମିନୀ ଗଙ୍ଗା ରହି ସ୍ୱର୍ଗପୁରେ ।
ସୁରନଦୀ ନାମେ ତହିଁ ବହିଲେ ସାଦରେ ॥ ୫୧
ଦେବକନ୍ୟାଗଣ ତହିଁ କରୁଥା'ନ୍ତି କେଳି ।
ମର୍ତ୍ତ୍ୟେ ଆସି ହର ଶିରେ ପୁଣି ବିଜେ କରି ॥ ୫୨
ପତିତ ଜନେ ତାରିଲେ ପତିତପାବନୀ ।
ଯାହାଙ୍କ ତଟେ ବସନ୍ତି ଶତସହସ୍ର ମୁନି ॥ ୫୩
ପୁଣି କେତେକାଳ ଅନ୍ତେ ଗଲେ ରସାତଳେ ।
ତ୍ରିପଥଗାମିନୀ ନାମ ଏଣୁ ବୋଲାଇଲେ ॥ ୫୪
ଉମାଙ୍କ ବେନି ଚରଣ ରଜ ଶିରେ ଧରି ।
ଜାହ୍ନବୀ ଜଳେ ଆପଣା ଶରୀର ପଖାଳି ॥ ୫୫
ରଘୁନାଥ ପଦ୍ମପାଦେ ଦେଇଣ ସ୍ୱମତି ।
ପୁରୁଷୋତ୍ତମ ଭଣଇ ରାମାୟଣ-ଗୀତି ॥ ୫୬

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ପଞ୍ଚତ୍ରିଂଶ ସର୍ଗ ।



# ଷଟ୍‌ତ୍ରିଂଶ ସର୍ଗ

## ହରପାର୍ବତୀଙ୍କ ନିଧୁବନ କେଳି ତଥା ପୃଥିବୀ ଓ ଦେବଗଣଙ୍କୁ ଉମାଙ୍କ ଅଭିଶାପ ।

ଜାହ୍ନବୀ ଉମା ଚରିତ ଶୁଣି ରଘୁବର ।
ବିଶ୍ୱାମିତ୍ରଙ୍କୁ ପ୍ରଶଂସି ବୋଇଲେ ଏ' ଗିର ॥ ୧
ଆହେ ମୁନିବର ! ତୁମ୍ଭ ମୁଖୁଁ ଏହା ଶୁଣି ।
କୃତକୃତ୍ୟ ହେଲୁ ଆମ୍ଭେ ମନେ ମନେ ଗୁଣି ॥ ୨
ପବିତ୍ର ଚରିତ ଗଙ୍ଗା ଜନମ କାହାଣୀ ।
ଯା' ଶ୍ରବଣେ ସୁପବିତ୍ର ହୋଇବ ଧରଣୀ ॥ ୩
ସେ ରମ୍ୟ ଆଖ୍ୟାନ ଭଣି କୁଶିକନନ୍ଦନ !
ଆନନ୍ଦ ସାଗରେ ବୁଡ଼ାଇଲ ଆମ୍ଭ ମନ ॥ ୪
ଏବେ ଆମ୍ଭେ ଶୁଣିବାକୁ ବଳାଉଛୁଁ ମନ ।
କିପରି ବହିଲେ ଗଙ୍ଗା ତ୍ରିପଥଗା ନାମ ॥ ୫
ହର ସେବି ଉମା ହେଲେ ଜଗତଜନନୀ ।
ସେ କଥା ବିସ୍ତାରି କୁହ ଆହେ ମୁନିମଣି ! ॥ ୬
ସ୍ତ୍ରୀ ତପସ୍ୱିନୀଗଣେ ଧନ୍ୟା ଅଟନ୍ତି ଯେ ଗଙ୍ଗା ।
କେମନ୍ତେ ଜଗତେ ବହିଲେ ନାମ ତ୍ରିପଥଗା ॥ ୭
ତ୍ରିଲୋକ ମଧ୍ୟରେ ତିନିଧାରେ ଏ' ବହିଣ ।
କି କାର୍ଯ୍ୟ ସାଧନ୍ତି କୁହ ଆହେ ତପୋଧନ ! ॥ ୮
ତୁମ୍ଭେ ସକଳ ପୁରାଣ ଇତିହାସେ ଜ୍ଞାତା ।
ତେଣୁ ବିଶଦେ ବୁଝାଇ କୁହ ପୁଣ୍ୟଗାଥା ॥ ୯
ପଚାରନ୍ତେ ଶ୍ରୀରାମ ଏ' ଗହନ ପ୍ରଶନ ।
ମୁନି ମଧ୍ୟେ ବିଶ୍ୱାମିତ୍ର ବୋଇଲେ ବଚନ ॥ ୧୦
ଆହେ ବୀରବର ! ଏତୁ ଅପୂର୍ବ ଆଖ୍ୟାନ ।
ତୁମ୍ଭ ଅନୁରୋଧେ ସର୍ବ କରିବି ବ୍ୟାଖ୍ୟାନ ॥ ୧୧

ଗଙ୍ଗାଙ୍କ ମହିମା କଥା ଜଗତେ ପ୍ରଖ୍ୟାତ ।
ଆଦ୍ୟପ୍ରାନ୍ତ କରି ବୁଝାଇବି ସେ ଚରିତ ॥ ୧୨
ଆଦ୍ୟେ ମୁଁ କହଇ ଯାହା ଶୁଣ ଏକମନେ ।
ହରପାର୍ବତୀଙ୍କ ଦିବ୍ୟ ଚରିତ ଆଖ୍ୟାନେ ॥ ୧୩
ପାର୍ବତୀଙ୍କ ତପଫଳେ ଶିବ ହୋଇ ତୋଷ ।
ବିଭାକରି ପତ୍ନୀରୂପେ ଆଣି ନିଜ ବାସ ॥ ୧୪
ନିଧୁବନ କ୍ରୀଡ଼ାରସେ ମାତିଲେ ଶଙ୍କର ।
ଏ' ରୂପେ ବିତିଲା କାଳ ଶତ ସମ୍ବତ୍ସର ॥ ୧୫
ତଥାପି ନୋହିଲା ଉପଶମ ଇଚ୍ଛିଲା ।
ଅଥବା ଉମାଙ୍କ ଗର୍ଭେ ସନ୍ତାନ ନୋହିଲା ॥ ୧୬
ଏହା ଜାଣି ଦେବଗଣେ ବିଧାତା ସହିତେ ।
ଉମା ମହେଶ୍ୱର ନିଧୁବନ ଚିନ୍ତା ଚିତ୍ତେ ॥ ୧୭
ବିଗ୍ଭରିଲେ ରତିରସ ବିଳମ୍ବ ପ୍ରସ୍ତାବେ ।
ଯଦି ଉମା ଗର୍ଭେ ପୁତ୍ରରତନ ସମ୍ଭବେ ॥ ୧୮
ସେ ତେଜ ଧାରଣେ କ୍ଷମ ଅଛି କେ ଜଗତେ ?
ଏତେ ଗ୍ଭବି ଦେବେ ମିଳି ଶଙ୍କର ନିକଟେ ॥ ୧୯
ବୋଇଲେ ହେ ଦେବଦେବ ! ଜଗତ ପାଳକ !
ତୁମ୍ଭ ବିନା କଏ ଅଛି ଜଗତ ରକ୍ଷକ ॥ ୨୦
ଆହେ ମହାଦେବ ! ତବ ଚରଣେ ଶରଣ ।
କୋଟି କୋଟି ପ୍ରଣାମ ଜଣାଉଁ ଦେବଗଣ ॥ ୨୧
କୃପାକର କୃପାନାଥ ! ହୋଇଣ ସଦୟ ।
ଶରଣ ରକ୍ଷଣକାମା ! ଦିଅ ହେ ଅଭୟ ॥ ୨୨
ଶୁଣି ଦେବଙ୍କ ବିନୟ ବଚନ ବିଶେଷ ।
ତରହାସେ ପ୍ରତିବାକ୍ୟେ ବୋଇଲେ ମହେଶ ॥ ୨୩
ଆହେ ଦେବଗଣ ! ମନେ ଯାହା ଅଭିଳାଷ ।
କୁହ ପୂର୍ଣ୍ଣ ହେବ ତବ ସକଳ ସନ୍ଦେଶ ॥ ୨୪
ଲଭି ଅଭୟ ବଚନ କରଯୋଡ଼ ଦେବେ ।
ନିବେଦିଲେ ଯାହା ମନେ କଳ୍ପିଥିଲେ ଭାବେ ॥ ୨୫

ଆହେ ମହାଦେବ ! ଶୁଣ ଆମ୍ଭ ନିବେଦନ ।
ତୋ' ସୁରତଲୀଳାରୁ ଯେ ହୋଇବ ଜନମ ॥ ୨୬
କାହାର ସାମର୍ଥ୍ୟ ତା'ରେ କରିବ ଧାରଣ ।
ଆହେ ଜଗତ ରକ୍ଷକ ! ଘେନ ଏ' ବଚନ ॥ ୨୭
ତବ ବୀର୍ଯ୍ୟ-ତେଜ ବିନାଶିବ ତ୍ରିଜଗତ ।
ଏଣୁ ଆମ୍ଭେ ନିବେଦନ କରୁଁ ଉମାକାନ୍ତ ॥ ୨୮
ଏ' ତୋ' ଲୀଳାମୟ କ୍ରୀଡ଼ା ତେଜ ବିଶ୍ୱନାଥ !
ଗିରିଜା ସହିତେ ତପସ୍ୟାରେ ହୁଅ ରତ ॥ ୨୯
ଦେବତାଙ୍କ ସ୍ତୁତିବାଣୀ ଶୁଣି ଭୋଳାନାଥ ।
'ତଥାସ୍ତୁ' ବୋଇଲେ ତନ୍ତ୍ର ଜଗତ ତରିତ ॥ ୩୦
ପୁଣି ମନେ ମନେ ଗୁଣି ବୋଇଲେ ମହେଶ ।
ଆହେ ଧାତା ! କହେଁ ଯାହା ଶୁଣ ମୋ' ସନ୍ଦେଶ ॥ ୩୧
ଗିରିନନ୍ଦନୀ ସହିତେ ସନ୍ନିକଟ ହୋଇ ।
ମୋ' ତେଜକୁ ଆମ୍ଭେ ଦୁହେଁ ଧରିବୁଁ ଗୋସାଇଁ ॥ ୩୨
ଏଥକୁ ଶୋଚନା ତୁମ୍ଭେ ନ କର ଅମରେ !
ସୁଶାନ୍ତ ଲଭିବେ ଯେଣୁ ସର୍ବେ ଏ' ସଂସାରେ ॥ ୩୩
ତଥାପି ଯଦି ମୋ' ତେଜ ହୋଇବ ସ୍ଖଳିତ ।
କିଏ ତା' ଧାରଣେ ଅବା ହେବ ସମରଥ ॥ ୩୪
ଏତିକ ଜଣାଅ ମୋତେ ଆହେ ଦେବଗଣ !
ତୁମ୍ଭ ହିତବାଣୀ ଏବେ କଲି ମୁଁ ଗ୍ରହଣ ॥ ୩୫
ବୃଷଧ୍ୱଜ ବଚନେ ହୋଇଣ ଆନନ୍ଦିତ ।
ଦେବଗଣେ କରଯୋଡ଼ି ବୋଲନ୍ତି ଉଦନ୍ତ ॥ ୩୬
ଯଦି ତବ ବିକ୍ଷୋଭିତ ବୀର୍ଯ୍ୟ ମହାଶୟ !
ପଡ଼ଇ ଧରଣୀ ପରେ ଆହେ ଭୂତାଶ୍ରୟ ! ॥ ୩୭
ତେବେ ତା' ସକଳଧାରୀ କରିବେ ଧାରଣ ।
ତାଙ୍କ ବିନୁ କେବା ଅଛି ଜଗତ କାରଣ ॥ ୩୮
ଏସନ ବଚନ ଶୁଣି ଦେବ ଉମାସାଇଁ ।
ରମିଲେ ପରମାନନ୍ଦେ ତ୍ରିଲୋକ ଗୋସାଇଁ ॥ ୩୯

କଛୁକାଳ ଅନ୍ତେ ଶିବ ତେଜ ନିଃସରିଲା ।
ମହାବଳୀ ଶିବ ତେଜେ କାନନ ପୂରିଲା ॥ ୪୦
ଭୂମି ଗିରି ପୂରି ଯାଏଁ ହେଲା ସୁବିସ୍ତୃତ ।
ଅମରଗଣେ ତା' ଦେଖି ହୋଇଲେ ଚକିତ ॥ ୪୧
ଅଗ୍ନିଦେବଙ୍କୁ ସ୍ଵରଣ କୋଇଲେ ବଚନ ।
ଆହେ ବୈଶ୍ଵାନର ! ଯେନ ଶିବ ତେଜମାନ ॥ ୪୨
ତୁମ୍ଭ ବିନୁ ଅଛୁ କଏ ସମର୍ଥ ହେ ଦେବ !
ଶିବତେଜ ସହିବାକୁ ଭୁବନେ ସମ୍ଭବ ॥ ୪୩
ନିଜ ତେଜପୁଞ୍ଜେ ରଖ ସାଇତି ଏ' ତେଜ ।
ନୋହିଲେ ଏ' ଚରାଚର କରିବ ବର୍ଜ୍ୟ ॥ ୪୪
ଏହା ଶୁଣି ବୈଶ୍ଵାନର ହୋଇ ଆଗଭର ।
ମହାଦ୍ରୁହାପ୍ତ ତେଜକୁ ବହିଲେ ଉଦର ॥ ୪୫
ଅଗ୍ନି ସମ୍ପାକରେ ତେଜପୁଞ୍ଜ ହୋଇ ରୁଣ୍ଡ ।
ଶ୍ଵେତ ପର୍ବତ ସମାନ ଦିଶିଲା ପ୍ରଚଣ୍ଡ ॥ ୪୬
ତହିଁ ସଙ୍ଗେ ଶରବଣ ହୋଇଲା ସମ୍ଭୂତ
ଅଗ୍ନି-ବିକର୍ଷିନ ସମ ହେଲା ପ୍ରଦ୍ୟୋତିତ ॥ ୪୭
ସେ ତେଜରୁ ମହାବଳୀ ହୋଇଲେ ଜନମ ।
ଦେବର୍ଷିଗଣେ ଦେଲେ କାର୍ତ୍ତିକେୟ ନାମ ॥ ୪୮
ତଦନ୍ତେ ଅମରଗଣେ ପ୍ରସନ୍ନ ମନରେ ।
ଉମା ମହେଶ୍ଵରଙ୍କୁ ସେ ପୂଜିଲେ ସାଦରେ ॥ ୪୯
ଏହା ଜାଣି କ୍ରୋଧେ ଜଳି ଉଠିଲେ ପାର୍ବତୀ ।
ଚକ୍ଷୁବେନି ଅରୁଣାଭ ହୋଇଲା ତଡ଼ିତ ॥ ୫୦
କ୍ରୋଧାନଳେ ଅସମ୍ଭାଳ ହୋଇ ଦେବୀ ସତୀ ।
ଶାପ ଦେଇ ସୁରଗଣେ କୋଇଲେ ପାର୍ବତୀ ॥ ୫୧
ଆହେ ଦେବଗଣ ! ତୁମ୍ଭେ କଲ ଯା' ବିଘ୍ନର ।
ଭୁଞ୍ଜିବ ସେ ଫଳ ଆହେ ଅମର-ନିର୍ଜର ॥ ୫୨
ପୁତ୍ର କୋଳେ ଧରିବାକୁ ରହିଲି ମୁଁ ତୋଷେ ।
ଦେବକୃତ ବିଘ୍ନେ ବୃଥା ହୋଇଲା ତା' ଶେଷେ ॥ ୫୩

ସେ ପାପେ ହୋଇବ ତୁମ୍ଭେମାନେ ଅପୁତ୍ରିକ ।
କେବେ କୋଳେ ନ ଧରିବ କୋମଳ ବାଳକ ॥ ୫୪
ସନ୍ତାନବନ୍ତ ନୋହିବେ ତୁମ୍ଭ ପତ୍ନୀଗଣେ ।
ଏ' ଅଭିଶାପ ମୋହର ଯେବେ ସୁରଗଣେ ॥ ୫୫
ଏସନ ଭାଷିଣ କୋପେ ଗିରିରାଜକନ୍ୟା ।
ଧରଣୀକୁ ନିରେଖି ହୋଇଲେ କୋପମନା ॥ ୫୬
ବୋଇଲେ ଧରଣି ! ତୋର ଲାଗି ହେଲା ବାଧା ।
ଭୁଞ୍ଜିବୁ ସେ ଫଳାଫଳ ହୋଇ ସର୍ବଂସହା ॥ ୫୭
ଯେଣୁ ତୁହି ମଦମତ୍ତ ! ପାଞ୍ଚିଲୁ କପଟ ।
ସେ ଦୋଷେ ତୋ' ଏକରୂପ ନୋହିବ ପ୍ରକଟ ॥ ୫୮
ବହୁରୂପୀ ହୋଇ ବହୁଭୋଗ୍ୟା ତୁ ହୋଇବୁ ।
ପୁତ୍ର ସୁଖ ବହନେ ତୁ କେବେ ନ ଲଭିବୁ ॥ ୫୯
ମୋର କ୍ରୋଧେ କଳୁଷିତ ହେବ ତୋ' ଶରୀର ।
ଅନୁତାପେ ସଢ଼ିବୁ ତୁ ହରାଇ କୁମର ॥ ୬୦
ଉମାଙ୍କ କୋପେ ଶାପିତ ହେଲେ ସୁରଗଣେ ।
ଦେବେଶ୍ୱର ଶିବ ବିଷ୍ମରିଲେ ମନେ ମନେ ॥ ୬୧
ଏଠାରୁ ନ ଗଲେ ଯେବେ ସଙ୍ଗତେ ଭବାନୀ ।
ଆହୁରି କୋପେ ତର୍ଜିବ ଭୂଧରନନ୍ଦିନୀ ॥ ୬୨
ଏମନ୍ତ ବିଚାରି ମନେ ସେ ନୀଳଲୋହିତ ।
ବାରୁଣୀଦିଗେ ଚଳିଲେ ଦେବୀଙ୍କ ସମେତ ॥ ୬୩
ତହୁଁ ଚଳି ଯାଇ ଦେବଦେବ ଉମାପତି ।
ହିମାଳୟ ଉଚ୍ଚ ଶିଖେ ମିଳିଲେ ତତ୍‌ପରେ ॥ ୬୪
ତପ ଆରାଧନେ ମନ ବଳାଇଲେ ତହିଁ ।
ଅର୍ଦ୍ଧାଙ୍ଗିନୀ ଗିରିଜାଙ୍କୁ ବାମାଙ୍ଗେ ବସାଇ ॥ ୬୫
ଆହେ ଶ୍ରୀରାମ ଲକ୍ଷ୍ମଣ ବୀର ଧନୁର୍ଦ୍ଧର !
ତୁମ୍ଭ ପ୍ରଶ୍ନ ମତେ ଦେଲି ସକଳ ଉତ୍ତର ॥ ୬୬
ବଖାଣିଲି ତୁମ୍ଭ ଆଗେ ଏ' ପୁରାଣ କଥା ।
ଏ' ବାଣୀ ଶ୍ରବଣେ ଯେଣୁ ଅଟ ସାମରଥା ॥ ୬୭

ଗିରିରାଜ କନ୍ୟା ଦୁଲଣୀ ଉମା ସତୀ ।
ତାଙ୍କ ଚରିତ ଭଣିଲି ଆହେ ରଘୁପତି ॥ ୬୮
ଏ' ଉତ୍ତାରୁ କହିବି ମୁଁ ଜାହ୍ନବୀ ଚରିତ ।
ଯାହା ଶ୍ରବଣେ ପ୍ରତୋଷ ହେବ ତୁମ୍ଭ ଚିତ୍ତ ॥ ୬୯
ଉମା ମହେଶ୍ୱର ରାମ ଲକ୍ଷ୍ମଣେ ଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମାୟଣ ଭଣେ ॥ ୭୦

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଷଟ୍‌ତ୍ରିଂଶ ସର୍ଗ ।

●

## ସପ୍ତତ୍ରିଂଶ ସର୍ଗ

### ଗଙ୍ଗା ଓ କାର୍ତ୍ତିକେୟଙ୍କ ଚରିତ ।

ଦେବାଧିଦେବ ଶଙ୍କର ବସି ଯୋଗଧ୍ୟାନେ ।
ଅଚିନ୍ତ୍ୟ ଅବ୍ୟକ୍ତ ରୂପ ଚିନ୍ତିଲେ ମନନେ ॥ ୧
ବୈଶ୍ୱାନର ଆଦି ସର୍ବ ଦେବତାଏ ମିଳି ।
ବିଧାତା ପାଦେ ନମିଲେ ନୁଆଇଁ ମଉଳି ॥ ୨
ବୋଇଲେ ହେ ପିତା ! ଶୁଣ ଆମ୍ଭର ବଚନ ।
ଆମ୍ଭ ଯୁଦ୍ଧଜୟ ଲଗି ଦିଅ ସେନାପତି ॥ ୩
ଆହେ ରାମ ରଘୁନାଥ ! ରଘୁବଂଶ ମଣି !
ଇନ୍ଦ୍ର, ଚନ୍ଦ୍ର, ବୈଶ୍ୱାନର ଆଦି ଦେବେ ପୁଣି ॥ ୪
କରଯୋଡ଼ି ବ୍ରହ୍ମାରେ ଜଣାନ୍ତି ବିନୟରେ ।
ହେନା ହେଉ ଆମ୍ଭ ବାଣୀ ଜଣାଉଁ ଯହୁରେ ॥ ୫
ପୂର୍ବେ ଦେବ ଉମାପତି ଦେଲେ ଯେଉଁ ତେଜ ।
ସେ ତେଜ ବଳେ ବଢ଼ିବ ଦେବବଳ ଓଜ ॥ ୬
ସେ ଦେବାଧିଦେବ ଏବେ ଅଛନ୍ତି ଯୋଗରେ ।
ଆହେ ପିତାମହ ! ତେଣୁ ଜଣାଉଁ ତୁମ୍ଭରେ ॥ ୭
ହେ ବିଧାତା ! ହେଲ ଆମ୍ଭ ଦୀନ ନିବେଦନ ।
ଯା' ଉଚିତ କାର୍ଯ୍ୟ ତାହା କରନ୍ତୁ ଆପଣ ॥ ୮

ଯେଣୁ ପ୍ରଜାପତି ରୂପେ ଅଟ ହେ ଆଶ୍ରୟ ।
ଆମ୍ଭ ନିବେଦନ ଶୁଣି କରଅ ଅଭୟ ॥ ୯
ଦେବଗଣ ବିନୟ ବଚନେ ପିତାମହ ।
ବୋଲନ୍ତି ସୁଦୟା ବନ୍ତ ଫିଟାଇ ସନ୍ଦେହ ॥ ୧୦
ମଧୁର କୋମଳ ବାଣୀ ଅମୃତ ସମାନ ।
ଯା' ଶୁଣି ପ୍ରମୋଦେ ତୋଷ ହେଲେ ଦେବଗଣ ॥ ୧୧
ଆହେ ସୁରଗଣ ! ଶୁଣ ମୋହର ବଚନ ।
ଅମୋଘ ଅଟଇ ବତ୍ସ ! ସତୀଙ୍କ କଥନ ॥ ୧୨
ଯେଉଁ ଶାପ ଦେଇଛନ୍ତି ଶିବଙ୍କ ଘରଣୀ ।
ଅନ୍ୟଥା ନୋହିବ କେବେ କହୁଛି ମୁଁ ପୁଣି ॥ ୧୩
ଦେବସ୍ତ୍ରୀମାନଙ୍କର ନୋହିବ ସନ୍ତାନ ।
ଏଥିରେ ସନ୍ଦେହ ନାହିଁ ହେ ଅମରଗଣ ! ॥ ୧୪
କହୁଅଛି ଶୁଣ ଏବେ ରହସ୍ୟ ବଚନ ।
ଅଗ୍ନି ପାଶେ ଅଛି ଯେଉଁ ଶିବ ବୀର୍ଯ୍ୟମାନ ॥ ୧୫
ତାହା ନେଇ ଆକାଶ ଗଙ୍ଗାରେ ପୁଣି ଥୁଅ ।
ତହିଁରୁ ଜାତ ହୋଇବ ବଳିଷ୍ଠ ତନୟ ॥ ୧୬
ସେ ପୁତ୍ର ହୋଇବ କାଳେ ଦେବଙ୍କ ସେନାନୀ ।
ସକଳ ରାକ୍ଷସ କୁଳ ଅନାୟାସେ ଜିଣି ॥ ୧୭
ଏହା ଶୁଣି ସୁରଗଣ ବୋଲନ୍ତି ସଧୀରେ ।
ଗଙ୍ଗା କିମ୍ପା ଆମ୍ଭ ବୋଲ ମାନିବେ ସତ୍ୱରେ ॥ ୧୮
ଏସନ ଦେବଙ୍କ ବାଣୀ ଶୁଣି ପ୍ରଜାନାଥ ।
କହନ୍ତି ମଧୁରେ ସବୁ ବୁଝାଇ ଉଦନ୍ତ ॥ ୧୯
ଆହେ ସୁରକୁଳ ! ଶୁଣ ନିଦାନ ବଚନ ।
ଗିରିରାଜଙ୍କର ଜ୍ୟେଷ୍ଠା କନ୍ୟା ଗଙ୍ଗା ଜାଣ ॥ ୨୦
ବିଶେଷେ ଅଟନ୍ତି ସେଣୁ ଅଗ୍ରଜା ଜାହ୍ନବୀ ।
ଅନୁଜା ପୁତ୍ରକୁ ସ୍ନେହେ ପାଳିବେ ସେ ଦେବୀ ॥ ୨୧
ଏହା ଶୁଣିଲେ ଭବାନୀ ଲଭିବେ ସନ୍ତୋଷ ।
ଏଥିରେ ସନ୍ଦେହ ନାହିଁ ଶୁଣ ହେ ତ୍ରିଦଶ ! ॥ ୨୨

ହେ ରଘୁନନ୍ଦନ ରାମ ! ଶୁଣି ଧାତା ବାଣୀ ।
ସୁରଗଣେ କୃତକୃତ୍ୟ ହୋଇ ଯୋଡ଼ି ପାଣି ॥ ୨୩
ପ୍ରଣମିଲେ କୃଶପାଣି ଅଭୟ ଚରଣେ ।
ପାଦ୍ୟ ଅର୍ଘ୍ୟ ପୂଜା କରି ଆନନ୍ଦିତ ମନେ ॥ ୨୪
ଶୁଭାଶିଷ ଲଭି ତହୁଁ ଆସି ଦେବଗଣ ।
ପ୍ରବେଶିଲେ କଇଳାସେ ଯହିଁ ହୁତାଶନ ॥ ୨୫
ଦିବ୍ୟ ଧାତୁରେ ମଣ୍ଡିତ କଇଳାଶ ଗିରି ।
ସଦାଶିବ ତପୋଭୂମି ମୁଗ୍ଧମନୋହାରୀ ॥ ୨୬
ଅଗ୍ନିଦେବ ପାଶେ ମିଳି ସକଳ ତ୍ରିଦଶ ।
ବୋଲନ୍ତି ହେ ଧନଞ୍ଜୟ ! ଏ' ଧାତା ସନ୍ଦେଶ ॥ ୨୭
ଦେବଙ୍କ କଲ୍ୟାଣକାରୀ ସୁଚିତ୍ତରେ ଘେନ ।
ଶୁଭକାର୍ଯ୍ୟେ ବିଳମ୍ବ ନ କର ହୁତାଶନ ॥ ୨୮
ରୁଦ୍ରଙ୍କର ଯେଉଁ ତେଜ ଧରିଛ ଗୋସାଇଁ ।
ଆକାଶ ଗଙ୍ଗାରେ ତାହା ଥୋଇ ଆସ ନେଇ ॥ ୨୯
ସେ ଗର୍ଭୁଁ ଜାତ ଲଭିବ ଯେବଣ ନନ୍ଦନ ।
କାଳେ ଦେବ ସେନାପତି ହୋଇବ ସେ ପୁଣ ॥ ୩୦
ଆହେ ହୁତାଶନ ! ଏଣୁ ସନ୍ଦେହ ନ କର ।
ଘେନ ଯାହା ଆଜ୍ଞା ଦେଇଛନ୍ତି ବେଦବର ॥ ୩୧
ଶୁଣି ଅମରଗଣଙ୍କ ସ୍ୱରୂପ ବଚନ ।
ବାହାରିଲେ ସ୍ୱାହାପତି ହୋଇ ହୃଷ୍ଟମନ ॥ ୩୨
ପ୍ରବେଶ ହୋଇଣ ଅଗ୍ନି ଗଙ୍ଗାନଦୀ କୂଳେ ।
କରଯୋଡ଼ି ବିନୟରେ ବୋଇଲେ ସୁଧୀରେ ॥ ୩୩
ଆହେ ଦେବ ତ୍ରିଲୋକ ପାବନ ଭଗବତ !
ସକଳ ଦେବଙ୍କ ହିତେ ଶୁଣ ମୋ' ବିନତ ॥ ୩୪
ସଦାଶିବ ତେଜ ଏହୁ ସ୍ୱଗର୍ଭେ ଧାରଣ ।
କର ଦେବ ! ହେବ ଏଥୁଁ ଅଶେଷ କଲ୍ୟାଣ ॥ ୩୫
ଏଥିରୁ ଜନ୍ମିବ ଯେଉଁ ଉତ୍ତମ ନନ୍ଦନ ।
ଦେବବଳେ ସେନାପତି ହୋଇବ ସେ ପୁଣ ॥ ୩୬

ଏଥକୁ ବସୁର ମାତ ! ଘେନ ମୋ ବଚନ ।
ଏ' ପୁସ ହୋଇବ କାଳେ ଜଗତବନ୍ଦନ ॥ ୩୭
ଶୁଣି ହୁତାଶନ ବାଣୀ ଜାହ୍ନବୀ ହରଷେ ।
ଆବିର୍ଭୂତା ହେଲେ ତହିଁ ଅପରୂପ ବେଶେ ॥ ୩୮
ସେ ରୂପ ସୁଷମା ଅବଲୋକ ହୁତାଶନ ।
ଶିବ ତେଜ ଗଙ୍ଗା ଘଟରେ ମେଲିଦେଲେ ପୁଣ ॥ ୩୯
ଆହେ ଭୂପଧାସ୍ୱ ! ଏଥୁଁ ଅନ୍ତେ ଯେ ଉଦନ୍ତ ।
କହୁଛି ସଧୀରେ ଶୁଣ ହୋଇ ଏକ ଚିତ୍ତ ॥ ୪୦
ଶିବ ତେଜ ଧାରଣେ ଜାହ୍ନବୀ ପୁଣ୍ୟବନ୍ତୀ ।
ହୋଇଲେ ସୁପୂର୍ଣ୍ଣ ଗର୍ଭା ମନେ ବହି ପ୍ରୀତି ॥ ୪୧
ସ୍ରୋତସ୍ୱିନୀ ସ୍ଥିର ହୋଇ ରହିଲେ ସେ ସ୍ଥାନେ ।
ଅସମ୍ଭାଳେ ବୋଲନ୍ତି ଅଗ୍ନିର ସନ୍ନିଧାନେ ॥ ୪୨
ଆହେ ଦେବ ! ତୁମ୍ଭ ବୋଲେ ଘେନିଲି ଏ' ତେଜେ ।
ଏ' ସବାଙ୍ଗୁଁ ଶରୀର ମୋ' ହୁଅଇ ଦାହ୍ୟ ॥ ୪୩
ଏ' ଗୁରୁଭାର ଗ୍ରହଣେ ନୋହେ ମୁଁ ସମର୍ଥ ।
କାହିଁ ସ୍ଥାପିବ ଏ' ତେଜ କୁହ ସ୍ୱାହାକାନ୍ତ ॥ ୪୪
ଦେଖ ମୋ' ଶୀତଳ ଜଳ ତେଜ ଜନ ଗୁଣ ।
କୋଟି ସୂର୍ଯ୍ୟ ରଶ୍ମି ସମ ଦହେ ମୋ' ପରାଣ ॥ ୪୫
ଚେତନାହତ ମୋ' ହେଉଅଛୁ ଅଗ୍ନିଦେବ ।
ଏ' ଗର୍ଭଧାରଣ ଅଟେ ଅତି ଅସମ୍ଭବ ॥ ୪୬
ଗଙ୍ଗାଙ୍କ ବିକଳ ଦେଖି ଦେବ ହୁତାଶନ ।
ବୋଇଲେ ଦୁଃଖିତ ମନେ ଘେନ ମୋ" ବଚନ ॥ ୪୭
ହିମାଳୟ ପରବତ ପରେ ଉଭା ହୋଇ ।
କାନନର ଏକ ଭାଗେ ଥୁଅ ଏହା ନେଇ ॥ ୪୮
ଏଥୁଁ ଆନ ଉପାୟ ନ ଦିଶଇ ଜାହ୍ନବି !
ଆଜ୍ ଯା' ଘଟିବ ତାହା ନ ପାରଇ ଭାବି ॥ ୪୯
ଅଗ୍ନିଙ୍କ ବଚନ ଶୁଣି ତୋଷେ ଦେବୀ ଗଙ୍ଗା ।
ଆଶ୍ୱସ୍ତ ଲଭିଲେ ମନେ ଚଞ୍ଚଳ ତରଙ୍ଗା ॥ ୫୦

ଆହେ ରଘୁନାଥ ! ଶୁଣ ଅପୂର୍ବ ଚରିତ ।
ଶୀତଳବାହିନୀ ଗଙ୍ଗା ହୋଇଣ ଦ୍ରୁପଦ ॥ ୫୧

ସେ ଗର୍ଭକୁ ନେଇ ହିମାଳୟ ଉଦ୍ୟ ବନେ ।
ସ୍ଥାପି ଲେଉଟିଲେ ଦେବୀ ହରଷିତ ମନେ ॥ ୫୨
କାନନ ପ୍ରଦେଶେ ଯହୁଁ କଲେ ସେ ସ୍ଥାପନ ।
ଜାମ୍ବୁନଦ ସ୍ୱର୍ଣ୍ଣସମ ଦିଶିଲା ତା' ବର୍ଣ୍ଣ ॥ ୫୩
ସୁବର୍ଣ୍ଣଗିରି ଯୋନିରୁ ଗଙ୍ଗା ଯେଣୁ ଜାତ ।
କାଞ୍ଚନମୟ ଦିଶିଲା ତା' ଗର୍ଭସମ୍ଭୂତ ॥ ୫୪
ଥୋଇଲେ ଯେଉଁଣେ ଗଙ୍ଗେ ଶିବ ତେଜ ଦେବୀ ॥
ସ୍ୱର୍ଣ୍ଣସମ ଦିଶିଲା ସେ ସ୍ଥାନ ପୃଥିବୀ ॥ ୫୫
ବୃକ୍ଷ ଲତା ଗୁଳ୍ମ ଶିଳା ସବୁ ହେଲେ ସ୍ୱର୍ଣ୍ଣ ।
ଧବଳତଳେ ପ୍ରକଟିଲା କନକବରଣ ॥ ୫୬
ତା'ର ତଳ୍ପ ପାଶ ହେଲା ରଜତ ସମାନ ।
ଅପର ଭୂମି ହୋଇଲା ତମ୍ବା ପରି ବର୍ଣ୍ଣ ॥ ୫୭
ଏ ରୂପେ ସକଳସ୍ଥାନ ହେଲା ଧାତୁମୟ ।
ସେ ତେଜପ୍ରଭାର ଗୁଣ ଶୁଣ ମହାଶୟ ! ॥ ୫୮
ସେ ସ୍ଥାନ ପଙ୍କରୁ ଲୌହ ହୋଇଲା ସମ୍ଭୂତ ।
ସକଳ ଧାତୁରେ ପରିପୂର୍ଣ୍ଣ ପରବତ ॥ ୫୯
ହିମଗିରି ଯାକ ମହାତେଜେ ପ୍ରକାଶିଲା ।
କନକ ବରନ ଆଭା ସର୍ବତ୍ର ଦିଶିଲା ॥ ୬୦
ସେହିଦିନୁଁ ସ୍ୱର୍ଣ୍ଣ ନାମ ହେଲା ଜାତରୂପ ।
କହିଲି ପ୍ରାଚୀନ କଥା ସକଳ ସ୍ୱରୂପ ॥ ୬୧
ଶିବ ତେଜୁଁ କୁମର ଜନ୍ମିଲା ତେଜୋମୟ'ନ ।
ଦେହ କାନ୍ତିରେ ଝଲସି ଉଠିଲା ସେ ସ୍ଥାନ ॥ ୬୨
ତହୁଁ ଦେବଗଣେ ଧୀରେ ବିଶ୍ୱର ମନରେ ।
କୃତ୍ତିକାଙ୍କ ଛ'ଜଣଙ୍କୁ ଆଣିଲେ ସତ୍ୱରେ ॥ ୬୩
ଧାତ୍ରୀରୂପେ ନିଯୋଜିଲେ ଯହୁଁ ଦକ୍ଷଗଣେ ।
ବାଳକକୁ ତୋଷ ସେତୁ କଲେ କ୍ଷୀରପାନେ ॥ ୬୪
ଏ' ଆମ୍ଭ କୁମର ବୋଲି ବିଶ୍ୱରି ସକଳ ।
ସନ୍ତୋଷରେ ନିଜ ସ୍ତନ୍ୟ ପିଆଇଲେ କ୍ଷୀର ॥ ୬୫

ତା’ ଦେଖି ପ୍ରମୋଦ ଚିତ୍ତେ ସୁରଗୁରୁବର ।
ବିଧାନେ ନାମ ରଖିଲେ କାର୍ତ୍ତିକେୟ ତା’ର ॥ ୬୬

ପାର୍ବତୀଙ୍କ ଠାରୁ ଯେଣୁ ହୋଇଛନ୍ତି ସ୍କନ୍ଦିତ ।
ସେ କୁମର ସ୍କନ୍ଦ ନାମେ ଜଗତେ ବିଦିତ ॥ ୬୭

ସକଳ ସୁଷମା ଅଙ୍ଗେ ହୁଅନ୍ତେ ମଣ୍ଡିତ ।
ମହେଶ ତନୟ ହେଲ ଭୁବନେ ସୁଖ୍ୟାତ ॥ ୬୮

ଅଗ୍ନି ସମ ତେଜଶାଳୀ ହୋଇଲା କୁମର ।
ଷଡ଼ ମାତା ମିଳି ତାକୁ ପିଆଇଲେ କ୍ଷୀର ॥ ୬୯

ତହୁଁ ଷଡ଼ମୁଖ ତା’ର ହୋଇଲା ଉଦୟ ।
ଷଣ୍ମୁଖ ନାମେ ସେ ପୁତ୍ର ଲଭିଲା ଅଭୟ ॥ ୭୦

ଶୁକ୍ଳପକ୍ଷ ଚନ୍ଦ୍ର ସମ ବଢ଼ିଲା ତନୟ ।
ପରାକ୍ରମ ଦେଖି ସ୍ତବ୍ଧ ହେଲେ ଦେବଚୟ ॥ ୭୧

କିଛିଦିନ ଅନ୍ତେ ମିଳି ସର୍ବ ଦେବଗଣେ ।
ସୁର-ସେନାନୀ ପଦରେ ବସିଲେ ନନ୍ଦନେ ॥ ୭୨

ସେନାପତି ପଦେ ଯହୁଁ ହେଲା ଅଭିଷିକ୍ତ ।
ଅମରଗଣେ ନିର୍ଭୟେ ହୋଇଲେ ଆଶ୍ୱସ୍ତ ॥ ୭୩

ଆହେ ରାମ ! ବଖାଣିଲି ଏ’ ରୂପେ ପୁରାଣ ।
ସ୍କନ୍ଦଜନ୍ମ ଚରିତ ଏ’ ଅମୃତ ସମାନ ॥ ୭୪

ଯେ ଶୁଣଇ ଏ’ ଚରିତ ନିର୍ମଳ ମନରେ ।
ପୁତ୍ର ପୌତ୍ର ଧନ ଧାନ୍ୟ ଲଭେ ସେ ଝଟରେ ॥ ୭୫

ଇହଲୋକେ ସୁଖଶାନ୍ତି ଲଭଇ ପୌରୁଷ ।
ଅନ୍ତେ ସ୍କନ୍ଦଲୋକେ ସେହୁ ହୁଅଇ ପ୍ରବେଶ ॥ ୭୬

ଆହେ ତାଡ଼କାରି ରାମ ! ଶୁଣି ଏ’ ଚରିତ ।
ନାରୀହତ୍ୟା ପାପୁଁ ତୁମ୍ଭେ ହୋଇଲ ମୁକତ ॥ ୭୭

ଭବାନୀତନୟ ପାଦେ ନମି ବାରମ୍ବାର ।
ପୁରୁଷୋତ୍ତମ ରଚଇ ରାମକଥାସାର ॥ ୭୮

ଇତି ଶ୍ରୀଆର୍ଷ ରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତତ୍ରିଂଶ ସର୍ଗ ।



# ଅଷ୍ଟତ୍ରିଂଶ ସର୍ଗ

## ରାଜା ସଗରଙ୍କ ପୁତ୍ରଜନ୍ମ ଓ ଅଶ୍ୱମେଧ ଯାଗ ।

ମହାମୁନି ବିଶ୍ୱାମିତ୍ର ମଧୁର ବଚନେ ।
ଗଙ୍ଗା ଆଖ୍ୟାନ ଶୁଣାଇ ବୋଲନ୍ତି ସୁମନେ ॥ ୧
ଆହେ ରାମ ! ଅଯୋଧ୍ୟା ନଗରେ ନୃପ ଏକ ।
ଥିଲେ ବହୁକାଳ ପୂର୍ବେ ପରମ ଧାର୍ମିକ ॥ ୨
ସଗର ନାମରେ ସେହୁ ଜଗତେ ବିଖ୍ୟାତ ।
ନ ଥିଲା ତାହାଙ୍କ ବଂଶ ରକ୍ଷଣେ ସୁପୁତ୍ର ॥ ୩
ପୁତ୍ର କାମନାରେ ନୃପ ସଦା ବିଚଳିତ ।
ହୋଇ କରୁଥିଲେ ନିତ୍ୟ ଦାନ ପୂଜା ବ୍ରତ ॥ ୪
ବିଦର୍ଭ ଦେଶର ରାଜଜେମା ସୁଲକ୍ଷଣୀ ।
ସର୍ବଗୁଣେ କୁଶଳା ସେ ନାମ ତା' କେଶିନୀ ॥ ୫
ସେ ସୁନ୍ଦରୀ ସଗରଙ୍କ ଆଦ୍ୟ ପରିଣୀତା ।
ଦ୍ୱିତୀୟା ମହିଷୀ ତାଙ୍କ କଶ୍ୟପ ଦୁହିତା ॥ ୬
ସୁମତି ନାମ ଜେମାର ସର୍ବ ଗୁଣମଣି ।
ବିଶେଷେ ଅଟଇ ସେହୁ ଗରୁଡ଼ ଭଗିନୀ ॥ ୭
ପୁତ୍ରକାମୀ ହୋଇ ସୂର୍ଯ୍ୟବଂଶୀ ନୃପବର ।
ବେନି ପତ୍ନୀ ଘେନି ସଙ୍ଗେ ଚଳିଲେ ସଗର ॥ ୮
ହିମାଳୟ ଗିରିବରେ ଏକଇ ଶିଖର ।
ଭୃଗୁ-ପ୍ରସ୍ରବଣ ନାମ ଅଟଇ ତାହାର ॥ ୯
ସେ ଶିଖରେ ବସି ଉଗ୍ର ତପ ଆଚରିଲେ ।
ତପସ୍ୟା ସାଧନେ ଶତବର୍ଷ ବିତିଗଲେ ॥ ୧୦
ତଦନ୍ତେ ମହର୍ଷିଭୃଗୁ ହୋଇଣ ସନ୍ତୋଷ ।
ସତ୍ୟବାଦୀ କୃପାନିଧି ହେଲେ ପରବେଶ ॥ ୧୧
ପ୍ରସନ୍ନମାନସେ ଋଷି ବୋଇଲେ ବଚନ ।
ତୁମ୍ଭ ତପୋବଳେ ନୃପ ! ହେଲି ମୋଦମଗ୍ନ ॥ ୧୨

ପୁତ୍ର କାମନାରେ ତୁମ୍ଭେ ଆରମ୍ଭିଛ ତପ ।
ବହୁ ସନ୍ତାନ ଲଭିବ ଆପଣା ସ୍ୱରୂପ ॥ ୧୩
ପୁତ୍ରଙ୍କ ପାଇଁ ଲଭିବ ଅଶେଷ ଗୌରବ ।
ଏ' କ୍ଷିତିମଣ୍ଡଳେ ତୁମ୍ଭ ଯଶ ପ୍ରକଟିବ ॥ ୧୪
ଅହେ ନୃପ ! କହୁଅଛୁଁ ନିଦାନ ବଚନ ।
ଏକ ରାଣୀ ଲଭିବ ଯେ ଏକଇ ନନ୍ଦନ ॥ ୧୫
ଅପର ହୋଇବ ସସ୍ର ପୁତ୍ରଙ୍କ ଜନମ ।
ଏମନ୍ତ କପାଳେ ତବ ଅଛି ନୃପମଣି ! ॥ ୧୬
ଏହା ଶୁଣି ନୃପବର ସାନନ୍ଦ ମାନସେ ।
ରାଣୀଙ୍କ ସମେତ ପୂଜିଲେ ସେ ମୁନିଙ୍କଶେ ॥ ୧୭
ଅନେକ ବିନୋଦ ହୋଇ ବୋଇଲେ ରାଜନ ।
ଆହେ ମୁନି ! ଶୁଣି ତବ ଅମିୟ ବଚନ ॥ ୧୮
ଆନନ୍ଦିତ ହେଲି ମୁହିଁ ରାଣୀଙ୍କ ସମେତ ।
କେଉଁ ରାଣୀ ପ୍ରସବିବ କୁହ କେଉଁ ପୁତ୍ର ॥ ୧୯
କା' କୋଳ ମଣ୍ଡିଣ ଏକପୁତ୍ର ଉପୁଜିବ ।
କେଉଁ ରାଣୀ ବହୁ ସୁତ ଜନମ ହୋଇବ ॥ ୨୦
ବୁଝାଇ କୁହ ହେ ମୁନିବର ! ସୁଚିତ୍ତରେ ।
ଯା' ଶୁଣି ମନ ମଜ୍ଜିବ ଆନନ୍ଦ ସାଗରେ ॥ ୨୧
ତାହା ଶୁଣି ଶୁଦ୍ଧମନା ପରମଧାର୍ମିକ ।
ମହର୍ଷି ଭୃଗୁ ବୋଲନ୍ତି ହେ ନୃପତିଳକ ! ॥ ୨୨
ଇଚ୍ଛାମତେ ବେନିରାଣୀ ଘେନନ୍ତୁ ଏ' ବର ।
କା' କୋଳେ ଜନ୍ମିବ ଏକପୁତ୍ର ଗୁଣାକର ॥ ୨୩
ସେହି କୁମର ହେଇବ ବଂଶ କର୍ଣ୍ଣଧାର ।
ତା' ଯୋଗୁଁ ହୋଇବ ସୂର୍ଯ୍ୟବଂଶ ସମୁଜ୍ଜ୍ୱଳ ॥ ୨୪
ଅନ୍ୟ ରାଣୀ ଗର୍ଭୁଁ ଯେଉଁ କୁମର ହୋଇବେ ।
ମହାବୀର କୀର୍ତ୍ତିଶାଳୀ ଷଷ୍ଠି ବୋଲାଇବେ ॥ ୨୫
ଇଚ୍ଛାମତେ ବେନି ରାଣୀ ଘେନନ୍ତୁ ଏ' ବର ।
ଯେ ଯାହା ଉଚିତ ବୋଲି ଭାବନ୍ତି ମନର ॥ ୨୬

ମୁନିଙ୍କ ବଚନ ଶୁଣି ବିଦର୍ଭ ନନ୍ଦିନୀ ।
ଦୁଇ କରଯୋଡ଼ି ଧୀରେ ବୋଇଲା କେଶିନୀ ॥ ୨୭
ବଂଶ କୀର୍ତ୍ତିକର ଏକ ପୁତ୍ର ଦେଉ ମୋର ।
ତା' ଶୁଣି ସୁମତି ବୋଲେ ହରଷେ ଉତ୍ତର ॥ ୨୮
ଏମନ୍ତ ବର ବିଧାନ କର ମୁନିମଣି !
ଷାଠିଏ ସହସ୍ର ପୁତ୍ରର ହୋଇବି ଜନନୀ ॥ ୨୯
ରୂପ ଗୁଣ ପରାକ୍ରମେ ସକଳେ କୁଶଳ ।
ହୋଇବେ ଧରାରେ ସ୍ଥାପି କୀର୍ତ୍ତି ସମୁଜ୍ଜ୍ୱଳ ॥ ୩୦
ତହୁଁ ପରମ ଆନନ୍ଦେ ସଗର ରାଜନ ।
ପତ୍ନୀ ସହିତେ ମୁନିଙ୍କି କଲେ ପ୍ରଦକ୍ଷିଣ ॥ ୩୧
ବଦନ୍ତେ ହେ ରାମଚନ୍ଦ୍ର ରାଜୀବଲୋଚନ !
ସଗର ନୃପ ନଗରେ କଲେକ ଗମନ ॥ ୩୨
କଛୁ କାଳ ଅନ୍ତେ କେଶିନୀର ହେଲା ସୁତ ।
ଅସମଞ୍ଜସ ନାମେ ସେ ହୋଇଲା ବିଖ୍ୟାତ ॥ ୩୩
ସାନରାଣୀ ସୁମତିର ଗର୍ଭୋଦୟ ହେଲା ।
ତୁମ୍ବି ପ୍ରମାଣେ ସେ ଗର୍ଭପିଣ୍ଡ ପ୍ରସବିଲା ॥ ୩୪
ସେ ତୁମ୍ବି ବିଦାରି ଷଷ୍ଟି ସହସ୍ର କୁମର ।
ଜନମ ଲଭିଲେ ଶୁଣ ଆହେ ରଘୁବର ! ॥ ୩୫
ନବକୁମରମାନଙ୍କୁ ସ୍ଥାପି ଘୃତପାତ୍ରେ ।
ଧାତ୍ରୀଗଣ ପାଳିଲେକ ପରମ ଯତନେ ॥ ୩୬
ଧୀରେ ଧୀରେ ପୁତ୍ରଗଣ ଲଭି ଯୁବାକାଳ ।
ସକଳ ବିଦ୍ୟା ସାଧନେ ହୋଇଲେ କୁଶଳ ॥ ୩୭
ଅସମଞ୍ଜସ ଅଟଇ କେଶିନୀର ସୁତ ।
ବାଳକାଳୁ ଦୁଷ୍ଟ ପଣେ ହୋଇଲା ବିଖ୍ୟାତ ॥ ୩୮
ଯୌବନ ଧନ ପ୍ରଭୁତ୍ୱ ଏକତ୍ର ହୋଇଣ ।
ଅବିବେକ ପଣେ ସେହୁ ହୋଇଲା ପ୍ରଧାନ ॥ ୩୯
ବାଳକୁମରଗଣଙ୍କୁ ଧରି ବଳାତ୍କାରେ ।
ସରଯୂ ନଦୀକୁ ଫିଙ୍ଗି ଦିଅଇ ନିଷ୍ଠୁରେ ॥ ୪୦
ଶୁଣି କୁମରଗଣଙ୍କ କରୁଣ କ୍ରନ୍ଦନ ।
କରତାଳି ଦେଇ ହସୁଥାଇ ସେ ଦୁର୍ଜନ ॥ ୪୧

ଏମନ୍ତ ଦୁଷ୍କର୍ମ ଆଚରନ୍ତି ନିତ୍ୟପ୍ରତି ।
ଜନେ ବ୍ୟାକୁଳ ହୋଇଲେ ଦେଖି ତା' ଦୁର୍ମତି ॥ ୪୨

ଜ୍ୟେଷ୍ଠ ସୁତର ଏସନ ଦେଖି ଆଚରଣ ।
ମନେ ମନେ ବ୍ୟାକୁଳ ହୋଇଲେ ନୃପଗଣ ॥ ୪୩

ଅନେକ ମତେ ତାହାକୁ କଲେକ ବାରଣ ।
ଦୁଷ୍ଟ ପୁତ୍ର ନ ତେଜିଲା ପାପ ଆଚରଣ ॥ ୪୪

ପ୍ରତିଦିନ ନୂଆ ନୂଆ ଦୁଷ୍କର୍ମ ଆଚରି ।
ଅପଯଶ ଲଭିଲା ସତତ ଅବଶ୍ୟରି ॥ ୪୫

ପଡ଼ିଲା ଚହଳ ଅଯୋଧ୍ୟାର ଘରେ ଘରେ ।
ନଗ୍ର ଗୁଣ୍ଡ ପଳାଇଲେ ଥୋକେ ଗ୍ରାମାନ୍ତରେ ॥ ୪୬

ସକଳ ସଭ୍ୟ ଶଙ୍କେ ହୋଇଣ ବିକଳ ।
ନୃପ ଆଗେ ଜଣାଇଲେ ହୋଇ ଏକମେଳ ॥ ୪୭

ତହୁଁ ସଗର ରାଜନ ହୋଇ କ୍ରୋଧ ମନ ।
କୁପୁତ୍ର ଅସମଞ୍ଜସେ କଲେ ନିର୍ବାସନ ॥ ୪୮

ଅସମଞ୍ଜସ କୁମର ନାମ ଅଂଶୁମାନ ।
ରୂପଗୁଣ ଚରିତ୍ରେ ସେ ହୋଇଲା ମହାନ ॥ ୪୯

ବୀରପଣେ ଅଂଶୁମାନ ଲଭିଲା କୁଶଳ ।
ମଧୁର ପ୍ରିୟ ବଚନେ ମୋହିଲା ସକଳ ॥ ୫୦

କେତେ କାଳ ଅନ୍ତେ ଅଯୋଧ୍ୟାର ନୃପବର ।
ଯଜ୍ଞ କରିବାକୁ ମନେ ବିଚାରି ସଗର ॥ ୫୧

କୁଳଗୁରୁ ପ୍ରବେଷ୍ଟତେ ବସାଇ ଆସନେ ।
ମନ୍ତ୍ରଣା କଲେ ସାଧିବେ ଯଜ୍ଞକର୍ମ ଯେହ୍ନେ ॥ ୫୨

ଆହେ ରାମ ଲକ୍ଷ୍ମଣ ସକଳ ମୁନିଗଣ !
ଶୁଣିଲତ ସଗର ବଂଶର ଉପାଖ୍ୟାନ ॥ ୫୩

ଏ' ଉତ୍ତରୁ ଯାହା ହେଲା ଶୁଣ ହେ ସଧୀରେ ।
ସଗର ସୁତଙ୍କ ଗୁଣକର୍ମ ସୁଚରିତ୍ରେ ॥ ୫୪

ଭୃଗୁ-ବିଶ୍ୱାମିତ୍ର ରାମ ସୁମିତ୍ରାନନ୍ଦନ ।
ପାଦେ ପ୍ରଣମି ଭଣଇ ଶ୍ରୀପୁରୁଷୋତ୍ତମ ॥ ୫୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଅଷ୍ଟତ୍ରିଂଶ ସର୍ଗ ।



# ଏକୋନଚତ୍ୱାରିଂଶ ସର୍ଗ

## ଇନ୍ଦ୍ରଙ୍କ ଦ୍ୱାରା ଯଜ୍ଞାଶ୍ୱ ଅପହରଣ ଓ ସଗର ପୁତ୍ରଙ୍କ ପୃଥିବୀ ଖୋଦନ ।

ଶୁଣି ବିଶ୍ୱାମିତ୍ର ମୁଖୁଁ ପୂର୍ବ କଥାମାନ ।
ରଘୁକୁଳ କୀର୍ତ୍ତିଧର ହୋଇଲେ ପ୍ରସନ୍ନ ॥ ୧
ଅଗ୍ନି ସମ ତେଜଶାଳୀ ଋଷି ବିଶ୍ୱାମିତ୍ର ।
ତାହାଙ୍କୁ ପୃଚ୍ଛନ୍ତି ମନତୋଷେ ରଘୁନାଥ ॥ ୨
ଆହେ ବ୍ରହ୍ମମୁନି ! ମୋର ବଳଛି ମାନସ ।
ଶୁଣିବାକୁ ଏ' ଚରିତ ପୂର୍ଣ୍ଣକର ଆଶ ॥ ୩
ଆମ୍ଭ ପୂର୍ବଜ ସଗର କେଉଁଣ ପ୍ରକାରେ ।
ଆରମ୍ଭିଲେ ମହାଯଜ୍ଞ ବିଧିବିଧାନରେ ॥ ୪
ଶୁଣି ତାହାଙ୍କ ବଚନ ହୋଇ କୌତୂହଳୀ ।
ମୁନି ବିଶ୍ୱାମିତ୍ର ଉଚ୍ଚେ ହସି ଦେଲେ ତାଳି ॥ ୫
ଯାହା ବୋଲିବାକୁ ହୋଇଥିଲେ ସେ ଉତ୍ସୁକ ।
ସେହି ପ୍ରଶ୍ନ କଲେ ତାଙ୍କୁ ବୀର ରଘୁନାଥ ॥ ୬
ତହୁଁ ହସି ବୋଇଲେ କୌଶିକ ମୁନିବର ।
ଆହେ ରାମ ! ମହାଯଜ୍ଞ କଲେ ଯା' ସଗର ॥ ୭
ବିସ୍ତାର କରଣ ତାହା ଶୁଣାଉଛି ମୁହିଁ ।
ମନ ଦେଇ ଶୁଣ ଆହେ ରଘୁକୁଳସାଇଁ ! ॥ ୮
ପୁରୁଷୋତ୍ତମ ହେ ରାମ ! ଜାଣିଛ ଏ' ତଥ୍ୟ ।
ଶିବଙ୍କ ଶ୍ୱଶୁର ହିମାଳୟ ପରବତ ॥ ୯
ଉନ୍ନତ ଶୃଙ୍ଗମାଳାରେ ହୋଇଛି ଶୋଭିତ ।
ତାଙ୍କ ସମକକ୍ଷ ଅଟେ ବିନ୍ଧ୍ୟ ପରବତ ॥ ୧୦
ଦୁହେଁ ଦୁହିଁଙ୍କ ଆଡ଼କୁ ଥାଆନ୍ତି ଅନାଇଁ ।
ତେଣୁ ତାଙ୍କ ମଧ୍ୟେ ଆଉ ଉଚ୍ଚ ଗିରି ନାହିଁ ॥ ୧୧

ଏ' ଦୁଇ ଗିରିରାଜଙ୍କ ମଧ୍ୟବର୍ତ୍ତୀ ସ୍ଥାନ ।
ପୁଣ୍ୟଭୂମି ଆର୍ଯ୍ୟାବର୍ତ୍ତ ନାମେ ଅନୁପମ ॥ ୧୨
ସେହି ଆର୍ଯ୍ୟଭୂମେ ମହାରାଜନ ସାଗର ।
ଆରମ୍ଭିଲେ ମହାଯଜ୍ଞ ଆହେ ରଘୁବର ! ॥ ୧୩
ହେ ପୁରୁଷସିଂହ ରାମ ! ଶୁଣ ମନ ଦେଇ ।
ଯଜ୍ଞ ଅଶ୍ୱ ସଜ କରିଦେଲେ ନୃପସାଇଁ ॥ ୧୪
ତାଙ୍କ ପୌତ୍ର ମହାବୀର ଅଟେ ଅଂଶୁମାନ ।
ସେ ମହାରଥୀ ଅଶ୍ୱରେ କଲେ ସଂରକ୍ଷଣ ॥ ୧୫
କିନ୍ତୁ ଅଦଭୁତ କଥା ଶୁଣ ହେ ରାଘବ !
ପର୍ବଦିନେ ଅଶ୍ୱ ହରିନେଲେ ଇନ୍ଦ୍ରଦେବ ॥ ୧୬
ରାକ୍ଷସ ବେଶରେ ଦେବରାଜ କଲେ ଏହା ।
ମନ ଦେଇ ଶୁଣ ରଘୁକୁଳ ନରନାହା ! ॥ ୧୭
ଏ' ସମୟେ ବ୍ରାହ୍ମଣ ସକଳ ଉଚ୍ଚସ୍ୱରେ ।
ବୋଇଲେ ଅଶ୍ୱହରଣ ବୃତ୍ତାନ୍ତ ସଗରେ ॥ ୧୮
ଆହେ ନୃପନାଥ ! ଆଜପର୍ବ ପର୍ବଦିନେ ।
ଯଜ୍ଞ ଅଶ୍ୱ କେହୁ ନେଇ ଯାଉଛୁ ଗୋପନେ ॥ ୧୯
ଅତି ବେଗେ ଅଶ୍ୱ ଘେନି ପଳାଏ ସେ ଚୋର ।
ଆହେ ନୃପବର ! ବେଗେ ସେ ଚୋରକୁ ଧର ॥ ୨୦
ନୋହିଲେ ଏ' ମହାଯଜ୍ଞେ ଉପୁଜିବ ବିଘ୍ନ ।
ଅମଙ୍ଗଳ ଫଳଭାଗୀ ହେବେ ଯଜମାନ ॥ ୨୧
ପୁରୋହିତଙ୍କର ହେବ ଅଶୁଭ ରାଜନ !
ଏଥିକୁ ତ୍ୱରିତ ବେଗେ ଅଶ୍ୱ ଯାଇ ଆଣ ॥ ୨୨
ଅଶ୍ୱ ପ୍ରାପତରେ ଯଜ୍ଞ ହୋଇବ ସମ୍ପୂର୍ଣ୍ଣ ।
ତେଣୁ ଅବିଳମ୍ବେ ଅଶ୍ୱ ଖୋଜ କରି ଆଣ ॥ ୨୩
ଯଜ୍ଞ ସଭା ମଧ୍ୟେ ବସିଥିଲେ ନୃପବର ।
ମହାମନ୍ତ୍ରମାପଣ୍ଡିତ ପ୍ରତାପୀ ସଗର ॥ ୨୪
ଉଚ୍ଚେ ରାଇ ଷଷ୍ଟିସ ପୁତ୍ରମରେ ସକଳ ।
ବୋଇଲେ ହେ ବୀରପୁତ୍ରେ ! ଶୁଣ ମୋର ବୋଲ ॥ ୨୫

ବେଦମନ୍ତ୍ରେ ସୁମନ୍ତ୍ରିତ ଏହୁ ଯଜ୍ଞଶାଳ ।
ଭୂତ ଶୁଦ୍ଧିବଳେ ସୁପବିତ୍ର ଏହୁ ସ୍ଥଳ ॥ ୨୬
କେବେ ହେଁ ଅସୁରେ ନ ପାରିବେ ଏଥି ପଶି ।
କିନ୍ତୁ କେଉଁଣ ଦେବ ହୋଇ ଛଦ୍ମବେଶୀ ॥ ୨୭
ଆସି ଯଜ୍ଞଶାଳା ଦ୍ୱାରୁଁ ଅଶ୍ୱ ସ୍ୱେଚ୍ଛାରେ ।
ଚଳାଇ ଯାଉଛି ବୃନ୍ଦେ ! ଧରି ତାକୁ ଆଣ ॥ ୨୮
ଆହେ ବୀର ପୁତ୍ରେ ! ଯାଅ ବିଳମ୍ବ ନ କରୁ ।
ଅଶ୍ୱଚୋରକୁ ଖୋଜିବ ଅତି ଯତ୍ନ କରି ॥ ୨୯
ସମୁଦ୍ର ବଳୟାକାରେ ରହିଛି ଯେଉଁଠାରେ ।
ସେହି ଧରଣୀରେ ବୁଲି ଖୋଜ ଅଶ୍ୱଚୋରେ ॥ ୩୦
ଏକ ଯୋଜନ ଭୂମିରେ ଖୋଜ ଜଣେ ଜଣେ ।
ଅଶ୍ୱଚୋରକୁ କିନ୍ତୁ ଭେଟିବ ନନ୍ଦନେ ! ॥ ୩୧
ମୋ' ଆଜ୍ଞା ଘେନିଣ ସର୍ବେ ହୋଇ ଏକ ମେଳ ।
ଅଶ୍ୱଚୋର ଧରିବାକୁ ଏ' ଧରଣୀ ଖୋଳ ॥ ୩୨
ଯଜ୍ଞରେ ଦୀକ୍ଷିତ ଯେଣୁ ହୋଇଅଛି ମୁହିଁ ।
ଅଶ୍ୱର ସନ୍ଧାନେ ବାବୁ ! ଯାଇ ନ ପାରଇ ॥ ୩୩
ଅଶ୍ୱର ସନ୍ଧାନ ପାଏଁ ଏଣୁ ଯଜ୍ଞଶାଳେ ।
ରହିବି ଅପେକ୍ଷା କରି ଶୁଣ ରେ କୁମରେ ! ॥ ୩୪
ଯଜ୍ଞଶାଳା ସୁରକ୍ଷା କରଇ ଅଂଶୁମାନ ।
ବେଗ ହୋଇ ପୁତ୍ରେ ଯାଅ ମୋ' ଆଜ୍ଞା ଘେନିଣ ॥ ୩୫
ଆହେ ରାମ ! ପିତାଙ୍କ ଆଦେଶ ଘେନି କରି ।
ପୃଥିବୀ ଭ୍ରମଣ କଲେ ସୁତେ ମୋଦ ଭରି ॥ ୩୬
ମହାବଳୀ କୁମରେ ସେ ଅଦ୍ଭୁତ କରମା ।
ଅତି ଦର୍ପେ ବୁଲିଲେ ଧରା ମଣ୍ଡଳ ସୀମା ॥ ୩୭
ସମଗ୍ର ଧରାରେ ବୁଲି ନ ପାଇଲେ ଅଶ୍ୱ ।
ତହୁଁ ମହାବୀରଗଣେ ମନେ ବହି ରୋଷ ॥ ୩୮
ଜଣକେ ଯୋଜନ ପୃଥ୍ୱୀ ଭାଗ କରିନେଲେ ।
ହୁଙ୍କାର କରିଣ ଧରା ଖୋଳି ପକାଇଲେ ॥ ୩୯

ବଜ୍ରହୁଁ କଠିନ ତାଙ୍କ ଭୁଜ ପରାକ୍ରମେ ।
ଧରଣୀର ବକ୍ଷ ବିଦାରିଲେ ମହା ତମେ ॥ ୪୦
ବଜ୍ର ସମ ଶୂଳ ହଳ ମୁଷଳ ପ୍ରହାରେ ।
ଧରଣୀ ବିଦାର୍ଣ୍ଣ କଲେ ସଗର କୁମରେ ॥ ୪୧
ବ୍ୟଥା ଭରେ ବସୁନ୍ଧରା କଲେ ଆର୍ତ୍ତନାଦ ।
ଅସୁର ଦାନବ ଗଣେ ଭଜିଲେ ବିଷାଦ ॥ ୪୨
ନାଗ ପଶୁ ପକ୍ଷୀଗଣେ କରୁଣ ସ୍ୱୋରେ ।
ଆର୍ତ୍ତନାଦ କଲେ ପଡ଼ି ମରଣ ମୁଖରେ ॥ ୪୩
ହେ ରଘୁକୁଳ-କୁମୁଦ-ମୋଦକାନ୍ତ ଚନ୍ଦ୍ର !
ଏ' ଉତ୍ତାରୁ ଯାହା ହେଲା ଶୁଣ ରାମଚନ୍ଦ୍ର ! ॥ ୪୪
ମହାଭୁଜ ପରାକ୍ରମେ ଖୋଳିଲେ ଧରଣୀ ।
ଷାଠିଏ ସହସ୍ର ଯୋଜନ ହେଲା ରଘୁମଣି ॥ ୪୫
ସର୍ବେ ତ୍ରସ୍ତ ହୋଇଲେ ଦେଖି ତାଙ୍କ କୃତ୍ୟ ।
ମହୀ ଭୁଲେ ରସାତଳ ଯିବେ ବା ଯୁକ୍ତ ॥ ୪୬
ଏମନ୍ତ ବିଚାରି ଜନେ ମହାଭୟ କଲେ ।
ଷାଠିଏ ସହସ୍ର କୁମର ମାତିଛନ୍ତି ବଳେ ॥ ୪୭
ହେ ପୁରୁଷୋତ୍ତମ ରାମ ! ଶୁଣ ମନ ଦେଇ ।
ଏ' ଉତ୍ତାରୁ ଯାହା କଲେ ଷଷ୍ଠି ସହସ୍ର ଭାଇ ॥ ୪୮
ଜମ୍ବୁଦ୍ୱୀପ ଖୋଳି ଅଶ୍ୱ ଖୋଜି ଦଶ ଦିଗେ ।
ଉନ୍ମତ୍ତ ପ୍ରାୟ ବୁଲିଲେ ଏଣେତେଣେ ବେଗେ ॥ ୪୯
ଦେବତା ଅସୁର ଯକ୍ଷ କିନ୍ନର ଉରଗ ।
ସର୍ବେ ଥରହର ଦେଖି କୁମରଙ୍କ ଗର୍ବ ॥ ୫୦
ତ୍ରସ୍ତେ ସକଳେ ମିଳି ପ୍ରଜାପତି ପାଶେ ।
ଭଣିଲେ ପୂର୍ବଙ୍କ କଥା ମନର ବିରସେ ॥ ୫୧
ବିଷାଦ କାଳିମାପୂର୍ଣ୍ଣ ଦେବଙ୍କ ଆନନ ।
ଲକ୍ଷି ଧାତା ସଚକିତେ ପୁଚ୍ଛିଲେ କାରଣ ॥ ୫୨
ବିଧାତାଙ୍କ ବାଣୀ ଶୁଣି ତ୍ରିଦଶ ସକଳେ ।
ବୋଇଲେ ହେ ଧାତା ! ଶୁଣ କହୁଁ ଯା' ସଧୀରେ ॥ ୫୩

ସଗର ରାଜ କୁମରେ ହୋଇ ମହାବଳୀ ।
ଅଶ୍ବମେଧର ଅଶ୍ବ ଖୋଜନ୍ତି ଖୋଳି ବସୁନ୍ଧରା ॥ ୫୪
ସକଳ ଜୀବଙ୍କୁ ହେଳେ କରନ୍ତି ବିନାଶ ।
ସନ୍ତୁ ମହାତମା ଜନେ ଲଭିଲେଣି ତ୍ରାସ ॥ ୫୫
'ଏହୁ ଆମ୍ଭ ଅଶ୍ବମେଧର' 'ଏହୁ ବିଘ୍ନକାରୀ' ।
'ଏ' ଅଯୋଧ୍ୟାର ବଇରୀ' ବୋଲି ଶଙ୍କ କରି ॥ ୫୬
ସକଳ ପ୍ରାଣୀଙ୍କି ହିଂସା କରନ୍ତି କୁମରେ ।
ଏଥିକୁ କି ପ୍ରତିକାର କରନ୍ତୁ ସତ୍ବରେ ॥ ୫୭
ଏତେ ଭଣି ନିରସ୍ତ ହୋଇଣ ଦେବଗଣ ।
ବିଧାତାଙ୍କ ମୁଖ ଗୃହୀଁ ହୋଇଲେ ମଉନ ॥ ୫୮
ସେ ବିରଞ୍ଚି ପଦ୍ମପାଦ ଯୁଗଳେ ପ୍ରଣମି ।
ପୁରୁଷୋତ୍ତମ ଭଣଇ ରାମାୟଣ ବାଣୀ ॥ ୫୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଏକୋନଚତ୍ବାରିଂଶ ସର୍ଗ ।



# ଚତ୍ବାରିଂଶ ସର୍ଗ

## ଷାଠିଏ ସହସ୍ର ପୁତ୍ରଙ୍କ ବିନାଶ ।

ଅମର ଗଣଙ୍କ ବାଣୀ ଶୁଣିଣ ପଦ୍ମଜ ।
ବୋଲନ୍ତି ହେ ଦେବଗଣ ! ମନୁ ଭୟ ତେଜ ॥ ୧
ସଗର ପୁତ୍ରଙ୍କ ଭୟେ ହୋଇଛ ଉଛନ୍ନ ।
ତେଣୁ ମୁଁ ବୋଲଇ ଅହେ ଦେବଗଣେ ! ଶୁଣ ॥ ୨
ସଂସାର କରତା ସ୍ବୟଂ କମଳା ବିଳାସ ।
ଅନନ୍ତ ସେ ପ୍ରଭୁ ପୁଣି ଧରିତ୍ରୀର ଈଶ ॥ ୩
ତାହାଙ୍କ ଅଙ୍ଗରେ ଧରି ସ୍ଥିର ନାମ ବନ୍ଧୁ ।
ପାଳଇ ବିବିଧ ପ୍ରାଣୀ ଚରାଚର ଯେନ୍ତୁ ॥ ୪

ସକଳ ସମର୍ଥ ପ୍ରଭୁ କପିଳ ରୂପରେ ।
ଅବତାର ତପ ସାଧୁଛନ୍ତି ଏ' ମହୀରେ ।। ୫
ତାଙ୍କ କୋପାନଳେ ପୁତ୍ରେ ଭସ୍ମ ହେବେ ଜାଣ ।
ଏଥିକୁ ଚିନ୍ତା ନ କର ଆହେ ଦେବଗଣ ! ।। ୬
ଅତି ଦରପେ ଅବନୀ ଖାଣନ୍ତି କ୍ରମରେ ।
କପିଳଙ୍କ କୋପାଗ୍ନିରେ ଦଗ୍ଧ ହେବେ କାଳେ ।। ୭
ପୃଥିବୀ ଖୋଦନ ନୋହେ ନୂତନ ଚରିତ ।
କାଳେ କାଳେ ଅଟେ ଏହା ପୁରାଣ ବିଦିତ ।। ୮
କଳ୍ପ ପ୍ରଳୟେ ଜଳରୁ ସାଗର ଉତ୍ପତ୍ତି ।
ସଦାକାଳେ ଘଟୁଅଛି ଜାଣ ଏହୁ ସ୍ଥିତି ।। ୯
ଏ' ସନାତନ ନିୟମ ଶୁଣ ଦେବଗଣ !
ଶ୍ରୁତି ସ୍ମୃତି ପୁରାଣେ ଯା' ହୋଇଛି ବର୍ଣ୍ଣନ ।। ୧୦
ସଗର ପୁତ୍ରଙ୍କ ନାଶ ହୋଇବ ମୂଳରୁ ।
ଏଥିଲାଗି ଦେବଗଣ ! ଭାବନା ନ କର ।। ୧୧
ଧାତାଙ୍କ ବଚନ ଶୁଣି ସକଳ ଦେବତା ।
ମନ ସୁଖେ ଲେଉଟିଲେ ପଦେ ନମି ଧାତା ।। ୧୨
ସଗର ପୁତ୍ରେ ଯେ କାଳେ ଖୋଳୁଥିଲେ ଧରା ।
ବଜ୍ରାଘାତ ସମ ଶବ୍ଦେ କମ୍ପେ ବସୁନ୍ଧରା ।। ୧୩
ସକଳ ପୁତ୍ରେ ପୃଥିବୀ ଖୋଳଣ ନିରାଶେ ।
ଫେରିଗଲେ ଅଶ୍ୱ ବିନା ସଗରଙ୍କ ପାଶେ ।। ୧୪
ବୋଇଲେ ହେ ପିତା ! ଆମ୍ଭେ ସର୍ବସ୍ୱ ଖୋଳିଲୁ ।
ତୁମ୍ଭ ଅଶ୍ୱମେଧ ବାଜି କାହିଁ ନ ପାଇଲୁ ।। ୧୫
ଦେବତା ଦାନବ ଯକ୍ଷ ପିଶାଚ ରାକ୍ଷସ ।
ସର୍ବ ବଳବନ୍ତ ପ୍ରାଣୀ କଲୁ ଆମ୍ଭେ ନାଶ ।। ୧୬
କାହିଁ ଖୋଜି ନ ପାଇଲୁ ଯଜ୍ଞ-ପୂତ ଅଶ୍ୱ ।
ଅଶ୍ୱଚୋର ନ ପାଇଣ ହୋଇଲୁ ନିରାଶ ।। ୧୭
ଏବେ କି କରିବୁ କୁହ ଆହେ ନରେଶ୍ୱର !
ଅଇଲୁ ତୁମ୍ଭ ପାଖରେ କୁହ ହେ ସତ୍ୱର ।। ୧୮

ପୁତ୍ରଙ୍କ ମୁଖରୁ ଏ' ବଚନ ଶୁଣି ନୃପ ।
ଅଧର କମ୍ପାଇ ମନେ ବହି ଅତି କୋପ ॥ ୧୯
କୋଇଲେ ମୋ' ଅଶ୍ୱ ଏହି ଧରଣୀ ମଧ୍ୟରେ ।
ରହିଛି ନଶ୍ଚୟ ଖୋଜ ଯାଇ ଆଜ ଥରେ ॥ ୨୦
ପୃଥ୍ୱୀ ବିଦାରି ଆଣ ଅଶ୍ୱକୁ ମୋହର ।
ଅଶ୍ୱବିନୁ ଯଜ୍ଞ ମୋର ହୋଇବ ବିଫଳ ॥ ୨୧
ଶୂନ୍ୟ ହସ୍ତେ ଲେଉଟିଣ ନ ଆସିବ ଭ୍ରମେ ।
କାର୍ଯ୍ୟ ସାଧି ଅଶ୍ୱ ସାଥେ ଅ‌ାସ ପୁତ୍ରେ ! ଦମ୍ଭେ ॥ ୨୨
ଅଶ୍ୱମେଧର ଧର ଥା'ରେ ବନ୍ଧିବ ଜଟରେ ।
କୁଳର ମହିମା ରଖ ଅଶ୍ୱ ଆଣି ପୁତ୍ରେ ! ॥ ୨୩
ରାଜର୍ଷି ସଗରଙ୍କର ଶୁଣି ଏ' ବଚନ ।
ରୋଷଭରେ ପୁତ୍ରଗଣ ଗମିଲେ ବହନ ॥ ୨୪
ଷଷ୍ଟିସହସ୍ର ପୁତ୍ରେ ପୁଣି ଧରଣୀ ଖୋଳିଲେ ।
ରସାତଳ ଯାଏଁ ଖୋଳି କଛୁ ନ ପାଇଲେ ॥ ୨୫
ଏ ସମୟେ ପର୍ବତ ସମାନ ହସ୍ତୀ ଏକ ।
ପ୍ରକଟ ହୋଇଲା ନାମ ଯା'ର ବିରୂପାକ୍ଷ ॥ ୨୬
ଗିରି ବନ ସହିତେ ଏ' ଧରଣୀ ମଣ୍ଡଳ ।
ଧରିଥାଏ ଯେହୁ ଆସି ମିଳିଲା ସତ୍ୱର ॥ ୨୭
ପୂର୍ବଦିଗ ରକ୍ଷକ ସେ ବିରୂପାକ୍ଷ ଗଜ ।
ତାଙ୍କୁ ପ୍ରଦକ୍ଷିଣ କରି ସଗର ଆତ୍ମଜ ॥ ୨୮
ପୂର୍ବଦିଗ ଛେଦି ଯାଇ ଦକ୍ଷିଣ ଦିଗରେ ।
ଚଳିଲେ ହରଷ ମନେ ଖୋଳି ଧରଣୀରେ ॥ ୨୯
ଏ' ସମୟେ ଆଜ ଏକ ମହାଗଜ ଆସି ।
ଜଣା ହେଲା ସଗର ପୁତ୍ରଙ୍କୁ ସ୍ୱର୍ଗ ହସି ॥ ୩୦
ମହାପଦ୍ମ ନାମ ଥା'ର ଦକ୍ଷିଣ ଦିଗ୍‌ଗଜ ।
ଧରି ଧାରଣେ ସମର୍ଥ ସେହୁ ଗଜରାଜ ॥ ୩୧
ତାଙ୍କୁ ଦେଖି କୁମରେ ହୋଇଣ ଆଚମ୍ବିତ ।
ପରିକ୍ରମା କରି ପଦେ କଲେ ଦଣ୍ଡବତ ॥ ୩୨

ଚହୁଁ କୁମାରେ ଚଳିଲେ ପଶ୍ଚିମ ଦିଗରେ ।
ଧରଣୀ ଖୋଦନେ ମାଣ୍ଡ ଅତି ଆନନ୍ଦରେ ।। ୩୩
ସେ ଦିଗର ଗଜରାଜ ନାମ ସୌମନସ ।
ମହା ଗିରିବର ସମ ଦିଶଇ ସେ ଦୃଶ୍ୟ ।। ୩୪
ତାଙ୍କ ସମୀପେ କୁମରେ ଶିର କରି ନତ ।
ପ୍ରଣମି ପୁଚ୍ଛିଲେ ବାର୍ତ୍ତା କୁଶଳ ସମସ୍ତ ।। ୩୫
ତାଙ୍କୁ ପରିକ୍ରମା କରି ସଗର ତନୁଜେ ।
ଉତ୍ତର ଦିଗକୁ ଚଳିଗଲେ ମହାଓଜେ ।। ୩୬
ସେ ଦିଗ ଧରଣୀ ଖୋଳୁଁ ଦେଖିଲେ ଅଦ୍‌ଭୁତ ।
ହିମଗିରି ଜିଣି ଗଜରାଜ ସୁଶୋଭିତ ।। ୩୭
ଶ୍ୱେତଭଦ୍ର ନାମ ତା'ର ଉତ୍ତର ଦିଙ୍‌ନାଗ ।
ସଯତନେ ଧରିଥାଏ ସେହୁ ଭୂମିଭାଗ ।। ୩୮
ହେ ରଘୁନାଥ ! ତାହାଙ୍କୁ କରି ନମସ୍କାର ।
ସେଠାବରୁ ଚଳିଗଲେ ସଗର କୁମର ।। ୩୯
ମହାରୋଷେ ପ୍ରମତ୍ତ ହୋଇଣ ରାଜପୁତ୍ରେ ।
ପୂର୍ବ ଉତ୍ତର କୋଣକୁ ଖୋଳିଲେ ତୁରିତେ ।। ୪୦
ମହାମନା ବଳବନ୍ତ ସେ ରାଜକୁମରେ ।
ଅଶ୍ୱ ନ ପାଇ ଖୋଳନ୍ତି ମହାରୋଷଭରେ ।। ୪୧
ଦେଖିଲେ ଅଦ୍‌ଭୁତେ ଏକ ଯୋଗୀ ମହାତମା ।
ସମାଧିରେ ବସିଛନ୍ତି ହୋଇ ସ୍ଥିର ମନା ।। ୪୨
ସନାତନ ସର୍ବବ୍ୟାପୀ ଅଟନ୍ତି ସେ ହରି ।
ତାହାଙ୍କ ଅଂଶରେ ସେହୁ ଛନ୍ତି ଅବତରି ।। ୪୩
ସେ କପିଳ ଜ୍ଞାନଦାତା ପ୍ରଭୁ ଅଖିଳେଶ ।
ଯୋଗରେ ଆସୀନ ସେହୁ ସର୍ବଜ୍ଞ ପୁରୁଷ ।। ୪୪
ତାହାଙ୍କ ତପସ୍ୟା ଭୂମି ନିକଟରେ ଜାଣ ।
ଚରୁଥିଲା ଯଜ୍ଞଅଶ୍ୱ ଆହେ ରଘୁରାଣ ! ।। ୪୫
ଅଶ୍ୱକୁ ଦେଖିଣ ସୁତେ ହୋଇଣ ଆନନ୍ଦ ।
ଚିନ୍ତିଲେ ସେ ମୂଢ଼ ଜଣେ ସାଧୁଅଛି ବାଦ ।। ୪୬

ଏହା ଭାବି ମନେ ମନେ ସେ ରାଜକୁମରେ ।
ଚକ୍ଷୁ ରୋଷ କଷାୟିତେ କମ୍ପାନ୍ତ ଅଧରେ ।। ୪୭

ନାନା ଅସ୍ତ୍ରଶସ୍ତ୍ର କରେ ଧରି ରାଜପୁତ୍ରେ ।
ହୁଙ୍କାର କରିଣ ତାଙ୍କୁ ବୋଲନ୍ତି ଭୃଶରେ ।। ୪୮

ଆରେ ରେ ! ଅଧମ ମୂର୍ଖ ଦୁଷ୍ଟ ଦୁରାତ୍ମର !
ସହଜେ ତ ଅଟୁ ଭୂଷ୍ଟ ଯଜ୍ଞ-ଅଶ୍ୱଚୋର ।। ୪୯

ଜାଣୁ କି ରେ ଆମ୍ଭେ ଅଟୁ ସଗର ତନୟ ।
ଯାହାଙ୍କ ବିକ୍ରମେ ଶତ୍ରୁ ଲଭନ୍ତି ବିଳୟ ।। ୫୦

କି କାରଣେ କହ ଯଜ୍ଞ ବିଘ୍ନ କଲୁ ଚୋର !
ଜାଣି ନାହୁଁ କି ରେ ! ବଳ ବିକ୍ରମ ଅମ୍ଭର ।। ୫୧

ବାହୁବଳେ ଦଳି ପାରୁଁ ଏ' ଜଗତ ଯାକ !
ଏହା ନ ବୁଝି ଦୁର୍ମଦ ! ହାରିଲୁ ବିବେକ ।। ୫୨

ବୋଲନ୍ତି କୁଶିକ ସୁତ ହେ ରଘୁନନ୍ଦନ !
ଏମନ୍ତେ ତର୍ଜିଣ ସୁତେ ବୋଲନ୍ତେ ବଚନ ।। ୫୩

ମହାଯୋଗୀ କପିଳ ମନରେ ବଢ଼ି ରୋଷ ।
କୋପାବେଶେ ହୁଙ୍କାରିଣ ସୃଷ୍ଟିଲେ ହୁତାଶ ।। ୫୪

ମୁନି କୋପାନଳେ ଜଳି ସଗର ତନୟ ।
ଷାଠିଏ ସହସ୍ର ଭସ୍ମ ହୋଇଲେ ବିଳୟ ।। ୫୫

ହେ ରଘୁନନ୍ଦନ ! ଶୁଣିଲ ତ ଏ' ଚରିତ ।
ସାଗର ଉତ୍ପତ୍ତି ରାଜପୁତ୍ରଙ୍କ ବୃତ୍ତାନ୍ତ ।। ୫୬

ଅମୋଘ ତପସ୍ୱୀ ମହାମନା ଯୋଗୀଶ୍ୱର ।
ପୁରୁଷୋତ୍ତମ ନମଇଁ କପିଳ ପୟର ।। ୫୭

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଚତ୍ୱାରିଂଶ ସର୍ଗ ।



# ଏକଚତ୍ୱାରିଂଶ ସର୍ଗ

## ଅଂଶୁମାନ୍‌ଙ୍କ ଦ୍ୱାରା ଯଜ୍ଞଅଶ୍ୱ ଆନୟନ ଓ ସକଳ ବୃତ୍ତାନ୍ତ ବର୍ଣ୍ଣନ ।

ଶୁଣ ଆହେ ରଘୁନାଥ ! ଅପୂର୍ବ ଚରିତ ।
ଅଶ୍ୱ ଖୋଜି ଯାଇଥିବା ପୁତ୍ରଙ୍କ ବୃତ୍ତାନ୍ତ ॥ ୧
ପୁତ୍ରେ ନ ଆସିବା ଜାଣି ସଗର ରାଜନ ।
ମନେ ମନେ ବ୍ୟାକୁଳିତ ହୋଇ ତତକ୍ଷଣ ॥ ୨
ଅଂଶୁମାନଙ୍କୁ ଡକାଇ ଆଣିଣ ସତ୍ୱର ।
ବୋଇଲେ ହେ ବୀର ! ଶୁଣ ମୋହର ଏ ଗିର ॥ ୩
ତୁମ୍ଭେ ଅଟ ଶୂର ଜ୍ଞାନୀ ବିଦ୍ୱାନ ପ୍ରବର ।
ସକଳ କାର୍ଯ୍ୟ ସାଧନେ ଅଟ ଧୂରନ୍ଧର ॥ ୪
ତୁମ୍ଭର ପିତୃବ୍ୟେ ଗଲେ ଅଶ୍ୱ ଆଣିବାରେ ।
ନ ଆଣିଲେ ଯଜ୍ଞଅଶ୍ୱ ନ ଧରିଲେ ଚୋରେ ॥ ୫
ଯାଅ ବେଗ ହୋଇ ବତ୍ସ ! ବିଳମ୍ବ ନ କର ।
ଖୋଜିଆଣ ଅଶ୍ୱ ସନ୍ଧିତରେ ଅଶ୍ୱଚୋର ॥ ୬
ଅସ୍ତ୍ରଶସ୍ତ୍ରେ ସଜ ହୋଇ ଯାଅ ବୀରବର !
ବଳବନ୍ତ ଶତ୍ରୁ ସଙ୍ଗେ କରିଣ ସମର ॥ ୭
ବେଗେ ଖୋଜି ଆଣ ବାବୁ ! ଯଜ୍ଞଅଶ୍ୱ-ଚୋର ।
ସଫଳ ହୋଇବ ଯେହ୍ନେ ଏ ଯଜ୍ଞ ମୋହର ॥ ୮
ତେଣୁ ମୁଁ କହଇ ଶୁଣ ଆହେ ବୀରବର !
ଧନୁଶର ଖଡ଼୍ଗ ଘେନି ନିଅ ସଙ୍ଗତର ॥ ୯
ବନ୍ଦନୀୟ ପୁରୁଷଙ୍କୁ ଦେଖିଲେ ମାର୍ଗରେ ।
ବନ୍ଦନା କରିବ ନମି ତାହାଙ୍କ ପଦରେ ॥ ୧୦
ବିଘ୍ନକାରୀ ଶତ୍ରୁ ସଙ୍ଗେ କରିବ ସମର ।
ରଣରଙ୍ଗେ ବଧି ତାକୁ ଆଣ ଅଶ୍ୱ ମୋର ॥ ୧୧

ଭଖି ଭୁଜ ମାନ ଯଣ ଅଶ୍ୱମେଧର ଧର ।
ଅବଳମ୍ବେ ସୁଫଳ ଲଭ୍ଭଣ ଆସ ଫେର ॥ ୧୨
ତୁମ୍ଭ ଆଗମନ ପଥେ ରହିଛୁ ଅନାଇ ।
ବିଳମ୍ବ ନ କର ବାବୁ ! ଯାଅ ବେଗ ହୋଇ ॥ ୧୩
ମନ୍ତ୍ରପୂତ ଅଶ୍ୱ ଆଣି ଯଜ୍ଞ ପୂର୍ଣ୍ଣକର ।
ଏଥକୁ ବିଳମ୍ବ ନ କର ତୁ ବୀରବର ! ॥ ୧୪
ପିତାମହଙ୍କ ବଚନ ଶୁଣି ଅଂଶୁମାନ ।
ଅସ୍ତ୍ରଶସ୍ତ୍ର ସଙ୍ଗେ ନେଇ ଚଳିଲ୍ଲ ବହନ ॥ ୧୫
ପିତୃବ୍ୟଙ୍କ ପଥ ହେଜ ଚଳେ ବୀରବର ।
ଯେଉଁ ମାର୍ଗ ଖୋଳିଥିଲେ ସଗରକୁମର ॥ ୧୬
ସେହି ଗର୍ତ୍ତ ମାର୍ଗେ ଚଳେ ବୀର ଧନୁର୍ଦ୍ଧର ।
ପିତାମହଙ୍କ ବଚନ ହେଜଣ ମନର ॥ ୧୭
ପଥ ମଧ୍ୟେ ଦେଖିଲ୍ଲ ସେ ଏକ ଦିଗ୍‌ଗଜର ।
ଦେବତା ଦାନବ ଯକ୍ଷ ପିଶାଚ ଆଦର ॥ ୧୮
ପୂଜୁଥିଲେ ଦିଗ୍‌ଗଜରେ ଦେଖି ଅଂଶୁମାନ ।
ପ୍ରଣମି ତାହାଙ୍କୁ ଧୀରେ ପୃଚ୍ଛଇ ବଚନ ॥ ୧୯
ବିନୟରେ ପରିକ୍ରମା କରି ଅଂଶୁମାନ ।
ପଚ୍ଛର ବୁଝିଲ୍ଲ ଅଶ୍ୱମେଧର ସନ୍ଧାନ ॥ ୨୦
ଅଂଶୁମାନ ବିନୟ ଦେଖିଣ ଦିଗ୍‌ବର ।
ଶୁଣ୍ଢ ଟେକ ଆଶୀର୍ବାଦ ଢାଳିଲ୍ଲ ସତ୍ୱର ॥ ୨୧
ବୋଇଲ୍ଲ ହେ ବୀରମଣି ! ସଗରବଂଶଜ ।
ତୁମ୍ଭ ମନୋରଥ ଶୀଘ୍ର ପୂର୍ଣ୍ଣ ହେବ ଆଜ ॥ ୨୨
ଅଗ୍ରଗାମୀ ହୁଅ ବୀର ଆନନ୍ଦ ମନରେ ।
ଲଭିଣ ସୁଫଳ କାର୍ଯ୍ୟ ସାଧିବ ସତ୍ୱରେ ॥ ୨୩
ତହୁଁ ଅଂଶୁମାନ ମହାବୀର ବେଗ ହୋଇ ।
ଚଳିଲ୍ଲ ସେ ପଥେ ବେଗେ ପହଣ୍ତ ମଣାଇଁ ॥ ୨୪
କିଛି ଦୂର ଯା'ନ୍ତେ ପଥେ ଦେଖି ଅନ୍ୟଗଜ ।
ପୂଚ୍ଛିଲ୍ଲ ବିନୟେ ପ୍ରଶ୍ନ ଆହେ ରଘୁରାଜ ! ॥ ୨୫

ଗୋଟି ଗୋଟି କରି ସ୍ମରି ଦିଗ୍‌ଗଜଙ୍କୁ ବୀର ।
ବିନୟେ ପ୍ରଣମି ତାଙ୍କୁ ବୋଇଲା ସକଳ ॥ ୨୬
ଦିଗ୍‌ଗଜେ ଅଂଶୁମାନର ଦେଖଣ ବିନୟ ।
ଆଶିଷ ବଚନେ ତୋଷି ହୋଇଣ ସଦୟ ॥ ୨୭
ଶୀଘ୍ର କାର୍ଯ୍ୟସିଦ୍ଧି ଅର୍ଥେ ବୋଇଲେ ବଚନ ।
ଆହେ ବୀର ! ସିଦ୍ଧଫଳ ହୁଅ ଅଂଶୁମାନ ! ॥ ୨୮
କଲ୍ୟାଣ କରୁଛୁଁ ବୀର ! ଘେନ ଶୁଭାଶିଷ ।
ଶୀଘ୍ର ଯଜ୍ଞସିଦ୍ଧି ଅର୍ଥେ ଅଶ୍ୱ ଘେନ ଆସ ॥ ୨୯
ଅଗ୍ରଗାମୀ ବୀରବର ! ବିଳମ୍ବ ନ କର ।
ସଫଳ ହୋଇବ ସର୍ବ କାମନା ତୁମ୍ଭର ॥ ୩୦
ଶୁଣି ଦିଗ୍‌ଗଜ ବଚନ ଶୁଭାଶିଷ ବାଣୀ ।
ପହଣ୍ଡ ମଣାଇଁ ଆଗେ ଗମେ ବୀରମଣି ॥ ୩୧
ବହୁ ଦୂର ପଥ ଅତିକ୍ରମି ଅଂଶୁମାନ ।
ପ୍ରବେଶ ହୋଇଲା ଯହିଁ କପିଳ ଆଶ୍ରମ ॥ ୩୨
ଦେଖିଲା ସେ ସ୍ଥାନେ ପିତୃଗଣେ ଭସ୍ମ ହୋଇ ।
ନରକ ଯନ୍ତ୍ରଣା ଭୋଗୁଛନ୍ତି ରଘୁସାଇଁ ! ॥ ୩୩
ସେ' କରୁଣ ଦୃଶ୍ୟ ଦେଖି ବୀର ଅଂଶୁମାନ ।
ବିକଳ ହୋଇଣ ଉଚ୍ଚେ କଲାକ ରୋଦନ ॥ ୩୪
ମହାଶୋକେ ବ୍ୟାକୁଳ ହୋଇଣ ବୀରବର ।
ଦେଖିଲା ସେ ସ୍ଥାନେ ଚରୁଅଛି ଅଶ୍ୱବର ॥ ୩୫
ମହାତେଜସ୍ୱୀ କୁମାର ଦୁଃଖେ ହୋଇ ଛନ୍ନ ।
ମୃତ ପିତୃଗଣେ ଦେବା ଲାଗି ଜଳଦାନ ॥ ୩୬
ଜଳପୂର୍ଣ୍ଣ ସରୋବର ଖୋଜିଲା ବିକଳେ ।
ନ ପାଇଲା ଜଳ କାହିଁ ଶୁଷ୍କ ମରୁସ୍ଥଳେ ॥ ୩୭
ଚଉଦିଗେ ଜଳ ଲାଗି ବୁଲି ଅଂଶୁମାନ ।
ନ ଦେଖିଲା କାହିଁ ଜଳ ଦେବାକୁ ତର୍ପଣ ॥ ୩୮
ଏ' ସମୟେ ବେଗଶାଳୀ ବିନତାନନ୍ଦନ ।
ଗରୁଡ଼ ମିଳିଲେ ଆସି ସେ ସ୍ଥାନେ ବହନ ॥ ୩୯

ସଗର ପୁତ୍ରଙ୍କର ସେ ଅନନ୍ତ ମାତୁଳ ।
ଅଂଶୁମାନର ଅଗ୍ରରେ ମିଳି ସେ ସତ୍ତ୍ୱର ॥ ୪୦
ବୋଇଲେ ବାବୁରେ ! ଆଜ ଶୋକ ତୁ ନ କର ।
ତୁମ୍ଭ ପିତୃଗଣେ ଭସ୍ମ ହୋଇଲେ ସକଳ ॥ ୪୧
ଜଗତ କଲ୍ୟାଣ ଲାଗି ତବ ପିତୃଗଣେ ।
ଋଷିଶାପେ ଭସ୍ମ ହୋଇଛନ୍ତି ଏହୁ ସ୍ଥାନେ ॥ ୪୨
ଅନନ୍ତ ପ୍ରଭାବଶାଳୀ ମହର୍ଷିପ୍ରବର ।
କପିଳଙ୍କ କୋପାନଳେ ତୋର ପିତୃକୁଳ ॥ ୪୩
ଦଗ୍ଧ ହୋଇଛନ୍ତି ବୀର ! ଶୁଣ ଏହି ସ୍ଥାନେ ।
ଜଳ ଅଞ୍ଜଳି ନ ଦଅ ଲୌକିକ ବିଧାନେ ॥ ୪୪
ମୁନିଶାପେ ଭସ୍ମ ହୋଇଛନ୍ତି ପିତୃଗଣ ।
ତେଣୁ ତାଙ୍କ ମୁକ୍ତିରେ ନ ଦଅ ଜଳଦାନ ॥ ୪୫
ଆହେ ନରଶ୍ରେଷ୍ଠ ମହାବାହୁ ଅଂଶୁମାନ !
ଏହାଙ୍କ କଲ୍ୟାଣ ଯଦି ଇଚ୍ଛେ ତୋର ମନ ॥ ୪୬
ତେବେ ହିମାଳୟ ଜ୍ୟେଷ୍ଠପୁତ୍ରୀ ଗଙ୍ଗା ଜଳେ ।
ତର୍ପଣ ତୁ ନ କର ଉଦ୍ଧାରିବେ ଏ' ସକଳେ ॥ ୪୭
ତ୍ରୈଲୋକ୍ୟପାବନୀ ଗଙ୍ଗା ସଲିଳେ ଏ' ସ୍ଥାନ ।
ଧୌତ ହେଲେ ମୁକ୍ତ ହେବେ ତବ ପିତୃଗଣ ॥ ୪୮
ଜଗତତାରଣୀ ଗଙ୍ଗା ହୋଇଲେ ସଦୟ ।
ମୁକତି ଲଭିବେ ସର୍ବେ ଜାଣ ତୁ ନିଶ୍ଚୟ ॥ ୪୯
ସାମାନ୍ୟ ନୋହେ ଏ' କାର୍ଯ୍ୟ ଆହେ ବୀରବର !
ତେଣୁ ମୁଁ କହଇ ବାବୁ ! ଶୁଣ ତୁ ମୋ ଗିର ॥ ୫୦
ଯଜ୍ଞଅଶ୍ୱ ଘେନି ବେଗେ ଯାଅ ନିଜ ପୁରେ ।
ପିତାମହ ବସିଛନ୍ତି ଯଜ୍ଞବେଦୀ ପରେ ॥ ୫୧
ବିନତାନନ୍ଦନ ମୁଖୁଁ ଏ' ବଚନ ଶୁଣି ।
ଲେଉଟିଲା ଅଂଶୁମାନ ଯଜ୍ଞଅଶ୍ୱ ଘେନି ॥ ୫୨
ଯଜ୍ଞସ୍ଥଳେ ପହଞ୍ଚି ସେ ବୀର ଅଂଶୁମାନ ।
କହିଲା ସକଳ ଅଶ୍ୱ କରି ସମର୍ପଣ ॥ ୫୩

ଶୁଣି ସମସ୍ତ ବୃତ୍ତାନ୍ତ ସଗର ରାଜନ ।
ପୁତ୍ରଶୋକେ କ୍ଷଣକାଳ ହେଲେ ମୂର୍ଚ୍ଛ୍ୟମାନ ॥ ୫୪
ପୁଣି ଶୋକ ତ୍ୟଜି ସେ ରାଜର୍ଷି ପ୍ରବର ।
କଲେ ଁ କ୍ତ ବିଧିରେ ଯଜ୍ଞ ସାରିଲେ ସତ୍ୱର ॥ ୫୫
ଯଜ୍ଞ ଶେଷେ ନିଜ ପୁରେ ପ୍ରବେଶିଲେ ଯାଇ ।
ଏ' ଉତ୍ତାରୁ ଯାହା ହେଲା ଶୁଣ ରଘୁସାଇଁ ॥ ୫୬
କିପରି ଆଣିବେ ଗଙ୍ଗା ପୁତ୍ର ଉଦ୍ଧାରନେ ।
ନିରନ୍ତେ ରହିଲେ ନୃପ ବହୁ ଚିନ୍ତା ମନେ ॥ ୫୭
ଶେଷେ ବିକଳ ହୋଇଣ ରହିଲେ ନିଷ୍ଟଳେ ।
ତ୍ରିଂଶସହସ୍ର ବର୍ଷ ରାଜପଣ ସେ ସାଧିଲେ ॥ ୫୮
ଶେଷେ ଇହଧାମ ତେଜି ସଗର ରାଜନ ।
ଦିବ୍ୟଲୋକେ ମନ ଦେଇ କଲେକ ପ୍ରସ୍ଥାନ ॥ ୫୯
ଗଙ୍ଗାଙ୍କୁ ସନ୍ତୋଷିବାରେ ନ ପାଇ ଉପାୟ ।
ଦେବଲୋକେ ଗମିଲେ ସେ ନୃପ ମହାଶୟ ॥ ୬୦
ପୁତ୍ରଗଣ ଉଦ୍ଧାରଣେ ନୋହିଲେ ସମର୍ଥ ।
ଏ' ଉତ୍ତାରୁ ଆନକଥା ଶୁଣ ରଘୁନାଥ ! ॥ ୬୧
ବନିତାନନ୍ଦନ ପଦ ପଙ୍କଜ ଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମାୟଣ ଭଣେ ॥ ୬୨

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକଚତ୍ୱାରିଂଶ ସର୍ଗ ।



# ଦ୍ୱିଚତ୍ୱାରିଂଶ ସର୍ଗ

## ଗଙ୍ଗାଙ୍କୁ ଆଣିବା ଲାଗି ଅଂଶୁମାନ୍ ତଥା ଦିଲୀପଙ୍କ ତପସ୍ୟା ।

ଶୁଣ ହେ ଶ୍ରୀରାମ ! ସଗରଙ୍କ ମୃତ୍ୟୁ ପରେ ।
ରାଜ ପଦେ ଅଂଶୁମାନ ବସିଲେ ପ୍ରଜାରେ ॥ ୧
ପ୍ରଜାଙ୍କ ସମ୍ମତେ ସେହୁ ବସି ସିଂହାସନେ ।
ସାନନ୍ଦେ ପାଳିଲେ ପ୍ରଜା ସଗର ସମାନେ ॥ ୨
ଅଂଶୁମାନ ଥିଲେ ମହା ପ୍ରତାପୀ ରାଜନ ।
ଦିଲୀପ ନାମରେ ତାଙ୍କ ହୋଇଲା ନନ୍ଦନ ॥ ୩
କୁମାର ଦିଲୀପ ଥିଲେ ଯଶସ୍ୱୀ ପୁରୁଷ ।
ଦିଗନ୍ତ ବିସ୍ତାରି ଥିଲା ତାହାଙ୍କର ଯଶ ॥ ୪
ରଘୁକୁଳନନ୍ଦନ ହେ ବୀର ରଘୁରଣ !
ଏ’ ଉତ୍ତାରୁ ଯାହା ହେଲା ମନ ଦେଇ ଶୁଣ ॥ ୫
ଦିଲୀପଙ୍କୁ ରାଜପଦେ ବସାଇ ରାଜନ ।
ହିମାଳୟ ପଥେ ଗଲେ ବୀର ଅଂଶୁମାନ ॥ ୬
ରମଣୀୟ ଶୃଙ୍ଗେ ବସି ସାଧିଲେକ ତପ ।
କଠୋର ଯୋଗ ସାଧନେ ଅଯୋଧ୍ୟାମହୀପ ॥ ୭
ବତ୍ତିଶ ସହସ୍ର ବର୍ଷ ତପସ୍ୟାରେ ରହି ।
ଶରୀର ତେଜିଲେ ଅଂଶୁମାନ ନରସାଇଁ ॥ ୮
ରାଜନ ଦିଲୀପ ଶୁଣି ପିତାଙ୍କ ନିଧନ ।
କି କରିବେ ବୋଲି ବିଚାରିଲେ ମନେ ମନ ॥ ୯
ଅନେକ ମନ୍ତ୍ରଣା କରି ଦିଲୀପ ରାଜନ ।
ନିଷ୍ପତ୍ତି ନୋହିଲେ ଶୁଣ ଆହେ ରଘୁରଣ ! ॥ ୧୦
ସତତ ଚିନ୍ତିଲେ ସେହୁ କେବଣ ଉପାୟେ ।
ଆଣିବେ ଗଙ୍ଗାଙ୍କୁ ଧରାତଳେ ନରରାୟେ ॥ ୧୧

କପଟ ଚାରବେ ପିତୃପୁରୁଷେ ତାଙ୍କର ।
କପିଳଙ୍କ ଶାପେ ସେହୁ ଧ୍ୱଂସିଲେ ଶରୀର ॥ ୧୨
ପ୍ରେତମୁକ୍ତ ଅର୍ଥେ ଜଳଅଞ୍ଜଳି ପ୍ରଦାନେ ।
ଉଦ୍ଧରିବେ କେବଣ ଉପାୟେ ପିତୃଗଣେ ॥ ୧୩
ଚିନ୍ତିଲେ ସତତ ଏହା ଦିଲୀପ ରାଜନ ।
ଏଥିଅନ୍ତେ ତାଙ୍କ ପୁତ୍ର ହୋଇଲା ଜନମ ॥ ୧୪
ଭଗୀରଥ ନାମେ ସେହୁ ହୋଇଲା ବିଖ୍ୟାତ ।
ଧାର୍ମିକପଣେ ଜଗତେ ଯଶ କୀର୍ତ୍ତି ବ୍ୟାପ୍ତ ॥ ୧୫
ତ୍ରିଂଶସହସ୍ର ବର୍ଷ ରାଜପଦେ ବସି ନୃପ ।
ଅନେକ ଯଜ୍ଞ ସାଧିଲେ ରାଜନ ଦିଲୀପ ॥ ୧୬
ପିତୃପୁରୁଷ ଉଦ୍ଧାର କାରଣେ ସେ ବୀର ।
ଚିନ୍ତା ପ୍ରପୀଡ଼ିତେ ବ୍ୟାଧି ଗ୍ରାସିଲା ଶରୀର ॥ ୧୭
ପୁତ୍ର ଭଗୀରଥେ ସ୍ଥାପି ରାଜସିଂହାସନେ ।
ଆପଣା ସୁକର୍ମେ ନୃପ ଗଲେ ସ୍ୱର୍ଗଧାମେ ॥ ୧୮
ଧର୍ମାତ୍ମା ଯଶସ୍ୱୀ ଭଗୀରଥ ନୃପସାଇଁ ।
ପିତୃଙ୍କ କାରଣେ ତପ ସାଧିଲେ ଗୋସାଇଁ ॥ ୧୯
ନିଃସନ୍ତାନ ଥିଲେ ଭଗୀରଥ ମହାବୀର ।
ସନ୍ତାନ କାମନା ମନେ ଜାଗିଲା ତାଙ୍କର ॥ ୨୦
ସେ ଚିନ୍ତା ତେଜିଣ ମନୁ ନୃପ ଭଗୀରଥ ।
ଗୋକର୍ଣ୍ଣ ତୀର୍ଥରେ ସାଧିଲେ ସେ ଦୃଢ଼ବ୍ରତ ॥ ୨୧
ଊର୍ଦ୍ଧ୍ୱବାହୁ ହୋଇ କରି ପଞ୍ଚାଗ୍ନି ସ୍ଥାପନ ।
କଠୋର ତପ ସାଧିଲେ ଅଯୋଧ୍ୟା ରାଜନ ॥ ୨୨
ମନ୍ତ୍ରୀଗଣେ ରାଜ୍ୟ ଭାର ଦେଇ ନୃପବର ।
ପିତୃପୁରୁଷ କାରଣେ କଲେ ତପଘୋର ॥ ୨୩
ଇନ୍ଦ୍ରିୟଗଣଙ୍କୁ କରି ଆପଣା ଆୟତ୍ତ ।
ଆରମ୍ଭିଲେ ଭଗୀରଥ ଚାନ୍ଦ୍ରାୟଣବ୍ରତ ॥ ୨୪
ମାସକରେ ଏକ ଗ୍ରାସ କରଣ ଆହାର ।
ଏକସହସ୍ର ବର୍ଷ ତପ ସାଧିଲେ କଠୋର ॥ ୨୫

ଲୋକନାଥ ପ୍ରଜାପତି ତହୁଁ ଅତି ତୋଷେ ।
ଦେବଗଣ ସଙ୍ଗେ ଯେବେ ମିଳିଲେ ତା' ପାଶେ ॥ ୨୬
ପ୍ରସନ୍ନ ହୋଇଣ ଧାତା ବୋଇଲେ ବଚନେ ।
ଆହେ ପରମଧାର୍ମିକ ଭଗୀରଥ ! ଶୁଣ ॥ ୨୭
ତପ ପ୍ରଭାବେ ତୁମ୍ଭର ହୋଇଲୁଁ ପ୍ରସନ୍ନ ।
ଯାହା ଇଚ୍ଛାକର ନୃପ ! ମାଗି ବର ଘେନ ॥ ୨୮
ଧାତାଙ୍କ ପ୍ରସନ୍ନେ ଭଗୀରଥ ଅତି ମୋଦେ ।
କରଯୋଡ଼ ଉଭା ହୋଇ ଭାଷିଲେ ଗଦ୍‌ଗଦେ ॥ ୨୯
ଅହେ ଲୋକପତି ଧାତା ! ଯଦି ତପେ ମୋର ।
ହୋଇଛ ସୁପ୍ରୀତ ତେଣୁ ଦିଅ ଏହି ବର ॥ ୩୦
ଗଙ୍ଗାଙ୍କୁ ଯେପରି ଧରାତଳେ ନେବି ମୁହିଁ ।
ତେମନ୍ତ ଉପାୟ ପ୍ରଭୋ ! ଦିଅ ହେ ବତାଇ ॥ ୩୧
ଗଙ୍ଗାଜଳେ ତର୍ପଣ ମୁଁ କରିଣ ଗୋସାଇଁ !
ପିତୃ ପୁରୁଷଙ୍କ ପାପ-ପଙ୍କ ଦେବି ଧୋଇ ॥ ୩୨
ଗଙ୍ଗାଜଳ ଲଭି ମୋର ପିତୃ ପିତାମହ ।
ମୁକତି ଲଭିବେ ତେଣୁ କୁହ ପଦ୍ମଦେହ ! ॥ ୩୩
ମୋ' ତପସ୍ୟା ଫଳେ ପିତୃଗଣେ ହେବେ ପାର ।
ମୁକତି ଲଭିବେ ଯାହୁଁ ସଗର କୁମର ॥ ୩୪
ଦଗ୍ଧ ଯନ୍ତ୍ରଣାରୁ ପାର ହୋଇ ପିତୃଗଣେ ।
ଅକ୍ଷୟ ସ୍ୱରଗଧାମ ଲଭିବେ ତକ୍ଷଣେ ॥ ୩୫
ଆଉରି ବର ଗୋଟିଏ ଦିଅ ପ୍ରଜାପତି !
ଇକ୍ଷ୍ୱାକୁକୁଳ ରକ୍ଷଣେ ଲଭେ ମୁଁ ସନ୍ତତି ॥ ୩୬
ବଂଶ ପରମ୍ପରା ଯେଣୁ ହୋଇବ ରକ୍ଷଣ ।
ତେମନ୍ତ ବର ଦିଅ ହେ ସାବିତ୍ରୀରମଣ ! ॥ ୩୭
ରାଜାଙ୍କ ବଚନ ଶୁଣି ଲୋକ ପିତାମହ !
ପ୍ରସନ୍ନ ମାନସେ ବୋଇଲେ ସେ ବଚ୍ଛ ସ୍ନେହ ॥ ୩୮
କଲ୍ୟାଣ ହେଉ ତୁମ୍ଭର ଆହେ ଭଗୀରଥ !
ଅଚିରେ ପୂରଣ ହେବ ତବ ମନୋରଥ ॥ ୩୯

ସ୍ୱକୁଳ ରକ୍ଷଣେ ତବ ବଳନ୍ତୁ ମାନସ ।
ତେଣୁ ତପୋବଳେ ତୁଷ୍ଟ କର ଉମାଈଶ ॥ ୪୦
ଗଙ୍ଗାଙ୍କୁ ମସ୍ତକେ ସେହୁ କରିବେ ଧାରଣ ।
ତାଙ୍କ ପ୍ରସାଦୁ ତରିବେ ତୁମ୍ଭ ପିତୃଗଣ ॥ ୪୧
ଗଙ୍ଗାବତରଣେ ଶିବ ବିନୁ ଆନ ଦେବ ।
ନାହିଁ ନୋହିବେ ସମର୍ଥ ଶୁଣ ହେ ପାର୍ଥିବ ! ॥ ୪୨
ଏମନ୍ତ ଭାଷିଣ ଲୋକପାଳ ପ୍ରଜାପତି ।
ଜାହ୍ନବୀଙ୍କ ସନ୍ନିଧାନେ ପ୍ରବେଶି ତତ୍‌କ୍ଷତ ॥ ୪୩
ବୋଇଲେ ହେ ଲୋକମାତ ! ହୁଅ ସୁପ୍ରସନ୍ନ ।
ତବ ପ୍ରସାଦୁ ରାଜନ ହେଉ ପୂର୍ଣ୍ଣକାମ ॥ ୪୪
ଏସନ ବଚନେ ଭାଷି ଗଙ୍ଗାଙ୍କୁ ବିଧାତା ।
ଚଳଗଲେ ବ୍ରହ୍ମଲୋକେ ଯେମନ୍ତ ଦେବତା ॥ ୪୫
ମରୁତଗଣ ଚଳିଲେ ଆପଣା ମନ୍ଦିର ।
ଏ' ଉତ୍ତାରୁ ଯାହା ହେଲା ଶୁଣ ରଘୁବୀର ! ॥ ୪୬
ଗଙ୍ଗାଦେବୀ ଶ୍ରୀଚରଣେ କରଣ ପ୍ରଣତି ।
ପୁରୁଷୋତ୍ତମ ସାଦରେ ଗାଏ ରାମଗୀତି ॥ ୪୭

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଦ୍ୱିଚତ୍ୱାରିଂଶ ସର୍ଗ ।



## ତ୍ରିଚତ୍ୱାରିଂଶ ସର୍ଗ

### ଗଙ୍ଗାବତରଣ

ହେ ଶ୍ରୀରାମ ! ଏଥୁଅନ୍ତେ ଭଗୀରଥ ରାଜା ।
କଠୋର ତପରେ କଲେ ଆଶୁତୋଷେ ପୂଜା ॥ ୧
ପାଦ ବୃଦ୍ଧାଙ୍ଗୁଳି ଉପରେ ଛିଡ଼ା ହୋଇ ବୀର ।
ତପ ସାଧିଲେ ନିଷ୍ଠାରେ ଏକ ସମ୍ବତ୍ସର ॥ ୨

ଏକ ବର୍ଷ ପୂର୍ଣ୍ଣ ହୋନ୍ତେ ଦେବ ଉମାପତ ।
ରାଜା ଭଗୀରଥ ପାଶେ ମିଳିଲେ ତୁରିତ ॥ ୩
ପ୍ରସନ୍ନ ହୋଇଣ ଶିବ ବୋଇଲେ ଏସନ ।
ହେ ରାଜନ ! ଯେ କାରଣେ ଏ' ତପ ସାଧନ ॥ ୪
କରିବି ପୂରଣ ତବ ସର୍ବ ମନସ୍କାମ ।
ଗିରିରାଜନନ୍ଦନୀରେ କରିବି ଧାରଣ ॥ ୫
ମୋ' ମସ୍ତକ ଜଟାଜୂଟେ ହିମକେଶପାବନୀ ।
ରହିବେ ନିଶ୍ଚଳେ ସଦା ଥିବ ତାଙ୍କୁ ଘେନି ॥ ୬
ଶଙ୍କରଙ୍କ ବର ପାଇ ନୃପ ଭଗୀରଥ ।
ଜାଣିଲେ ପୂରିବ ତାଙ୍କ ସର୍ବ ମନୋରଥ ॥ ୭
ଏ' ସମୟେ ଗଙ୍ଗାଦେବୀ କଲେକ ବିଚାର ।
ମୋ' ପ୍ରଖରସ୍ରୋତେ ନିଶ୍ଚେ ବହିଯିବେ ହର ॥ ୮
ତାହାଙ୍କୁ ଘେନି ପଶିବ ପାତାଳ ବିବରେ ।
ଶିବ କି ସହି ପାରିବେ ମୋ' ପ୍ରଖର ଧାରେ ॥ ୯
ଏମନ୍ତ ବିଚାରି ଗିରିରାଜପୁତ୍ରୀ ଖରେ ।
ଉଗ୍ରରୂପେ ପଡ଼ିଲେ ସେ ଶିବଙ୍କ ଶିରରେ ॥ ୧୦
ହେ ଶ୍ରୀରାମ ! ଜାହ୍ନବୀଙ୍କ ଏମନ୍ତ ବିଚାର ।
ଅନ୍ତର୍ଗତେ ଜାଣି ପ୍ରଭୁ ଦେବ ଶୂଳଧର ॥ ୧୧
କୁପିତ ମାନସେ ସେହୁ ହୋଇଣ ଅସ୍ଥିର ।
ବିଚାରିଲେ ଅଭିମାନ ହୋଇଛି ଏହାର ॥ ୧୨
ଗରବ ଗଞ୍ଜନ ତା'ର କରିବି ଏଠାରେ ।
ଚିରକାଳ ଭ୍ରମୁଥିବ ଜଟାଜୂଟ ପରେ ॥ ୧୩
କରିବି ଅଦୃଶ୍ୟ ସଦାକାଳ ଥିବ ତହିଁ ।
ଗଙ୍ଗା ନାମ ବର୍ଣ୍ଣ ଚିହ୍ନ ନ ରହିବ କାହିଁ ॥ ୧୪
ଦେଖିବ ଜଗତେ ସେହୁ କେଡ଼େ ବଳବନ୍ତୀ ।
ନ ଗଣଇ ମୋ' ଶକତି ଅହଙ୍କାରେ ମାତି ॥ ୧୫
ଏମନ୍ତ ବିଚାରି ହର ଯୋଗମାୟା ବଳେ ।
ଗଙ୍ଗାଙ୍କୁ ବନ୍ଧିବା ପାଇଁ ଜଟା ବିସ୍ତାରିଲେ ॥ ୧୬

ହିମଗିରି ଗୁହା ଜଣି ସେ ଜଟାମଣ୍ଡଳେ ।
ଭ୍ରମି ଗଙ୍ଗାଦେବୀ ତହିଁ ରହିଲେ ଅକୂଳେ ॥ ୧୭
ବହୁ କଷ୍ଟେ ସୁରନଦୀ ବିସ୍ତାରିଲେ ଧାର ।
ତଥାପି ସେ ଜଟାଜୁଟୁଁ ନୋହିଲେ ବାହାର ॥ ୧୮
ଅନେକ ବରଷ ତହିଁ ଭ୍ରମି ଭ୍ରମି ଶେଷେ ।
ନ ପାରିଲେ ଯାଇ କାହିଁ ରହିଲେ ନିରାଶେ ॥ ୧୯
ଦେଖିଣ ଏସନ ସ୍ଥିତି ଦିଲ୍ଲୀପ ନନ୍ଦନ ।
ନିରାଶ ନୋହି ସେ ପୁଣ ଆରମ୍ଭିଲେ ଧ୍ୟାନ ॥ ୨୦
ଉଗ୍ର ତପ ସାଧି ତହିଁ ବସିଲେ ରାଜନ ।
କେତେକାଳ ପରେ ହର ହୋଇ ସୁପ୍ରସନ୍ନ ॥ ୨୧
ବିନ୍ଦୁ ସରୋବରରେ ନେଇ ତେଜିଲେ ଗଙ୍ଗାରେ ।
ତହୁଁ ସେ ବହିଲେ ଧୀରେ ସପତ ଧାରାରେ ॥ ୨୨
ସେ ସପତ ଧାରା ନାମ ଶୁଣ ରଘୁମଣି !
ହ୍ଲାଦିନୀ ପାବନୀ ଆର ନଳିନୀ ଏ' ତିନି ॥ ୨୩
ଜଗତ କଲ୍ୟାଣେ ବହିଗଲେ ପୂର୍ବଦିଗେ ।
ଆବର ତ୍ରି ଧାରା ଗଲେ ପଶ୍ଚିମ ଦିଗ୍‌ଭାଗେ ॥ ୨୪
ସୀତା ସିନ୍ଧୁ ସୁଚକ୍ଷୁ ନାମରେ ଧାରା ତିନି ।
ବହିଲେ ଜନକଲ୍ୟାଣେ ଜଗତ ପାବନୀ ॥ ୨୫
ଗଙ୍ଗା ନାମେ ସପତମ ଧାରା ହେ ରାଘବ !
ଚଳିଲେ ଭଗୀରଥଙ୍କ ସାଥେ ଦେଖ ଭାବ ॥ ୨୬
ରଥେ ବସି ନୃପବର ଚଳିଲେ ଆଗରେ ।
ତ୍ରିଲୋକପାବନୀ ଗଙ୍ଗା ବହିଲେ ପଛରେ ॥ ୨୭
ଏସନ ତପ ସାଧନେ ଭଗୀରଥଙ୍କର ।
ଆକାଶ ମାର୍ଗରୁ ଗଙ୍ଗା ଅଇଲେ ଭୂତଳ ॥ ୨୮
ବିଶାଳ ଜଳରାଶିରେ ହୋଇଣ ଶୋଭନା ।
ଭଗୀରଥ ପଛେ ଗଙ୍ଗା ଚଳିଲେ ସୁମନା ॥ ୨୯
କଳକଳ ନାଦିନୀ ଗଙ୍ଗାର ଜଳଧାରେ ।
ଢଳଢଳ ହୋଇ ଆସି ମର୍ତ୍ତ୍ୟଶିଶୁମାରେ ॥ ୩୦

କଚ୍ଛପ ସହିତେ ସବୁ ଜଳଜନ୍ତୁଗଣ ।
ହରଷ ଅନ୍ତରେ ତହିଁ କଲେ ସନ୍ତରଣ ॥ ୩୧
ଜଳଜନ୍ତୁଗଣେ ଗଙ୍ଗା ହୋଇଲେ ଶୋଭନ ।
ସେ ଶୋଭା ନିରେଖି ଜନେ ହେଲେ ମୋଦମଗ୍ନ ॥ ୩୨
ଗଙ୍ଗାବତରଣ ଦୃଶ୍ୟ ଦେଖିବା ମାନସେ ।
ଦେବତା ଗନ୍ଧର୍ବ ଋଷି ଯକ୍ଷ କିଂପୁରୁଷେ ॥ ୩୩
ଯେ ଯାହାର ଅନୁପମ ବିମାନ ଆରୋହି ।
ନିଜ ନିଜ ପୁରୁଁ ସର୍ବେ ଅଇଲେ ଓହ୍ଲାଇ ॥ ୩୪
କେ ଏ ବା ଅଇଲା ଦିବ୍ୟ ଗଜରାଜ ପରେ ।
ଆବର କେହୁ ଅଇଲେ ବସି ଅଶ୍ୱବରେ ॥ ୩୫
ସର୍ବେ ଚକିତ ନୟନେ ନିରେଖି ସେ ଦୃଶ୍ୟ ।
ଆନନ୍ଦ ସାଗରେ ମଜ୍ଜି ଲଭିଲେ ସନ୍ତୋଷ ॥ ୩୬
ଦେବତାଗଣଙ୍କ ଦିବ୍ୟ-ରତ୍ନ-ଆଭୂଷଣ ।
କିରଣଜାଳେ ଆକାଶ ଶୋଭିଲା ତେସନ ॥ ୩୭
ନିର୍ମଳ ଗଗନତଳେ କୋଟିଏ ଆଦିତ୍ୟ ।
ଉଇଁଲେକି ସତେ ଅବା ହୋଇଣ ଏକତ୍ର ॥ ୩୮
ମକର ହରଷେ ସର୍ପ ମୀନ ଶିଶୁମାର ।
ଗଙ୍ଗାର ଉଲ୍ଲୋଳେ ନାଚି ଖେଳିଲେ ଅପାର ॥ ୩୯
ସେ ଶୋଭା ନିରେଖି ଜନେ ବର୍ଣ୍ଣିଲେ ମନେ ।
ଘନ କୋଳେ ଚପଳା କି ପ୍ରକାଶେ ଗଗନେ ॥ ୪୦
ଚଳଚଞ୍ଚଳ ପ୍ରବାହ ଘରଷଣେ ଫେନ ।
ଉଠିଲା ଆକାଶେ ଲଭି ପ୍ରଖର ପବନ ॥ ୪୧
ଖେଳିଯାଇ ଚଉଦିଶେ ଦିଶିଲା ଏସନ ।
ଶରଦ ଗଗନେ କିବା ଖେଳେ ଶୁଭ୍ରଘନ ॥ ୪୨
କି ବା ନିର୍ମଳ ଆକାଶେ ହୋଇ ଦଳଦଳ ।
ଉଡୁଛନ୍ତି ହଂସଦଳ କରିଣ ଚହଳ ॥ ୪୩
ସେ ଶୀତଳଧାର କାହିଁ ବହିଲା ସଧୀରେ ।
କାହିଁ ଅବା ଭଙ୍ଗରଳେ ଭ୍ରମେ ବହ ଧାରେ ॥ ୪୪

ଯାହିଁ ନମ୍ର ଭୂମିପରେ ବହଇ ପ୍ରଖର ।
ସଙ୍କୁଚିତ ହୁଏ ଯାହିଁ ଲଭି ଊର୍ଦ୍ଧ୍ୱସ୍ତର ॥ ୪୫
ଯାହିଁ ନମ୍ରଗାମିନୀ ସେ ଯାହିଁ ବା ଊର୍ଦ୍ଧ୍ୱଗା ।
ନାନା ମନୋରମ-ରଙ୍ଗେ ବହିଯାଏ ଗଙ୍ଗା ॥ ୪୬
କେଉଁ ବିଚିତ୍ର ଭୂମିରେ କରି ଶବ୍ଦଗତି ।
ଲହରୀମ ନାରେ ଖେଳି ଖେଳି ଢବାରଷି ॥ ୪୭
ତଟବାସୀ ଜନେ ଦେଇ ପରମ ସନ୍ତୋଷ ।
ବହିଯାଏ ପୁଣ୍ୟତୋୟା ହେଇଣ ହରଷ ॥ ୪୮
ଯାହିଁ ବା ଲହରୀ ବାଜି ଲହରୀରେ ପୁଣି ।
ଶବ୍ଦାୟିତ ହୋଇ ଉଠେ କଳକଲ୍ଲୋଳିନୀ ॥ ୪୯
ଊର୍ଦ୍ଧ୍ୱ ନମ୍ର ବହୁ ଶବ୍ଦ ଗତିରେ ସେ ଗଙ୍ଗା ।
ବହେ ଭଗୀରଥ ପଛେ ଚପଳତରଙ୍ଗା ॥ ୫୦
ସେ ନିର୍ମଳ ଜଳଧାରା ଶୀତଳ ବାହିନୀ ।
ବିଚିତ୍ର ଭଙ୍ଗୀରେ ବହେ ସୁରତରଙ୍ଗିଣୀ ॥ ୫୧
ସେ ଶୋଭା ଅବଲୋକନେ ହୃଷ୍ଟ ହୋଇ ଜନେ ।
'ଜୟଗଙ୍ଗେ' 'ଜୟଗଙ୍ଗେ' ଘୋଷିଲେ ସୁମନେ ॥ ୫୨
ଭୂତଳ ନିବାସୀ ଯେତେ ମୁନି ଋଷିଗଣ ।
ବିହରିଲେ ଗନ୍ଧର୍ବ ସମେତେ ଯୋଗିଜନ ॥ ୫୩
ଶଙ୍କରଙ୍କ ଜଟାରୁ ଏ' ହୋଇଛି ବାହାର ।
ତେଣୁ ପରମ ପବିତ୍ର ଅଟେ ଗଙ୍ଗାଜଳ ॥ ୫୪
ଏମନ୍ତ ବିଚାରି ସର୍ବେ କଲେ ଆଚମନ ।
ଗଙ୍ଗାଜଳେ ସୁପବିତ୍ର ହେଲା ଆତ୍ମାମନ ॥ ୫୫
ତପୋଭ୍ରଷ୍ଟ ହୋଇ ଯେଉଁ ସ୍ୱର୍ଗବାସୀଗଣ ।
ଧରାତଳେ ଲଭିଥିଲେ ମାନବ ଜନମ ॥ ୫୬
ସର୍ବେ ଗଙ୍ଗାଜଳେ ସ୍ନାନ ମାର୍ଜନା ସାରିଣ ।
ସୁରଲୋକେ ଗମିଲେ ଅରଜି ମହାପୁଣ୍ୟ ॥ ୫୭
ନିଜ ନିଜ ଧାମେ ଯାଇ ହେଲେ ଅଧିଷ୍ଠିତ ।
ଗଙ୍ଗାଜଳ ମହିମା ଏ' ଶୁଣ ରଘୁନାଥ ॥ ୫୮

ପବିତ୍ର ସଲିଳେ ସର୍ବେ ପଖାଳି ଶରୀର ।
ନିଷ୍ପାପ ନିର୍ମଳଚିତ୍ତ ହେଲେ ରଘୁବର ! ॥ ୫୯
ହେ ଶ୍ରୀରାମ ! ଏଥିଅନ୍ତେ ଶୁଣ ପୁଣ୍ୟଗାଥା ।
ସୁପୁଣ୍ୟଦାୟିନୀ ଗଙ୍ଗାବତରଣ କଥା ॥ ୬୦
ରାଜର୍ଷିପ୍ରବର ମହାମନା ଭଗୀରଥ ।
ଆଗେ ଆଗେ ଚଳିଯା'ନ୍ତି ଚଢ଼ି ଦିବ୍ୟରଥ ॥ ୬୧
ତାଙ୍କ ପଥ ଅନୁସରି ତ୍ରିଲୋକପାବନୀ ।
ଚଳିଲେ ମଙ୍ଗଳମୟୀ ଗଙ୍ଗା ସୁରଧୁନୀ ॥ ୬୨
ହେ ଶ୍ରୀରାମ ! ତାଙ୍କ ସାଥେ ଦେବତା ମହର୍ଷି ।
ନାଗ ଯକ୍ଷ ଗନ୍ଧର୍ବ କିନ୍ନରଗଣ ମିଶି ॥ ୬୩
କଲ୍ଲୋଳିନୀ ସୁରଧୁନୀ ସାଥେ ହୃଷ୍ଟ ମନେ ।
ଚଳିଲେ ସକଳେ ତେଜି ନିଜ ନିଜ ଧାମେ ॥ ୬୪
ଯେଉଁ ଦିଗେ ଚଳିଯା'ନ୍ତି ଭଗୀରଥ ନୃପ ।
ସେ ଦିଗେ ବହଇ ଗଙ୍ଗା ଧରି ଦିବ୍ୟରୂପ ॥ ୬୫
କିଛିଦିନ ଅନ୍ତେ ସେହୁ ବହିଣ ସରସେ ।
ପ୍ରବେଶ ହୋଇଲେ ଯାଇ ଜହ୍ନୁ ରାଜା ଦେଶେ ॥ ୬୬
ଯେଉଁ ସ୍ଥାନେ ରାଜର୍ଷିପ୍ରବର ଜହ୍ନୁ ନୃପ ।
ଯଜ୍ଞେ ଯଜ୍ଞେଶ୍ୱର ପୂଜା ସାଧୁଥିଲେ ତପ ॥ ୬୭
ସେ ସ୍ଥଳେ ପ୍ରବେଶି ଗଙ୍ଗା ଜଳ-ପ୍ରବାହରେ ।
ଭସାଇ ନେଲେ ସକଳ ଯଜ୍ଞର ସମ୍ଭାରେ ॥ ୬୮
ବିସ୍ମରିଲେ ଜହ୍ନୁ ଏ' ତ ହେଲା ଅଦଭୁତ ।
ବିନା ଦୋଷେ ଗଙ୍ଗା କିମ୍ପା ନାଶିଲା ମୋ' ବ୍ରତ ॥ ୬୯
ଏତେ ଗର୍ବ ମନେ କେହ୍ନେ ବହେ ସୁରଧୁନୀ ।
ଏସନ ଚିନ୍ତି କୋପିଲେ ମନେ ରାଜମଣି ॥ ୭୦
ତପସ୍ୟା ପ୍ରଭାବୁଁ ରାଜା ହୋଇଥିଲେ ସିଦ୍ଧ ।
ଆଚମନେ ଗଙ୍ଗାନୀର ଶୋଷିଲେ ନିର୍ବାଧ ॥ ୭୧
ଏଡ଼େ ବିଡ଼ମ୍ବନ ଦେଖି ଦେବତା ସକଳ ।
ସ୍ତୁତି କଲେ ଜହ୍ନୁ ପଦେ ହୋଇ ଏକମେଳ ॥ ୭୨

ସକଳେ ବନସ୍ତ ସ୍ତବେ ଭାଷିଲେ ଏ' ବାଣୀ ।
କୃପାକର କୃପାନାଥ ! ରାଜ ଶିରୋମଣି ॥ ୭୩
ଗଙ୍ଗା ଆଜ ଠାରୁ ତବ ପୁତ୍ରୀ ରୂପେ ଜାଣ ।
ପ୍ରଖ୍ୟାତ ଲଭିବେ ଭବେ ସନ୍ଦେହ ନ ମଣ ॥ ୭୪
ଗଙ୍ଗାଙ୍କର ନବଜନ୍ମ ହେବ ତୁମ୍ଭ ପାଶ ।
ଅଣସ୍ତ ନ ମଣ ଏଥେ ସୁଜ୍ଞମା ନରେଶ ! ॥ ୭୫
ଶୁଣି ଏସନ ବଚନ ସେ ମହର୍ଷି ଜହ୍ନୁ ।
ଗଙ୍ଗାଙ୍କୁ ବାହାର କଲେ ଆପଣାର କର୍ଣ୍ଣୁ ॥ ୭୬
ସେହିଦିନୁ ଜାହ୍ନବୀ ହୋଇଲା ଗଙ୍ଗା ନାମ ।
ହେ ଶ୍ରୀରାମ ! ମନ ଦେଇ ଶୁଣ ଏ' ବଚନ ॥ ୭୭
ତହୁଁ ଗଙ୍ଗା ପୁଣି ଅନୁସରି ଭଗୀରଥ ।
ଚଳିଲେ ଚପଳଛନ୍ଦା ଆହେ ରଘୁନାଥ ! ॥ ୭୮
ନୃପବର ପଛେ ପଛେ ଚଳିଲେ ମୋଦରେ ।
ନଦୀଙ୍କ ଉତ୍ତମ ସୁରତରଙ୍ଗିଣୀ ଖରେ ॥ ୭୯
ବହୁଦୂର ଅନୁସରି ଜହ୍ନୁମୁନି ସୁତା ।
ପୁଲକ ଅନ୍ତରେ ହେଲେ ସାଗରେ ମିଳିତା ॥ ୮୦
ନୃପ ଭଗୀରଥ ସାଥେ ଚଳି ସୁରନଦୀ ।
ରସାତଳେ ପ୍ରବେଶିଲେ ବଢ଼ାଇ ପ୍ରସିଦ୍ଧି ॥ ୮୧
ଜାହ୍ନବୀ ପ୍ରବେଶ ହୋଇ ସାଗର ମଧ୍ୟରେ ।
ସଗର ପୁତ୍ରଙ୍କୁ ଉଦ୍ଧରିଲେ ସନ୍ତୋଷରେ ॥ ୮୨
ଋଷିଶାପେ ରାଜପୁତ୍ରେ ହୋଇଥିଲେ ଭସ୍ମ ।
ସେ ସ୍ଥାନେ ପ୍ରବେଶି ଗଙ୍ଗା ସାଧିଲେ ସୁକର୍ମ ॥ ୮୩
ଭଗୀରଥ କାର୍ଯ୍ୟ ସିଦ୍ଧି ହୋଇଲାକ ତହୁଁ ।
ନିଷ୍ପାପ ହୋଇଣ ସର୍ବେ ସ୍ୱର୍ଗେ ଗଲେ ତହୁଁ ॥ ୮୪
ଗଙ୍ଗାଜଳେ ତର୍ପଣ କରିଣ ଭଗୀରଥ ।
ପତିତ ପିତୃପୁରୁଷେ କଲେକ କୃତାର୍ଥ ॥ ୮୫
ଗଙ୍ଗାଙ୍କ ଚରିତ ଏହୁ ଅମୃତ ସମାନ ।
ଶୁଣିଲଭ ମନ ଦେଇ ଆହେ ରଘୁରାଣ ! ॥ ୮୬

ସେ ଗଙ୍ଗା ପବିତ୍ର ନାମ ସଦା କରି ଧ୍ୟାନ ।
ପୁରୁଷୋତ୍ତମ ଗାବଇ ଗଙ୍ଗାବତରଣ ॥ ୮୬

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ତ୍ରିଚତ୍ୱାରିଂଶ ସର୍ଗ ।



# ଚତୁଃଚତ୍ୱାରିଂଶ ସର୍ଗ

## ଗଙ୍ଗାବତରଣ ମହିମା ।

ଆହେ ରଘୁନାଥ ! ରବିକୁଳର ଭୂଷଣ ।
ଏଥୁଅନ୍ତେ ଯା’ ଘଟିଲା ମନ ଦେଇ ଶୁଣ ॥ ୧
ଗଙ୍ଗାଙ୍କୁ ଘେନିଣ ସାଥେ ନୃପ ଭଗୀରଥ ।
ରସାତଳେ ପ୍ରବେଶିଲେ ହୋଇ ଆନନ୍ଦିତ ॥ ୨
ସଗର ପୁତ୍ରଙ୍କ ଭସ୍ମରାଶି ଦେଲେ ଧୋଇ ।
ପାପାତ୍ମସ ସୁତେ ଗଙ୍ଗାଜଳ ସ୍ପର୍ଶ ପାଇ ॥ ୩
ମୁକତି ଲଭିଣ ଚାଲିଗଲେ ଦିବ୍ୟଧାମ ।
ଏ’ ଉତ୍ତାରୁ ଯାହା ହେଲା ଶୁଣ ହେ ଶ୍ରୀରାମ ! ॥ ୪
ଭଗୀରଥ ଫେରିବାନା ଉଡ଼ିଲା ଗଗନେ ।
ଏ’ ସମୟେ ପ୍ରଜାପତି ଆନନ୍ଦିତ ମନେ ॥ ୫
ପ୍ରବେଶ ହୋଇଲେ ଆସି ଭଗୀରଥ ପାଶେ ।
ମଧୁର ବଚନେ ତାଙ୍କୁ ବୋଇଲେ ହରଷେ ॥ ୬
ହେ ରାଜନ ! ତୁମ୍ଭ ପିତୃଗଣ ସହରଷେ ।
ପ୍ରବେଶିଲେ ଦିବ୍ୟଧାମେ ଅମରଙ୍କ ପାଶେ ॥ ୭
ହେ ନରେଶ ! ଯେତେକାଳ ଯାଏଁ ଏ’ ସାଗର ।
ରହିଥିବ ଧରାଧାମେ ଲଭିଣ ବିସ୍ତାର ॥ ୮
ତେତେକାଳ ଯାଏଁ ତବ ପିତାମହଗଣ ।
ଲଭିଥିବେ ଦିବ୍ୟଧାମେ ସୁଦିବ୍ୟ ଆସନ ॥ ୯

ସୁରଗଣ ସାଥେ ତାଙ୍କ ହୋଇବ ଗଣନା ।
ଯେ କାର୍ଯ୍ୟ କରିଛ ନୃପ ! ନୋହୁ ଆନମନା ॥ ୧୦
ଏ' କ ରଣୁ ଗଙ୍ଗା ତବ ଜ୍ୟେଷ୍ଠପୁତ୍ରୀ ସମ ।
ସଂସାରେ ଲଭିବେ ସେହୁ ଭଗୀରଥୀ ନାମ ॥ ୧୧
ତ୍ରିପଥଗା ଭଗୀରଥୀ ଦିବ୍ୟା ଯେ ଆବର ।
ଏହୁ ତିନ ନାମେ ଗଙ୍ଗା ଲଭିବେ ପ୍ରସାର ॥ ୧୨
ସ୍ୱରଗ ଏ' ଧରାଧାମ ପାତାଳ ଭୁବନେ ।
ପ୍ରସରି ସେ ପବିତ୍ର କରିବେ ତ୍ରିଭୁବନେ ॥ ୧୩
ତେଣୁ ତ୍ରିପଥଗା ନାମ ହୋଇବ ତାଙ୍କର ।
ହେ ରାଜନ ! ଏବେ ତୁମ୍ଭେ ମୋର ବୋଲ କର ॥ ୧୪
ଗଙ୍ଗାଜଳେ ସ୍ନାନ ସାରି କରି ଆଚମନ ।
ତୁମ୍ଭ ପିତୃପୁରୁଷଙ୍କୁ ଦିଅ ଜଳଦାନ ॥ ୧୫
ପୂର୍ବେ ଯେଉଁ ତପ ସାଧିଥିଲେ ଅଂଶୁମାନ ।
ସେ ମାର୍ଗ ଆଶ୍ରୟ କରି ଦିଲୀପ ରାଜନ ॥ ୧୬
କରିଥିଲେ ବହୁଶ୍ରମ ଯେଉଁ କାର୍ଯ୍ୟ ଲାଗି ।
ସେ ଅସାଧ୍ୟ ସାଧି ତୁମ୍ଭେ ହେଲ ସଉଭାଗୀ ॥ ୧୭
ସଗର ରାଜନ ମହାଧାର୍ମିକ ସୁକ୍ଷମୀ ।
ତାଙ୍କ ପୌତ୍ର ଅଂଶୁମାନ ଥିଲେ ମହାକ୍ଷମୀ ॥ ୧୮
ପରମ ଧାର୍ମିକ ପୁଣି ତପସ୍ୱୀ ପ୍ରବର ।
କ୍ଷତ୍ରିୟ ଧର୍ମ ପାଳନେ ଯେହୁ ଗୁଣାକର ॥ ୧୯
ସାଧିଥିଲେ ସେହୁ ବହୁ କଷ୍ଟେ ଯେଉଁ ତପ ।
ସେ କାର୍ଯ୍ୟ ସାଧିଲ ତୁମ୍ଭେ ହେ ଧାର୍ମିକ ନୃପ ! ॥ ୨୦
ଯେ ପ୍ରତିଜ୍ଞା କରିଥିଲେ ତବ ପିତୃଗଣ ।
ସେହୁ ମହାତପ ଆଜ ହୋଇଲା ସମ୍ପୂର୍ଣ୍ଣ ॥ ୨୧
ଏଣୁ ତୁମ୍ଭ ନାମ ହେବ ଜଗତେ ବିଦିତ ।
ଅସାଧ୍ୟ ସାଧିଲ ତୁମ୍ଭେ ହେ ଦିଲୀପସୁତ ! ॥ ୨୨
ଦେବଲୋକୁଁ ଗଙ୍ଗାଙ୍କୁ ଆଣିଲ ଭୂମଣ୍ଡଳେ ।
ଏଣୁ ତବ ପୁଣ୍ୟଗାଥା ଘୋଷିବେ ସକଳେ ॥ ୨୩

ଯାହା ବଳେ ସ୍ୱର୍ଗ ଫଳ ମଣୁଥିଲେ ଜନେ ।
ସେସବୁ ପୁଣ୍ୟ କର୍ମ ତୁମ୍ଭେ ସାଧିଲ ଯତନେ ॥ ୨୪
ସୁପୁଣ୍ୟ ପ୍ରଭାବୁଁ ଆହେ ନୃପତି ଶେଖର !
ବ୍ରହ୍ମଲୋକେ ଅଧିକାର ହୋଇଲା ତୁମ୍ଭର ॥ ୨୫
ସଦା କଲ୍ୟାଣ ମନାସି ଗଙ୍ଗାଜଳେ ସ୍ନାନ ।
ଯେ କରିବ ପୂର୍ଣ୍ଣକାମ ହେବ ସେହୁ ଜନ ॥ ୨୬
ମୋ' ଆଦେଶ ଘେନି ତୁମ୍ଭେ ସ୍ନାନ କରି ଏଥି ।
ପିତୃଲୋକେ ତରପଣ କର ହେ ତଡ଼ିତ ॥ ୨୭
ହେ ରାଜନ ! ରଘୁକୁଳଚନ୍ଦ୍ର ମହାମନା ।
ତୁମ୍ଭ କାର୍ତ୍ତି ଲାଗି ବସୁନ୍ଧରା ହେଲା ଧନ୍ୟା ॥ ୨୮
ମନ ସୁଖେ ଚଳ ଏବେ ଆପଣା ଭୁବନେ ।
ସୁଖ୍ୟାତି ହୁଅ ଜଗତେ ମୋର ସୁକଲ୍ୟାଣେ ॥ ୨୯
ଏତେ ଭଣି ହଂସଯାନେ ଦେବ ପଦ୍ମଯୋନି ।
ଚଳିଲେ ବ୍ରହ୍ମଲୋକରେ ସୁରଗଣ ଘେନି ॥ ୩୦
ବ୍ରହ୍ମାଙ୍କ ବଚନ ଶୁଣି ନୃପ ଭଗୀରଥ ।
ଜହ୍ନୁସୁତା ଜଳେ ସ୍ନାନ ସାରିଣ ତୁରିତ ॥ ୩୧
ଜଣ ଜଣ ନାମ ଧରି ସଗର କ୍ରମରେ ।
ତର୍ପଣ କରିଲେ ନୃପ ବିଧି ବିଧାନରେ ॥ ୩୨
ତଦନ୍ତେ ସଫଳ କରି ସର୍ବ ମନୋରଥ ।
ଆପଣା ନଗରେ ଚଳିଗଲେ ଭଗୀରଥ ॥ ୩୩
ନଗରେ ପ୍ରବେଶି ନୃପ ହରଷ ମନରେ ।
ପାଳିଲେ ପରଜାକୁଳ ପରମ ସାଦରେ ॥ ୩୪
ପ୍ରଜାଗଣେ ଲଭି ପୁଣି ରାଜାଙ୍କୁ ରାଜ୍ୟରେ ।
ଭାସିଲେ ମହାସୁଖେ ଆନନ୍ଦ ସାଗରେ ॥ ୩୫
ସର୍ବେ ଦୁଃଖ ଭୁଲି ସୁଖେ କଲେକ ବିହାର ।
ମଣିଲେ ଆପଣା ଭାଗ୍ୟ ଅତି ବଳୀୟାର ॥ ୩୬
କୁଶିକ ନନ୍ଦନ ଏହା ଭାଷି ପ୍ରମୋଦରେ ।
ବୋଇଲେ ହେ ରାମ ! ଯାହା ଭଣିଲି ଭାଷାରେ ॥ ୩୭

ଗଙ୍ଗାବତରଣ କଥା ଆନନ୍ଦଦାୟିନୀ ।
ଶୁଣିଲତ ଆଦ୍ୟ ପ୍ରାନ୍ତ କରି ରଘୁମଣି ! ॥ ୩୮
ନିଜ ବଂଶ ବୃତ୍ତାନ୍ତ ଏ' ଅମୃତ ଚରିତ ।
କଲ୍ୟାଣ ହେଉ ତୁମ୍ଭର ଆହେ ରଘୁନାଥ ! ॥ ୩୯
ଏବେ ସର୍ବେ ମିଳି ସନ୍ଧ୍ୟାବନ୍ଦନ-ମାନସେ ।
ଉଚ୍ଛୁର ହେଲଣି ବେଳ ଚଳ ମନତୋଷେ ॥ ୪୦
ଏ' ମଙ୍ଗଳମୟ ଗାଥା ସୁପୁଣ୍ୟକାରିଣୀ ।
ଯଶ ଆୟୁଷଦାୟିନୀ କୀର୍ତ୍ତିବର୍ଦ୍ଧିନୀ ॥ ୪୧
ଯେହୁ ପବିତ୍ର ମାନସେ ଶୁଣେ ଏ' ଚରିତ ।
ଧନ ଜନ ଗୋପ ଲକ୍ଷ୍ମୀ ବଢ଼େ ତା' ବହୁତ ॥ ୪୨
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଅବା ଶୂଦ୍ରଜନ ।
ଯେ ଶୁଣଇ ଶ୍ରଦ୍ଧା ଚିତ୍ତେ ହୋଇ ଶୁଦ୍ଧମନ ॥ ୪୩
ଦେବତା ପିତର ସର୍ବେ ହୁଅନ୍ତି ପ୍ରସନ୍ନ ।
ଯଶ ଆୟୁଷ ଲଭଇ ସାଧଇ କଲ୍ୟାଣ ॥ ୪୪
ଗଙ୍ଗାବତରଣ କଥା ଅମୃତ ସମାନ ।
ଶୁଣିଲ ଅକ୍ଷୟକୀର୍ତ୍ତି ଲଭିବ ଶ୍ରୀରାମ ॥ ୪୫
ଯେହୁ ଶୁଣେ ଏକମନେ ଏ' ମଙ୍ଗଳଗୀତ ।
ଯଶ କୀର୍ତ୍ତି ଆୟୁବଳ ବଢ଼େ ତା' ବହୁତ ॥ ୪୬
ଅନ୍ତେ ସେ ଲଭଇ ବଇକୁଣ୍ଠ ପୁଣ୍ୟଧାମ ।
ତାର ପୁତ୍ର ପୌତ୍ର ଆଦି ହୋ'ନ୍ତି ପୂର୍ଣ୍ଣକାମ ॥ ୪୭
ଏତେ ଭଣି ବିଶ୍ୱାମିତ୍ର ହୋଇଲେ ମଉନ ।
ସନ୍ଧ୍ୟା ଆହ୍ନିକ କରିବେ ଚଳିଲେ ଶ୍ରୀରାମ ॥ ୪୮
ଗଙ୍ଗା କୌଶିକ ଶ୍ରୀରାମ ଚରଣ ପଙ୍କଜେ ।
ବ୍ରାହ୍ମଣ ପୁରୁଷୋତ୍ତମ ଦ୍ୱିବା ନିଶି ଭଜେ ॥ ୪୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଚତୁଃଚତ୍ୱାରିଂଶ ସର୍ଗ ।



# ପଞ୍ଚଚତ୍ୱାରିଂଶ ସର୍ଗ

## ସମୁଦ୍ର ମନ୍ଥନ ।

ମୁନି ବିଶ୍ୱାମିତ୍ର ମୁଖୁଁ ଶୁଣି ସୁଚରିତ ।
ଲକ୍ଷ୍ମଣ ସହିତେ ରାମ ହୋଇ କୃତକୃତ୍ୟ ॥ ୧
ଭାଷିଲେ ମୁନିପୁଙ୍ଗବେ ଅମୃତ ବଚନ ।
ଶୁଣିଲୁ ତୁମ୍ଭ ମୁଖରୁ ପବିତ୍ର ଆଖ୍ୟାନ ॥ ୨
ସ୍ୱର୍ଗରୁଁ ଓହ୍ଲାଇ ଗଙ୍ଗା ପବିତ୍ରକାରିଣୀ ।
ଭରିଲେ ସମୁଦ୍ରେ ଜଳ ସୁପୁଣ୍ୟଦାୟିନୀ ॥ ୩
ଏ' ଚରିତ ଶୁଣି ଆମ୍ଭେ ହୋଇଲୁ କୃତାର୍ଥ ।
ଆନନ୍ଦ ଦାୟକ ଏହୁ ଅପୂର୍ବ ବୃତ୍ତାନ୍ତ ॥ ୪
ତବ ବଚନ ଶୁଣି ଏ' ପୁଣ୍ୟମୟ ବାଣୀ ।
ରାତ୍ରି ଯାପିଲୁ ହରଷେ ଆହେ ମୁନିମଣି ! ॥ ୫
ଷଡ଼ରିପୁ ବିଜୟୀ ହେ ପରମ ପୁରୁଷ !
ତୁମ୍ଭ ମୁଖୁଁ ଶୁଣି ଏହି ବଚନ ସରସ ॥ ୬
କ୍ଷଣେହୋ କ୍ଷଣକ ପରି ହୋଇଲା ବ୍ୟତୀତ ।
ଶ୍ରବଣ କରିଣ ଏହୁ ନିର୍ମଳ ଚରିତ ॥ ୭
ସୁନିର୍ମଳ ପ୍ରାତଃକାଳେ ମିଳି ଋଷିଗଣ ।
ଗଙ୍ଗାଜଳେ ସ୍ନାନ ସନ୍ଧ୍ୟା ସାରିଲେ ତର୍ପଣ ॥ ୮
ଲକ୍ଷ୍ମଣ ସହିତ ରାମ ହୋଇଣ ହରଷ ।
ସ୍ନାନ ସନ୍ଧ୍ୟା ତର୍ପଣାଦି ଶୀଘ୍ରେ କଲେ ଶେଷ ॥ ୯
ତଦନ୍ତେ ଶତ୍ରୁଦମନ ମୁନିପାଶେ ଯାଇ ।
ପ୍ରଣମି ଚରଣେ ଧୀରେ ବୋଲେ ରଘୁସାଇଁ ॥ ୧୦
ଆହେ କଉଶିକ-ବଂଶ-ନିର୍ମଳ-ଶଶାଙ୍କ !
ତୁମ୍ଭ ପରସାଦୁ ରାତ୍ରି ଯାପିଲୁ ନିଃଶଙ୍କ ॥ ୧୧

ଆଖ୍ୟାନ ମଧ୍ୟେ ଯା' ସର୍ବ ଉତ୍ତମ ଚରିତ୍ର ।
କାଲି ସର୍ବେ ଶୁଣି କର୍ଣ୍ଣ ହୋଇଲା ପବିତ୍ର ॥ ୧୨
ଏବେ ଦିଅନ୍ତୁ ଆଦେଶ ଆହେ ମୁନିବର !
ଏ' ପୁଣ୍ୟ ସଲିଳା ଗଙ୍ଗା ଶୀଘ୍ର ହେବୁଁ ପାର ॥ ୧୩
ପୁଣ୍ୟ କରମେ ତତ୍ପର ମହାଋଷିଗଣ ।
ପଠାଇଛନ୍ତି ଏ' ନାବ ଆହେ ମୁନିଗଣ ! ॥ ୧୪
ସକଳ ମୁନିସମାଜ ଏ' ନାବରେ ବସି ।
ସାନନ୍ଦ ମାନସେ ପାର ହେବେ ହେ ବ୍ରହ୍ମର୍ଷି ! ॥ ୧୫
ସକଳେ ହେଲେଣି ସଜ ଆହେ ମୁନିଈଶ !
କେବଳ ଲଭିଲେ ତୁମ୍ଭ ମଙ୍ଗଳ ଆଦେଶ ॥ ୧୬
ଦଣ୍ଡ କମଣ୍ଡଳୁ ସାଥେ ଆରୋହଣ ନାବ ।
ଉତ୍ତରତଟେ ଗମିବେ ହେ ମୁନିପୁଙ୍ଗବ ! ॥ ୧୭
ଶୁଣି ଏସନକ ବାଣୀ ରଘୁନାଥଙ୍କର ।
ଆଜ୍ଞା ଦେଲେ ନାବେ ବସ ସର୍ବ ମୁନିବର ॥ ୧୮
ଗଙ୍ଗାର ଉତ୍ତରତଟେ ଯିବା ଶୀଘ୍ର ହୋଇ ।
ଆସ ବେଗେ ଋଷିଗଣ ଯେଝା ଦ୍ରବ୍ୟ ନେଇ ॥ ୧୯
ଶୁଣି ମୁନିସକଳଙ୍କର ଏସନ ବଚନ ।
ନାବେ ଆରୋହିଲେ ଘେନି ଶ୍ରୀରାମ ଲକ୍ଷ୍ମଣ ॥ ୨୦
ସର୍ବଶେଷେ ବିଶ୍ୱାମିତ୍ର ନାବେ ଆରୋହିଲେ ।
ସୁରତରଙ୍ଗିଣୀ ଗଙ୍ଗା ଚରଣେ ନମିଲେ ॥ ୨୧
ଉତ୍ତରତଟେ ପ୍ରବେଶି ବିଶ୍ୱାମିତ୍ର ମୁନି ।
ତଟବାସୀ ମୁନିଗଣେ ବନ୍ଦିଲେ ପ୍ରଣମି ॥ ୨୨
ତଦନ୍ତେ ସକଳେ ଗଙ୍ଗାତଟେ ହୋଇ ମେଳ ।
ନିରେଖିଲେ ବିଶାଳା ନଗରୀ ଶୋଭାକୁଳ ॥ ୨୩
ସାନନ୍ଦେ ଘେନିଣ ସାଥେ ଶ୍ରୀରାମ ଲକ୍ଷ୍ମଣ ।
ନଗରୀ ପଥେ ଚଳିଲେ କୁଶିକନନ୍ଦନ ॥ ୨୪
ଅତି ରମଣୀୟ ଅଟେ ବିଶାଳା ନଗରୀ ।
ଶୋଭାରେ ଜଣାଇ ଯେହ୍ନେ ସୁମନସ ପୁରୀ ॥ ୨୫

ଦେଖି ସେ ନଗରୀ ଶୋଭା ଦଶରଥସୁତ ।
ପୁଚ୍ଛିଲେ ମୁନିପୁଙ୍ଗବେ ଯୋଡ଼ି ବେନି ହସ୍ତ ॥ ୨୬
ଆହେ ଋଷିରାଜ ! ଏହୁ ବିଶାଳା ନଗରୀ ।
ଶୋଭାରେ ଅଟଇ ଯେହ୍ନେ ଦୁଜା ଇନ୍ଦ୍ରପୁରୀ ॥ ୨୭
କେଉଁ ରାଜବଂଶ ଏଥି ହୋଇଣ ସନାଥ ।
ପରଜା ପାଳନେ ସାଧୁଛନ୍ତି ଦୃଢ଼ବ୍ରତ ॥ ୨୮
ଶୁଣିବାକୁ ସେ ବଂଶର ମନୋଜ୍ଞ ଚରିତ ।
ଆହେ ମୁନିବର ! ମନ ମୋର ଉତ୍କଣ୍ଠିତ ॥ ୨୯
କୃପା କରି ଅନୁଗ୍ରହ କର କୃପାନାଥ !
ଶୁଣିବୁଁ ଏ' ରାଜବଂଶ ସୁପୁଣ୍ୟ ଚରିତ ॥ ୩୦
ଶୁଣି ଶ୍ରୀରାମଙ୍କ ବାଣୀ ଅମୃତ ସମାନ ।
ବୋଇଲେ ବ୍ରହ୍ମର୍ଷିବର ଏସନ ବଚନ ॥ ୩୧
ହେ ଶ୍ରୀରାମ ! ଇନ୍ଦ୍ରଙ୍କ ମୁଖରୁ ମୁହିଁ ଯାହା ।
ଏ' ବଂଶ ପ୍ରସଙ୍ଗ ଶୁଣିଅଛୁ ଭଣେ ତାହା ॥ ୩୨
ସତ୍ୟଯୁଗେ ଦିତିସୁତ ଦୈତ୍ୟ ମହାବୀର ।
ଥିଲେ ଅତି ହିଁ ଦୁର୍ଦ୍ଦାନ୍ତ ଶୁଣ ରଘୁବର ! ॥ ୩୩
ଅଦିତି କୁମର ଦେବେ ଥିଲେ ଧର୍ମବୀର ।
ମହା ଶକ୍ତିଶାଳୀ ସେହ୍ନେ ଅଟନ୍ତି ଆବର ॥ ୩୪
ଉଭୟେ ବିଚାର କଲେ ବସି ଏକଦିନ ।
କିପରି ହୋଇବା ଆମ୍ଭେ ମହା ଶକ୍ତିମାନ ॥ ୩୫
ଅଜର ଅମର ପୁଣ ସର୍ବ ସୁଲକ୍ଷଣ ।
ନିରୋଗ ହୋଇ ରହିବା ଜଗତ ମଧ୍ୟେଣ ॥ ୩୬
ଏମନ୍ତ ବିଚାରି ମନେ କଲେ ବହୁ ଚିନ୍ତା ।
ସାଗରମନ୍ଥନେ ମିଳିବ ଫଳ ଦେବେ ଧାତା ॥ ୩୭
ଏହା ଚିନ୍ତି ଦେବାସୁରଗଣେ କରି ମନ ।
ନିଷ୍ପତ୍ତି କଲେ ସାଗର କରିବେ ମନ୍ଥନ ॥ ୩୮
କ୍ଷୀରସାଗରେ ମନ୍ଦର ପର୍ବତ ପକାଇ ।
ମନ୍ଥିଲେକ ରଜ୍ଜୁ ରୂପେ ବାସୁକିଙ୍କି ଥୋଇ ॥ ୩୯

ଏକସସ୍ର ସମ୍ବତ୍ସର ମନ୍ଥିଲେ ସାଗର ।
ସେ ମନ୍ଥନେ ସର୍ପରାଜ ହୋଇଣ ଆକୁଳ ॥ ୪୦
ଉଦ୍‌ଗାରିଲେ ସହସ୍ର ଫଣାରୁ ବିଷଜାଳ ।
ପୁଣ ମଦର ଶୈଳାକୁ କଲେକ କବଳ ॥ ୪୧
ବିଷ ମିଶ୍ରିତ ପାଷାଣ ଘର୍ଷଣେ ପ୍ରବଳ ।
ଉଠିଲା ତହିଁରୁ ଅଗ୍ନି ତୁଲ୍ୟ ହଳାହଳ ॥ ୪୨
ଗର ମିଶ୍ରିତ ସେ ଅଗ୍ନି ଜ୍ୱାଳାରେ ବହନ ।
ସନ୍ତପ୍ତ ହୋଇଲେ ଦେବାସୁର-ମୁନିଗଣ ॥ ୪୩
ଦେଖି ଏସନକ ଶ୍ରାନ୍ତ ସର୍ବ ଦେବଗଣ ।
ସଭୟେ ପଶୁପତିରେ ପଶିଲେ ଶରଣ ॥ ୪୪
ଏକମନା ହୋଇ ସର୍ବେ ଆରମ୍ଭିଲେ ସ୍ତବ ।
ଆହେ ମହାକାଳ ରୁଦ୍ର ! ଆହେ ମହାଦେବ ! ॥ ୪୫
ଆହେ ଭବାନୀବଲ୍ଲଭ ! ସଙ୍କଟ ତାରଣ !
ନାଶ ଗଲୁ ମହାଜନେ ରଖ ଭଗବାନ ॥ ୪୬
ଶରଣ ରକ୍ଷଣ ବାନା ଆହେ ତ୍ରିପୁରାରି !
ଏ' ବିପଦ-ମହାର୍ଣ୍ଣବୁଁ ବେଗେ କର ପାର ॥ ୪୭
ଦେବତାଙ୍କ ବିନୟ ବଚନେ ଆଶୁତୋଷ ।
ସୁହସ୍ୟା ବହ୍ନିଶ ତହିଁ ହୋଇଲେ ପ୍ରବେଶ ॥ ୪୮
ଏସନ ସମୟେ ତହିଁ ଶଙ୍ଖ-ଚକ୍ରଧର ।
ଗଦା ପଦ୍ମ କରେ ଧରି ମିଳିଲେ ସତ୍ୱର ॥ ୪୯
ପ୍ରସନ୍ନ ବଦନେ ବିଷ୍ଣୁ ତହିଁ ଶୂଳଧରେ ।
ବୋଇଲେ ହେ ଦେବ ! ଘେନ ଏ' ବିନୟ ମୋରେ ॥ ୫୦
ମହାଦେବ ରୂପେ ପ୍ରଭୁ ! ହେଉଛ ପୂଜିତ ।
ଅଗ୍ରପୂଜ୍ୟ ହେ ଦେବାଧିଦେବ ଶୂଳହସ୍ତ ! ॥ ୫୧
ସମୁଦ୍ର ମନ୍ଥନୁ ଯାହା ମିଳିଛି ପ୍ରଥମ ।
ଗ୍ରହଣ କର ତା' ଦେବ ! ନ ହୋଇ ବିମନ ॥ ୫୨
କ୍ଷୀର ସାଗରରୁ ଜାତ ହୋଇଛି ଗରଳ ।
ସାନନ୍ଦେ ଗ୍ରହଣ କର ଆହେ ଆଦ୍ୟମୂଳ ! ॥ ୫୩

କହି ଏସନକ ବାଣୀ ପ୍ରଭୁ ଚନ୍ଦ୍ରଧର ।
ସକଳ ସମକ୍ଷେ ତହୁଁ ହୋଇଲେ ଅନ୍ତର ॥ ୫୪
ସେ ଉତ୍ତାରୁ ଦେବଗଣେ ଦେଖି ଭୟଭୀତ ।
ଘୋର ହଳାହଳେ ପାନ କଲେ ଭୂତନାଥ ॥ ୫୫
ଅମୃତ ସମାନ ମଣି ଦେବ ଶୂଳପାଣି ।
ତତକ୍ଷଣେ ପାନ କଲେ ହଳାହଳ ଘେନି ॥ ୫୬
ଦେବଗଣେ ଶୁଭାଶିଷ କରିଣ ପ୍ରଦାନ ।
ସେଠାବରୁ ମହେଶ୍ୱର ହେଲେ ଅନ୍ତର୍ଦ୍ଧାନ ॥ ୫୭
ଏ' ଉତ୍ତାରୁ ରଘୁବୀର ! ଦେବତା ଅସୁରେ ।
ମନ୍ଥିଲେ କ୍ଷୀରସାଗର ସନ୍ତୋଷ ମନରେ ॥ ୫୮
ଏମନ୍ତ ସମୟେ ସେହି ପର୍ବତ ମନ୍ଦର ।
ନିଜ ପରିଧିରୁ ଚ୍ୟୁତ ହେଲା ଗିରିବର ॥ ୫୯
ସ୍ୱହୁଁ ସ୍ୱହୁଁ ନଗରାଜ ମନ୍ଦର ପର୍ବତ ।
ନିଜ ଭରେ ରସାତଳେ ପଶିଲା ତୁରିତ ॥ ୬୦
ଦେଖି ଏସନକ ସ୍ଥିତି ଦେବାସୁରଗଣ ।
ଆଚମ୍ବିତେ ସ୍ଥିର ହୋଇ ତେଜିଲେ ମନ୍ଥନ ॥ ୬୧
ଦେବତା ଗନ୍ଧର୍ବେ ମିଳି ଆକୁଳ ବଦନେ ।
ସ୍ତୁତି ଆରମ୍ଭିଲେ ହେଟର ନାରାୟଣେ ॥ ୬୨
ଅନାଦିନିଧନ ପ୍ରଭୋ ! ଆହେ ଜନାର୍ଦ୍ଦନ !
ଦେବଗନ୍ଧର୍ବଗଣଙ୍କ ହେ ଅବଲମ୍ବନ ! ॥ ୬୩
ଏ' ଘୋର ସଙ୍କଟ୍ ଦେବ ! କର ହେ ଉଦ୍ଧାର ।
ଜଣାଉଛୁଁ ତୁମ୍ଭ ପଦେ କୋଟି ନମସ୍କାର ॥ ୬୪
କପରି ପାତାଳ ତଳୁ ଉଠି ଗିରିବର ।
ସାଧିବ ଏ' କାର୍ଯ୍ୟ କର ତା'ର ପ୍ରତିକାର ॥ ୬୫
ଶୁଣି ଦେବଙ୍କ ବିନତି କମଳା ବିଳାସ ।
କଚ୍ଛପ ରୂପରେ ପ୍ରଭୁ ହୋଇଲେ ପ୍ରକାଶ ॥ ୬୬
ମନ୍ଦରାଚଳଙ୍କୁ ନିଜ ପୃଷ୍ଠେ ଧରି ହରି ।
ଶୋଇଲେ କ୍ଷୀରସାଗରେ ଗୋଲୋକ ବିହାରୀ ॥ ୬୭

ତଦନ୍ତେ ବିଶ୍ୱଭାବନ ପୁରୁଷ ଉତ୍ତମ ।
ପର୍ବତ ଶିଖର ଧରି ଉଠିଲେ ତକ୍ଷଣ ॥ ୬୮
ଦେବଗଣ ମଧ୍ୟେ ଉଗ୍ର ହୋଇ ରମାଈଶ ।
କ୍ଷୀରସାଗର ମନ୍ଥିଲେ ମନେ ବହି ତୋଷ ॥ ୬୯
ମନ୍ଥନ କରନ୍ତେ ଏକସହସ୍ର ସମ୍ବତ୍ସର ।
ବିତିଗଲା କାଳକ୍ରମେ ଆହେ ରଘୁବର ! ॥ ୭୦
ଆୟୁର୍ବେଦମୟ ଭବ୍ୟ ଧର୍ମାତ୍ମା ପୁରୁଷ ।
ପ୍ରକଟ ହେଲେ ସାଗରୁ ଧରି ବୈଦ୍ୟବେଶ ॥ ୭୧
ଏକ ହସ୍ତେ ଦଣ୍ଡ ଅନ୍ୟ କରେ କମଣ୍ଡଳ ।
ଧରି ଧନ୍ୱନ୍ତରି ବିଜେ ଦେବଙ୍କ ଛାମୁର ॥ ୭୨
ତଦନ୍ତେ ସାଗରୁ ଜନ୍ତୁଁ ଅନେକ ସୁନ୍ଦରୀ ।
ପ୍ରକଟିତ ହେଲେ ଅନୁପମ ଅପସରୀ ॥ ୭୩
କମଳ ବଦନୀ ଗୁରୁ ସୁମନ ମୋହିନୀ ।
ଦର୍ଶନ ମାତ୍ରକେ ଯେହୁ ମନ ନ୍ୟନ୍ତ କିଣି ॥ ୭୪
ଷାଠିଏ କୋଟି ଅପ୍‌ସରା ହୋଇଲେ ଜନମ ।
ଅସଂଖ୍ୟ ପରିଚାରିଣୀ ଥିଲେ ତାଙ୍କ ପୁଣ ॥ ୭୫
ଦେବତା ଅସୁର ଯକ୍ଷ ଗନ୍ଧର୍ବ କିନ୍ନର ।
ନୋହିଲେ କାହାର ପତ୍ନୀ ଆହେ ରଘୁବୀର ! ॥ ୭୬
ସାମାନ୍ୟ ବାରନାରୀରେ ଗଣିତା ସେ ହେଲେ ।
ରୂପ ଗୁଣେ ସେ ସୁମନା ଭୁବନ ମୋହିଲେ ॥ ୭୭
ତଦନ୍ତେ ବରୁଣ ସୁତା ବାରୁଣୀ ଯା’ ନାମ ।
ସୁରାର ଅଧିକାରିଣୀ ଅଟଇ ଯେ ପୁଣ ॥ ୭୮
ଜାତ ହେବା ମାତ୍ରେ ନିଜ ମନର ମଣିଷ ।
ଖୋଜିଲା ସେ ନାରୀମଣି ନୋହି କା’ର ବଶ ॥ ୭୯
ଦୈତ୍ୟଗଣେ ତାହାକୁ ନ ବରିଲେ ଯହୁଁ ।
ଅସୁର ନାମେ ବିଖ୍ୟାତ ହୋଇଲେ ସେ ତହୁଁ ॥ ୮୦
ସୁରସୁନ୍ଦରୀରେ ଯହୁଁ ଦେବେ ଆଦରିଲେ ।
ଚତୁର୍ଦ୍ଦଶପୁରେ ସୁର ନାମେ ଖ୍ୟାତ ହେଲେ ॥ ୮୧
ବାରୁଣୀକୁ ଲଭି ଦେବେ ହୋଇ ପ୍ରମୁଦିତ ।
ସନ୍ତୋଷ ମାନସେ ପାନ କଲେ ରଘୁନାଥ ! ॥ ୮୨

ତଦନ୍ତେ କ୍ଷୀରସାଗରୁ ଉଚ୍ଚୈଃଶ୍ରବା ଅଶ୍ୱ ।
କୌସ୍ତୁଭମଣି ସଙ୍ଗତେ ହୋଇଲା ପ୍ରକାଶ ॥ ୮୩
ତଦୁତ୍ତରେ କ୍ଷୀରସିନ୍ଧୁ ଭେଦଣ ଅମୃତ ।
ଉଠିଲା ପୂର୍ଣ୍ଣ କଳସ ଶୁଣ ରଘୁନାଥ ! ॥ ୮୪
ସେ ଅମୃତ ଲଭିବାକୁ ଦେବାସୁରଗଣ ।
ପରସ୍ପର କଳହରୁ ଆରମ୍ଭିଲେ ରଣ ॥ ୮୫
ଉଭୟଙ୍କ ବଳ ଥୋକେ ହୋଇଲେ ନିପାତ ।
ଦେବାସୁର ରଣ ନାମେ ଯେହୁ ଲୋକେ ଖ୍ୟାତ ॥ ୮୬
ଅମୃତ ମୋହରେ ଏବେ ହୋଇଣ ମୋହିତ ।
ଆପଣା ମଧ୍ୟରେ ରଣେ ହେଲେ ହତାହତ ॥ ୮୭
ଦେବବଳ ନାଶ ଜାଣି ପୁରୁଷଉତ୍ତମ ।
ମୋହିନୀ ରୂପେ ମୋହିଲେ ଅସୁରଙ୍କ ମନ ॥ ୮୮
ଛଳେ ଅମୃତ କଳସ ନେଇ ଦେବ ହରି ।
ପରଷିଲେ ଦେବତାଙ୍କୁ ସମତୁଲ କରି ॥ ୮୯
ଅମୃତ କଳସ ଛଳେ ହୋଇନ୍ତେ ଅପହୃତ ।
କ୍ରୋଧବଶ ହୋଇ ମନେ ଚଳନ୍ତି ବଳସ୍ତ୍ୱର ॥ ୯୦
ଯୁଝିଲେ ସଦର୍ପେ ମିଳି ବିଷ୍ଣୁଙ୍କ ସହିତ ।
ବଳିଷ୍ଠ ବଶରେ ନାଶଗଲେ ଦୈତ୍ୟସୁତ ॥ ୯୧
ଅସୁର ବିନାଶେ ତୋଷ ହୋଇ ଦେବରାଜ ।
ପ୍ରତୋଷେ ପାଳିଲେ ସେହୁ ତ୍ରୈଲୋକ୍ୟ ସାମ୍ରାଜ୍ୟ ॥ ୯୨
ବିଷ୍ଣୁଙ୍କ ଚରଣେ ବନ୍ଦ ସୁରାଧିନାୟକ ।
ସିଦ୍ଧ ମୁନିଗଣେ ସେବ ପାଳିଲେ ତ୍ରିଲୋକ ॥ ୯୩
ସେ ମୋହିନୀ ବେଶଧାରୀ ବିଷ୍ଣୁଙ୍କ ଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମ ପୁଣ ଭଣେ ॥ ୯୪
ଆହେ ଶଙ୍ଖଚକ୍ରଧର ! ଘେନ ମୋ' ବିନତି ।
ଅବଧାନେ ସମ୍ପୂର୍ଣ୍ଣ ହେଉ ରାମାୟଣ ଗୀତି ॥ ୯୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ପଞ୍ଚଚତ୍ୱାରିଂଶ ସର୍ଗ ।



# ଷଟ୍‌ଚତ୍ୱାରିଂଶ ସର୍ଗ

## ମରୁଦ୍‌ଗଣଙ୍କ ଜନ୍ମ ।

ଶୁଣ ହେ ଶ୍ରୀରାମ ! ଏହୁ ଅପୂର୍ବ ଚରିତ ।
ଦେବଙ୍କ ପ୍ରହାରେ ସର୍ବଁ ନଶିଲେ ଦଇତ୍ୟ ॥ ୧
କଶ୍ୟପ ଭାମିନୀ ଦିତି ମହାଦୁଃଖ ବହି ।
ପତିଙ୍କ ପାଦପଙ୍କଜେ ନିବେଦିଲେ ଯାଇ ॥ ୨
ହେ ମହର୍ଷିବର ! ତୁମ୍ଭେ ଶୁଣ ଏକ ମନେ ।
ଦେବଙ୍କ ପ୍ରହାରେ ମୋର ପୁତ୍ରେ ଘୋରରଣେ ॥ ୩
ନାଶ ଗଲେ ଅରକ୍ଷିତ ପ୍ରାୟେ ଦୈତ୍ୟେ ଯେଣୁ ।
ମହା ଦୁଃଖେ ଜୀବନ ଯାପଇ ଦେବ ! ତେଣୁ ॥ ୪
ବହୁ କାଳ ଯାଏଁ ତପ ସାଧି ମୁଁ ନିଶ୍ଚିନ୍ତେ ।
ଲଭିବ ପୁତ୍ର ଇନ୍ଦ୍ରର ଘାତଇ ମୋ' ଚିତ୍ତେ ॥ ୫
ସେହି ପୁତ୍ର ହେବ ମୋର ମହାଶକ୍ତିମାନ ।
ବାହୁବଳେ ବିନାଶିବ ସ୍ୱର୍ଗେ ମଘବାନ ॥ ୬
ଏସନ ତପସ୍ୟା ଦେବ ! ସାଧିବି ମୁଁ ହେଳେ ।
ଏଥିଲାଗି ସ୍ୱାମି ! ଆଜ୍ଞା ଦେବା ହେଉ ବେଳେ ॥ ୭
ଏପରି ବଳିଷ୍ଠ ପୁତ୍ର ଧରିବି ମୁଁ କୋଳେ ।
ଯେହୁ ସାଧିବ ଦେବଙ୍କୁ ପରାକ୍ରମ ବଳେ ॥ ୮
ସର୍ବ ସମର୍ଥ ହୋଇବ ମୋହର ନନ୍ଦନ ।
ଅସ୍ତ୍ରଶସ୍ତ୍ରବଳେ ସେ ସାଧିବ ମଘବାନ ॥ ୯
ଇନ୍ଦ୍ରକୁ ବଧିଲେ ପୂରିବ ମୋ' ମନୋରଥ ।
ଏମନ୍ତ ବର ଦିଅନ୍ତୁ ଆହେ ଆର୍ଯ୍ୟପୁତ୍ର ! ॥ ୧୦
ଏସନକ ବାଣୀ ଶୁଣି ମହର୍ଷି ପ୍ରବର ।
ଦୁଃଖିନୀ ଦିତିକୁ ସ୍ନେହେ ବୋଲନ୍ତି ଏ' ଗିର ॥ ୧୧
ଆଗୋ ପ୍ରିୟବତି ! ତବ ଉତ୍ତମ ବଚର ।
ଏ' ସକାଶେ ଆଚରଣ କର ଶୁଦ୍ଧାନ୍ତର ॥ ୧୨

ହେବ ତୁମ୍ଭର କଲ୍ୟାଣ ଜନମି ନନ୍ଦନ ।
ସାଧ୍ୱ ଦେବଙ୍କୁ ବଧିଣ ହୋଇ ବଳବାନ ॥ ୧୩
ଇନ୍ଦ୍ରଙ୍କୁ ବଧିଲେ ତୁମ୍ଭ ପୂରିବ କାମନା ।
ଏଥିଲାଗି ତପ କର ହୋଇ ଆନମନା ॥ ୧୪
ଏକସହସ୍ର ବର୍ଷ ବ୍ୟାପି ପାଳିବ ଏ' ବ୍ରତ ।
ଶୁଦ୍ଧାଚାର ନିୟମରେ ରହିବ ନିୟତ ॥ ୧୫
ତେବେ ଗୋ କଲ୍ୟାଣି ! ତୁମ୍ଭେ ଲଭିବ କୁମର ।
ଯେ ସାଧିବ ଦେବଗଣେ ହୋଇ ତତପର ॥ ୧୬
ତବ ତପସ୍ୟା ପ୍ରଭାବେ ହୋଇବ ନନ୍ଦନ ।
ବଳ ବିକ୍ରମେ ବଧିବ ଯେତେକ ଦେବଗଣ ॥ ୧୭
ଭାଷି ଏମନ୍ତ ବଚନ ତପସ୍ୱୀ ପ୍ରବର ।
ଦିତି ଅଙ୍ଗେ ବୁଲାଇ ଆଣିଲେ ନିଜ କର ॥ ୧୮
ହେ କଲ୍ୟାଣମୟି ! ତବ ହେଉ ସୁମଙ୍ଗଳ ।
ଏତେ ଭଣି କଶ୍ୟପ ସାଧିଲେ ତପ ହେତୁର ॥ ୧୯
ହେ ଶ୍ରୀରାମ ! ଶୁଣ ଏ' ଉତ୍ତାରୁ ହେଲା ଯାହା ।
ସ୍ୱାମୀ ବରେ ଦିତି ମନେ ବଢ଼ିଲା ଉଛାହା ॥ ୨୦
'କୁଶପ୍ଲବ' ତପୋବନେ ବସି ଦିତି ଧ୍ୟାନେ ।
ତପ ଆରମ୍ଭିଲା ସ୍ୱାମୀ ପଦ ଚିନ୍ତି ମନେ ॥ ୨୧
ହେ ପୁରୁଷ ଶ୍ରେଷ୍ଠ ରାମ ! ଧାର୍ମିକ ପ୍ରବର !
ଦିତି ତପସ୍ଥାନେ ମିଳିଲେକ ଦେବବର ॥ ୨୨
ବିନୟ ଭାବରେ ଯୁକ୍ତ ହୋଇ ସୁନାସୀର ।
ସେବା କରିବାରେ ଦିତି ପଦେ ହୋଇ ଧୀର ॥ ୨୩
ସହସ୍ରାକ୍ଷ ଇନ୍ଦ୍ର ମନେ ମହାଭୟ ପାଇ ।
ବିମାତାଙ୍କ ଶ୍ରୀପଦରେ ସେବିଲେ ସେ ଯାଇ ॥ ୨୪
ଦିତି ତପସ୍ୟା ନିମିତ୍ତ ଦେବ ସୁନାସୀର ।
କୁଶ ସମିଧାଦି ଯେତେ ତପର ସମ୍ଭାର ॥ ୨୫
ଫଳମୂଳ ଆଦି କରି ସର୍ବ ଦ୍ରବ୍ୟମାନ ।
ଚୟନ କରିଣ ଦିତି ପାଶେ ଦେଲେ ପୁଣ ॥ ୨୬

ଆଦର ସକଳ ଦ୍ରବ୍ୟ କଲେ ଆସ୍ୱାଦନ ।
ତେଣେ ସନ୍ତୋଷ ଲଭିଲ ବିମାତାର ମନ ॥ ୨୭
ପ୍ରତିଦିନ ତପ ଶେଷେ ଦିତିଙ୍କ ପଦୁରେ ।
ସେବା କଲେ ବଜ୍ରଧର ଅତି ଭକ୍ତିଭରେ ॥ ୨୮
ଆଦର କଲେ ବିମାତା ଅଙ୍ଗ ମରଦନ ।
ସଙ୍କୋଚ ନ କରି ମନେ ତ୍ରିଲୋକ ରାଜନ ॥ ୨୯
ଏମନ୍ତ ପ୍ରକାରେ ଦିତି ତପ ଆଚରିଲେ ।
ନବ ଶତ ନଉ ବର୍ଷ ଧାନେ ବିତାଇଲେ ॥ ୩୦
ଆଉ ମାତ୍ର ଦଶ ବର୍ଷ ରହିଲା ଅପୂର୍ଣ୍ଣ ।
ସନ୍ତୋଷ ଲଭିଲା ତେଣୁ ଦୈତ୍ୟମାତା ମନ ॥ ୩୧
ଏକ ଦିନେ ଦିତି ମନେ ସନ୍ତୋଷ ଲଭିଣ ।
ତପ ସିଦ୍ଧି ଆୟୋଜନେ ହୋଇ ମୋଦମଗ୍ନ ॥ ୩୨
ପରମ ଆନନ୍ଦେ ଦେବୀ ଇନ୍ଦ୍ର ପାଶେ ବସି ।
ଭାଷିଲେ ଦୈତ୍ୟ ଜନନୀ ମନରେ ଉଲ୍ଲସି ॥ ୩୩
ଆରେ ପୁତ୍ର ! ନବଶତ ନଉ ବର୍ଷ ପୂର୍ଣ୍ଣ ।
ଆଉ ମାତ୍ର ଦଶବର୍ଷ ଅବଶେଷ ଜାଣ ॥ ୩୪
ମୋର ମନ ଅଭିଳାଷ ହୋଇବ ପୂରଣ ।
ଲଭିବି ମୁଁ ସର୍ବଗୁଣ ସମ୍ପନ୍ନ ସନ୍ତାନ ॥ ୩୫
ଦେଖିବୁ ତୁ ପୁତ୍ର ! ତୋର ଗୁଣବନ୍ତ ଭ୍ରାତ ।
ବଳବୀର୍ଯ୍ୟେ ହେବ ସେହୁ ବଳିଷ୍ଠ ଅତ୍ୟନ୍ତ ॥ ୩୬
ତୋତେ ଜିଣିବାକୁ ବାବୁ ! କରିଛି ମୁଁ ପଣ ।
କିନ୍ତୁ ତୋର ସେବା ଫଳେ ହେଲି ମୁଁ ପ୍ରସନ୍ନ ॥ ୩୭
ବୁଝାଇ କହିବି ତୋର କନିଷ୍ଠ ଭ୍ରାତାରେ ।
ସେ ତୋର ବଇରୀ ଆଉ ନୋହିବ କେଭାରେ ॥ ୩୮
ଅଗ୍ରଜ ସ୍ନେହରେ ସେହୁ ହେବ ବଶୀଭୂତ ।
ତୋର ଆଜ୍ଞା ପ୍ରମାଣେ ସେ ସାଧିବ ମହତ ॥ ୩୯
ଏମନ୍ତ ସୁଗୁଣଶୀଳ ଗୁଣବନ୍ତ ଭାଇ ।
ଲଭି ତୁ ପୁତ୍ର ! ହୋଇବୁ ତ୍ରିପୁର ବିଜୟୀ ॥ ୪୦

ନିଶ୍ଚିନ୍ତ ହୋଇଣ ସୁଖେ ଭୁଞ୍ଜିବୁ ତୁ ଭୋଗ ।
ମୋ' ପୁତ୍ର ମନରେ କେବେ ନୋହିବ ବିରାଗ ॥ ୪୧
ଆହେ ସୁରେଶ୍ୱର ! ତୋର ପିତା ମହାଶୟ ।
ଏକବର୍ଷ ପଦସେବା ଘେନ ଅନୁନୟ ॥ ୪୨
ଏମନ୍ତ ପୁତ୍ର ଲଭରେ ଦେଲେ ବରଦାନ ।
ତୁମ୍ଭ ପରାଭବକାଙ୍କ୍ଷ ଲଭିବ ନନ୍ଦନ ॥ ୪୩
ଆରେ ବାବୁ ! ତୋର ସେବା ଫଳେ ମୁଁ ସନ୍ତୋଷ ।
ହୋଇଣ କହଇ ଏହା ଶୁଣ ସୁଲକ୍ଷଣ ! ॥ ୪୪
ଏସନ ଭାଷିଣ ଦେବୀ ନିଦ୍ରା ଆସକତେ ।
ଶୋଇଲେ ଭୂମିରେ ଗଢ଼ କାଳର ଆୟତେ ॥ ୪୫
ନିଦ୍ରା ଆଳସ୍ୟରେ ତାଙ୍କ ନ ରହିଲା ଜ୍ଞାନ ।
ନିୟମ ପାସୋରି ଦିତି ହେଲେ ଅଚେତନ ॥ ୪୬
କେଶ ବାସ ଅସମ୍ଭାଳ ପାଦେ ଶିର ସ୍ପର୍ଶ ।
ହୁଅନ୍ତେ ତପ ନିୟମ ଭାଙ୍ଗିଲା ଅବଶ୍ୟ ॥ ୪୭
ଦିବସ ମଧ୍ୟାହ୍ନ ଭାଗ ହୋଇଥିଲା ସେଣୁ ।
ଦିବା ନିଦ୍ରା ତପ ବିଘ୍ନକର ହେଲା ତେଣୁ ॥ ୪୮
ଦିତିଙ୍କର ଅନିୟମ ଦେଖିଣ ସୁରେଶ ।
ପ୍ରସନ୍ନ ମାନସେ ସେହୁ ହୋଇ ହସ ହସ ॥ ୪୯
ଅନିୟମ ସୁଯୋଗ ଲଭିଣ ମଘବାନ ।
ମାୟାବଳେ ଦିତିଙ୍କ ଉଦରେ ପଶି ପୁଣ ॥ ୫୦
ଗର୍ଭର ବାଳକେ କାଟି କଲେ ସାତଖଣ୍ଡ ।
ତପ ଅନିୟମ ଫଳେ ବହିଲେ ଏ' ଦଣ୍ଡ ॥ ୫୧
ଶତ ପର୍ବ ଯୁତ ବଜ୍ରେ ହୋଇଣ ଆହତ ।
ଗର୍ଭର ବାଳକ କାନ୍ଦି ଉଠିଲା ତୁରିତ ॥ ୫୨
ସେ କ୍ରନ୍ଦନ ରୋଳ ଶୁଣି ଗର୍ଭସ୍ଥ ଶିଶୁର ।
ଚେତନା ଲଭିଣ ଦିତି ଉଠିଲେ ସତ୍ୱର ॥ ୫୩
ବୋଇଲେ ଆରେରେ ଇନ୍ଦ୍ର ! ନ ମାର ନ ମାର !
ଏ' କି କର୍ମ କରୁ ସୁତ ! ଗର୍ଭେ ପଶି ମୋର ॥ ୫୪

ମାତାର ବଚନେ ମହାବାହୁ ପୁରନ୍ଦର ।
ବଜ୍ର ସନ୍ଧିତରେ ଗର୍ଭ ହୋଇଲେ ବାହାର ॥ ୫୫
କର ଯୋଡ଼ି ଦିତି ଆଗେ କରି ନିବେଦନ ।
ବୋଇଲେ ହେ ମାତ ! ଶୁଣ ମୋହର ବଚନ ॥ ୫୬
ମଧ୍ୟାହ୍ନ କାଳରେ ତୁମ୍ଭେ କରି ତପ ଭଗ୍ନ
ଭୂମି ଶଯ୍ୟନେ ପଡ଼ିଲ ହରାଇ ଚେତନ ॥ ୫୭
ଚିକ କେଶ ପାଦ ସ୍ପର୍ଶ କରନ୍ତେ ଗୋ ମାତ !
ଏ ଶରୀର ତୁମ୍ଭର ହୋଇଲା ଅପବିତ୍ର ॥ ୫୮
ସେ ସୁଯୋଗ ଲଭି ମୁହିଁ ପଶି ତୋ' ଗର୍ଭରେ ।
କାଟିଲି ଶିଶୁରେ ସାତ ଖଣ୍ଡ କରି ଜବେ ॥ ୫୯
କ୍ଷମା କର ଏ' ସକଳ ଦୋଷ ମୋର ମାତ !
ସାତ ଖଣ୍ଡ କରିଛି ମୁଁ ଇନ୍ଦ୍ରହନ୍ତା ସୁତ ॥ ୬୦
ତୁମ୍ଭ ତପ ଅଳସୁମେ ଲଭି ମୁଁ ସୁଯୋଗ ।
କରିଛି ଅକର୍ମ ମାଗୋ ! ନ ମଣ ବିରାଗ ॥ ୬୧
ଏତେ ଭଣି ବଜ୍ରହସ୍ତ ଭଜିଲେ ମଉନ ।
ସ୍ମରଣ କଲେ ସ୍ୱାମୀଙ୍କି ଦିତି ମନେ ମନ ॥ ୬୨
କଶ୍ୟପ ଦିତି ଇନ୍ଦ୍ରଙ୍କ ଚରଣେ ପ୍ରଣମି ।
ପୁରୁଷୋତ୍ତମ ରଚଇ ରାମାୟଣ ବାଣୀ ॥ ୬୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଷଟ୍‌ଚତ୍ୱାରିଂଶ ସର୍ଗ ।



# ସପ୍ତଚତ୍ୱାରିଂଶ ସର୍ଗ

## ମରୁଦ୍‌ଗଣଙ୍କ ନାମକରଣ ଓ ବିଶାଳା ନଗରୀର ଉପାଖ୍ୟାନ ।

ଆହେ ରାମ ! ରାଜୀବ ଲୋଚନ ରଘୁବର !
ଶୁଣିଲତ ମରୁତଙ୍କ ଜନମ ବିସ୍ତର ॥ ୧
ଏଥୁଅନ୍ତେ ଯାହା ହେଲା ଶୁଣ ରଘୁନାଥ !
ମରୁତଙ୍କ ନାମ କର୍ମ ସରସ ବୃତ୍ତାନ୍ତ ॥ ୨
ଇନ୍ଦ୍ର ଗର୍ଭଗତ ସୁତେ କରି ସାତଖଣ୍ଡ ।
ଦିତି ଅନସ୍ତମ ଫଳେ ବିହିଲେ ଯେ ଦଣ୍ଡ ॥ ୩
ନିଜ କୁକର୍ମ ବିଧାନ ସ୍ମରି ଦୈତ୍ୟମାତା ।
ବାସବଙ୍କ ଆଚରଣେ ନୋହିଲେ କୁପିତା ॥ ୪
ଗମ୍ଭୀର ବିଷାଦେ ଦିତି ହୋଇ କ୍ଷୁନ୍ନ ମନ ।
ବଜ୍ରଧରେ ବିନୟେ ସେ କହିଲେ ବଚନ ॥ ୫
ହେ ଦେବେଶ ! ମୋର ଅନସ୍ତମେ ତୁମ୍ଭେ ଯାହା ।
କରିଛ ଅପ୍ରିୟ କର୍ମ ନ ଗଣେ ମୁଁ ତାହା ॥ ୬
ବିଧିର ବିଧାନ କେବେ ନୋହିବାକ ଆନ ।
ଏଣୁ ମୁଁ ଗଣଇ ନାହିଁ ତୋର କୁକରମ ॥ ୭
କହଇ ମୁଁ ଶୁଣ ଆହେ ତ୍ରିଲୋକ ଈଶ୍ୱର !
ସପତ ଖଣ୍ଡ ଏ' ଶିଶୁ ସପ୍ତରୂପଧର ॥ ୮
ସପତ ମରୁତଗଣେ ହୋଇବେ ବିଖ୍ୟାତ ।
ବଳବୀର୍ଯ୍ୟ ଗଉରବେ ଖ୍ୟାତ ତ୍ରିଜଗତ ॥ ୯
ହୋଇ ଏ' ତୁମରେ ସାଧିବେକ ଦେବ ହିତ ।
ସପତ ମରୁତ ନାମ ଶୁଣ ବଜ୍ରହସ୍ତ ! ॥ ୧୦
ଆବହ ପ୍ରବହ ପରିବହ ପରବାହ ।
ଆବର ବେଣଙ୍କ ନାମ ସମୂହ ପ୍ରବହ ॥ ୧୧

ଉଦ୍‌ବହ ହୋଇବ ସପତମ ପୁତ୍ର ନାମ ।
ସପ୍ତବାତସ୍କନ୍ଧେ ଏହୁ ବିଚରିବେ ପୁଣ ॥ ୧୨
ଦେବ ବ୍ରତେ ସପ୍ତସୁତେ ହେବେ ଚତୁର ।
ଏଣୁ ମୋ' ମନେ ସନ୍ତୋଷ ହୋଇବ କୁମର ॥ ୧୩
ତୁମ୍ଭ କ୍ରୂରକର୍ମ ଫଳେ ଘଟିଲା ଯା' ସୁତ !
ସେହି କର୍ମଫଳପ୍ରସୂ ସାଧି ଦେବ ବ୍ରତ ॥ ୧୪
ଏକ ଏକ ଗଣ ହେବେ ସାତସାତ ଅଂଶ ।
ଏ' ରୂପେ ମରୁତଗଣ ଖ୍ୟାତ ଅଣଚାଶ ॥ ୧୫
ଆବହ ସପତଗଣ ବ୍ରହ୍ମଲୋକେ ସ୍ଥିତ ।
ପ୍ରବହଗଣ ଲଭିବେ ଇନ୍ଦ୍ରଲୋକେ ଖ୍ୟାତ ॥ ୧୬
ସମ୍ବହ ମରୁତଗଣ ବାୟୁ ନାମ ବହି ।
ଅନ୍ତରୀକ୍ଷ ଲୋକେ ସଦା ପ୍ରଚରିବେ ସେହି ॥ ୧୭
ଆହେ ଆୟୁଷ୍ମାନ ପୁତ୍ର ! ଶୁଣ ମୋ' ବଚନ ।
ଆବରି ପାଳିବେ ତୁମ୍ଭ ଆଜ୍ଞା ଚତୁର୍ଗଣ ॥ ୧୮
ହିଗ ବିଭାଗରେ ସଦା କରି ବିଚରଣ ।
ସାଧିବେ ତ୍ରିଦଶ ବ୍ରତ ଶୁଣ ମଘବାନ । ॥ ୧୯
ମୋ' ଗର୍ଭେ ପଶିଣ ତୁମ୍ଭେ ବୋଇଲ ଯେ ନାମ ।
'ମାରୁଦ'ରୁ ମରୁତ ହୋଇବେ ତେଣୁ ଜାଣ ॥ ୨୦
ହିତଙ୍କ ବଚନ ଶୁଣି ନମୁଚିସୂଦନ ।
କରଯୋଡ଼ି ବିନୟରେ ବୋଇଲେ ବଚନ ॥ ୨୧
ହେ କଲ୍ୟାଣି ! ଅସ୍ତୁ ହେଉ ଏ' ତବ କଥନ ।
ଦେବ ରୂପେ ସଞ୍ଚରିବେ ମୋ' ଅନୁଜଗଣ ॥ ୨୨
ତୁମ୍ଭ ମୂର୍ଖେ ଏ' କ୍ଷଣି ଯା' ହୋଇଛୁ ନିଃସୃତ ।
ଅନ୍ୟଥା ନୋହିବ କେବେ ଶୁଣ ଦୈତ୍ୟମାତ ! ॥ ୨୩
ଏତେ ଭଣି ବିଶ୍ୱାମିତ୍ର ହୋଇଲେ ମଉନ ।
କୁତୂହଳେ ପୁଣି ପୁଚ୍ଛା କଲେ ରଘୁବର ॥ ୨୪
ତପନ୍ତେ ହୋଇଲା କସ ଆହେ ମୁନିବର !
କୁଶପ୍ଲବ କାହିଁ ଅଛି କି ନାମ ତାହାର ॥ ୨୫

ଶ୍ରୀରାମ ବଚନଯୁବାଣୀ ଶୁଣି ବିଶ୍ୱାମିତ୍ର ।
ବୋଲନ୍ତି ହେ ବୀର ! ଶୁଣ ପୁରାଣ ଚରିତ ॥ ୨୬
ଦିତି-ଇନ୍ଦ୍ର ଚରିତ ଏ' ସୁଧାମୟ ବାଣୀ ।
କର୍ଣ୍ଣପୁଟେ ପାନ କର ଆହେ ରଘୁମଣି ! ॥ ୨୭
ମାତା ପୁତ୍ର ମନେ ବହୁ ପରମ ସନ୍ତୋଷ ।
ଚଳିଲେ କଲ୍ୟାଣମୟ ପୁର ସୁମନସ ॥ ୨୮
ଦୂର୍ବକାଳେ ରହି ଯେଉଁ ସ୍ଥଳେ ପୁରନ୍ଦର ।
ସେବିଥିଲେ ଦିତିଙ୍କର ଅଭୟ ପୟର ॥ ୨୯
ସେହି କୁଶପ୍ଲବ ନାମ ବିଶାଳା ହୋଇଲା ।
ପୂର୍ବେ ବିଶାଳ ନୃପତି ଯେଣୁ ବସାଇଲା ॥ ୩୦
ଭୂମ୍ନ ପୂର୍ବଜ ଇକ୍ଷ୍ୱାକୁ ନାମେ ମହୀପତି ।
ଅଳମ୍ବୁଷା ନାମରେ ତାହାଙ୍କ ପ୍ରିୟବତୀ ॥ ୩୧
ସେ ପତ୍ନୀ ଗରଭୁ ହେଲେ ବିଶାଳ ଜନମ ।
ଏ' ନଗରୀ ସେହୁ ଆରମ୍ଭିଲେ ହେ ଶ୍ରୀରାମ ! ॥ ୩୨
ବିଶାଳ ଔରସୁ ଜାତ ହେଲେ ହେମଚନ୍ଦ୍ର ।
ମହା କୀର୍ତ୍ତିଶାଳୀ ତାଙ୍କ ତନୁଜ ସୁଚନ୍ଦ୍ର ॥ ୩୩
ତାଙ୍କ ବଂଶ ପରମ୍ପରା କ୍ରମେ ପୁତ୍ରଗଣ ।
ଧୂମ୍ରାଶ୍ୱ ସୃଞ୍ଜୟ ସହଦେବ ଜାତ ପୁଣ ॥ ୩୪
ତାଙ୍କ ଠାରୁ ପରମ ଧାର୍ମିକ ସୁପୁରୁଷ ।
ସହଦେବ ପୁତ୍ର ନାମ ହୋଇଲା କୃଶାଶ୍ୱ ॥ ୩୫
କୃଶାଶ୍ୱ ନନ୍ଦନ ମହାବଳୀ ତେଜୋବାନ ।
ପରମ ପ୍ରତାପୀ ରଜା ସୋମଦତ୍ତ ଜାଣ ॥ ୩୬
ସୋମଦତ୍ତଙ୍କ କୁମର ପରମ ପ୍ରବୀର ।
କକୁତ୍‌ସ୍ଥ ନାମେ ପ୍ରଖ୍ୟାତ ହୋଇଲେ ସେ ବୀର ॥ ୩୭
ମହାତେଜସ୍ୱୀ କକୁତ୍‌ସ୍ଥ ରାଜନଙ୍କ ସୁତ ।
ସୁମତି ନାମରେ ସେହୁ ହୋଇଲେ ସୁଖ୍ୟାତ ॥ ୩୮
ପରମ ଦୁର୍ଜ୍ଜୟ କାନ୍ତିମାନ ସେହୁ ରଜା ।
ଏ' ସମୟେ ବିଶାଳାରେ ପାଳୁଛନ୍ତି ପ୍ରଜା ॥ ୩୯

ନୃପବର ଇକ୍ଷ୍ୱାକୁଙ୍କ ପ୍ରସାଦରୁ ଜାଣ ।
ବିଶାଳା ନରେଶ ସର୍ବେ ଦୀର୍ଘାୟୁଷ ପୁଣ ॥ ୪୦
ମହା ପରାକ୍ରମୀ ଆଉ ପରମ ଧାର୍ମିକ ।
ଆବର ଅଟନ୍ତି ସର୍ବେ ପରଜାପାଳକ ॥ ୪୧
ଆହେ ନରଶ୍ରେଷ୍ଠ ! ଆମ୍ଭେ ଆଜକ ରଜନୀ ।
ବିତାଇବା ବିଶାଳାରେ ସର୍ବ ସୁଖ ମଣି ॥ ୪୨
କାଲି ପ୍ରଭାତରୁ ଉଠି ନିତ୍ୟକର୍ମ ସାରି ।
ପହଞ୍ଚିବା ମନସୁଖେ ମିଥିଳା ନଗରୀ ॥ ୪୩
ରାଜର୍ଷି ଜନକ ଦରଶନେ ହେବା ତୃପ୍ତ ।
ଶୁଣିଲତ ବିଶାଳା ଚରିତ ରଘୁନାଥ ! ॥ ୪୪
ଏସନ ସମୟେ ଆସି ବିଶାଳା ରାଜନ ।
ପ୍ରବେଶ ହୋଇଲେ ଚଳି ଘେନି ପରିଜନ ॥ ୪୫
ହସ୍ତେ ଅର୍ଘ୍ୟ ମଧୁପର୍କ ଫଳ ମୂଳ ଘେନି ।
ସମ୍ମୁଖରେ ଉଭା ହେଲେ ବିଶାଳା ନୃମଣି ॥ ୪୬
ପାତ୍ରମନ୍ତ୍ରୀ ପୁରୋହିତେ ହୋଇ ଆଗୁଁସାର ।
ସାଦରେ ମୁନିଙ୍କ ପାଦେ କରି ନମସ୍କାର ॥ ୦୭
କରି ଯୋଡ଼ି ନୃପନାଥ ବୋଇଲେ ବଚନ ।
ଆହେ ବ୍ରହ୍ମମୁନି ! ତବ ଶୁଭ ଆଗମନ ॥ ୪୮
ଜନ ମୁଖୁଁ ଶୁଣି ଆସିଅଛୁ ମୁନିମଣି !
ସଙ୍ଗେ ପାତ୍ର ମନ୍ତ୍ରୀ କୁଳ ପୁରୋହିତେ ଘେନି ॥ ୪୯
ଘେନା ହେଉ ଋଷିବର ! ମୋର ଉପହାରେ ।
ଏମନ୍ତ ବୋଲି ସୁମତି ପରମ ସାଦରେ ॥ ୫୦
ମୁନିଙ୍କ ଚରଣ ଧୋଇ ବସାଇ ଆସନେ ।
ଅର୍ଘ୍ୟ ମଧୁପର୍କ ଦେଇ ପୂଜିଲେ ବିଧାନେ ॥ ୫୧
ତଦନ୍ତେ ନୃପ ସୁମତି ଯୋଡ଼ି ବେନିକର ।
ବିଶ୍ୱାମିତ୍ରରେ ଭାଷିଲେ ବଚନ ମଧୁର ॥ ୫୨
ଆହେ ଋଷିବର ତବ ସର୍ବ କୁଶଳତ ?
ଶୁଣିଛୁ ଅବିଘ୍ନେ ଯଜ୍ଞ କରିଛ ସମାପ୍ତ ॥ ୫୩

ଆଜ ମୋ’ ଜୀବନ ଧନ୍ୟ କୁଶିକନନ୍ଦନ !
ଯେଣୁ ଲଭିଲି ଅଭୟ ତପୂର ଦର୍ଶନ ॥ ୫୪
ପୂର୍ବ ପୁରୁଷଙ୍କ ପୁଣ୍ୟଫଳୁ ହେ ମହାନ !
ଅନାୟାସେ ଲଭୁଛି ମୁଁ ତୁମ୍ଭ ଦରଶନ ॥ ୫୫
ଆଜ ମୋ’ ସୌଭାଗ୍ୟ ରବି ହୋଇଛି ଉଦୟ ।
ତେଣୁ ହେ ମହର୍ଷି ! ତୁମ୍ଭେ ହୋଇଛ ସଦୟ ॥ ୫୬
ମୋ’ ପରି ସୌଭାଗ୍ୟବନ୍ତ ଜଗତରେ କେହି ।
ଏ’ ତିନଲୋକରେ ଜଣେ ହେଲେ ଆଉ ନାହିଁ ॥ ୫୭
ଧନ୍ୟ ହେ ଯାଜ୍ଞିକବର ! ଋଷି ବିଶ୍ୱାମିତ୍ର !
ଚରଣ ରେଣୁରେ କଲ ବିଶାଳା ପବିତ୍ର ॥ ୫୮
ମହାତପୀ ବିଶ୍ୱାମିତ୍ର-ଶ୍ରୀରାମ ଚରଣେ ।
ପ୍ରଣମି ପୁରୁଷୋତ୍ତମ ଏ’ ଚରିତ ଭଣେ ॥ ୫୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତଚତ୍ୱାରିଂଶ ସର୍ଗ ।



# ଅଷ୍ଟଚତ୍ୱାରିଂଶ ସର୍ଗ

## ଅହଲ୍ୟା ଅଭିଶାପ ଚରିତ ।

ନୃପ ସୁମତିଙ୍କ ଠାରୁ ଲଭି ଉପହାର ।
ସନ୍ତୋଷ ଲଭିଲେ ବିଶ୍ୱାମିତ୍ର ମୁନିବର ॥ ୧
ରାଜ୍ୟର କୁଶଳ କ୍ଷେମ ପଚାରି ସକଳ ।
ସୁମତି ରାଜନେ ପ୍ରୀତ କଲେ ମୁନିବର ॥ ୨
କଥା ଶେଷେ ବିଶାଳା ନୃପତି ହୋଇ ତୋଷ ।
ପୁଚ୍ଛିଲେ ବିନୟେ ଲଭି ପରମ ସନ୍ତୋଷ ॥ ୩
ହେ କଲ୍ୟାଣମୟ ! କୁହ ଏ’ ବେନି କୁମାର ।
କାହାର ତନୟ ଧନୁର୍ଦ୍ଧର ବୀରବର ॥ ୪

ଦେବ କୁମାର ସମାନ ଦିଶନ୍ତି ଏ' ବେନି ।
ବଳଦର୍ପେ ପାଶବେ ଏ' ପଶୁରାଜେ ଜିଣି ॥ ୫
ମତ୍ତସିଂହ ବୃଷ ସମ ଏ' ବେନି କୁମାର ।
ପଶୁରାଜ ସମ ଗତି ଅତି ମନୋହର ॥ ୬
ବିକଚ ପଙ୍କଜ ପରି ନେତ୍ର ଶୋଭାକର ।
ବୀରବେଶେ ବିଭୂଷିତ ଯୁଗଳ କୁମ.ର ॥ ୭
ଧନୁର୍ବାଣ ତରବାରି ଧରିଛନ୍ତି କରେ ।
ସ୍ୱରୂପେ ମୋହନ୍ତି ଯେହ୍ନେ ଅଶ୍ୱିନୀକୁମାରେ ॥ ୮
ନବୀନ କିଶୋର ବପୁ ଜଗଜନ ଚୋର ।
କାମିନୀ ମନ ମୋହନ ଯୁବା ମନ ହାର ॥ ୯
ପ୍ରତେ ହୁଏ ସତେ ଅବା ତ୍ରିଦଶ କୁମାରେ ।
ଆସିଛନ୍ତି ମନ ମୋହିବାକୁ ଏ' ଧରାରେ ॥ ୧୦
କାହାର କୁମାର ବେନି ଅଟନ୍ତି ହେ ମୁନି !
ପାଦ ଗତିରେ ଭ୍ରମନ୍ତି କିମ୍ପା ଏ' ଅବନୀ ॥ ୧୧
କିମ୍ପା ତୁମ୍ଭ ସଙ୍ଗେ ଛନ୍ତି କୁମାର ଯୁଗଳ ।
ସଂଶୟ ଫେଡ଼ି କହନ୍ତୁ ଆହେ ମୁନିବର ! ॥ ୧୨
ଆକାଶେ ଶୋହଇ ଯେହ୍ନେ ଚନ୍ଦ୍ର ଦିବାକର ।
ତେସନେ ଦିଶନ୍ତି ଏଥି ଏ' ବେନି କୁମାର ॥ ୧୩
ଏକଠାଣି ଏକବପୁ ସମ ଆଚରଣ ।
କିମ୍ପାଇଁ ମୁନିଙ୍କ ସଙ୍ଗେ କରନ୍ତି ଭ୍ରମଣ ॥ ୧୪
ପୁରୁଷ ପ୍ରବର ଦୁହେଁ ଦିବ୍ୟ ଅସ୍ତ୍ର ଧର ।
କିମ୍ପା ହୋଇଛନ୍ତି ଏ' ଦୁର୍ଗମେ ପଥଶ୍ରସ ॥ ୧୫
ଶୁଣିବାକୁ ତୁମ୍ଭ ମୁଖୁଁ ଏହାଙ୍କ ଚରିତ ।
ଆହେ ତପୀବର ! ମୋ' ମାନସ ଉତ୍କଣ୍ଠିତ ॥ ୧୬
ଶୁଣି ନୃପତି ବଚନ ମୁନି ବିଶ୍ୱାମିତ୍ର ।
ବିସ୍ତାରି ବୋଇଲେ ରାମ ଲକ୍ଷ୍ମଣ ଚରିତ ॥ ୧୭
ହେ ରାଜନ ! ଅଯୋଧ୍ୟା ନରେଶ ଦଶରଥ ।
କୁମାରେ ଅଟନ୍ତି ତାଙ୍କ ଅତିପ୍ରିୟ ସୁତ ॥ ୧୮

ଏତେ କହି ବିଶ୍ୱାମିତ୍ର ତାଡ଼କା ସଂହାର ।
ଯାଗରକ୍ଷା ସୁବାହୁ ମରଣ ସମାଚାର ॥ ୧୯
ସିନ୍ଧୁଜଳେ ମାରୀଚର ପତନ ବୃତ୍ତାନ୍ତ ।
ଗୋଟି ଗୋଟି କରି ସବୁ ଭଣିଲେ ଉଦନ୍ତ ॥ ୨୦
ଶୁଣି ମୁନିବର ବାଣୀ ସୁମତି ରାଜନ ।
ବିସ୍ମୟ-ସାଗରେ ମଜ୍ଜି ହୋଇଲେ ପ୍ରସନ୍ନ ॥ ୨୧
ତଦନ୍ତେ ବେନି କୁମାରେ ଆଦରି ହର୍ଷରେ ।
ଯଥାଯୋଗ୍ୟ ଆତିଥ୍ୟ ବିହିଲେ ସମାଦରେ ॥ ୨୨
ସୁମତିଙ୍କ ଅତିଥି ସତ୍କାରେ ହୋଇ ପ୍ରୀତ ।
ସେଠାରେ ରଜନୀ ପୁହାଇଲେ ବେନିଭ୍ରାତ ॥ ୨୩
ପ୍ରଭାତରୁ ଉଠି ମୁନି ସାଥେ ବେନିଭାଇ ।
ଚଳିଲେ ମିଥିଳାପଥେ ହରଷିତ ହୋଇ ॥ ୨୪
ମିଥିଳାରେ ଉପଗତ ହୋଇ ବେନିସୁତ ।
ଜନକପୁରୀ ଦେଖିଣ ହେଲେ ଆଚମ୍ବିତ ॥ ୨୫
ସେ ନଗରୀ ଶୋଭା ଦେଖି ମନେ ବହି ତୋଷ ।
ସାଧୁ ସାଧୁ ସାଧୁ ସାଧୁ ଜନକ ନରେଶ ॥ ୨୬
ଭାଷିଲେ ଶ୍ରୀରାମ ଏହୁ ପରଶଂସା ବାଣୀ ।
ମିଥିଳା ନଗରୀ ଶୋଭା ଇନ୍ଦ୍ରପୁରୀ ଜିଣି ॥ ୨୭
ବିଦେହ ନଗର ଉପକଣ୍ଠେ ଉପବନ ।
ତହିଁ ମଧ୍ୟେ ଶୋଭାପାଏ ପ୍ରାଚୀନ ଆଶ୍ରମ ॥ ୨୮
ରମଣୀୟ ସେ ଆଶ୍ରମସ୍ଥଳ ଦେଖି ରାମ ।
ପଚାରିଲେ ବିଶ୍ୱାମିତ୍ରେ ଆହେ ଋଷିରାଣ ! ॥ ୨୯
ଅଭିରାମ ଏ' ଆଶ୍ରମପଦ ଦିଶଇ ତ ।
କିମ୍ପା ଏହୁ ମୁନିବର ! ହେଲା ପରିତ୍ୟକ୍ତ ॥ ୩୦
କାହାର ଆଶ୍ରମ ଏଥି କିଏ ମୁନିବର ?
କି ସାଧନ-ବ୍ରତେ ମୁନି ଥିଲେ ତତପର ॥ ୩୧
କିମ୍ପା ସେ ତେଜିଲେ ଏହୁ ସୁପବିତ୍ର ସ୍ଥାନ ।
ରାଜର୍ଷି ଜନକ ପଚ୍ଛିଁ ଅଟନ୍ତି ରାଜନ ॥ ୩୨

ଶ୍ରୀରାମ ଜିଜ୍ଞାସା ଶୁଣି ଋଷି ବିଶ୍ୱାମିତ୍ର ।
କୁଶଳ ବ୍ୟାଖ୍ୟାନେ ଯେହୁ ଅଟନ୍ତି ସୁଖ୍ୟାତ ॥ ୩୩
ବୋଇଲେ ହେ ରଘୁନାଥ ! ସକଳ ଵୃତ୍ତାନ୍ତ ।
କହଇ ମୁଁ ଶୁଣ ସେହି ପୂର୍ବର ଚରିତ ॥ ୩୪
ଥିଲେ ଯେଉଁ ମୁନିବର ସାଧକ ପ୍ରବର ।
ତେଜିଲେ ଆଶ୍ରମପଦ ହୋଇ କୋପଭର ॥ ୩୫
ନିଜ ପତିବ୍ରତା ରମଣୀରେ ଶାପ ଦେଇ ।
ହିମାଳୟ ପଥେ ଚଳିଗଲେ ମୁନିସାଇଁ ॥ ୩୬
ସେହିଦିନୁଁ ଏ' ଆଶ୍ରମ ହୋଇଅଛି ଶୂନ୍ୟ ।
ସଂକ୍ଷେପି କହୁଛି ସର୍ବ ଶୁଣ ହେ ଶ୍ରୀରାମ ! ॥ ୩୭
ଭଣିଲ ସର୍ବ ଵୃତ୍ତାନ୍ତ ଆଦ୍ୟପ୍ରାନ୍ତ କରି ।
ଶୁଣିବାକୁ ଇଚ୍ଛା ଯେଣୁ କରିଛ ଭୂମ୍ଭରି ॥ ୩୮
ପୂର୍ବକାଳେ ଏ' ଆଶ୍ରମେ ଗଉତମ ମୁନି ।
ସାଧୁଥିଲେ ତପ ସଙ୍ଗେ ନିଜ ପତ୍ନୀ ଘେନି ॥ ୩୯
ଗଉତମ ଥିଲେ ମହାମନା ଋଷିବର ।
ତାଙ୍କ ତପ ପ୍ରଭାବୁଁ ଏ' ଆଶ୍ରମ ପ୍ରବର ॥ ୪୦
ଦେବ ଗନ୍ଧର୍ବ ମାନଙ୍କେ ହୋଇ ସୁପୂଜିତ ।
ପୁଣ୍ୟାଶ୍ରମ ରୂପେ ଥିଲା ଜଗତେ ବନ୍ଦିତ ॥ ୪୧
ବହୁକାଳ ଯାଏଁ ଏଥି ତପସ୍ୱୀପ୍ରବର ।
ସାଧିଲେ ଯୋଗସାଧନେ ତପସ୍ୟା କଠୋର ॥ ୪୨
ତାଙ୍କ ଘରଣୀ ଅହଲ୍ୟା ସତୀ ଶିରୋମଣି ।
ନାରୀଗଣେ ଧନ୍ୟା ସେହୁ ଥିଲେ ଏ' ଧରଣୀ ॥ ୪୩
ଏକଦିନେ ଏ' ଆଶ୍ରମେ ନଥିଲେ ଗୌତମ ।
ସୁଯୋଗ ଲଭିଣ ଛଦ୍ମବେଶେ ସୁରୋତ୍ତମ ॥ ୪୪
ଋଷି ଗଉତମ ବେଶ ଧରି ସେ ସ୍ଥାନରେ ।
ପ୍ରବେଶ ହୋଇଲେ ମୁନିଙ୍କର ତପ ସ୍ଥଳେ ॥ ୪୫
ପ୍ରବେଶି କପଟବେଶୀ ବୋଇଲେ ଏସନ ।
ସତୀ ଶିରୋମଣି ! ଶୁଣ ମୋହର ବଚନ ॥ ୪୬

ଆଗୋ ଭୁବନ ମୋହନ ! ଅପୂର୍ବ ସୁନ୍ଦରୀ ।
ଅସମୟେ ରତି ଇଚ୍ଛା କରୁଛି ମୋହର ॥ ୪୭
କାମଶରେ ପୀଡ଼ିତ ମୁଁ ହୋଇଛି ନାରାଣ !
ଋତୁକାଳ ନ ହେଲେ ବ କରୁଛି ମାନସ ॥ ୪୮
ଏ' କାରଣୁ ନାରୀବର ନ ହୋଇ ବିମନା ।
ରତିଦାନ ଦେଇ ମୋର ପୂରାଅ କାମନା ॥ ୪୯
ହେ ରଘୁନନ୍ଦନ ! ଛଦ୍ମବେଶୀ ଇନ୍ଦ୍ର ଜାଣି ।
ବିଗୁଣିଲେ ଅହଲ୍ୟା ଆପଣା ମନେ ଗୁଣି ॥ ୫୦
ବିମୋହିତ ହୋଇଛନ୍ତି ମୋ' ରୂପେ ବାସବ ।
ମାନବୀ ହୋଇ ଲଭିବ ଅମର ବିଭବ ॥ ୫୧
ତ୍ରିଲୋକ ନାୟକ ମୋର ରୂପେ ବିଭ୍ରମିତ ।
ହୋଇଛନ୍ତି ଯେଣୁ ମୋର ଅପୂର୍ବ ଭାଗ୍ୟ ତ ॥ ୫୨
ରତି ରସେ ପୂରାଇବି ତାଙ୍କ ଅଭିଳାଷ ।
ଏ' ସମୟେ ଆଶ୍ରମେ ନାହାନ୍ତି ମୁନିଈଶ ॥ ୫୩
ଏମନ୍ତ ବିଗୁଣି ମନେ ସେ ରମଣୀବର ।
ଇନ୍ଦ୍ର ସଙ୍ଗେ ରମିବାକୁ କଲେ ସ୍ୱୀକାର ॥ ୫୪
ରତିକେଳି ସାରି ସେହୁ ସନ୍ତୋଷ ମାନସେ ।
ଭଷିଲେ ସୁରରାଜରେ ବଚନ ବିଳାସେ ॥ ୫୫
ଆହେ ଦେବ ସୁରନାଥ ! ଲଭି ତବ ସଙ୍ଗ ।
କୃତାର୍ଥ ହୋଇଛି ଆଜ ମୋର ରତି ରଙ୍ଗ ॥ ୫୬
କିନ୍ତୁ ହେ ଅମରବର ! ଏଥୁଁ ଶୀଘ୍ର ଚଳ ।
ନୋହିଲେ ମୁନିଙ୍କ ଶାପେ ହେବ ଅମଙ୍ଗଳ ॥ ୫୭
ଏ' ଶାପ ଅନଳେ ହେବ ଅନ୍ୱିତ ଭୂମ୍ବର ।
ଦୁହେ ମୁଁ ଭୁଞ୍ଜିବି ତାଙ୍କ ଅଭିଶାପ ଫଳ ॥ ୫୮
ତେଣୁ ଆହେ ଦେବରାଜ ! ବିଳମ୍ବ ନ କର ।
ଏ' ଆଶ୍ରମପଦ ତେଜି ଯାଅ ସ୍ୱର୍ଗପୁର ॥ ୫୯
ତହୁଁ ସୁରନାଥ ହସି ବୋଇଲେ ଏସନ ।
ଆହେ ବାଳୀଶ ! ଆଜ ମୁଁ ହେଲି ପୂର୍ଣ୍ଣକାମ ॥ ୬୦

ସନ୍ତୋଷ ମାନସେ ଏଥୁଁ ଯାଉଛୁ ସୁନ୍ଦରି !
ଯେପରି ମୁଁ ଆସିଥିଲି ଛଦ୍ମବେଶ ଧରି ॥ ୬୧
ଅହଲ୍ୟା ସଙ୍ଗମେ ତୋଷ ହୋଇ ସୁରଈଶ ।
ଗୌତମ ଆଗମ ଶଙ୍କା ଚଟୋଇ ମାନସ ॥ ୬୨
ବେଗ ହୋଇ ଆଶ୍ରମରୁ ହୋଇଲେ ବାହାର ।
ମୁନି କୋପ ସୁମରି କମ୍ପଇ କଳେବର ॥ ୬୩
ଏ' ସମୟେ ଗୌତମ ଆଶ୍ରମ ଦ୍ୱାରେ ଆସି ।
ପ୍ରବେଶ ହୋଇଲେ ସ୍ନାନ ସାରି ମହାଋଷି ॥ ୬୪
ଦେବଦାନବେ ଦୁର୍ଦ୍ଧର୍ଷ ତପୋବଳେ ପୁଣ ।
ଉଦ୍ଦୀପ୍ତ ମାନସ-ବଳ ଋଷି ଗଉତମ ॥ ୬୫
ହସ୍ତେ ଧରି କୁଶ ସମିଧାଦି ହୋମ ଦ୍ରବ୍ୟ ।
ତୀର୍ଥଜଳ ସ୍ନାନେ ପୂତ ଶରୀରେ ସୁଭବ ! ॥ ୬୬
ସୁଦୀପ୍ତ ଅନଳ ସମ ଦେଖି ମୁନିବରେ ।
ପ୍ରକମ୍ପିତ ହେଲେ ଇନ୍ଦ୍ର ବିଷାଦ ଅନ୍ତରେ ॥ ୬୭
ଦୁରବସ୍ଥ ବାସବେ ଦେଖିଣ ମୁନିବେଶେ ।
କ୍ରୋଧେ ଅଗ୍ନିଶର୍ମା ମୁନି ଭାଷିଲେ ସରୋଷେ ॥ ୬୮
ରେ ବିମୂଢ଼ ପାପକର୍ମୀ ! ଧରି ମୋର ବେଶ ।
ବହ୍ନିଲୁ ଯେଉଁ କୁକର୍ମ ହୋଇ ସୁରଈଶ ॥ ୬୯
ଇନ୍ଦ୍ରପୁ ଲକସେ ଭୁଞ୍ଜି କଲୁ ଏଡ଼େ କର୍ମ ।
ନ ଗଣିଲୁ ତୋର ପଦ ମର୍ଯ୍ୟାଦା ଅଧମ ! ॥ ୭୦
ସେହି ପାପେ ଆରେ ଦୁଷ୍ଟମତି ! ତୋ' ବୃଷଣ ।
ଛିନ୍ନ ହେଉ ବୋଲି ଶାପ ଦେଇ ଗଉତମ ॥ ୭୧
ଆଶ୍ରମ ପ୍ରବେଶି କୋପେ ହୋଇ ପ୍ରଜ୍ୱଳିତ ।
ପତ୍ନୀ ଅହଲ୍ୟାରେ ପୁଣି ଶାପିଲେ ଏମନ୍ତ ॥ ୭୨
ଦୁରବସ୍ଥଣୀ ତୁ ନାରୀ ! ଇନ୍ଦ୍ରପୁ ଲକସେ ।
ଜାଣିଶୁଣି ଯେ କୁକର୍ମ କଲୁ ମନ ତୋଷେ ॥ ୭୩
ସେହି ପାପେ ଅକର୍ମଶୀଳା ସମାନ ହୋଇ ।
ସହସ୍ର ବରଷ ଯାଏଁ ପଡ଼ି ରହ ଭୁଞ୍ଜି ॥ ୭୪

ପବନ ଆହାର କରି ପାଉଁଶ ସମାନେ ।
ବିଫଳ ଜୀବନେ ରହିଥାଅ ଏ' ଆଶ୍ରମେ ॥ ୭୫
ଜନମାନଙ୍କୁ ସୁଦୂରେ ରହି ଅଗୋଚରେ ।
ବିଫଳ ଜୀବନେ ପଡ଼ି ରହ ଏ' ଧରାରେ ॥ ୭୬
ତୋ' କୁକର୍ମ ଫଳ ଭୁକ୍ତ ଭୁଞ୍ଜ ସସ୍ର ବର୍ଷ ।
ନିର୍ଜନ ଆଶ୍ରମ ଦେଶେ କରିଣ ନିବାସ ॥ ୭୭
ତ୍ରେତାଯୁଗେ ଯୋଗୀନ୍ଦ୍ର ମୋହନ ହୃଷୀକେଶ ।
ନର ରୂପେ ଜନ୍ମି ଦୈତ୍ୟ କରିବେ ବିନାଶ ॥ ୭୮
ଅଯୋଧ୍ୟା ନରେଶ ଭାଗ୍ୟଧର ଦଶରଥ ।
ତା'ର ପୁରେ ଜନମ ଲଭିବେ ପଦ୍ମନେତ୍ର ॥ ୭୯
ଶ୍ରୀରାମ ନାମ ବହିଣ ଦେବ ଚକ୍ରଧରେ ।
ପଦାର୍ପଣ କରିବେ ଏ' ଆଶ୍ରମ ସ୍ଥଳରେ ॥ ୮୦
ତାଙ୍କ ପଦରଜେ ପୂତ ହେବ ପୁଣ୍ୟାଶ୍ରମ ।
ଅତିଥି ହୋଇବେ ଏହୁ ଆଶ୍ରମେ ଶ୍ରୀରାମ ॥ ୮୧
ଅତିଥି ସତ୍କାରେ ତାଙ୍କୁ ପୂଜିଲେ ଯତନେ ।
ମୁକତି ଲଭିବୁ ପଡ଼ିଥାଅ ଏହି ବନେ ॥ ୮୨
ସେହି ପୁଣ୍ୟ ଫଳେ ତୋ' ମନରୁ ଲୋଭ ମୋହ ।
ଦୂର ହେଲେ ତଦନ୍ତେ ଧରି ଦିବ୍ୟ ଦେହ ॥ ୮୩
ମୋ' ପାଶେ ମିଳିବୁ ତୋତେ ଦେଲି ଏହି ବର ।
ରହିଥାଅ ଚେତେକାଳ ଦେଇ କଳେବର ॥ ୮୪
ସେ ପାପାଚାରିଣୀ ଅହଲ୍ୟାରେ କହି ଏତେ ।
ଗୌତମ ଚଳିଲେ ଶୀଘ୍ରେ ହିମାଳୟ ପଥେ ॥ ୮୫
ଦେବ ଗନ୍ଧର୍ବ ସେବିତ ସେ ଗିରି ଶିଖରେ ।
ସାଧିଲେ କଠୋର ତପ ବିଷାଦ ଅନ୍ତରେ ॥ ୮୬
ମୁନି ଗଉତମ ପଦ ପଙ୍କଜେ ଶରଣ ।
ପଶି ରାମାୟଣ ଗାଏ ଶ୍ରୀପୁରୁଷୋତ୍ତମ ॥ ୮୭

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଅଷ୍ଟଚତ୍ୱାରିଂଶ ସର୍ଗ ।



# ଏକୋନପଞ୍ଚାଶତ୍ ସର୍ଗ
## ଅହଲ୍ୟା ଉଦ୍ଧାର ।

ଆହେ ରଘୂତ୍ତମ ! ଶୁଣ ତଦନ୍ତେ ଚରିତ ।
ମୁନିଶାପେ ଇନ୍ଦ୍ର ହେଲେ ବୃଷଣ ରହିତ ॥ ୧
ଦୁଃଖିତ ଅନ୍ତରେ ତହୁଁ ଦେବ ସୁନାସୀର ।
ଅଗ୍ନି ଆଦି ସୁରଗଣେ ବୋଇଲେ ସତ୍ୱର ॥ ୨
ସିଦ୍ଧ ଗନ୍ଧର୍ବ ଗ୍ଣରଣେ ଭଣିଲେ ଏସନ ।
ଆହେ ସୁରଗଣ ! ଶୁଣ ମୋର ନିବେଦନ ॥ ୩
ମହାଋଷି ଗଉତମ-ତପସ୍ୟାରେ ବିଘ୍ନ ।
ସାଧିବାକୁ ତାଙ୍କ ଶତ୍ରେ ବିହ୍ୱଳ ମୁଁ ତମ ॥ ୪
ସେହି କୋପେ ମୁନିବର ଦେଲେ ମୋତେ ଶାପ ।
ବୃଷଣ ବିହୀନେ ଦେଖ ଭୋଗୁଛି ସନ୍ତାପ ॥ ୫
ଦେବକାର୍ଯ୍ୟ ସାଧନରେ ଲଭିଅଛି ଦଣ୍ଡ ।
ସେହି ଦୋଷେ ଆଜ ମୁହିଁ ହୋଇଛି ପାଷାଣ୍ଡ ॥ ୬
ଗୌତମ ଅପଣା ତପସ୍ୟାରେ ସିଦ୍ଧ ହୋଇ ।
ସ୍ୱର୍ଗପୁର ଦେବତାଙ୍କ ହସ୍ତରୁ ଛଡ଼ାଇ ॥ ୭
ଆପଣେ ସୁରଭୁବନେ ହୋଇଥା'ନ୍ତା ନୃପ ।
ସକଳ ଦେବ ସମାଜ ଖଟନ୍ତା ସମୀପ ॥ ୮
ତେଣୁ ମୁଁ କରିଛି ଦେବଙ୍କର ଉପକାର ।
ଏଥକୁ ଅମରଗଣ ! କର ହେ ବିଗ୍ଭର ॥ ୯
ମୁନିପତ୍ନୀ ଅହଲ୍ୟାରେ କରି ମୁଁ ହରଣ ।
ଗଉତମ ଶାପୁଁ ହରାଇଛି ଏ' ବୃଷଣ ॥ ୧୦
ତେଣୁ ମୁଁ କରଇ ସର୍ବ ଦେବେ ନିବେଦନ ।
ଦେବର୍ଷି ମହର୍ଷି ଆଦି ସକଳ ସୁଜାଣ ॥ ୧୧
ସର୍ବେ ମିଳି ମୋର ହିତେ କର ହେ ଉପାୟ ।
ନୋହିଲେ ଏ' ଋଷିଶାପେ ମରିବି ନିଶ୍ଚୟ ॥ ୧୨

ଏଣୁ ବିଦଣ ସକଳ ବରୁଣ ମଜରେ ।
ତତ୍ପର ହୋଇଲେ ଶୀଘ୍ର ବାସବ ହିତରେ ॥ ୧୩
ସର୍ବେ ମିଳି ଚଳିଲେକ ପିତୃଗଣ ପାସ ।
ବୁଝାଇ କହିଲେ ତାଙ୍କୁ ସକଳ ସନ୍ଦେଶ ॥ ୧୪
ଶେଷେ ଅନୁରୋଧ କରି କହିଲେ ଏ' ବାଣୀ ।
ଆହେ ପିତୃଗଣ ! ତୁମ୍ଭେ ଅଛ ସବୁ ଜାଣି ॥ ୧୫
ତୁମ୍ଭ ପାଶେ ଅଛି ଯେଉଁ ଆଦରର ମେଷ ।
ତା' ବୃଷଣଛେଦ ଏବେ ଇନ୍ଦ୍ରେ କର ତୋଷ ॥ ୧୬
ବୃଷଣ ସଂଯୋଗେ ଇନ୍ଦ୍ର ହୋଇଲେ ସନ୍ତୋଷ ।
ପିତୃଗଣଙ୍କର ହେବ ସୌଭାଗ୍ୟ ଅଶେଷ ॥ ୧୭
ଆମ୍ଭେ ଏହି ବରଦାନ ଦେଉଁ ପିତୃଗଣ !
ବୃଷଣ ବିହୀନ ମେଷମାଂସେ ଯେଉଁ ଜନ ॥ ୧୮
ପିତୃଗଣେ ଅରପିବ କରି ଅଭିଳାଷ ।
ତାଁ' ମନୋକାମନା ପୂର୍ଣ୍ଣ ହୋଇବ ଅବଶ୍ୟ ॥ ୧୯
ଅଗ୍ନିଦେବ ଏ' ପ୍ରସ୍ତାବ କରନ୍ତେ ହେ ରାମ !
ପ୍ରସନ୍ନ ବଦନେ ମିଳି ସର୍ବ ପିତୃଗଣ ॥ ୨୦
ମେଷର ବୃଷଣ ନେଇ ଇନ୍ଦ୍ରଙ୍କ ଶରୀରେ ।
ଦେବଗଣ ପ୍ରୀତି ଅର୍ଥେ ବେଗେ ସଂଯୋଜିଲେ ॥ ୨୧
ଆହେ ରାମ ! ରାଜୀବ ଲୋଚନ ରଘୁନାଥ !
ସେହି ଦିନୁ ସମାଜେ ଏ' ପ୍ରଥା ପ୍ରଚଳିତ ॥ ୨୨
ଯେଉଁ ଜନେ ପିତୃଗଣ ପ୍ରୀତି ଅର୍ଥେ ଦାନ ।
କରିବ ସନ୍ତୋଷେ ମେଷେ ବୃଷଣବିହୀନ ॥ ୨୩
ସର୍ବ ମନୋରଥ ତା'ର ହେବ ପରିପୂର୍ଣ୍ଣ ।
ମେଷମାଂସ ଦାନେ ତୃପ୍ତ ହୋ'ନ୍ତି ପିତୃଗଣ ॥ ୨୪
ସେହି କାଳୁ ଇନ୍ଦ୍ର ଲୋଭେ ମୁନିପତ୍ନୀ ହରି ।
ଦେବରାଜ ହୋଇଛନ୍ତି ମେଷ-ଅଣ୍ଡଧାରୀ ॥ ୨୫
ହେ ଶ୍ରୀରାମ ! ପରମ ତେଜସ୍ୱୀ ବୀରବର !
କୃପାକରି ଏବେ ଏ' ଆଶ୍ରମେ ବେଗେ ଚଳ ॥ ୨୬

ଆଶ୍ରମବାସିନୀ ହତଭାଗିନୀ ସେ ନାରୀ ।
ରହିଛି ଅନେକ କାଳୁ ତବ ନାମ ସ୍ମରି ॥ ୨୭
ତବ ପଦରଜେ ପୂତ କରି ସେ ଆଶ୍ରମ ।
ଅଭାଗିନୀ ଅହଲ୍ୟାରେ ଉଦ୍ଧର ଶ୍ରୀରାମ ! ॥ ୨୮
ଶୁଣି ମୁନିବର ବାଣୀ ରଘୁକୁଳ ସାଇଁ ।
ବିଶ୍ୱାମିତ୍ର ଗହଣରେ ପ୍ରବେଶିଲେ ଯାଇ ॥ ୨୯
ଆଶ୍ରମେ ଦେଖିଣ ଯେହୁ ତପସ୍ୱିନୀ ନାରୀ ।
ତପୋବଳେ ଜ୍ୟୋତିମତୀ ଅତି ମନୋହାରୀ ॥ ୩୦
ଦେବ ମାନବ ଅସୁର ସର୍ବ ଅଗୋଚରେ ।
ଥିଲେ ତହିଁ ଗଉତମ ନାରୀ ଆଶ୍ରମରେ ॥ ୩୧
ଅତ୍ୟନ୍ତ ସୁନ୍ଦରୀ ଯେହୁ ମୁନି ମନୋହାରୀ ।
ବିଧାତା ଗଢ଼ିଛି ଯା'ଙ୍କୁ ସୁଯତନ କରି ॥ ୩୨
ତା' ଅଙ୍ଗ ନିର୍ମାଣେ ଧାତା କରି ମନୋରମ ।
ବିହିଥିଲେ ସୁନ୍ଦରପଣରେ ଅନୁପମ ॥ ୩୩
ମାୟାମୟୀ ରୂପେ ହେଉଥିଲେ ସେ ପ୍ରତୀତ ।
ଧୂମଜାଳେ ଆଚ୍ଛାଦିତ ଅଗ୍ନିଶିଖା ବତ ॥ ୩୪
କି ଅବା ଜଳମୁଧା କି ଘେରି ମେଘମାଳା ।
ରହିଛି ତେମନ୍ତ ଶୋଭାବତୀ ଥିଲେ ବାଳା ॥ ୩୫
ଜଳରେ ପଡ଼ିତ ସୂର୍ଯ୍ୟକିରଣ ପରାୟେ ।
ପ୍ରଭାମୟୀ ହୋଇଥିଲେ ଅହଲ୍ୟା ନିଶ୍ଚୟେ ॥ ୩୬
ଗଉତମ ଶାପବଶୁଁ ସେ ରମଣୀମଣି ।
ଭାଗ୍ୟକୁ ଆଦରି ଥିଲେ ଆଶ୍ରମରେ ପୁଣି ॥ ୩୭
ଶ୍ରୀରାମଙ୍କ ଆଗମନ ପୂର୍ବୁଁ କେହି ଜନ ।
ଦେଖି ନଥିଲେ ତାହାଙ୍କ ଚନ୍ଦ୍ରମାବଦନ ॥ ୩୮
ଶ୍ରୀରାମ ଦର୍ଶନେ ସେହି ରମଣୀରତନ ।
ଆଗନ୍ତୁ କୋଟିଏ ତେଜେ ଦେଲେ ଦରଶନ ॥ ୩୯
ଦେଖି ତାଙ୍କ ଅପରୂପ ଶୋଭା ରଘୁନାଥ !
ଚରଣ ଛୁଇଁଲେ ଭାଇ ଲକ୍ଷ୍ମଣ ସହିତ ॥ ୪୦

ମହର୍ଷି ବଚନ ଶୁଣି ତରୁଣୀ ରତନ ।
ପାଦ୍ୟ ଅର୍ଘ୍ୟ ନେଇ ରାମେ କଲେ ନିବେଦନ ॥ ୪୧
ଅତିଥି ବେଭାରେ ତାଙ୍କୁ କରି ସମାଦର ।
ଯଥା ବିଧିମତେ ପୂଜା କଲା ରାମାକର ॥ ୪୨
ଶାସ୍ତ୍ରୀୟ ନିୟମେ ରାମ ସୁମିତ୍ରାନନ୍ଦନ ।
ସେମନ୍ତେ ଅହଲ୍ୟାଙ୍କର ପୂଜା ବିଧିମାନ ॥ ୪୩
ସୁରଧାମେ ଅପସରା ହୋଇ ପ୍ରମୁଦିତ ।
ନୃତ୍ୟ ଆରମ୍ଭିଲେ ଗାଇ ଅହଲ୍ୟା ଚରିତ ॥ ୪୪
ସିଦ୍ଧ-ଯକ୍ଷ-ଗନ୍ଧର୍ବ କିନ୍ନରେ ମିଳି ରସେ ।
ବାଇଦ ବଜାଇ ରଙ୍ଗେ ନାଚିଲେ ହରଷେ ॥ ୪୫
ଜୟ ଜୟ ଜୟ ବାଣୀ ଘୋଷିଲେ ସାନନ୍ଦେ ।
ତ୍ରୈଲୋକ୍ୟମୋହିନୀ ଅହଲ୍ୟାର ସାଧୁବାଦେ ॥ ୪୬
ମହାତେଜସ୍ୱୀ ତପସ୍ୱୀବର ଗଉତମ ।
ବେଗେ ଆସି ଶ୍ରୀରାମଙ୍କୁ କଲେ ଦରଶନ ॥ ୪୭
ଅହଲ୍ୟାକୁ ଦେଖି ମନେ ହରଷ ହୋଇଲେ ।
ସପତ୍ନୀକ ମୁନିରାଜ ଶ୍ରୀରାମେ ପୂଜିଲେ ॥ ୪୮
ପାଦ୍ୟ ଅର୍ଘ୍ୟ ମଧୁପର୍କ ଦେଇ ସହରଷେ ।
ନାନା ବିଧିବିଧାନରେ ପୂଜିଲେ ସରସେ ॥ ୪୯
ମୁନି ବିଶ୍ୱାମିତ୍ରେ କରି ଆଦର ସତ୍କାର ।
ଅତିଥି ବିଧାନେ ପୂଜା କଲେ ମୁନିବର ॥ ୫୦
ଗଉତମଠାରୁ ପୂଜା ଲଭି ବିଶ୍ୱାମିତ୍ର ।
ଜନକପୁରେ ଚଳିଲେ ଘେନି ରଘୁନାଥ ॥ ୫୧
ଶ୍ରୀରାମ ମିଥିଳାପୁରେ ପ୍ରବେଶ ଚରିତ ।
ଶୁଣିଲେ ସୁମନେ ହେବ ଖଣ୍ଡନ ଦୁରିତ ॥ ୫୨
ପ୍ରଣମି ଶ୍ରୀରାମ ଗଉତମ ମୁନି ପାଦେ ।
ପୁରୁଷୋତ୍ତମ ଭଣଇ ଏ' ଗୀତ ସାନନ୍ଦେ ॥ ୫୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକୋନପଞ୍ଚାଶତ୍ତ୍ୱ ସର୍ଗ ।



# ପଞ୍ଚାଶତ୍ ସର୍ଗ

## ଶ୍ରୀରାମଙ୍କ ମିଥିଳା ପ୍ରବେଶ ।

ତପୋଧନ ବିଶ୍ୱାମିତ୍ର ସଙ୍ଗେ ବେନି ଭାଇ ।
ଗୌତମ ଆଶ୍ରମ ତେଜି ଗଲେ ପଥ ବାହି ॥ ୧
ଆଶ୍ରମ ଐଶାନ୍ୟ କୋଣେ ଚଳିଲେ ସତ୍ୱରେ ।
ପ୍ରବେଶ ହୋଇଲେ ଯାଇ ମିଥିଳା ନଗରେ ॥ ୨
ଯହିଁ ଯଜ୍ଞ ସାଧୁଥିଲେ ବୈଦେହ ନରେଶ ।
ସେ ଯଜ୍ଞ ମଣ୍ଡପ ପାଶେ ହୋଇଲେ ପ୍ରବେଶ ॥ ୩
ସେ ଶୋଭା ନିରେଖି ରାମ ହୋଇ ଉତ୍ସୁକିତ ।
କୁତୂହଳେ ପୃଚ୍ଛା କଲେ ଆହେ ଗାଧିସୁତ ! ॥ ୪
ମହାତ୍ମା ଜନକ ଯାହା ଛନ୍ତି ଭିଆଇଣ ।
ଶୋଭନ ଯଜ୍ଞଶାଳା ଏ' କୁଶିକ ନନ୍ଦନ ! ॥ ୫
ଅନେକ ଦେଶରୁ ଶତ ସହସ୍ର ବ୍ରାହ୍ମଣ ।
ଏ' ଯଜ୍ଞେ ଆବୃତ୍ତି କରୁଛନ୍ତି ବେଦଗାନ ॥ ୬
ମୁନି ଆଶ୍ରମରେ ଶୋଭାପାଏ ଏହୁ ସ୍ଥଳ ।
ଶତ ସହସ୍ର ସଂଖ୍ୟାରେ ଅହେ ଗୁରୁବର ! ॥ ୭
ଉତ୍ତମ ସ୍ଥାନ ଦେଖିଣ କରିବା ବିଶ୍ରାମ ।
ଏଥିକୁ ଆଜ୍ଞା ବିଧାନ କରନ୍ତୁ ଆପଣ ॥ ୮
ଶ୍ରୀରାମ ବଚନ ଶୁଣି ରାଜର୍ଷି ପ୍ରବର ।
ଏକାନ୍ତ ସ୍ଥାନ ଅବୋରି ନେଲେ ମୁନିବର ॥ ୯
ଜଳ ସୁଲଭ ସ୍ଥାନକୁ ଆଦରିଲେ ମୁନି ।
ସନ୍ଧ୍ୟା ତରପଣ ଯହିଁ ହେବ ମନ ଜାଣି ॥ ୧୦
ଉତ୍ତମ ଆଚରଣଶୀଳ ଜନକ ରାଜନ ।
ଶୁଣିଲେ ମହର୍ଷି ବିଶ୍ୱାମିତ୍ର ଆଗମନ ॥ ୧୧
ପୁରୋହିତ ଶତାନନ୍ଦ ସହିତରେ କରି ।
ଅଇଲେ ରାଜର୍ଷି ବେଗେ ପାଦ୍ୟ ଅର୍ଘ୍ୟ ଧରି ॥ ୧୨

ସ୍ୱାଗତ ନିମନ୍ତେ ନୃପ ହେଲେ ଆଗୁଁସାର ।
ଯେଣୁ ତପସ୍ୱୀ ଧାର୍ମିକ ପଣେ ସେହୁ ବର ॥ ୧୩
ଅର୍ଘ୍ୟ ପାତ୍ର ଧରି ସଙ୍ଗ ଋତ୍ୱିଜ ପ୍ରବର ।
ଚଳିଲେ ରାଜର୍ଷି ସଙ୍ଗେ ହୋଇ ତତପର ॥ ୧୪
କୃତାଞ୍ଜଳିପୁଟେ ନୃପ କରିଣ ପ୍ରଣାମ ।
ପାଦ୍ୟାଦି ଆଣିଲେ ବିଶ୍ୱାମିତ୍ର ମୁନିଗଣ ॥ ୧୫
ବିନୟେ ପାଦ ପଖାଳି ରାଜର୍ଷି ଜନକ ।
ମହର୍ଷି ବିଶ୍ୱାମିତ୍ରଙ୍କୁ ଦେଲେ ଅର୍ଘ୍ୟୋଦକ ॥ ୧୬
ଯଥାଯୋଗ୍ୟ ପୂଜା ନେଇ ବିଶ୍ୱାମିତ୍ର ମୁନି ।
ପଚାରିଲେ ସର୍ବ କୁଶଳ ତ ନୃପମଣି ! ॥ ୧୭
ଅବିଘ୍ନେ ସମ୍ପନ୍ନ ହୁଅଇ କି ଯଜ୍ଞବିଧି ।
ଶ୍ରୋତ୍ରିୟଗଣେ ଯଜ୍ଞରେ ପୂଜନ୍ତି ସବିଧି ॥ ୧୮
ଜନକ ଗହଣେ ଯେତେ ଥିଲେ ମୁନିଗଣ ।
ସଭିଙ୍କୁ ସାଦରେ ମୁନି କଲେ ସମ୍ଭାଷଣ ॥ ୧୯
ଯଥାଯୋଗ୍ୟ ସମ୍ବୋଧନେ ତୋଷିଲେ ସକଳ ।
ଶୁଣି ହରଷିତ ହେଲେ ତପସ୍ୱୀ ମଣ୍ଡଳ ॥ ୨୦
ତହୁଁ ଅତି ସରାଗରେ ଜନକ ନୃମଣି ।
ବିନୟେ ଭାଷିଲେ ଆହେ ଶୁଣ ମୁନିମଣି ! ॥ ୨୧
ଆସନ ଗ୍ରହଣ କରି କରନ୍ତୁ କୃତାର୍ଥ ।
ତୁମ୍ଭ ଶୁଭ ଆଗମନେ ହେଲି କୃତକୃତ୍ୟ ॥ ୨୨
ଶୁଣି ମୁନି ବିଶ୍ୱାମିତ୍ର ବସିଲେ ଆସନେ ।
ମୁନିଗଣ ବିରାଜିଲେ ଯଥାଯୋଗ୍ୟ ସ୍ଥାନେ ॥ ୨୩
ଏ' ଉତ୍ତାରେ ରାଜର୍ଷି ପ୍ରବର ସେ ଜନକ ।
କରଯୋଡ଼ି ସମ୍ଭାଷିଲେ ହେ ମୁନି କୌଶିକ ! ॥ ୨୪
ଦେବଗଣ କୃପା କରି ମୋର ମନସ୍କାମେ ।
ପୂରାଇଲେ ତେଣୁ ତୁମ୍ଭେ ଅଇଲ ମୋ' ଧାମେ ॥ ୨୫
ତବ ପୂତ ପଦରେଣୁ ଲଭି ହେ ଯୋଗୀଶ !
ମୋ' ଯଜ୍ଞ ସକଳ ଦେବେ ହୋଇଲେ ସନ୍ତୋଷ ॥ ୨୬

ମୁନିଗଣ ଅଗ୍ରଗଣ୍ୟ ଅଟନ୍ତି ଆପଣ ।
ତୁମ୍ଭ ସଙ୍ଗେ ଆସିଛନ୍ତି ମହାଋଷିଗଣ ॥ ୨୭
ସକଳ ବେଦ ପାରଗ ହୋଇଣ ସଦୟେ ।
ମୋ ଯଜ୍ଞ ସଭାରେ ଛନ୍ତି ତବ ଅନୁଗ୍ରହେ ॥ ୨୮
ଏଣୁ ମୁଁ ମଣଇ ଚିତ୍ତେ ହେ ମୁନି ପୁଙ୍ଗବ !
ତୁମ୍ଭ ଆଗମନେ ଯଜ୍ଞ ସଫଳ ହୋଇବ ॥ ୨୯
ବୋଲନ୍ତି ଋତ୍ୱିକଗଣେ ଅହେ ବିଶ୍ୱାମିତ୍ର !
ଦ୍ୱାଦଶ ଦିବସେ ଦୀକ୍ଷା ହେବ ସମାପତ ॥ ୩୦
ସେ ଉତ୍ତାରୁ ସର୍ବ ଦେବ ହୋଇ ପ୍ରମୁଦିତ ।
ଆସିବେ ଏଥକୁ ଦେଖିବ ହେ ବିଶ୍ୱାମିତ୍ର ! ॥ ୩୧
ଏମନ୍ତ ଭାଷିଣ ସମାଦରେ ନୃପମଣି ।
କରଯୋଡ଼ ମୁନି ଆଗେ ବୋଲନ୍ତି ଏ' ବାଣୀ ॥ ୩୨
ଅହେ ମୁନିବର ବିଶ୍ୱାମିତ୍ର ତପୋଧନ !
ସର୍ବଦା ହେଉ ତୁମ୍ଭର ସକଳ କଲ୍ୟାଣ ॥ ୩୩
କିଏ ଏ' କୁମର ବେନି ଦେବତା ସମାନ ।
ହସ୍ତେ ଧରିଛନ୍ତି ଯେହୁ ଦିବ୍ୟ-ଶସ୍ତ୍ରମାନ ॥ ୩୪
ମତ୍ତଗଜ ଠାଣିରେ ଯେ କରନ୍ତି ଗମନ ।
କାହାର କୁମରେ ଏହୁ କୁହ ତପୋଧନ ! ॥ ୩୫
ପ୍ରଫୁଲ୍ଲ ପଙ୍କଜ ସମ ଏହାଙ୍କ ବଦନ ।
ସୁକୁମାର ଅଟନ୍ତି ଏ' କୁମାର ବି' ଜଣ ॥ ୩୬
ହସ୍ତେ ଧନୁଶର ଖଡ଼୍ଗ ଘେନି ବୀର ବେନି ।
ଶୋଭାରେ ତୁଚ୍ଛ କରନ୍ତି କୁମାର ଅଶ୍ୱିନୀ ॥ ୩୭
କିଶୋର ବୟସ ପୁଣ ଅତି ଶୋଭାବନ ।
ରୂପରେ ମୋହନ୍ତି ଏହୁ ଚଉଦ ଭୁବନ ॥ ୩୮
ଏହାଙ୍କ ଦର୍ଶନେ ମନେ ହୁଅଇ ପ୍ରତୀତ ।
ସ୍ୱର୍ଗୁ ଅଇଲେ କି ବେନି ଅଦିତିଙ୍କ ସୁତ ॥ ୩୯
ସ୍ୱେଚ୍ଛା ଭ୍ରମଣ ମାନସେ ହୋଇଣ ଉତ୍ସୁକ ।
ଓହ୍ଲାଇ ଅଇଲେ କିବା ବେନି ମର୍ତ୍ତ୍ୟଲୋକ ॥ ୪୦

କେବଣ ହେତୁରୁ କର ଏ' ଦୁଇ ତରୁଣ ।
ଧରଣୀରେ ସୁଶୋଭିତ କରନ୍ତି ଚରଣ ॥ ୪୧
ପଦପାଶାର ଉତ୍କର୍ଷ କ'ଣ ବୋଲକର ।
କୁହ ସକଳ ବୃତ୍ତାନ୍ତ ଆହେ ମୁନିବର ! ॥ ୪୨
ଶଶୀ ଦିନକର ଯେହ୍ନେ ଶୋହଇ ଗଗନେ ।
ବେନି କୁମରେ ମୋ' ନଗ୍ର ଦିଶଇ ତେସନେ ॥ ୪୩
ସମବୟସୀ ଯୁଗଳ ଆକୃତି ସମାନ ।
ଏକାପ୍ରାୟେ ସମତୁଲ ଅଟନ୍ତି ରୂପେଣ ॥ ୪୪
ବଦନଶୋଭା ଦୁହିଙ୍କ ଏକଇ ପ୍ରକାର ।
ବୀରବର ଅଟନ୍ତି ଏ' କାକପକ୍ଷଧର ॥ ୪୫
ଏହାଙ୍କ ବିଷୟ ଶୁଣିବାକୁ ମୁନି ! ମୋର ।
କୁହ କୃପା କରି ମନ ହୁଅଇ ଅସ୍ଥିର ॥ ୪୬
ଜନକ ଊଗ୍ର ବାକ୍ୟ ମୁନି ହୋଇ ତତପର ।
ଭାଷିଲେ କୌଶିକ ଶୁଣ ଆହେ ନୃପବର ! ॥ ୪୭
ରାଜା ଦଶରଥଙ୍କର ଏ' ବେନି କୁମର ।
ଅଟନ୍ତି ରାମ ଲକ୍ଷ୍ମଣ ନାମ ଦୁହିଙ୍କର ॥ ୪୮
ମୋ' ଯଜ୍ଞରେ ସିଦ୍ଧାଶ୍ରମ ଆଗମନ କାଳେ ।
ପଥେ ତାଡ଼କା ଅସୁରୀ ବଧିଲେ ଏ' ବଳେ ॥ ୪୯
ମୋ' ଯଜ୍ଞରକ୍ଷା କରନ୍ତେ ହୋଇଣ ତତ୍ପର ।
ଏକାବାଣେ ବଧିଲେ ଏ' ସୁବାହୁ ଅସୁର ॥ ୫୦
ଏକବାଣ ବିନ୍ଧି ରାମ ମାରୀଚକୁ ପୁଣି ।
ଉଡ଼ାଇଲେ ଆକାଶରେ ଆହେ ନୃପମଣି ! ॥ ୫୧
ପଥେ ପାଷାଣୀ ଅହଲ୍ୟା ତାର ଅବହେଳେ ।
ଗଉତମେ ଉତ୍ତମ ନାରୀରେ ସନ୍ତୋଷିଲେ ॥ ୫୨
ଶୁଣି ମୋ' ମୁଖରୁ ଶିବଧନୁର ଚରିତ ।
ଉତ୍ସୁକେ ଅଇଲେ ଶୁଣ ନୃପବର ! ଏଥ ॥ ୫୩
ଶିବଧନୁ ଦେଖି ତୋଷ ହେବେ ନୃପମଣି !
ସେ କାରଣୁ ଆସିଛନ୍ତି ଏ' କୁମର ବେନି ॥ ୫୪

ଏତେ କହି ବିଶ୍ୱାମିତ୍ର ହୋଇଲେ ମଉନ ।
ଶୁଣାଇଲେ ଜନକ ଯା' କଲେ ନିବେଦନ ॥ ୫୫
ଶ୍ରୀରାମ ଲକ୍ଷ୍ମଣ ମୁନି ବିଶ୍ୱାମିତ୍ର ପାଦେ ।
ପ୍ରଣମି ପୁରୁଷୋତ୍ତମ ପରମ ଆନନ୍ଦେ ॥ ୫୬
ଭଣଇ ରାମଚରିତ ବାଲ୍ମିକ କୃତ ।
ଶୁଣ ହେ ସୁଜନଜନେ ହୋଇ ମୋଦଚିତ୍ତ ॥ ୫୬

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ପଞ୍ଚାଶତ୍ ସର୍ଗ ।



# ଏକପଞ୍ଚାଶତ୍ ସର୍ଗ

## ଶ୍ରୀରାମଙ୍କ ଅଭିନନ୍ଦନ ତଥା ବିଶ୍ୱାମିତ୍ରଙ୍କ ପୂର୍ବ ଚରିତ ବର୍ଣ୍ଣନ ।

ଶୁଣ ହେ ସୁଜନେ ରାମ ପବିତ୍ର ଚରିତ ।
ଯା' ଶ୍ରବଣେ ନିର୍ମଳ ହୁଅଇ ମନ ପୂତ ॥ ୧
ଶୁଣି କୌଶିକ ବଚନ ମୁନି ଶତାନନ୍ଦ ।
ଗୌତମ ଜ୍ୟେଷ୍ଠ ନନ୍ଦନ ଯେ ଆନନ୍ଦକନ୍ଦ ॥ ୨
ପରମ ତେଜସ୍ୱୀ ପୁଣ ଅଟନ୍ତି ଯେ ଜ୍ଞାନୀ ।
ପୁଲକେ ରୋମାଞ୍ଚ ଦେହ ହେଲେ ମୁନି ଶୁଣି ॥ ୩
ଶ୍ରୀରାମ ଦର୍ଶନେ ସେହୁ ହୋଇଣ ବିସ୍ମିତ ।
କୁମାର ଦୁହିଙ୍କୁ ସ୍ପର୍ଶି ବୋଲନ୍ତି ଉଦନ୍ତ ॥ ୪
ଆହେ ଗାଧିସୁତ ମୁନିପ୍ରବର ଗୋସାଇଁ !
ଯଶସ୍ୱିନୀ ମାତା ମୋର ଥିଲେ ବନେ ରହି ॥ ୫
ସତ୍ୟ କି ବଚନ ତବ ଆହେ ମୁନିମଣି !
ମୋ' ମାତାଙ୍କୁ ଦେଖିଲେ କି ବୀର ରଘୁମଣି ॥ ୬

ସକଳଜନ ପୂଜିତା ଅହଲ୍ୟା ଜନନୀ ।
ପୂଜିଲେ କି ସମାଦରେ ଫଳପୁଷ୍ପ ଘେନି ॥ ୭
ପାଦ୍ୟ ଅର୍ଘ୍ୟ ଦେଇ ମାତା ସାଦରେ ଶ୍ରୀରାମେ ।
ସମାଦର କଲେ କି ସେ ନିର୍ଜନ ଆଶ୍ରମେ ॥ ୮
ଆହେ ବିଶ୍ୱାମିତ୍ର ! କୁହ ପବିତ୍ର ବଚନ ।
ଶୁଣିଲେ କି ପୂର୍ବ କଥା ରାମ ରଘୁରଣ ॥ ୯
ଦେବରାଜ ଇନ୍ଦ୍ରଙ୍କର କପଟ ଆଚାର ।
ଶୁଣି ରଘୁବଂଶ ମଣି କଲେ କି ବିଚାର ॥ ୧୦
କଲ୍ୟାଣ ହେଉ ତୁମ୍ଭର ଆହେ ଋଷିବର !
ତବ ପ୍ରସାଦୁ ମୋ' ମାତା ଦୁଃଖୁ ହେଲେ ପାର ॥ ୧୧
ଶାପମୁକ୍ତ ହୋଇ ମୋ' ଜନନୀ ଯଶସ୍ୱିନୀ ।
ମିଳିଲେ କି ପିତାପାଶେ ଆହେ ଋଷିମଣି ! ॥ ୧୨
ଆହେ କୁଶିକ ନନ୍ଦନ ! ଶୁଣ ମୋ' ବଚନ ।
ମୋ' ପିତା କଲେ କି ସତେ ଶ୍ରୀରାମେ ପୂଜନ ॥ ୧୩
ମୋ' ପିତାଙ୍କ ସମାଦର ଲଭି ରଘୁନାଥ ।
ଯାପିଲେ କି କିଛିକାଳ କୁହ ବିଶ୍ୱାମିତ୍ର ! ॥ ୧୪
ସତେ କି ମୋ' ମାତାପିତା ମିଳି ଏକତ୍ରିତେ ।
ସେ ଆଶ୍ରମେ ପୂଜିଲେ କି ରଘୁକୁଳନାଥେ ॥ ୧୫
ସାଦରେ ସେ ପୂଜା ଘେନିଲେ କି ରଘୁମଣି ।
ଫଳପୁଷ୍ପ ଯାହା ଦେଲେ ମୋ' ତାତଜନନୀ ॥ ୧୬
ରଘୁକୁଳ ନାଥ ରାମ ହରଷ ଅନ୍ତରେ ।
ଅଭିବାଦନ କଲେ କି ଜନନୀ ପିଅରେ ॥ ୧୭
ପ୍ରଶାନ୍ତ ଚରିତ ରାମ ତାଙ୍କ ପୂଜା ଘେନି ।
ଅଛିଛନ୍ତି ଏଥେଁ ଯାହା ତୁମ୍ଭ କୃପା ମୁନି ॥ ୧୮
ଶତାନନ୍ଦଙ୍କ ବଚନ ଶୁଣି ବିଶ୍ୱାମିତ୍ର ।
ବଚନ କୁଶଳ ମୁନି ଭଣିଲେ ଏମନ୍ତ ॥ ୧୯
ଆହେ ବିପ୍ର ଶତାନନ୍ଦ ! ତୁମ୍ଭେ ଧୁରନ୍ଧର ।
ସକଳ ସାଧିଛି ମଣି କର୍ତ୍ତବ୍ୟ ମୋହର ॥ ୨୦

ସୌଭାଗ୍ୟବତୀ ଜନନୀ ଅହଲ୍ୟା ତୁମ୍ଭର ।
ମିଳିଲେ ପତିଙ୍କ ସଙ୍ଗେ ପ୍ରହୃଷ୍ଟ ମନର ॥ ୨୧
ପିତା ତବ ସମାଦରେ ଘେନିଲେ ଜନନୀ ।
ତପୋଦୀପ୍ତ ଅଙ୍ଗ ଯା'ର ପୁଣି ଯଶସ୍ୱିନୀ ॥ ୨୨
ପୂର୍ବେ ଯେସନ୍ତେ ରେଣୁକାରେ ମୁନି ଜମଦଗ୍ନି ।
ଆଦରିଥିଲେ ମନରେ ହରଷ ନ ଘେନ ॥ ୨୩
ବିଦ୍ୟା ବୁଦ୍ଧି ସୁନିପୁଣ ମୁନି ବିଶ୍ୱାମିତ୍ର ।
ତାହାଙ୍କ ମୁଖରୁ ଶୁଣି ବଚନ ଅମୃତ ॥ ୨୪
ତେଜସ୍ୱୀ ବିଦ୍ୱାନ ପୁଣ ଅଟନ୍ତି ଯେ ଜ୍ଞାନୀ ।
ସେ ଶତାନନ୍ଦ ଭାଷିଲେ ଆହେ ରଘୁମଣି ! ॥ ୨୫
ସ୍ୱାଗତ ଜଣାଏଁ ଆହେ ରାମ ରଘୁନାଥ !
ଯେ କାର୍ଯ୍ୟ ସାଧିଛ ତାହା ଜଗତେ ବିଦିତ ॥ ୨୬
ଅହୋ ଭାଗ୍ୟ ମୋର ଯା' ଦେଖିଲି ତୁମ୍ଭ ମୁଖ ।
ସକଳ ହରିଲ ଦେବ ! ଜନ୍ମାନ୍ତର ଦୁଃଖ ॥ ୨୭
ସର୍ବଜିତ ମୁନି ବିଶ୍ୱାମିତ୍ର ଗହଣରେ ।
ମିଳିଲ ଯା' ଏଥି ତୁମ୍ଭେ ପ୍ରହୃଷ୍ଟ ଅନ୍ତରେ ॥ ୨୮
ମହର୍ଷି ଗାଧିସୁତଙ୍କ ଚରିତ ଅନନ୍ତ ।
ତପୋବଳେ ବ୍ରହ୍ମର୍ଷିରେ ହେଲେ ଯେ ବନ୍ଦିତ ॥ ୨୯
ଅସୀମ ଧଇର୍ଯ୍ୟବନ୍ତ ଅଦ୍ୱିତୀୟ ଜ୍ଞାନୀ ।
ବୈରାଗ୍ୟ-ଯୋଗ-ସାଧନେ ଅଟନ୍ତି ଯେ ଧନ୍ୟ ॥ ୩୦
ଆହେ ରଘୁବର ! ଏଣୁ ସଂସାର ମଧ୍ୟରେ ।
ତୁମ୍ଭ ପରି ଭାଗ୍ୟଶାଳୀ ନ ଦେଖେଁ ଅପରେ ॥ ୩୨
ଧନ୍ୟ ତବ ପିତାମାତା ଧନ୍ୟ ତବ ଜନ୍ମ ।
ସଉଭାଗ୍ୟରୁ ଲଭିଛ କୁଶିକନନ୍ଦନ ॥ ୩୩
ପରମ ତପସ୍ୱୀ ଯେହୁ ବୀର ଧୂରନ୍ଧର ।
ଯାହାଙ୍କ ଡିଣ୍ଡିମ ବାଜେ ବିଶ୍ୱବ୍ରହ୍ମାଣ୍ଡର ॥ ୩୪
ସେ ମୁନି ଅଟନ୍ତି ତବ ଶରଣରକ୍ଷଣ ।
ତାହାଙ୍କ ଚରିତ ଭଣେ ଶୁଣ ରଘୁରାଣ ! ॥ ୩୫

ମହାବୀର ନରପତି ପରମ ଧାର୍ମିକ ।
ଥିଲେ ଏହୁ ଦୟାବନ୍ତ ପରଜା ପାଳକ ॥ ୩୬
ଦୟାବୀର ଦାନବୀର ଅଟନ୍ତି ନୃପତି ।
ପରଜାନ୍ୱିତ ସାଧନେ ସାଧିଲେ ଏ ପୃଥ୍ୱୀ ॥ ୩୭
ପ୍ରାଚୀନ କାଳର କଥା ଶୁଣ ରଘୁନାଥ !
କୁଶ ନାମେ ନୃପ ଥିଲେ ପ୍ରଜାପତି ସୁତ ॥ ୩୮
ତାଙ୍କ ସୁତ କୁଶନାଭ ପରମ ଧାର୍ମିକ ।
ବିଦ୍ୟା-ବଳ-ଜ୍ଞାନେ ଯେହୁ ସାଧିଲେ ତ୍ରିଲୋକ ॥ ୩୯
ତାହାଙ୍କ ଜ୍ୟେଷ୍ଠ ନନ୍ଦନ ଗାଧି ନାମେ ରାଜା ।
ତନୟ ପରାୟେ ଯେହୁ ପାଳୁଥିଲେ ପ୍ରଜା ॥ ୪୦
ପିତା ଅନୁରୂପ ଗୁଣବନ୍ତ ବିଶ୍ୱାମିତ୍ର ।
ପରମ ଯଶସ୍ୱୀ ପୁଣ ପବିତ୍ର ଚରିତ ॥ ୪୧
ପିତା ଅନ୍ତେ ସିଂହାସନେ ବସି ଏହୁ ରାଜା ।
ସହସ୍ର ବର୍ଷ ପାଳିଲେ ସୁଖେ ଜନ ପ୍ରଜା ॥ ୪୨
ଏକଦା ବିଶାଳ ସେନା ଘେନି ଏ ରାଜନ ।
ଦିଗ୍‌ବିଜୟେ ଗମିଲେ ହୋଇ ହୃଷ୍ଟମନ ॥ ୪୩
ସସାଗରାଧରା ଭ୍ରମି ଅନେକ ନଗର ।
ପର୍ବତ ଗିରି କନ୍ଦର ଯେତେକ ଆଉର ॥ ୪୪
ନଦୀ ମହାନଦୀ ହ୍ରଦ ସୁରମ୍ୟ କାନନ ।
ବୁଲି ତଜ୍ଜଦରେ ସର୍ବ ସାଧିଲେ ରାଜନ ॥ ୪୫
ଶେଷେ ଆସି ଉପଗତ ହେଲେ ରମ୍ୟ ବନେ ।
ସୈନ୍ୟ ଗଜ ଅଶ୍ୱ ଘେନି ବଶିଷ୍ଠ ଆଶ୍ରମେ ॥ ୪୬
ପ୍ରାକୃତିକ ସମ୍ପଦରେ ପୂର୍ଣ୍ଣ ଯେଉଁ ସ୍ଥାନ ।
ବୃକ୍ଷ ଲତା ଫଳ ପୁଷ୍ପେ ଯେ ବନ ଶୋଭନ ॥ ୪୭
ନାନା ବର୍ଣ୍ଣ ମୃଗଗଣ ଯହିଁ ବିଚରନ୍ତି ।
ତେଜ ମନୁ ହଂସା ଯହିଁ ପଶୁ ନାନା ଜାତି ॥ ୪୮
ରହନ୍ତି ନିର୍ଭୟେ ତହିଁ ମୁନିଙ୍କ ପ୍ରଭାବେ ।
ସୁସିଦ୍ଧ ସାଧନ ପୁଣ ତପର ବିଭବେ ॥ ୪୯
ମହାତ୍ମା ମୁନିଗଣ ସ୍ୱାଧ୍ୟାୟେ ନିରତ ।
ସୁଯଜ୍ଞ ସାଧନେ ଯେହୁ ବ୍ରତି ଅବିରତ ॥ ୫୦

ଦେବତା ଗନ୍ଧର୍ବ ସିଦ୍ଧଗଣରେ ପୂଜିତ ।
ହୋଇ ନିତ୍ୟେ ଯହିଁ ଥା'ନ୍ତି ଅମଳ ଚରିତ୍ର ॥ ୫୧
ବ୍ରାହ୍ମଣ ବୈଷ୍ଣବ ପୁଣ ସଜ୍ଜନ ବଜତା ।
ଦେବର୍ଷି ରାଜର୍ଷି ସର୍ବଫଳଦାତା ॥ ୫୨
ତପବଂଛ ଅଗ୍ନି ସମ ତେଜୋଦୀପ୍ତ ଧୀର ।
ବଶିଷ୍ଠ ଆଶ୍ରମେ ଥା'ନ୍ତି ଜାଣ ରଘୁବର ! ॥ ୫୩
ସେ ସିଦ୍ଧମାନଙ୍କ ଗୁଣ ଶୁଣ ହେ ଶ୍ରୀରାମ !
ସକଳେ ବସନ୍ତି ତହିଁ ଭଜି ଆତ୍ମାରାମ ॥ ୫୪
କେହୁ ନୀରପାନେ କେହୁ ପବନ ଅଶନେ ।
ଯାପନ୍ତି ଦିବା ରଜନୀ ସର୍ବେ ଦିବ୍ୟ ଧ୍ୟାନେ ॥ ୫୫
ପତ୍ର ରସ ପାନେ କେହୁ ଯାପନ୍ତି ଦିବସ ।
ଶୁଷ୍କପତ୍ର ଚର୍ବଣେ କେ ପ୍ରତୋଷ ମାନସ ॥ ୫୬
ଷଡ଼ରିପୁ ସାଧି ସର୍ବେ ତପରେ ନିରତ ।
ହୋମ ଯଜ୍ଞ ତର୍ପଣ ସାଧନ୍ତି ଅବିରତ ॥ ୫୭
ମହା ଜିତେନ୍ଦ୍ରିୟ ସର୍ବେ ଯୋଗେ ଯୋଗେଶ୍ବର ।
ତପୋଧନେ ଧନୀ ସର୍ବେ ନିର୍ମଳ ଅନ୍ତର ॥ ୫୮
ଏମନ୍ତ ଋଷି ମହର୍ଷି ସୁସାଧୁ ସଜ୍ଜନ ।
ସେ ଆଶ୍ରମେ ଶୋଭାପା'ନ୍ତି ଆହେ ରଘୁରାଣ ! ॥ ୫୯
ତେଣୁ ହୁତ ବ୍ରହ୍ମଲୋକ ସମ ସେହୁ ସ୍ଥାନ ।
ବସନ୍ତି ତହିଁ ବଶିଷ୍ଠ ସର୍ବପୁଣ୍ୟଧାମ ॥ ୬୦
ଦେଖି ସେ ଆଶ୍ରମ ଶୋଭା ନୃପ ଗାଧିସୁତ ।
ମହାବୀର ପରମ କୁଶଳୀ ବିଶ୍ବାମିତ୍ର ॥ ୬୧
ବଶିଷ୍ଠଙ୍କ ଦରଶନ ବଳାଇ ମାନସେ ।
ତେଣୁ ସେ ବିଜୟ କଲେ ଆଶ୍ରମ ପ୍ରଦେଶେ ॥ ୬୨
ସେ ବଶିଷ୍ଠ ଶତାନନ୍ଦ ମୁନିଙ୍କ ଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମଗୀତ ଭଣେ ॥ ୬୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକପଞ୍ଚାଶତ୍ ସର୍ଗ ।



# ଦ୍ୱିପଞ୍ଚାଶତ୍ ସର୍ଗ

## ବଶିଷ୍ଠ ବିଶ୍ୱାମିତ୍ରଙ୍କ କଥୋପକଥନ ଓ କାମଧେନୁ ଚରିତ

ତପିଶ୍ରେଷ୍ଠ ମହାତମା ପ୍ରଜାପତି ସୁତ ।
ବଶିଷ୍ଠ ଚରଣ ତଳେ କରି ପ୍ରଣିପାତ ॥ ୧
ମହାବଳୀ ନୃପବର କୁଶିକ ନନ୍ଦନ ।
କୁଳପତି ପଦ୍ମପାଦେ କଲେକ ବନ୍ଦନ ॥ ୨
ତହୁଁ ମୁନିବର ଶ୍ରେଷ୍ଠ କୌଶିକ ବଦନ ।
ଭଣିଲେ ମଧୁର ସ୍ୱରେ ବଚନ ଏସନ ॥ ୩
ହେ ରାଜନ ! ସ୍ୱାଗତ ଜଣାଏଁ ମୁଁ ତୁମ୍ଭଙ୍କୁ ।
କଲ୍ୟାଣ ହେଉ ତୁମ୍ଭର ଘେନ ମୋ' ଗିରକୁ ॥ ୪
ଗ୍ରହଣ କର ଆସନ ଆହେ ମହାବୀର !
ଏ' ପୁଣ୍ୟ ଆଶ୍ରମ ବସି ମୋରେ କୃପା କର ॥ ୫
ଆସନେ ବସନ୍ତେ ମହାରାଜ ବିଶ୍ୱାମିତ୍ର ।
ଫଳମୂଳ ଭୋଜ୍ୟ ଦ୍ରବ୍ୟ ଅଣାଇ ସମସ୍ତ ॥ ୬
ସମର୍ପିଲେ ବ୍ରହ୍ମସୁତ ବିମଳ ଅନ୍ତରେ ।
ନିବେଦି କୋମଳ ବାଣୀ ପ୍ରଫୁଲ୍ଲ ମନରେ ॥ ୭
ଘେନି ଭୋଜ୍ୟ ଉପହାର ରାଜନ ପ୍ରବର ।
ପୁଚ୍ଛିଲେ ବଶିଷ୍ଠେ ତାଙ୍କ ଶୁଭ ସମାଚାର ॥ ୮
ଆହେ ମୁନିବର ! ତପ ଅଗ୍ନିହୋତ୍ର ଆଦି ।
ଏ' ସକଳ ଅଛନ୍ତିକି କୁଶଳେ ସମ୍ପାଦି ॥ ୯
ତବ ଶିଷ୍ୟବର୍ଗ ବୃକ୍ଷ ଲତା ଆଦି କରି ।
ଏ' ସବୁ ମଙ୍ଗଳେ ଛନ୍ତିକି ବ୍ରହ୍ମର୍ଷି ॥ ୧୦
ଶୁଣି ଏସନ ବଚନ ମହାରାଜଙ୍କର ।
ଭାଷିଲେ ସବୁ କୁଶଳ ଆହେ ରାଜେଶ୍ୱର ! ॥ ୧୧

ଆପଣେ ଅଛନ୍ତି କି କୁଶଳେ ରାଜନ !
ପ୍ରଜାକୁଳ ପ୍ରତୋଷରେ ଯାପନ୍ତି କି ଦିନ ॥ ୧୨
ଆହେ ଧାର୍ମିକ ପ୍ରବର ! କୁହ ସମାଗ୍ୱର ।
ରାଜୋଚିତ ଧର୍ମେ ତୁମ୍ଭେ ପାଳ କି ସଂସାର ॥ ୧୩
ହେ ଶତ୍ରୁ ସୂଦନ ! ତବ ପରିଗ୍ୱରଗଣ ।
ସକଳ କୁଶଳେ ପାଳନ୍ତି କି ଭୃତ୍ୟ କର୍ମ ॥ ୧୪
ତବ ଆଜ୍ଞା ପରମାଣେ ଖଟନ୍ତି କି ସର୍ବେ ।
ଶତ୍ରୁ ରାଜାଗଣେ ଜିଣିଅଛ କି ସମ୍ଭବେ ॥ ୧୫
ଆହେ ଅରିନ୍ଦମ ! ତବ ମିତ୍ର ରାଜାଗଣ ।
ରାଜକୋଷ ପାତ୍ରମନ୍ତ୍ରୀ ସକୁଶଳେ ପୁଣ ॥ ୧୬
ଅଛନ୍ତି କି କହ ମୋତେ ପିଟାଇ ସକଳ ।
ହେ ପୁରୁଷ ସିଂହ ! ଘେନ ନିବେଦନ ମୋର ॥ ୧୭
ବିନମ୍ର ବଚନେ ନୃପ ଭାଷିଲେ ଏସନ ।
ସକଳ କୁଶଳ ମୋର ଆହେ ତପୋଧନ ! ॥ ୧୮
ଏଥିଅନ୍ତେ ଦୁହେଁ ବସି ପରମ ଆନନ୍ଦେ ।
ପରସ୍ପର ବାର୍ତ୍ତାଳାପ କଲେ ମନ ସଧେ ॥ ୧୯
ଦୁହେଁ ଦୁହିଙ୍କ ବଚନେ ମୋଦମଗ୍ନ ଚିତ୍ତ ।
ଏକର ଆଳାପେ ଅନ୍ୟ ହେଲେ ପ୍ରଭାବିତ ॥ ୨୦
ବହୁ କ୍ଷଣ ଯାଏଁ ଗ୍ୱଲିଲା ସେ ବାର୍ତ୍ତାଳାପ ।
ରାଜର୍ଷି ବ୍ରହ୍ମର୍ଷିଙ୍କର ସାର୍ଥକ ସଳାପ ॥ ୨୧
ହେ ରଘୁନନ୍ଦନ ! ଶୁଣ ଏଥୁ ଅନନ୍ତରେ ।
ତପୋନିଷ୍ଠ ମୁନିବର ଭାଷିଲେ ନୃପରେ ॥ ୨୨
ଅସୀମ ପ୍ରଭାବଶାଳୀ ଆହେ ନୃପବର !
ପ୍ରକାଶୁଛି ଯାହା କଲି ଅଛି ମୁଁ ମନର ॥ ୨୩
ସହୈନ୍ୟ ରାଜନ ! ଆଜ ହୁଅ ମୋ' ଅତିଥି ।
ଘେନା ହେଉ ମହାଗ୍ୱର ! ଏ' ମୋର ବିନତି ॥ ୨୪
ହେ ନରେଶ ! ଅଟ ତୁମ୍ଭେ ଅତିଥି 'ଉତ୍ତମ ।
ଏଣୁ ତୁମ୍ଭର ସତ୍କାର ଅଟଇ ମୋ' ଧର୍ମ ॥ ୨୫

ଏଣୁ ମୋ' ତନୟ ଘେନ ହେ ନୃପତିଳକ !
ଅତିଥି ହୁଅନ୍ତୁ ସର୍ବେ ଆଶ୍ରମେ ଆଜକ ॥ ୨୬
ଶୁଣି ବଶିଷ୍ଠ ବଚନ ମହା ବୁଦ୍ଧିମନ୍ତ ।
ସମ୍ଭାଷିଲେ ବଚନରେ ଉତ୍ତର ବିଶ୍ୱାମିତ୍ର ॥ ୨୭
ଆହେ ମୁନିବର ! ତବ ସାଦର ଆଗ୍ରହେ ।
ପୂର୍ଣ୍ଣ ହେଲା ମୋ' ଅନ୍ତର ଜାଣ ନିଃସନ୍ଦେହେ ॥ ୨୮
ଲଭିଲି ତୁମ୍ଭ ଆଶ୍ରମରୁ ଅର୍ଘ୍ୟ ଫଳ ମୂଳ ।
ସ୍ୱାଦୁ ପୂର୍ଣ୍ଣ ମଧୁ ପର୍କ ପ୍ରମାନିକ ଜଳ ॥ ୨୯
ସମ୍ବର୍ଦ୍ଧିତ ହୋଇଛୁ ଦେବ ! ତୁମ୍ଭ ସତ୍କାରେ ।
ଆଉ କି ସତ୍କାର ତୁମ୍ଭେ କରିବ ସକଳେ ॥ ୩୦
ତୁମ୍ଭ ଦର୍ଶନରୁଁ ବଳି ଆଉ କି ସତ୍କାର ।
କରିବ ହେ ମୁନିବର ! ଶ୍ରେଷ୍ଠ ପୂଜା ମୋର ॥ ୩୧
ପରମ ପୂଜ୍ୟ ହେ ମୁନି ତପସ୍ୱୀ ପ୍ରବର !
ତଥାପି ପୂଜିଲ ମୋତେ କରି ସମାଦର ॥ ୩୨
ବିଦାୟ ନେଉଛୁ ମୁନି ! ଘେନ ମୋ' ପ୍ରଣତି ।
ସଦାକାଳେ ରଖିଥିବ ଏହି କୃପା ଦୃଷ୍ଟି ॥ ୩୩
ଏସନ ଭାଷନ୍ତେ ମହାବୀର ବିଶ୍ୱାମିତ୍ର ।
ବାରମ୍ବାର ବଶିଷ୍ଠ ହୋଇଣ କୃତକୃତ୍ୟ ॥ ୩୪
ନିମନ୍ତିଲେ ନୃପରେ ବିନୟ ବାଣୀ ଭାଷି ।
ନିମନ୍ତ୍ରଣ ମୋ' ସ୍ୱୀକାର କର ହେ ରାଜର୍ଷି ! ॥ ୩୫
ବହୁ ନିବନ୍ଧ ପଛୁଁ ହେଲେ ଋଷିବର ।
ପରମ କୃପାଳୁ ରାଜା କଲେ ଅଙ୍ଗୀକାର ॥ ୩୬
ପୂଜ୍ୟବର ଋଷି ତବ ଆଜ୍ଞା ଅବଧାନେ ।
ଚାହୁଁଛି ମୁଁ କର ଯାହା ସତ୍କାର ବିଧାନେ ॥ ୩୭
ଯାହା ତବ ଅଭିରୁଚି କର ମହାଯତି ।
ପୂଜ୍ୟପାଦ ! ଘେନାକଲି ଏ' ତବ ବିନତି ॥ ୩୮
ଏହା ଶୁଣି ତପସ୍ୱୀ ପ୍ରବର ମୁନିବର ।
ହୋମ ଧେନୁ ପାଶେ ଯାଇ ବୋଇଲେ ସତ୍ୱର ॥ ୩୯

ହେ ଶବଳେ ! ନୃପଙ୍କୁ କରିଛୁ ନିମନ୍ତ୍ରଣ ।
ଅତିଥି ସତ୍କାରେ ତାଙ୍କୁ କରିବ ପୂଜନ ॥ ୪୦
ଉତ୍ତମ ଭୋଜନ ପାନ କର ତୁ ବିଧାନ ।
ତୋ' ସକାଶୁଁ ହେବ ମୋର ମନୋରଥ ପୂର୍ଣ୍ଣ ॥ ୪୧
ଯାହାର ଯେମନ୍ତ ରୁଚି ସକଳ ପ୍ରକାର ।
ଷଡ଼ରସ ପୂର୍ଣ୍ଣ ଭୋଜ୍ୟ ଦିଅ ଧେନୁବର ! ॥ ୪୨
ତୁମ୍ଭେ ଅଟ କାମନା-ଦାୟିନୀ ଲୋକମାତ ।
ଦାନ କର ଭୋଜ୍ୟ ଦ୍ରବ୍ୟ ଯେଝା ରୁଚିମତ ॥ ୪୩
ସକଳ ଦ୍ରବ୍ୟ ପ୍ରସ୍ତୁତ କର କାମଧେନୁ ।
ଯା' ଭୋଜନ କରି ନୃପ ନ ପାସୋରୁ ମନୁ ॥ ୪୪
ଏମନ୍ତ ଯୋଗାଡ଼ ମାତ ! କର ଆୟୋଜନ ।
ତବ ଅନୁଗ୍ରହେ ସର୍ବେ କରନ୍ତୁ ଭୋଜନ ॥ ୪୫
ବିଳମ୍ବ ନକର ମାତ ! ଦିଅ ସର୍ବ ଅନ୍ନ ।
ଲେହ୍ୟ ପେୟ ଚର୍ବ୍ୟ ଚୋଷ୍ୟ ସକଳ ବିଧାନ ॥ ୪୬
ବିବିଧ ମିଷ୍ଟାନ୍ନ ଯାହା ଜଗତେ ଦୁର୍ଲ୍ଲଭ ।
ତୁମ୍ଭ କୃପାବଳୁ ସର୍ବ ହେଉ ମା' ସୁଲଭ ॥ ୪୭
ଭୋଜନ କରନ୍ତୁ ନୃପ ସସୈନ୍ୟ ଆଶ୍ରମେ ।
ତୁମ୍ଭ କୀରତି ପ୍ରସରୁ ମାତ ! ତ୍ରିଭୁବନେ ॥ ୪୮
ବ୍ରହ୍ମର୍ଷି ବଶିଷ୍ଠ ମୁନି ଅଭୟ ଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମକଥା ଭଣେ ॥ ୪୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଦ୍ୱିପଞ୍ଚାଶତ୍ ସର୍ଗ ।



## ଷଟ୍‌ପଞ୍ଚାଶତ୍‌ ସର୍ଗ

## ବିଶ୍ୱାମିତ୍ରଙ୍କ ଲୋଭ ତଥା କାମଧେନୁ ଲାଭ ପାଇଁ ଆଗ୍ରହ ।

ମହାଋଷି ଶତାନନ୍ଦ ଆଦ୍ୟପ୍ରାନ୍ତ କଥା ।
ଭଣିଲେ କାମଧେନୁର ଚରିତ ବିସ୍ତାର ॥ ୧
ହେ ଶତ୍ରୁସୂଦନ ରାମ ! ଶୁଣ ଏକମନେ ।
ଏ' ଉତ୍ତାରୁ ଯାହା ହେଲା ବଶିଷ୍ଠ ଆଶ୍ରମେ ॥ ୨
ସର୍ବ କାମପ୍ରଦାୟିନୀ ମୁନି ହୋମଧେନୁ ।
ନାନା ଦ୍ରବ୍ୟ ଭିଆଇଲେ ଆପଣାର ମନୁ ॥ ୩
ଯେ ଯାହାର ରୁଚି ମତେ ଷଡ଼ରସ ଅନ୍ନ ।
ଜାତ କଲେ ଶରୀରରୁ ଆସବାଦ ପାନ ॥ ୪
ସକଳ ମିଷ୍ଟାନ୍ନ ପୁଣି ସୁଦ୍ରବ୍ୟ ଭୋଜନ ।
ପର୍ବତ ପ୍ରମାଣେ ଧେନୁ କଲେ ସମ୍ପାଦନ ॥ ୫
ଅନ୍ନବ୍ୟଞ୍ଜନ ସୁସ୍ୱାଦ ସକଳ ପଦାର୍ଥ ।
ଦଧି କ୍ଷୀର ଆଦି ସର୍ବ କଲେ ସେ ଏକତ୍ର ॥ ୬
ରୌପ୍ୟପାତ୍ରେ ମୁନିଗଣ ଭୋଜ୍ୟ ପରଶିଲେ ।
ସକଳେ ଆନନ୍ଦେ ଖାଇ ପରିତୃପ୍ତ ହେଲେ ॥ ୭
ସହସ୍ର ସହସ୍ର ସେନା ନାହିଁ ତା' କଳନା ।
ସକଳେ ଭୁଞ୍ଜିଲେ ଭୋଜ୍ୟ ହୋଇ ହୃଷ୍ଟମନା ॥ ୮
ଅନ୍ତଃପୁରବାସିନୀଙ୍କ ସହଶେ ରାଜନ ।
ଦ୍ରବ୍ୟ ସୁସ୍ୱାଦୁ ଭୋଜନେ ହେଲେ ହୃଷ୍ଟମନ ॥ ୯
ମନ୍ତ୍ରୀ ସେନାପତି ଭଟ୍ଟ ଭଟ୍ଟ ପୁରୋହିତ ।
ସରବେ ଭୋଜ୍ୟ ପାନରେ ହେଲେ ପରିତୃପ୍ତ ॥ ୧୦
ଭୃତ୍ୟଗଣେ ମନସୁଖେ କଲେକ ଭୋଜନ ।
ସର୍ବେ ଋଷି ବଶିଷ୍ଠଙ୍କୁ କଲେ ଧନ୍ୟ ଧନ୍ୟ ॥ ୧୧

ଏମନ୍ତ ସମୟେ ନୃପ ବଶିଷ୍ଠେ ହକାର ।
ବୋଇଲେ ହେ ମହାଋଷି ! ଶୁଣ ହେତୁ କର ॥ ୧୨
ଆହେ ପୂଜ୍ୟବର ! ଆମ୍ଭେ ତବ ସତକାରେ ।
ପରିତୃପ୍ତ ହେଲୁ ସର୍ବେ ଭୋଜନ ପାନରେ ॥ ୧୩
ଏଥକୁ ମୁଁ ଋଷିବର ! କରଇ ଉତ୍ତର ।
ଏ' କାମଧେନୁ ଅଟଇ ସର୍ବରତ୍ନସାର ॥ ୧୪
ଆଶ୍ରମ ନୁହଇ ରତ୍ନ ସଂରକ୍ଷଣେ କ୍ଷମ ।
ତେଣୁ ହେ ମହର୍ଷି ! ଶୁଣ ମୋ' ପ୍ରୀତିବଚନ ॥ ୧୫
ଲକ୍ଷେକ ଦୁଗ୍ଧବତୀ ମୁଁ କରୁଛି ପ୍ରଦାନ ।
ତା' ମୂଲ୍ୟେ ଦିଅନ୍ତୁ ଏହୁ କାମଧେନୁ-ରତ୍ନ ॥ ୧୬
ନୃପ ଅଧିକାରେ ରତ୍ନ ରହିବା ଯୋଗାଇ ।
ତେଣୁ ମୋ' ଆଗ୍ରହ ବଳଅଛୁ ତପସାଇଁ ॥ ୧୭
ମୋ' କଥନେ ମୁନିବର ! ହୋଇ ଅବଧାନ ।
ପ୍ରଦାନ କରନ୍ତୁ ମୋତେ ଏ' ଅମୂଲ୍ୟରତ୍ନ ॥ ୧୮
ଧର୍ମତଃ ଏପରି ରତ୍ନ ରଜାର ଅଧୀନ ।
ହେବାର ରହିଛି ପୂର୍ବ ପରମ୍ପରାମାନ ॥ ୧୯
ତେଣୁ ମୁଁ କହଇ ଆହେ ସୁଜ୍ଞାନୀ ପ୍ରବର !
ଶାସ୍ତ୍ରମତେ ଏ' ଧେନୁରେ ରାଜ ଅଧିକାର ॥ ୨୦
ଏଣୁ ଲକ୍ଷେ ଧେନୁମୂଲ୍ୟେ କର ହେ ଅର୍ପଣ ।
ସ୍ୱଭାବେ ଅଟଇ ଏହୁ ରାଜକୋଷରତ୍ନ ॥ ୨୧
ବିଶ୍ୱାମିତ୍ର ଅସମ୍ଭବ ବାଣୀ ଶୁଣି ମୁନି ।
ବୋଇଲେ ସଧୀର ଚିତ୍ତେ ବିନୟୀକୁ ଘେନି ॥ ୨୨
ହେ ଶତ୍ରୁସୂଦନ ନୃପ ! ମହାଧନୁର୍ଦ୍ଧର ।
ଯା' ବୋଇଲ ଯୁକ୍ତିଯୁକ୍ତ ନୋହେ ଭୂମିଗିର ॥ ୨୩
ବ୍ରହ୍ମବରେ ଲଭିଛି ମୁଁ କାମଧେନୁ ଦାନ ।
ଲକ୍ଷେ ଅବା କୋଟିଧେନୁ ନୁହନ୍ତି ତା' ସମ ॥ ୨୪
କୋଟି ରୌପ୍ୟମୁଦ୍ରା ଅବା ଅକଳନ ଧନ ।
ଶବଳା ଧେନୁରେ କେହି ନୁହନ୍ତି ସମାନ ॥ ୨୫

ଏ' ଅକ୍ଷୟ କୀର୍ତ୍ତି ମୋର ଶୁଣ ନୃପବର !
ମୂଲ୍ୟ ଧନମୟ ଯୋଗ୍ୟ ନୁହଇ ଏ' ପୁଣ ॥ ୨୬
କାହା ବଳ ବିକ୍ରମରେ ନୋହେ ଏ' ଅଧୀନ ।
ଦେବି ଦତ୍ତ ବର ଏହୁ ଶୁଣ ନୃପବର ॥ ୨୭
ଏ' ଧେନୁ ସକାଶୁଁ ମୋର ହବ୍ୟ-କବ୍ୟମାନ ।
ଅବିଘ୍ନେ ହୁଅଇ ପୂର୍ଣ୍ଣ ଶୁଣ ହେ ରାଜନ- ॥ ୨୮
ମୋ' ଆଶ୍ରମେ ଜନ୍ତୁ ଯେତେ ସ୍ୱାଧ୍ୟାୟ ନିରତ ।
ବ୍ରହ୍ମର୍ଷିଗଣେ ଧେନୁ ପାଳଇ ସତତ ॥ ୨୯
ଅଗ୍ନିହୋତ୍ର ବଳି ହୋମ ସ୍ୱାହା ବଷଟ୍‌କାର ।
ସକଳ ବିଦ୍ୟାର ଧାତ୍ରୀ ଏ' ଧେନୁଟି ମୋର ॥ ୩୦
ଆହୁରି ଅନେକ ଗୁଣ ରହିଛି ଏହାରେ ।
ସେ ସକଳ ସାଧେ ମୁହିଁ ଶବଳା କୃପାରେ ॥ ୩୧
ଏଣୁ ଏ' ସତ୍ୟ ବଚନ ମୋର ନୃପବର ।
ମୂଲ୍ୟ-ଧନମୟେ କେଭେ ନ ଦେବି ଏ' ରତ୍ନ ॥ ୩୨
ଏସନ ଋଷିବଚନ ବିଶ୍ୱାମିତ୍ର ଶୁଣି ।
କୋପଭରେ ନରପତି ବୋଇଲେ ଏ' ବାଣୀ ॥ ୩୩
ଶୁଣ ଆହେ ଋଷିବର ! ଦେଇ ମନ କର୍ଣ୍ଣ
ଚଉଦସହସ୍ର ମାତଙ୍ଗ ଦେବି ମୁଁ ଗଣିଣ ॥ ୩୪
ତାଙ୍କ ସଙ୍ଗେ ମାହୁନ୍ତ ଯେ ଥିବେ ସଜ ହୋଇ ।
ଅଙ୍କୁଶ କଷଣି ଆଦି ଅଳଙ୍କାର ନେଇ ॥ ୩୫
ସର୍ବ ଅଳଙ୍କାର ସ୍ୱର୍ଣ୍ଣେ ଥିବ ସୁଗଠିତ ।
ତହିଁ ସଙ୍ଗେ ଅଷ୍ଟସହସ୍ର ସ୍ୱର୍ଣ୍ଣମୟ ରଥ ॥ ୩୬
ପ୍ରତି ରଥେ ଚାରି ଶ୍ୱେତ ଅଶ୍ୱେ ଥିବେ ରହି ।
ସୁବର୍ଣ୍ଣ ଘୁଙ୍ଗୁର ତାଙ୍କ ପାଦେ ଥିବ ଶୋଭି ॥ ୩୭
ଆହୁରି ଅଧିକ ଅଶ୍ୱ ଏଗାର ସହସ୍ର
ଉତ୍ତମ ସୁଜାତି ସେହୁ ହୋଇବେ ଅବଶ୍ୟ ॥ ୩୮
ଏକକୋଟି ଗୋଧନ ସୁକ୍ଷୀର ନାନାବର୍ଣ୍ଣ
ଦେବି ମୂଲ୍ୟ ଧନମୟେ ଶୁଣ ଋଷିବର ! ॥ ୩୯

ଏ' ସକଳ ବସ୍ତୁ ଯେତେ କହିଲ ହେ ମୁନି !
ଦେବଇଁ ସତନେ ଝଅ କାମଧେନୁ ଆଣି ॥ ୪୦
ଆହୁରି ଯେତେକ ଧନ ମାଗିବ ବ୍ରାହ୍ମଣ !
ଦେବ ଅକାତରେ ତିଳେ ନ ହୋଇ କୃପଣ ॥ ୪୧
ଝଅ ମୋତେ କାମଧେନୁ ବିଳମ୍ବ ନ କର ।
କାମଧେନୁ ଲଭି ହେବ ସନ୍ତୋଷ ଅନ୍ତର ॥ ୪୨
ମହାବୁଦ୍ଧିମନ୍ତ ବିଶ୍ୱାମିତ୍ର ନରେଶ୍ୱର ।
ଏମନ୍ତ ପ୍ରକାରେ ବାଣୀ କରନ୍ତେ ଉଚ୍ଚାର ॥ ୪୩
ଯତବ୍ରତ ବ୍ରହ୍ମସୁତ ବଶିଷ୍ଠ ପ୍ରବର ।
ବୋଇଲେ ହେ ନୃପ ! ଶୁଣ ବଚନ ମୋହର ॥ ୪୪
ଏହି କାମଧେନୁ ମୋର ସକଳ ସମ୍ପଦ ।
ଏଥିଲାଗି ରହିଛି ମୋ' କୁଳପତି ପଦ ॥ ୪୫
ଦର୍ଶ ପୌର୍ଣ୍ଣମାସ ଆଦି ଯେତେ ଯଜ୍ଞକର୍ମ ।
ସାଧୁଛି ମୁଁ ନୃପବର ! ସକଳ ସୁକର୍ମ ॥ ୪୬
ମୋ' ଶୁଦ୍ଧକର୍ମର ମୂଳ ଅଟେ ଏହି ରତ୍ନ ।
ଶୁଣ ନୃପଶିରୋମଣି ! ଏ' ମୋର ଜୀବନ ॥ ୪୭
ଏହା ବିନେ ମୋ' ଜୀବନ ବ୍ୟର୍ଥ ନରନାଥ !
ତେଣୁ ମୁଁ ନ ଦେବ ଧେନୁ ଏହା ମୋ' ସିଦ୍ଧାନ୍ତ ॥ ୪୮
ବୃଥା ବାକ୍ୟାଳାପେ ନୃପ ! ନାହିଁ ପ୍ରୟୋଜନ ।
କେବେହେଁ ମୁଁ ନ ତେଜିବ କାମଧେନୁରତ୍ନ ॥ ୪୯
ଶତାନନ୍ଦ ବୋଲୁଛନ୍ତି ଆହେ ରଘୁଗଣ !
ଶତ ପ୍ରଲୋଭନେ ମୁନି ନ ଦେଲେ ସେ ରତ୍ନ ॥ ୫୦
ମହାମନା ବଶିଷ୍ଠଙ୍କ ଚରଣ-ନଳନେ ।
ପ୍ରଣମି ପୁରୁଷୋତ୍ତମ ଏ' ଚରିତ ଭଣେ ॥ ୫୧

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ତ୍ରିପଞ୍ଚାଶତ୍ ସର୍ଗ ।



# ଚତୁଃପଞ୍ଚାଶତ୍ ସର୍ଗ

## ବିଶ୍ୱାମିତ୍ରଙ୍କ ବଳପ୍ରୟୋଗ ।

ହେ ରଘୁନନ୍ଦନ ! ବ୍ରହ୍ମସୁତ ଋଷି ଯହୁଁ ।
କାମଧେନୁ ଦେଇବାକୁ ନାସ୍ତି କଲେ ତହୁଁ । ୧
ପ୍ରବଳ ପ୍ରତାପୀ ବିଶ୍ୱାମିତ୍ର ମହାମନା ।
ଆପଣା ବଳ ପ୍ରୟୋଗେ ହେଲେ ଦୃଢ଼ମନା ॥ ୨
ସୈନ୍ୟବଳଙ୍କୁ ଡକାଇ ବୋଇଲେ ବଚନ ।
ଋଷି ଗୋଶାଳାରୁ ବେଗେ କାମଧେନୁ ଆଣ ॥ ୩
ଦେଖିବା ଋଷିର କେଡ଼େ ଗର୍ବ ଅହଙ୍କାର ।
ରାଜ-ଆଜ୍ଞା ପାଳନେ ଯେ ନୁହଇ ତତ୍ପର ॥ ୪
ରାଜାଙ୍କ ବଳ ପ୍ରୟୋଗେ ସେହି କାମଧେନୁ ।
ଶୋକାକୁଳଚିତ୍ତେ ଭାଳେ ମନେ ବହୁ ମନ୍ୟୁ ॥ ୫
ଋଷିବର ବଶିଷ୍ଠ କି ତେଜିଲେ ମୋହରେ ।
ନୋହିଲେ କି ରାଜା ମୋତେ ନିଅନ୍ତା ସ୍ୱେଚ୍ଛାରେ । ୬
କି ଅପରାଧ ମୁଁ କଲି ବ୍ରହ୍ମଋଷିଙ୍କର ?
କେଉଁ ଦୋଷେ ତେଜିଲେ ଏ' ମହର୍ଷି ପ୍ରବର ॥ ୭
ଜାଣେ ମହର୍ଷି ମୁହିଁ ଅଟେ ତାଙ୍କ ଭକ୍ତ ।
କେଉଁ ଅପରାଧେ ମୁନି କଲେ ମୋତେ ତ୍ୟକ୍ତ ॥ ୮
ତହୁଁ ସେ ଶବଳାଧେନୁ ଅତି ଦୁଃଖମନେ ।
ପ୍ରବେଶି ମୁନିଙ୍କ ପାଶେ ମନୁଷ୍ୟ ବଚନେ ॥ ୯
ବୋଇଲେ ହେ ବ୍ରହ୍ମଋଷି ! ମୋର କେଉଁ ଦୋଷେ ।
ତେଜିଲେ ମୋ' ପରି ରତ୍ନ କୃତ କି ବିଶ୍ୱାସେ ॥ ୧୦
କିମ୍ପା ମୋତେ ରାଜା ବଳେ ନେଉଅଛୁ ଧରି ।
କି ଅବା କରିଛି ଦୋଷ ଚରଣେ ତୁମ୍ଭରି ॥ ୧୧

ଏତେ ଭାଷି କାମଧେନୁ ଦୁଃଖିତ ଅନ୍ତରେ ।
ନିବେଦନ କରନ୍ତେ ସେହୁ ଅତି ଉଚ୍ଚସ୍ୱରେ ॥ ୧୨
କ୍ରୋଧ ଅପମାନ ଲଜ୍ଜା ଭଯ୍ୟେ ମ୍ଳାନ ହୋଇ ।
ବୋଲନ୍ତି ଧେନୁରେ ସେ ବଶିଷ୍ଠ ତପସାଇଁ ॥ ୧୩
ଭଗିନୀ ସମାନ ପ୍ରିୟା ଅଛୁ ତୁ ମୋହର ।
ତେଜ ନାହିଁ ତୋତେ ମୁହିଁ କାମଧେନୁବର ॥ ୧୪
ଆତ୍ମବଳେ ବିଶ୍ୱାମିତ୍ର ହୋଇ ଉନମତ୍ତ ।
ନେଉଛନ୍ତି ଶବଳେ ତୋତେ କହିଲି ଉଦନ୍ତ ॥ ୧୫
ରାଜାର ସମାନ ମୁହିଁ ନୋହେ ବଳଶାଳୀ ।
ରାଜଶକ୍ତି ସମ ବଳ ନାହିଁ ତ ମୋହର ॥ ୧୬
ରାଜପଦେ ପ୍ରତିଷ୍ଠିତ ରାଜା ବିଶ୍ୱାମିତ୍ର ।
କ୍ଷତ୍ରିୟ ପଣରେ ସେହୁ ଅଟଇ ବଳିଷ୍ଠ ॥ ୧୭
ଧରଣୀପାଳକ ଯେଣୁ ମହାଶକ୍ତିଧର ।
ବଳେ ହରି ନେଉଛନ୍ତି ସେ ତୋତେ ଧେନୁବର ! ॥ ୧୮
ହସ୍ତୀରଥ ଅଶ୍ୱବଳ ତାହାର ଅପାର ।
ତା' ତୁଲେ ସମାନ ମୁଁ କି କହ ଧେନୁବର ! ॥ ୧୯
ଦେଖ ଏ' ବିଜୟଧ୍ୱଜା ଉଡ଼େ ଫଇଫର ।
ରାଜଶକ୍ତି ଉନ୍ମତ୍ତେ ଯେ କରନ୍ତି ପ୍ରସ୍ତର ॥ ୨୦
ତେଣୁ ହେ ଶବଳେ ! ସେହୁ ମହାଶକ୍ତିମାନ ।
କେଉଁ ବଳେ ହେବ ମୁହିଁ ତା'ର ସମ୍ମୁଖୀନ ॥ ୨୧
ଶଦ୍ଦେ ଶତୋଇ ସେ ଧେନୁ ମୁନିଙ୍କ ବଚନ ।
କହଇ ଅମର୍ଷ ବଶେ ଶୁଣ ତପୋଧନ ! ॥ ୨୨
ବ୍ରହ୍ମତେଜେ ବଳୀୟାନ ଅଟ ତପିବର ।
ସେ ତୁଲେ କ୍ଷତ୍ରିୟ ତେଜ ନୋହେ ସମତୁଲ । ୨୩
ଅପ୍ରମେୟ ବଳୀ ତୁମ୍ଭେ ତପସ୍ୱୀପ୍ରବର !
ତବ ବନ୍ଦୁଁ କ୍ଷାତ୍ର ବଳ ନୁହଇ ପ୍ରବଳ ॥ ୨୪
ଦୁର୍ଦ୍ଧର୍ଷ ବଳ ପ୍ରତାପେ ଅଟ ତୁମ୍ଭେ ଧନ୍ୟ ।
କେବା ସମସରି ହେବ ତବ ତୁଲେ ମୁନି ! ॥ ୨୫

ତୁମ୍ଭ ପ୍ରତ୍ୟକ୍ଷରେ ମୁହିଁ ଅତି ଶକ୍ତିମନ୍ତ ।
ମୋତେ ଆଜ୍ଞା ଦେବା ହେଉ ହେ ମୁନି ! ତୁରିତ । ୨୬
ନିଜ ତେଜବଳେ ମୁହିଁ ସୈନ୍ୟ ଅଭିମାନ ।
କ୍ଷଣକେ କରିବି ଚୂର୍ଣ୍ଣ ଅନ୍ୟଥା ନ ହେବ ।। ୨୭
ଦୁରାତ୍ମା ରାଜାର ବଳ-ଦର୍ପ-ଅଭିମାନ ।
ବଳବନ୍ତ ଅଟେ ଏହା ପ୍ରତାପ ନ ମଣ ।। ୨୮
ଶୁଣି ଏସନ ବଚନ ମହା ଋଷିବର ।
ବୋଇଲେ ଶବଳେ ! ତୁମ୍ଭେ ଯାହା ଇଚ୍ଛା କର ।। ୨୯
ଶତ୍ରୁସେନା ମରଦନେ ବଳଶାଳୀ ସେନା ।
ଜାତ କର କାମଧେନୁ ହୋଇ ଆନମନା ।। ୩୦
ଏସନ ବଚନ ଶୁଣି କାମଧେନୁ ଖରେ ।
ଜାତ କଲେ ଶରୀରରୁ ଅଗଣିତ ବୀରେ ।। ୩୧
ପହ୍ଲବ ଜାତୀୟ ବୀର ମହା ଧନୁର୍ଦ୍ଧର ।
ବେଢ଼ିଲେ ରାଜସୈନ୍ୟ କରନ୍ତି ହୁଙ୍କାର ।। ୩୨
ଦେଖିଣ ବିଶ୍ୱାମିତ୍ର ସଚକିତ ହୋଇ ।
ପହ୍ଲବ ସୈନ୍ୟେ ରଣେ ପଶିଲେ ଧସାଇ ।। ୩୩
ଶସ୍ତ୍ର ବରଷଣେ ବୀରେ ହୋଇ ତତପର ।
ହୁହୁଁ ହୁହୁଁ ରାଜସୈନ୍ୟେ କଲେକ ସଂହାର ।। ୩୪
ଦେଖି ଏସନକ ସ୍ଥିତି ରାଜା ବିଶ୍ୱାମିତ୍ର ।
କ୍ରୋଧାନଳେ ତାଙ୍କ ତନୁ ହେଲା ପ୍ରଜ୍ୱଳିତ ।। ୩୫
ସଦର୍ପେ ଅନାଇ ରାଜ କରନ୍ତି ହୁଙ୍କାର ।
ଦିବ୍ୟଅସ୍ତ୍ରେ ପହ୍ଲବରେ କଲେକ ସଂହାର ।। ୩୬
ଦେଖି ରାଜାର ଦୁର୍ଦ୍ଧର୍ମ ଶକତି ପ୍ରଖର ।
ସକ୍ରୋଧ ନୟନେ ଧେନୁ ଛାଡ଼ିଲା ହୁଙ୍କାର ।। ୩୭
ନିମିଷକେ ଯବନ ମିଶ୍ରିତ ଶକ ବଳ ।
ପ୍ରଚଣ୍ଡ ପ୍ରତାପେ ପୂରି ଧରଣୀମଣ୍ଡଳ ।। ୩୮
ନିଜ ତେଜ ଦର୍ପବଳେ ବେଢ଼ିଲେ ସକଳ ।
ହସ୍ତେ ଧରି ପଟ୍ଟିଶ ଖଡ଼ଗ ଭୟଙ୍କର ।। ୩୯

ସ୍ୱର୍ଣ୍ଣ ଆଭୂଷଣେ ସର୍ବେ ବିଭୂଷିତ ହୋଇ ।
ମହାନ୍ତ କ୍ଷତ୍ରିୟବଳେ ପଶିଲେ ଧ୍ୱସାଇ ॥ ୪୦
ଅଗ୍ନି ତୁଲ୍ୟ ମହାତେଜା ଶକ ବୀରଗଣ ।
ଖଣ୍ଡୁଁ ଖଣ୍ଡୁଁ ରାଜବଳେ କଲେକ ମର୍ଦ୍ଦନ ॥ ୪୧
ମହାରୋଷେ ବିଶ୍ୱାମିତ୍ର ଦିବ୍ୟାସ୍ତ୍ରମାନ ।
ପ୍ରହାରି ନାଶିଲେ ଶକ ପହ୍ଲବ ଯବନ ॥ ୪୨
ବିଶ୍ୱାମିତ୍ର ବଳଦର୍ପେ ହୋଇଣ ବ୍ୟାକୁଳ ।
ଛତରଙ୍ଗ ଦେଲେ ସର୍ବ କାମଧେନୁ ବଳ ॥ ୪୩
ଏମନ୍ତ ପ୍ରକାରେ ଲାଗିଲାକ ଘୋର ରଣ ।
କହିଲୁଁ ପ୍ରାଚୀନ କଥା ଶୁଣ ଋଷିଗଣ ! ॥ ୪୪
ବ୍ରହ୍ମର୍ଷି ପ୍ରବର ମୁନି ବଶିଷ୍ଠ ଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମାୟଣ ଭଣେ ॥ ୪୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଚତୁଃପଞ୍ଚାଶତ୍ ସର୍ଗ ।



# ପଞ୍ଚପଞ୍ଚାଶତ୍ ସର୍ଗ

## ବିଶ୍ୱାମିତ୍ରଙ୍କ ସହ ବ୍ରହ୍ମଦଣ୍ଡର ଯୁଦ୍ଧ ।

ରାଜବଳେ ଶକ ସୈନ୍ୟ ହୁଅନ୍ତେ ନିଧନ ।
ବ୍ରହ୍ମର୍ଷି ପ୍ରବର ସେ ବଶିଷ୍ଠ ତପୋଧନ ॥ ୧
ଆଜ୍ଞା ଦେଲେ ଶବଳେ ଗୋ ! ଯୋଗସିଦ୍ଧିବଳେ ।
ସୃଷ୍ଟି କର ମହାସୈନ୍ୟେ ଯୁଝନ୍ତୁ ସମରେ ॥ ୨
ଶୁଣି ମୁନିଙ୍କ ଆଦେଶ କାମଧେନୁବର ।
ମହାକୋପେ ତରଜିଣ ଛାଡ଼ିଲେ ହୁଙ୍କାର ॥ ୩
ସେ ହୁଙ୍କାର ନାଦେ ଜଗ ପୂରିଲା ସକଳ ।
ଜାତ ହେଲେ ତା’ ଶରୀରୁ ଅଗଣିତ ବଳ ॥ ୪

ହିମକର ସମ ତେଜ କାମ୍ବୋଜ ବାହ୍ଲିକ ।
ଆଉର ସ୍ତନରୁ ଉପୁଜିଲେ ସୈନ୍ୟ ପୁଣି ।। ୫
ଶସ୍ତ୍ରଧାରୀ କବରେ ହୋଇଲେ ପ୍ରକଟିତ ।
ଯୋନି ଦେଶୁ ଯବନେ ଯେ ହୋଇଲେ ସମ୍ଭୂତ ।। ୬
ଗୋମୟରୁ ଶକଗଣ ହେଲେ ଉତପନ୍ନ ।
ସକଳ ହିଶସ୍ତ୍ର ତେଜେ ଅଗ୍ନିର ସମାନ ।। ୭
ଆଉର ରୋମ କୂପରୁ ମେଳଚ୍ଛ ହାରୀତ ।
ତାଙ୍କ ପରେ ଜାତ ହେଲେ ଅସଂଖ୍ୟ କିରାତ ।। ୮
ଭୀଷଣ ଅସ୍ତ୍ରଶସ୍ତ୍ରମାନ ଧରି ବୀରଗଣ ।
ଧାଇଁଲେ ପ୍ରଚଣ୍ଡ ବେଗେ ଯେହ୍ନେ ପ୍ରଭଞ୍ଜନ ।। ୯
କ୍ଷଣକେ ବେଢ଼ିଲେ ରାଜ ସଇନ୍ୟ ସକଳ ।
ରଥାରୋହୀ ଅଶ୍ୱାରୋହୀ ଅଶ୍ୱାରୋହୀ ବଳ ।। ୧୦
ପଦାତି ଯେତେକ ଥିଲେ ଧରି ଶସ୍ତ୍ରମାନ ।
ସକଳ ନାଶିଲେ କାମଧେନୁ ବୀରଗଣ ।। ୧୧
ଆପଣା ବଳ ବିନାଶ ଦେଖିଣ ସତ୍ୱର ।
ବିଶ୍ୱାମିତ୍ର ଶତପୁତ୍ରେ ଛାଡ଼ିଣ ହୁଙ୍କାର ।। ୧୨
ଆକ୍ରମିଲେ ମହାମୁନି ବଶିଷ୍ଠଙ୍କୁ ବେଢ଼ି ।
ତହୁଁ କୋପେ ବ୍ରହ୍ମମୁନି ଛାଡ଼ିଲେକ ରଢ଼ି ।। ୧୩
ହୁଙ୍କାର ମାତ୍ରକେ ବିଶ୍ୱାମିତ୍ର ପୁତ୍ରଗଣ ।
ବଶିଷ୍ଠଙ୍କ କୋପାନଳେ ହୋଇଲେ ଦହନ ।। ୧୪
କ୍ଷଣକ ମଧ୍ୟରେ ସର୍ବେ ସ୍ୱଜନ ସହିତ ।
ବ୍ରହ୍ମାଗ୍ନିରେ ସ୍ଥୁହୁଁ ସ୍ଥୁହୁଁ ହେଲେ ଭସ୍ମୀଭୂତ ।। ୧୫
ଆପଣା ସପକ୍ଷେ ଦେଖି ସକଳ ବିନାଶ ।
ଶତପୁତ୍ର ସହିତେ ଦୁର୍ଦ୍ଧର୍ଷ ସୈନ୍ୟ ଧ୍ୱଂସ ।। ୧୬
ଲଜ୍ଜା ଭୟ ଅପମାନେ ହୋଇ ଛନ୍ନମନ ।
ଅଧୋବଦନେ ରାଜନ ରହିଲେ ମଉନ ।। ୧୭
ପ୍ରଚଣ୍ଡ ସମୁଦ୍ର ଊର୍ମି ସମ ରାଜକୋପ ।
ବିନଷ୍ଟ ହୁଅନ୍ତେ ରାଜା ବହିଣ ସନ୍ତାପ ।। ୧୮

ବଳହୀନ ନାଗ ପରି ହୋଇ ତେଜହୀନ ।
ଫୁତ୍କାର ଗୁଡ଼ିଲେ ନୃପ ବନ୍ଧ କୋପ ମନ ॥ ୧୯
କେତୁ ଗ୍ରସ୍ତ ସୂର୍ଯ୍ୟ ପରି ହୋଇଲେ ନିସ୍ତେଜ ।
ବିଫଳ ହୋଇଲା ତାଙ୍କ ସବୁ ବଳବୀର୍ଯ୍ୟ ॥ ୨୦
ଶତପୁତ୍ର ଅକ୍ଷୌହିଣୀ ସେନାର ବିନାଶ ।
ନଷ୍ଟଭ୍ର ହୋଇଣ ନୃପ ଗୁଡ଼ି ଦୀର୍ଘଶ୍ୱାସେ ॥ ୨୧
ପକ୍ଷହୀନ ପକ୍ଷୀ ସମ ହୋଇଲେ ବିବଶ ।
ବିନଷ୍ଟ ହୋଇଲା ତାଙ୍କ ଉତ୍ସାହ ସାହସ ॥ ୨୨
ମଣିହରା ଫଣୀ ସମ ହେଲେ କ୍ଷୁଣ୍ଣ ମନ ।
ବିବର୍ଣ୍ଣ ଦିଶିଲା ନୃପ ତେଜସ୍ୱୀ ବଦନ ॥ ୨୩
ଅବଶେଷେ ଏକପୁତ୍ରେ ଦେଇ ରାଜପଣ ।
ଯେ ରୂପେ ହୋଇବ ରାଜ୍ୟ-ପ୍ରଜାଙ୍କ ରକ୍ଷଣ ॥ ୨୪
ଅଭିମାନ ଭରେ ମହାରାଜ ବିଶ୍ୱାମିତ୍ର ।
ଚଳିଲେ ଅରଣ୍ୟ ମନେ ସାଧି ମୁନିବ୍ରତ ॥ ୨୫
ହିମାଳୟ ପାର୍ଶ୍ୱେ ଥିଲା ଯେବଣ ପ୍ରଦେଶ ।
ନାଗ କିନ୍ନର ବଳରେ ହୋଇଣ ସୁଦୃଶ୍ୟ ॥ ୨୬
ସେ ପ୍ରଦେଶେ ମିଳି ନୃପ ମନେ କ୍ଷୁଣ୍ଣ ହୋଇ ।
ସାଧିଲେ କଠୋର ତପୋବନେ କ୍ଷମାସାଇଁ ॥ ୨୭
କେତେ କାଳ ଅନ୍ତେ ବୃଷଧ୍ୱଜ ଭଗବାନ ।
ରାଜର୍ଷି ତପସ୍ୟାବଳେ ହୋଇଲେ ପ୍ରସନ୍ନ ॥ ୨୮
ଦରଶନ ଦେଲେ ଆସି ପ୍ରଭୁ ଭୂତପତି ।
ସୃଷ୍ଟି ସଂହାରଣେ ଯା'ର ଅମିତ ଶକତି ॥ ୨୯
ବୋଇଲେ କୋମଳ ସ୍ୱରେ ଆହେ ନରେଶ୍ୱର !
କି କାରଣେ ତପ ସାଧ ଏ' ଘୋର ବନର ॥ ୩୦
ପ୍ରସନ୍ନ ହୋଇଛୁ ତବ ତପେ ମହାପ୍ରାଣ !
ଅଭିଳଷିତ ଯା' ମନେ ସେହି ବର ଘେନ ॥ ୩୧
ମହାଦେବଙ୍କ ବଚନେ ହୋଇ ହୃଷ୍ଟମନ ।
ମହାତପୀ ବିଶ୍ୱାମିତ୍ର ବୋଇଲେ ବଚନ ॥ ୩୨

ଆହେ ଦେବଦେବ ! ମୋର ଯେବେ ପ୍ରୀତି ।
ହେ ଶଙ୍କର ! ଯଦି ତୁଷ୍ଟ ହୋଇଛ ମୋ' ପ୍ରତି ॥ ୩୩
ଦିଅ ଅଙ୍ଗ ଉପାଙ୍ଗ ଉପନିଷଦ ସାର ।
ଧନୁର୍ବେଦ ରହସ୍ୟ ମୁଁ ମାଗଇ ଆଦର ॥ ୩୪
ପ୍ରଦାନ କର ହରଷେ ଆହେ ଉମାପତି !
ତବ ଶ୍ରୀପଦ୍ମରେ ମୋର ଏତିକ ବିନତି ॥ ୩୫
ଦେବ ଦାନବ ଗନ୍ଧର୍ବ ଯକ୍ଷ ରକ୍ଷଗଣେ ।
ଯେତେ ଦିବ୍ୟ ଅସ୍ତ୍ର ଅଛି ତବ ସନ୍ନିଧାନେ ॥ ୩୬
ସେ ସକଳ ଅସ୍ତ୍ର ମୋର ହୃଦୟେ ସ୍ଫୁରିତ ।
ହେଉ ଆଜ୍ଞା ଦିଅ ତୋଷେ ହେ ଗିରିଜାକାନ୍ତ ! ॥ ୩୭
'ଏବମସ୍ତୁ' କହି ଦେବଦେବ ଶିବାକାନ୍ତ ।
ଅନ୍ତର ହୋଇଲେ ତହୁଁ ଆହେ ରଘୁନାଥ ! ॥ ୩୮
ଦେବାଧିଦେବଙ୍କ ଠାରୁ ପାଇ ବରଦାନ ।
ହୃଦୟେ ସ୍ଫୁରିଲା ତାଙ୍କ ମହା ଅଭିମାନ ॥ ୩୯
ଶିବ ବରଦାନେ ବିଶ୍ୱାମିତ୍ର ନରପତି ।
ମନେ ମହାଗର୍ବ ବହି ଚଳିଲେ ତଡ଼ିତ ॥ ୪୦
ପୂର୍ଣ୍ଣିମାରେ ଯଥା ବୃଦ୍ଧି ଲଭେ ମହୋଦଧି ।
ତେସନେ ଆନନ୍ଦ ମନେ ଲଙ୍ଘିଲେ ସେ ବିଧି ॥ ୪୧
ହେ ଶ୍ରୀରାମ ! ତହୁଁ ବିଶ୍ୱାମିତ୍ର ନୃପବର ।
ଭାବିଲେ ହୃଦୟେ ମନ୍ଦ ବଶିଷ୍ଠ ଏଥର ॥ ୪୨
ତହୁଁ ମହାଦର୍ପେ ଚଳିଗଲେ ବିଶ୍ୱାମିତ୍ର ।
ବଶିଷ୍ଠ ଆଶ୍ରମେ ମିଳି ପ୍ରହାରିଲେ ଅସ୍ତ୍ର ॥ ୪୩
ଶସ୍ତ୍ରାଘାତେ ତପୋବନ ଦହିଲା ପ୍ରଖର ।
ଆଶ୍ରମ କୁଟୀର ଜଳି ହେଲା ଛାରଖାର ॥ ୪୪
ଆଶ୍ରମବାସୀଏ ଭୟେ ହୋଇଣ କାତର ।
ପଳାଇଲେ ପ୍ରାଣ ଘେନି ସର୍ବ ଋଷିକୁଳ ॥ ୪୫
ପଶୁ ପକ୍ଷୀ ଗୋ ମହିଷ ଶିଷ୍ୟବର୍ଗ ମିଳି ।
ଧାଇଁ ଧାଇଁ ରବେ ସର୍ବେ କଲେ ଜଞ୍ଜାଳ ॥ ୪୬
ଜୀବନ ଥିକଳେ ଜଣେ ଗଲେକ ପଳାଇ ।
ଦିଗ ବିଦିଗେ ଶରଣ ଲୋଡ଼ିଲେକ ଯାଇ ॥ ୪୭

ଷଣ୍ଢକ ମଧ୍ୟରେ ତପୋବନ ହେଲା ଶୂନ୍ୟ ।
ଊଷର ଭୂମି ସଦୃଶ ଦିଶିଲା ଆଶ୍ରମ ॥ ୪୮
ଦେଖି ଏସନକ ଖଣ୍ଡ ଜଳଛ ଡାକ ଦେଇ ।
ଶିଷ୍ୟଗଣେ ଆଶ୍ୱାସିଣ ବଶିଷ୍ଠ ବୋଲଇ ॥ ୪୯
ଆହେ ପୁତ୍ରଗଣ ! ଭୟେ ନ ହୁଅ କାତର ।
ଏହିକ୍ଷଣି ଗର୍ବ ଛଡ଼ାଇବି ଏ' ଗଜାର ॥ ୫୦
ସୂର୍ଯ୍ୟ ତେଜେ ଯଥା ଘନ କୁହୁଡ଼ି ଘୁଞ୍ଡ଼ଇ ।
ତେମନ୍ତ ପ୍ରକାରେ ଏହୁ ଯିବଟି ପଳାଇ ॥ ୫୧
ଏମନ୍ତ ଭାଷି ଶିଷ୍ୟଙ୍କୁ ସେ ବଶିଷ୍ଠ ମୁନି ।
ବାହାର ହୋଇଲେ ହସ୍ତେ ବ୍ରହ୍ମଦଣ୍ଡ ଘେନି ॥ ୫୨
ରୋଷେ ପ୍ରଜ୍ୱଳିତ ହୋଇ ବୋଲନ୍ତି ବଚନ ।
ଆରେ ଆରେ ନରାଧମ ଗାଧିସୁତ ! ଶୁଣ ॥ ୫୩
ଫଳପୁଷ୍ପେ ପୂର୍ଣ୍ଣ ଏହୁ ସୁଶ୍ରୀ ଉପବନ ।
ଦୁରାତ୍ମା କି କାରଣେ କଲୁ ତୁ ଦହନ ॥ ୫୪
ଆଶ୍ରମବାସୀଙ୍କ ପର୍ଣ୍ଣକୁଟୀର ପୋଡ଼ିଲୁ ।
ଜାଣିଲଇଁ ନଷ୍ଟପ୍ରେ ବିବେକ ଶୂନ୍ୟ ହେଲୁ ॥ ୫୫
ଏ' କାରଣୁଁରେ ଅଧମ ! ନୋହିବ କୁଶଳ ।
ପାପାତ୍ମା ବିନଷ୍ଟ ତୁ ହୋଇବୁ ସମୂଳ ॥ ୫୬
ଏତେ ଭଣି ଧୂମହୀନ କାଳାଗ୍ନି ସମାନ ।
ଉଗ୍ରତେଜେ ସେ ମହର୍ଷି ହେଲେ ଦୀପ୍ତିମାନ ॥ ୫୭
ଯମ ଦଣ୍ଡ ସମ ବ୍ରହ୍ମଦଣ୍ଡ କରେ ଧରି ।
ସମ୍ମୁଖୀନ ହେଲେ ବ୍ରହ୍ମାସୁତ ତପସ୍ୱୀ ॥ ୫୮
ପ୍ରଳୟାନଳ ସମାନ ଦିଶିଲା ଆନନ ।
ବିଶ୍ୱାମିତ୍ରେ ସମ୍ମୁଖୀନ ହେଲେ ମୁନିଗଣ ॥ ୫୯
ସେ ବ୍ରହ୍ମଦଣ୍ଡ ପ୍ରତାପାନଳ ମୋ' ବୃଜିନ ।
ପୁରୁଷୋତ୍ତମ ଭଣେ ହରୁ ସେ ଦହନ ॥ ୬୦

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ପଞ୍ଚପଞ୍ଚାଶତ୍ତମ ସର୍ଗ ।



# ଷଟ୍‌ପଞ୍ଚାଶତ୍ ସର୍ଗ

## ବ୍ରହ୍ମର୍ଷି ପଦ ଲାଗି ବିଶ୍ୱାମିତ୍ରଙ୍କ ତପସ୍ୟା ।

ବଶିଷ୍ଠ ଭଣିଲେ ଯହୁଁ ଏସନକ ବାଣୀ ।
ମହାକ୍ରୋଧେ ଆଗ୍ନେୟାସ୍ତ୍ର ଧରି ନୃପମଣି ॥ ୧
ରହ ରହ ବୋଲି ଉଚ୍ଚେ ଡାକ ଦେଲେ ନୃପ ।
ବଶିଷ୍ଠ ଧରିଲେ ତହୁଁ କାଳସମ ରୂପ ॥ ୨
କାଳଦଣ୍ଡ ସମ ବ୍ରହ୍ମଦଣ୍ଡ ଧରି କରେ ।
କ୍ରୋଧେ ପ୍ରଜ୍ୱଳି ତହୁଁ ଭାଷିଲେ ନୃପରେ ॥ ୩
ଆରେ ରେ କ୍ଷତ୍ରିୟାଧମ ! ଦେଖାଅ ତୋ' ବଳ ।
ସମ୍ମୁଖେ ତୋ' ଲାଗି ହୋଇଅଛି ଦେଖ କାଳ ॥ ୪
ରେ ଗାଧିନନ୍ଦନ ! ଅସ୍ତ୍ରଶସ୍ତ୍ର ତୋର ଯେତେ ।
ନିକ୍ଷେପ ଶରୀରେ ମୋର ବଳ ଅଛି କେତେ ॥ ୫
ଆଜ ବିନାଶିବ ତୋର ଗର୍ବ ଅଭିମାନ ।
ଯେଉଁ ଅସ୍ତ୍ରବଳେ ତୁମ୍ଭ ହୋଇଅଛି ଜ୍ଞାନ ॥ ୬
କ୍ଷତ୍ରିୟକୁଳ କଳଙ୍କ ଆରେ ନରାଧମ !
ଦେଖ ମୋର ନ୍ୟାୟବଳ ଆବର ବିକ୍ରମ ॥ ୭
ନିରେଖ ଅମୋଘ ବ୍ରହ୍ମତେଜ ମୋର ଯାହା ।
ଯେଉଁବଳେ ପରାଭବ ହେବୁ ନରନାହା ! ॥ ୮
ବିଶ୍ୱାମିତ୍ର କ୍ରୋଧଭରେ ମାରି ଅଗ୍ନିଶର ।
ଘୋଷିଲେ ମାରିବ ନିଶ୍ଚେ ବଶିଷ୍ଠ ନିକର ॥ ୯
ବ୍ରହ୍ମଦଣ୍ଡେ ଅଗ୍ନିଶର ହେଲା ପ୍ରଶମିତ ।
ସଲିଳ ସିଞ୍ଚନେ ଯେସନେ ବହ୍ନି ନିର୍ବାପିତ ॥ ୧୦
ତେସନକ ଆଗ୍ନେୟାସ୍ତ୍ର ଭଜିଲା ବିଳୟ ।
ବିଶ୍ୱାମିତ୍ର ଦେଖି ମନେ ଲଭିଲେ ବିସ୍ମୟ ॥ ୧୧
ତା'ଦେଖି ଗାଧିନନ୍ଦନ ହୋଇ କୋପଭର ।
ନିକ୍ଷେପିଲେ ବଶିଷ୍ଠରେ ଧରି ବିବିଧ ଶର ॥ ୧୨

ପାଶୁପତ ରୌଦ୍ର ଐନ୍ଦ୍ର ଐଷୀକ ବାରୁଣ ।
ମାନବ ମୋହନ ଗାନ୍ଧରବ ଯେ ସ୍ୱାପନ ॥ ୧୩
କାଳପାଶ ବଦାରଣ ଆବର ଜୃମ୍ଭଣ ।
କ୍ଷେପିଲେ ବିଶ୍ୱାମିତ୍ର ଅମୋଘ ମାଦନ ॥ ୧୪
ବାରୁଣାସ୍ତ୍ର ବ୍ରହ୍ମପାଶ କଙ୍କଣାସ୍ତ୍ର ଧରି ।
ସନ୍ଧାନରେ ନୃପବର ବଶିଷ୍ଠେ ତଗ୍ରତ ॥ ୧୫
ଧର୍ମଚକ୍ର କାଳଚକ୍ର ପିନାକାସ୍ତ୍ର ଭୁଲେ ।
ପେଷିଲେ ନିଷ୍ଠୁର ମନେ ବିଶ୍ୱାମିତ୍ର ହେଳେ । ୧୬
ସୁଦୁର୍ଜୟ ବଜ୍ରବାଣ ଭୁଲେ ଯେ ମୁଷଳ ।
ମନ୍ଥନାସ୍ତ୍ର ବାୟୁବାସ୍ତ୍ର ଆବର କଙ୍କାଳ ॥ ୧୭
ହୟଶିର ବିଷ୍ଣୁଚକ୍ର ଦଣ୍ଡାସ୍ତ୍ରକୁ ଘେନ ।
କ୍ଷେପିଲେ ପୈଶାଚାସ୍ତ୍ର ଘେନ ନୃପମଣି ॥ ୧୮
କାପାଳାସ୍ତ୍ର ଭୁଲେ ତ୍ରିଶୂଳାସ୍ତ୍ର ବେଗେ ମାରି ।
ଚକ୍ରରେ ମାରିବ କ୍ଷେଷ୍ଟେଁ ବଶିଷ୍ଠ ଜାଗ୍ରତ ॥ ୧୯
ସକଳ ବିଦ୍ୟାସ୍ତ୍ରେ ଯାଇ ହୋଇଲେ ମଳନ ।
ମହାତେଜେ ବ୍ରହ୍ମଦଣ୍ଡ ଜଳୁଥିଲା ଜାଣ ॥ ୨୦
କ୍ଷେପି ସକଳ ଅସ୍ତ୍ରଶସ୍ତ୍ର ଦଣ୍ଡଧାରୀ ।
ଦେଖିଲେ ନିଷ୍ଫଳ ହେଲେ ଦିବ୍ୟାସ୍ତ୍ର ସବୁରି ॥ ୨୧
ଅବଶେଷେ ବିଶ୍ୱାମିତ୍ର ବ୍ରହ୍ମାସ୍ତ୍ରକୁ ଧରି ।
ବୋଇଲେ ଜିଦଣ୍ଡଗର୍ବେ ରହ ତପସ୍ୱୀ ! ॥ ୨୨
କ୍ଷେପ କରନ୍ତେ କୋପେ ଧରି ବ୍ରହ୍ମଶର ।
ଅଗ୍ନି ଆଦି ଦେବଗଣେ ହୋଇଲେ କାତର ॥ ୨୩
ଗନ୍ଧର୍ବ କିନ୍ନର ଯକ୍ଷ ରକ୍ଷ ନାଗବର ।
ବ୍ରହ୍ମାସ୍ତ୍ର ପ୍ରୟୋଗେ ସର୍ବେ ହେଲେ ଥରହର ॥ ୨୪
ତ୍ରିଲୋକ ଜନମାନବ ହୋଇଣ ଅସ୍ଥିର ।
ଆର୍ତ୍ତସ୍ୱରେ ଡାକ ଦେଲେ ରଖ ଚକ୍ରଧର ! ॥ ୨୫
କିନ୍ତୁ ହେ ରାଘବ ! ସେହି ମହାଭୟଙ୍କର ।
ବ୍ରହ୍ମାସ୍ତ୍ର ନିଷ୍ପ୍ରଭ ହେଲା ତେଜେ ସେ ଦଣ୍ଡର ॥ ୨୬

କାଳାଗ୍ନି ରୁଦ୍ର ସ୍ୱରୂପ ଧରି ମହାମୁନି ।
ଛାଡ଼ିଲେ ବ୍ରହ୍ମାସ୍ତ୍ରେ ହେଳେ ବ୍ରହ୍ମଦଣ୍ଡ ଘେନି ॥ ୨୭
ବଶିଷ୍ଠଙ୍କ ରୋମକୂପୁଁ ସଧୂମ ଅନଳ ।
ନିର୍ଗତ ହୋଇଣ କ୍ଷଣେ ଦହିଲା ସକଳ ॥ ୨୮
ନିର୍ଧୂମ ଅନଳ ପ୍ରାୟେ ବ୍ରହ୍ମାସ୍ତ୍ରର ତେଜ ।
ରହୁଁ ରହୁଁ ନିମିଷକେ ହୋଇଲା ଦହଜ୍ୟ ॥ ୨୯
ସକଳ ଋଷି ମଣ୍ଡଳୀ ଦେଖି ବ୍ରହ୍ମତେଜେ ।
ପୁଲକ ଅନ୍ତରେ ପ୍ରଶଂସିଲେ ଋଷିବର୍ଯ୍ୟେ ॥ ୩୦
ବଶିଷ୍ଠଙ୍କୁ ଅନ୍ତରେ ପ୍ରଣମି ସର୍ବ ଋଷି ।
ସ୍ତୁତି ଆରମ୍ଭିଲେ ସବିନୟ ବାଣୀ ଭାଷି ॥ ୩୧
ଆହେ ବ୍ରହ୍ମର୍ଷି ! ତବ ଅମୋଘ ବିକ୍ରମ ।
ଦେଖିଲେ ସଚରାଚର ଯେଉଁ ପରାକ୍ରମ ॥ ୩୨
ସେ ଦୁର୍ଜୟ ଶକ୍ତିକୁ କର ପ୍ରଶମିତ ।
ଅନ୍ୟଥା ଦହିବ ବ୍ରହ୍ମତେଜ ଏ ଜଗତ ॥ ୩୩
ମହାବଳବନ୍ତ ତୁମ୍ଭେ ଅଟ ମୁନିବର !
ବିଶ୍ୱାମିତ୍ର ତପଶକ୍ତି କେତେକ ମାତର ॥ ୩୪
ଯେ ତେଜେ ହେ ବ୍ରହ୍ମର୍ଷି ! ନିରସ୍ତ କୌଶିକ ।
ସଂହର ସେ ତେଜ କ୍ଷଣେ ଦହିବ ତ୍ରିଲୋକ ॥ ୩୫
ପରାଭୂତ ବିଶ୍ୱାମିତ୍ର ନ୍ୟାସ୍ତବକ୍ତ୍ର କରି ।
ଉଦ୍ଧର ଜଗତେ ଶାନ୍ତ ହୋଇ ତପରାଶି ॥ ୩୬
ସକଳ ମୁନିଙ୍କ ସ୍ତୁତି ପାଠେ ହୋଇ ଶାନ୍ତ ।
ବଶିଷ୍ଠ ବ୍ରହ୍ମତେଜରେ କଲେ ପ୍ରଶମିତ । ୩୭
ଦେଖି ଏ ଆଶ୍ଚର୍ଯ୍ୟ ଖିନ୍ନ ନୃପ ବିଶ୍ୱାମିତ୍ର ।
ଦୀର୍ଘଶ୍ୱାସ ତେଜି ମନେ ହୋଇଣ ଲଜ୍ଜିତ ॥ ୩୮
ଭଣିଲେ ସ୍ୱରୋଷେ ଧିକ ଧିକ କ୍ଷାତ୍ରବଳ ।
ଦେଖିଲି ପ୍ରତ୍ୟକ୍ଷେ ଯାହା ଆଜ ବ୍ରହ୍ମବଳ ॥ ୩୯
ରହୁଁ ରହୁଁ ନିମିଷକେ ଦିବ୍ୟାସ୍ତ୍ର ସକଳ ।
ବଶିଷ୍ଠଙ୍କ ବ୍ରହ୍ମଦଣ୍ଡେ ହୋଇଲେ ନିଷ୍ଫଳ ॥ ୪୦

ପ୍ରତ୍ୟକ୍ଷେ ଦେଖିଲ ଯାହା ନୋହେ ତା' ଅନ୍ୟଥା ।
ସର୍ବ ତେଜରୁଁ ବ୍ରହ୍ମତେଜ ବଳିଷ୍ଠ ସର୍ବଥା ॥ ୪୧
ତେଣୁ ମୁଁ ଇନ୍ଦ୍ରିୟେ ରୋଧି ମନକୁ ନିର୍ମଳ ।
କରି ସାଧିବଇଁ ମହାରଣ୍ୟେ ତପ ଘୋର ॥ ୪୨
ଯେଉଁ ତପୋବଳେ ମୁହିଁ ହୋଇବି ବ୍ରାହ୍ମଣ ।
ଜାଣିଲଇଁ ଆଜ କ୍ଷାତ୍ରବଳ ଅକାରଣ ॥ ୪୩
ଏମନ୍ତ ବିଚାରି ବିଶ୍ୱାମିତ୍ର ନୃପବର ।
ସଲଜ୍ଜ ବଦନେ ତପ୍ତଁ ହୋଇଲେ ଅନ୍ତର ॥ ୪୪
ବ୍ରହ୍ମତେଜେ ବଳୀୟାନ ବଶିଷ୍ଠ ଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମାୟଣ ଭଣେ ॥ ୪୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଷଟ୍‌ପଞ୍ଚାଶତ୍ ସର୍ଗ ।



# ସପ୍ତପଞ୍ଚାଶତ୍ ସର୍ଗ

## ବିଶ୍ୱାମିତ୍ରଙ୍କ ରାଜର୍ଷି ପଦ ଲାଭ ତଥା ତ୍ରିଶଙ୍କୁଙ୍କ ଦୁରାଶୟ ।

ଶୁଣ ହେ ଶ୍ରୀରାମ ! ଯାହା ଏଥୁ ଅନନ୍ତରେ ।
ଘଟିଛି ପୁରାଣ ବାର୍ତ୍ତା କହଇଁ ସଧୀରେ ॥ ୧
ନୃପ ବିଶ୍ୱାମିତ୍ର ରଣେ ହୋଇ ପରାଭୂତ ।
ଚିନ୍ତି ମନେ ବ୍ରହ୍ମତେଜ ହୋଇଲେ ସନ୍ତପ୍ତ ॥ ୨
ବାରବାର ଦୀର୍ଘଶ୍ୱାସ ତେଜି ନୃପମଣି ।
ଚଳିଲେ ଦକ୍ଷିଣା ପଥେ ଘେନି ପାଟରାଣୀ ॥ ୩
ଘୋର ବନେ ପଶି ରାଜା ସୁଶାନ୍ତ ମାନସେ ।
ଆରମ୍ଭିଲେ ଘୋର ତପ ରହି ଋଷି ବେଶେ ॥ ୪
ଚିତ୍ତେ ଅବରୋଧି ନିଜ ଇନ୍ଦ୍ରିୟ ସକଳ ।
ସାଧିଲେ କଠୋର ବ୍ରତ ଭୁଞ୍ଜି ଫଳମୂଳ ॥ ୫

ଗୃହସ୍ଥଧର୍ମେ ପତ୍ନୀଙ୍କ ସମେତ ରାଜନ ।
ପାଳିଲେ ସକଳ ବ୍ରତ ଆଗ୍ରହ ନୟନ ॥ ୬
ସେହ୍ନ ଅରଣ୍ୟେ ତାଙ୍କର ହେଲା ଚାରିସୁତ ।
ସୁଶୀଳ ଧାର୍ମିକ ସଙ୍ଗେ ଜଗତେ ଯେ ଖ୍ୟାତ ॥ ୭
ଚାରିପୁତ୍ରଙ୍କର ନାମ ଶୁଣ ରଘୁରାଣ !
ପ୍ରଥମ ତନୟ ତାଙ୍କ ହବିଷ୍ପନ୍ଦ ଜାଣ ॥ ୮
ଦୁଜେ ମଧୁଷ୍ପନ୍ଦ ତୃତୀୟରେ ଦୃଢନେତ୍ର ।
ଚତୁର୍ଥ ପୁତ୍ରର ନାମ ଅଟେ ମହାରଥ ॥ ୯
ଏକ ସହସ୍ର ବର୍ଷ ତହିଁ ସାଧିଲେ ତପସ୍ୟା ।
ଆପଣା ନୈଷ୍ଠିକ ସଙ୍ଗେ ସ୍ଥାପି ଦୃଢ଼ ଆଶା ॥ ୧୦
ତଦୁତ୍ତାରେ ଲୋକପିତାମହ ପ୍ରଜାପତି ।
ବିଶ୍ୱାମିତ୍ର ତପୋବନେ ପ୍ରବେଶି ଝଟିତି ॥ ୧୧
ମଧୁର ବଚନେ ତାଙ୍କୁ କରି ଆଶ୍ୱାସନ ।
ବୋଇଲେ ଶୁଣ ହେ ତପୀ ! କୁଶିକ ନନ୍ଦନ ॥ ୧୨
ଅତି ନିଷ୍ଠା ବଳେ ତୁହ୍ମ ସାଧି ଘୋର ତପ ।
ରାଜର୍ଷିପଦେ ବସିଲ ଶୁଣ ଆହେ ନୃପ ! ॥ ୧୩
ଜଗତେ ସୁଖ୍ୟାତ ହେବୁ ରାଜର୍ଷି ରୂପେଣ ।
ଏ' ମୋର ଅଭୟ ବର ଘେନ ନୃପରାଣ ! ॥ ୧୪
ଏମନ୍ତ ଭଣି ଲୋକନାଥ ପ୍ରଜାପତି ।
ଦେବଗଣ ସଙ୍ଗେ ଘେନ ଚଳିଲେ ତୁରିତ ॥ ୧୫
ବ୍ରହ୍ମଲୋକେ ପରବେଶ ହେଲେ ବେଦପତି ।
ଲଜ୍ଜା ଅବନତ ମୁଖେ ଚିନ୍ତିଲେ ନୃପତି ॥ ୧୬
ଏତେ ଘୋର ତପ କଲି ସହିଣ କଷଣ ।
ତଥାପି ନୋହିଲେ ତୁଷ୍ଟ ସାବଶୀରମଣ ॥ ୧୭
ନ ଦେଲେ ବ୍ରହ୍ମର୍ଷି ବର ଅଯୋନି ସମ୍ଭବ ।
ବିଫଳ ହୋଇଲା ମୋର ଏ' ତପସ୍ୟା ସବୁ ॥ ୧୮
ଏମନ୍ତ ବିଚାରି ମନେ କୁଶିକନନ୍ଦନ ।
ବସିଲେ କଠୋର ତପେ କରି ଦୃଢ଼ପଣ ॥ ୧୯

ଏ' ସମୟେ ଇକ୍ଷ୍ୱାକୁ-କୁଳ-ଭୂଷଣ ନୃପ ।
ସତ୍ୟବାଦୀ ଜିତେନ୍ଦ୍ରିୟ ଅଯୋଧ୍ୟା ମହୀପ ॥ ୨୦
ତ୍ରିଶଙ୍କୁ ନାମରେ ଥିଲେ ଜଗତେ ବିଖ୍ୟାତ ।
ଦିନେ ବସି ମନେ ବିଚାରିଲେ ନୃପନାଥ ॥ ୨୧
କରିବି ଏମନ୍ତ ଯଜ୍ଞ ଯେଉଁ ଫଳେ ମୁହିଁ ।
ସଶରୀରେ ଯାଇ ସ୍ୱର୍ଗଲୋକେ ବସିବଇଁ ॥ ୨୨
ତହୁଁ ତ୍ରିଶଙ୍କୁ ଡକାଇ କୁଳ ପୁରୋହିତେ ।
ବଶିଷ୍ଠଙ୍କୁ ବୋଇଲେ ସେ ରାଜନ ବିନୀତେ ॥ ୨୩
ହେ ମହାତ୍ମା ! ଏମନ୍ତ ମୁଁ ଯଜ୍ଞ କରିବଇଁ ।
ଯେଉଁ ଯଜ୍ଞଫଳେ ସଶରୀରେ ଯୁକ୍ତ ହୋଇ ॥ ୨୪
ଅମରଧାମକୁ ଯିବି ଆହେ ମୁନିବର !
ଏମନ୍ତ ଯଜ୍ଞ-ବିଧାନ ମୋ' ପାଇଁ ବିଚାର ॥ ୨୫
ରାଜନ ବଚନ ଶୁଣି ବଶିଷ୍ଠ ମହର୍ଷି ।
କହିଲେ ସଧୀର ଚିତ୍ତେ ଶୁଣ ରାଜଋଷି ! ॥ ୨୬
ଏ' ତ ଅସମ୍ଭବ କଥା କୁହ ନୃପବର !
ଅଧ୍ୟାତ୍ମ ମାର୍ଗରେ ନାହିଁ ଏସନ ବିଧାନ ॥ ୨୭
ଏ' ମର୍ତ୍ତ୍ୟମଣ୍ଡଳେ ଜାତ ହୋଏ ଯେଉଁ ଜନ ।
ଦେବତା ହେଲେ ହେଁ ତା'ର ହୁଅଇ ମରଣ । ୨୮
ତୁମ୍ଭେ କିପରି ଗମିବ ଆହେ ନରେଶ୍ୱର !
ସ୍ୱର୍ଗଧାମେ ଘେନି ଏହୁ ନଶ୍ୱର ଶରୀର ॥ ୨୯
ଏମନ୍ତ ଅଧର୍ମ ଯାଗେ ପୁରୋହିତ ପଣ ।
କେବେହେଁ ମୁଁ ନ କରିବି ଶୁଣ ନୃପବର ! ॥ ୩୦
ବଶିଷ୍ଠଙ୍କ ମୁଖୁଁ ଶୁଣି ଏସନ ଉତ୍ତର ।
ରାଜନ କୁଳ-ପ୍ରୋହିତେ କରି ଅନାଦର ॥ ୩୧
ଦକ୍ଷିଣ ପଥରେ ରାଜା କରିଲେ ଗମନ ।
ଯହିଁ ବଶିଷ୍ଠଙ୍କ ସୁତେ ତପସ୍ୟାରେ ମଗ୍ନ ॥ ୩୨
ଯୋଗବଳେ ସାଧନ୍ତି ଯେ ପରମ ଈଶ୍ୱର ।
ସେ ସ୍ଥାନେ ମିଳିଲେ ଯାଇ ନୃପତି ଶେଖର ॥ ୩୩

ଲଜ୍ଜାରେ ମଳିନ ମୁଖ ତ୍ରିଶଙ୍କୁ ରାଜନ ।
ବୋଇଲେ ଗୁରୁପୁତ୍ରଙ୍କୁ ବିନୟ ବଚନ । ୩୪
ଆହେ ଗୁରୁପୁତ୍ରେ ! ତୁମ୍ଭ ପାଦେ ମୋ' ପ୍ରଣାମ ।
ଦୀନବତ୍ସଳ ! ମହାତ୍ମା ସୁସାଧୁ ସୁଜନ ॥ ୩୫
ଶରଣ ରକ୍ଷଣ ବାନା ଆହେ ମୁନିବରେ !
ତେଣୁ ଶରଣ ପଶୁଛି ତୁମ୍ଭ ଶ୍ରୀପୟରେ ॥ ୩୬
ବଳୁଛି ମାନସ କରିବାକୁ ଏକ ଯାଗ
ଯେଉଁ ପୁଣ୍ୟବଳେ ସଶରୀରେ ସ୍ୱର୍ଗଭୋଗ ॥ ୩୭
ଲଭି ବସିବି ମୁଁ ସୁଖେ ଦେବଙ୍କ ସଙ୍ଗର ।
ଆତ୍ମସୁଖ ଲଭି ତହିଁ ହେବି ଅଜରାମର ॥ ୩୮
ତପସାଧନେ ସକଳ ଅଛ ତତପର ।
ମୋ' ଶାନ୍ତ ବିଧାନେ ହୁଅ ପ୍ରୋତ୍ସାହିତ ମୋହର ॥ ୩୯
ତୁମ୍ଭ ପିତା ମହାତ୍ମା ବଶିଷ୍ଠ ମହାନ ।
ନିଷେଧିଲେ କରିବାକୁ ଏ' ଯଜ୍ଞ ବିଧାନ ॥ ୪୦
ଯେଣୁ ମୁନି ନ ରଖିଲେ ମୋର ଅନୁରୋଧ ।
ତେଣୁ ତୁମ୍ଭରେ ଶରଣ ପଶିଲି ହେ ଦେବ ! ॥ ୪୧
ମୋ' ଅଭୀଷ୍ଟ ସିଦ୍ଧି ଅର୍ଥେ କର ଏହି ଯାଗ ।
ଯାହା ଫଳେ ଅନାୟାସେ ଲଭି ସ୍ୱର୍ଗ ଭୋଗ ॥ ୪୨
ଅମର ଭୁବନେ ବସିବଇଁ ମୁହିଁ ତୋଷେ ।
ହରଷେ ଦେବଙ୍କ ମେଳେ ମନର ସରସେ ॥ ୪୩
ଯହୁଁ ଗୁରୁବର ଏହା ନ କଲେ ସ୍ୱୀକାର ।
ତେଣୁ ମୁଁ ଆସିଛି ତବ ଅଭୟ ପୟର ॥ ୪୪
ଶରଣ ଦେଇ ମୋ' ଯଜ୍ଞ ସାଧ ଗୁରୁପୁତ୍ରେ ।
ଯେଣୁ ମୋ' ପରମାରାଧ୍ୟ ଅଟ ମୁନିସୁତେ ! ॥ ୪୫
ବଶିଷ୍ଠଙ୍କ ସମ ତୁମ୍ଭେ ଅଟ ମହାତ୍ମା ।
ମୋ' ଯଜ୍ଞ ସାଧନେ ତେଣୁ ହୋଇବ କାରଣି ॥ ୪୬
ପିତୃତୁଲ୍ୟ ଅଟ ଯେଣୁ ପରମ ତପସ୍ୱୀ ।
ମୋ' ଯଜ୍ଞ ସାଧନେ ଅନୁକୂଳ ହୁଅ ଋଷି ! ॥ ୪୭

ଏସନ ଭାଷିଣ ରାଜା ହୋଇଲେ ମଉନ ।
ଋଷିପୁତ୍ରେ ଏହା ଶୁଣି ହେଲେ କୋପମନ ॥ ୪୮
ପିତାଙ୍କ ଅବଜ୍ଞାକାରୀ ରାଜନେ ତକ୍ଷଣ ।
ଦେବାକୁ ଉଚିତ ଶିକ୍ଷା କଲେ ମନ ॥ ୪୯
ପରମଗୁରୁ ବଶିଷ୍ଠ ଅଭୟ ଚରଣେ ।
ପୁରୁଷୋତ୍ତମ ଚନ୍ଦ୍ରଭ ସଦା ମନ ଧ୍ୟାନେ ॥ ୫୦

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତପଞ୍ଚାଶତ୍ ସର୍ଗ ।



## ଅଷ୍ଟପଞ୍ଚାଶତ୍ ସର୍ଗ

### ବିଶ୍ୱାମିତ୍ରଙ୍କଠାରେ ଚଣ୍ଡାଳ ତ୍ରିଶଙ୍କୁର ଶରଣ ।

ହେ ରଘୁନନ୍ଦନ ରାମ ! ଏଥୁ ଅନନ୍ତରେ ।
ଶୁଣ ଯା' ଘଟିଲା ତହୁଁ ନମିଳ ଅନ୍ତରେ ॥ ୧
ଶୁଣିଣ ତ୍ରିଶଙ୍କୁ ମୂର୍ଖ ଏମନ୍ତ ଉତ୍ତର ।
ସକ୍ରୋଧେ ମୁନି କୁମାରେ ହୋଇଲେ ଅସ୍ଥିର ॥ ୨
ବୋଇଲେ ଆରେ ନବୋଧ ! ହୋଇଲୁ ଅଜ୍ଞାନ ।
ସତ୍ୟବାଦୀ ମହାଗୁରୁ ଅଟନ୍ତି ଯେ ପୁଣ ॥ ୩
ସେହି ବଶିଷ୍ଠଙ୍କୁ ଯେଣୁ ନିନ୍ଦ ତୁ ପାମର !
ଅନ୍ୟ ପୁରୋହିତ କରିବାକୁ ଇଚ୍ଛା ତୋର ॥ ୪
ଉଲ୍ଲଙ୍ଘନ କରି କୁଳ-ପୁରୋହିତ ବାଣୀ ।
ମତ୍ତଗର୍ବେ ଭାବନ୍ତୁ ସାଧିବୁ ଯଜ୍ଞ ପୁଣି ॥ ୫
ନିଜ ଗୁରୁ ତେଜି ଅନ୍ୟ ଗୁରୁରେ ଆଶ୍ରୟ ।
କରିବାକୁ ତୋ' ମାନସେ କରିଛୁ ନିଶ୍ଚୟ ॥ ୬

ଜାଣିକ୍ଷୁ କରେ ଅଧମ ! ଇକ୍ଷ୍ୱାକୁ କୁଳଜ ।
ପରମଗତ ଅଟନ୍ତି ବଶିଷ୍ଠ ପ୍ରବର । ୭
ସେ ଯାହା କହନ୍ତି ତାହା କେ କରିବ ଆନ ।
ରାଜମଦେ ଏହା ତୁ ନ ଦେଖିଲୁ ମନେଣ ॥ ୮
ଯାହା ଅସମ୍ଭବ ବୋଲି ଭଣିଲେ ପିଅର ।
ତାହା କପରି ସମ୍ଭବ ମଣୁ ଦୁରାଗ୍ରର ॥ ୯
ପିତାଙ୍କ ବଚନ ଏଡ଼ି ଆମ୍ଭେ ପୁତ୍ରଗଣ ।
କପଟି ବା କରିବୁଁ ସେ ଅସାଧ୍ୟ ସାଧନ ॥ ୧୦
ଆହେ ନୃପବର ! ତୁମ୍ଭେ ନୋହିଣ ବିମନ ।
ଆମ୍ଭ ଉପଦେଶେ କର ସ୍ୱପୁରେ ଗମନ ॥ ୧୧
ଜାଣନ୍ତି କି ମହାମୁନି ବିଧାତା କୁମର ।
ଏ' ତିନିଲୋକ ମଧ୍ୟେ ଶ୍ରେଷ୍ଠ ଯାଜ୍ଞିକ ପ୍ରବର ॥ ୧୨
ସମସ୍ତ କାର୍ଯ୍ୟ ସାଧନେ ସେ ମୁନି ସମର୍ଥ ।
ସେ ଯାହା ବୋଇଲେ ତାହା ଦେଖସି ସୁଚିତ୍ତ ॥ ୧୩
ଏ' ତୋହର ଦୁରାଶୟ ଅଟେ ନୃପବର !
ଅଜ୍ଞାନ ଅଧର୍ମ ପଥେ ନ ହୁଅ ତତ୍ପର ॥ ୧୪
ଅଥବା କପଟି ଆମ୍ଭେମାନେ ପିତାଙ୍କର ।
କିମ୍ପା ଅପମାନ ସାଧିବୁ ଏ' ଯଜ୍ଞ ତୋର ॥ ୧୫
ତେଣୁ ଅମ୍ଭ ଉପଦେଶ ଶୁଣ ନୃପବର !
ଅସମ୍ଭବ କାର୍ଯ୍ୟେ ଆଉ ନ ବଳାଅ ମନ ॥ ୧୬
ଦୁରାକାଙ୍କ୍ଷୀ ତ୍ରିଶଙ୍କୁ ଶୁଣିଣ ଏ' ବଚନ ।
ଆପଣା ଗର୍ବରେ ମଜ୍ଜି ଭାଷିଲା ଏସନ ॥ ୧୭
ଆହେ ତପୋଧନେ ! ମୋତେ ବଶିଷ୍ଠ ପ୍ରବର ।
ତେଜିଥିଲେ ଏବେ ତୁମ୍ଭେ ତେଜିଲ ସକଳ ॥ ୧୮
ନ ଶୁଣିଲ ମୋ' ପ୍ରାର୍ଥନା ଆହେ ଋଷିଗଣ !
ପୁଣି ପୁଣି ସବିନୟେ କରଇ ପ୍ରାର୍ଥନ ॥ ୧୯
ନୋହିଲେ ଅନ୍ୟ ଗୁରୁରେ କରିବି ଆଶ୍ରୟ ।
ଶୁଣ ଆହେ ଗୁରୁପୁତ୍ରେ ! ଏ' ମୋର ନିଶ୍ଚୟ । ୨୦

ଶୁଣି ତ୍ରିଶଙ୍କୁ ମୁଖରୁ ଅମର୍ଷ ବଚନ ।
କ୍ରୋଧେ ଅଗ୍ନିଶର୍ମା ହୋଇ ମହାଋଷିଗଣ ॥ ୨୧
ବୋଇଲେ ଆରେ ଅଧମ ! ଯେଣୁ ତୁ ଅଜ୍ଞାନ ।
ତେଣୁ ତୁ କହୁ ଏସନ ଅଶିଷ୍ଟ ବଚନ ॥ ୨୨
ସେହି ଘୋର ପାପେ ତୁହି ହୁଅରେ ଚଣ୍ଡାଳ ।
ଯେଣୁ ତୁ ନବୋଧ ହେଲୁ ଅଯୋଧ୍ୟା ଭୂପାଳ ! ॥ ୨୩
ଏମନ୍ତ ଶାପ ଦେଇଣ କ୍ରୋଧେ ମୁନିଗଣ ।
ଆପଣା ଆଶ୍ରମେ ପ୍ରବେଶିଲେ ତତକ୍ଷଣ ॥ ୨୪
ସେହିନ ରଜନୀ ଅନ୍ତେ ତ୍ରିଶଙ୍କୁ ରାଜନ ।
ହୋଇଲେ ଚଣ୍ଡାଳ ଶୁଣ ଆହେ ରଘୁରାଣ ! ॥ ୨୫
ତା' ଦିବ୍ୟ ଶରୀର ତହୁଁ ହେଲା ଶ୍ୟାମବର୍ଣ୍ଣ ।
ଦିଶିଲା ତା' ଶରୀର ଭୂଷଣ ମଳବର୍ଣ୍ଣ ॥ ୨୬
ପରିଧାନ ପଟ୍ଟବସ୍ତ୍ର ଲେଙ୍ଗୁଡ଼ା ସଦୃଶ ।
ରୁକ୍ଷଅଙ୍ଗ କ୍ଷୁଦ୍ରକେଶ ହୋଇଲା ନରେଶ ॥ ୨୭
ସମଗ୍ର ଶରୀର ତା'ର ଚିତାଭସ୍ମେ ମ୍ଳାନ ।
ହୋଇଲା ବିକୃତ ରୂପ ଅଯୋଧ୍ୟା ରାଜନ ॥ ୨୮
ଦେଖି ଏସନକ ନୃପତିର ରୁକ୍ଷ ରୂପ ।
ପାତ୍ର ଅମାତ୍ୟ ସକଳ ଲଭିଲେ ସନ୍ତାପ ॥ ୨୯
ଭୟ ବ୍ୟଗ୍ର ଚିତ୍ତେ ସର୍ବେ ହୋଇଣ ଆକୁଳ ।
ପଳାଇଗଲେ ସେ ସ୍ଥାନୁ ଅମାତ୍ୟ ସକଳ ॥ ୩୦
ବ୍ୟାକୁଳ ଅନ୍ତରେ ତହୁଁ ତ୍ରିଶଙ୍କୁ ନରେଶ ।
ସନ୍ତାପ ଲଭି ଯାପିଲେ ରଜନୀ ଦିବସ ॥ ୩୧
ଶେଷେ ସେ ନବୋଧ ରାଜା ବିଚାରି ମନରେ ।
ଶରଣ ପଶିଲେ ବିଶ୍ୱାମିତ୍ରଙ୍କ ପଦ୍ମରେ ॥ ୩୨
ମହାମନା ବିଶ୍ୱାମିତ୍ର ତ୍ରିଶଙ୍କୁରେ ଚାହିଁ ।
ଦେଖିଲେ ରାଜାର ରୂପ ବିକୃତ ଦିଶଇ ॥ ୩୩
ସାର୍ଥକ ଜୀବନ ତା'ର ହୋଇଛି ବିଫଳ ।
ତେଜହୀନ କାନ୍ତିଶୂନ୍ୟ ଦିଶଇ ଭୂପାଳ ॥ ୩୪

କରୁଣାକଳିତ ସ୍ୱରେ ପୃଚ୍ଛିଲେ ତପସ୍ୱୀ ।
ହେ ରାଜନ ! ମହାବଳୀ କୁହସି ଭରସି ॥ ୩୫
କି କାରଣେ ବିବର୍ଣ୍ଣ ଦିଶଇ ଏ ଶରୀର ।
ଚଣ୍ଡାଳ ରୂପକୁ କିମ୍ପା ଧରିଛ ନୃବର ॥ ୩୬
କିମ୍ପା ତୁମ୍ଭ ଆଗମନ କହ ମୋର ପାଶ ।
କଲ୍ୟାଣ ହୋଇବ କୁହ ଅଯୋଧ୍ୟା ନରେଶ ! ॥ ୩୭
ଶୁଣି ବିଶ୍ୱାମିତ୍ର ମୁଖୁଁ ଆଶ୍ୱାସ ବଚନ ।
ଚଣ୍ଡାଳ ବେଶକୁ ଧରିଥିଲେ ଯେ ରାଜନ ॥ ୩୮
ସେ ଋଷିଙ୍କୁ କରଯୋଡ଼ି ବୋଇଲେ ଏସନ ।
ହେ ବାଗ୍ମୀପ୍ରବର ! ଶୁଣ ମୋର ନିବେଦନ ॥ ୩୯
କି କହିବି ଦୁଃଖ ମୋର ଅହେ ମୁନିଗଣ !
ଗୁରୁବର ପୁତ୍ରେ ମୁହିଁ ଲଭିଅଛି କ୍ଲେଶ ॥ ୪୦
ଯେ କାର୍ଯ୍ୟ ସାଧନେ ସେବିଥିଲି ଗୁରୁବର ।
ସେ କାର୍ଯ୍ୟ ନୋହି ହୋଇଲା ବିପରୀତ ଫଳ ॥ ୪୧
ହେ ସୌମ୍ୟଦର୍ଶନ ମୁନିବର ! ଶୁଣ ଧୀରେ ।
ଭାବିଲି ମୁଁ ଶତେ ସ୍ୱର୍ଗେ ଯିବି ସଶରୀରେ ॥ ୪୨
କରିବି ଏମନ୍ତ ନବଯଜ୍ଞର ବିଧାନ ।
ଯେଉଁ ପୁଣ୍ୟେ ଲଭିବି ମୁଁ ଅମର ଆସନ ॥ ୪୩
ଏ' ଆଶା ପୂର୍ଣ୍ଣ ନୋହିଲା କରି ଶତ ଯାଗ ।
ତେଣୁ ମନ ମଧ୍ୟେ ମୋର ଜାଗିଲା ବିରାଗ ॥ ୪୪
ହେ ତପସ୍ୱୀବର ! ମୁହିଁ କରୁଣି ଶପଥ ।
କହୁଛି ମୁଁ ତେଜି ନାହିଁ କ୍ଷାତ୍ରଧର୍ମ ପଥ ॥ ୪୫
ମିଥ୍ୟା କହୁନାହିଁ ଆହେ ତ୍ରିଲୋକ ସୁନ୍ଦର !
ନାନା ଯଜ୍ଞ କରାଇଲେ ମୋତେ ଗୁରୁବର ॥ ୪୬
ପ୍ରଜାହିତେ ଏ' ଜୀବନ ଧନଧାନ୍ୟ ମୋର ।
ଅରପିଛି ମୁନି ! ନୋହେ ଏ' ଅସତ୍ୟ ଗିର ॥ ୪୭
ସର୍ବଦା ସେବିଛି ଗୁରୁ ବିପ୍ରଙ୍କ ପଦରେ ।
ଅକଳନ ଦାନ ମୁଁ ଦେଇଛି ମୁନିବରେ ॥ ୪୮

ସଦାଗ୍ରହ ମାର୍ଗେ ସଦା କରନ୍ତି ଗମନ ।
ତଥାପି କମ୍ପାଇଁ ଗୁରୁ ହୋଇଲେ ଛମନ ॥ ୪୯
ତେଣୁ ମୁଁ ଜାଣୁଛି ଆହେ ତପୀକୁଳସାଇଁ !
ଦୈବବଳ ବଳୀପ୍ରାନ ଜଗତେ ଅଟଇ ॥ ୫୦
ପୁରୁଷାର୍ଥ ନୋହେ କଛି ଆହେ ମୁନିବର !
ପଜରୁଷ ସବ ମୋର ହୋଇଛି ବିଫଳ ॥ ୫୧
ତେଣୁ ମୁଁ ଆସିଛି ଏଥେ ମନେ କରି ଆଶ ।
ପୁରୁଷାର୍ଥପଣେ ଯେଣୁ ତୁମ୍ଭର ବିଶ୍ୱାସ ॥ ୫୨
ଶରଣ ପଶୁଛି ମୁନି ! କର ପରିଷାଣ ।
ଯେଣୁ ତୁମ୍ଭେ ଅଟ ସଦା ଶରଣରକ୍ଷଣ ॥ ୫୩
ହେବ ଯାହା ହେଉ ପଛେ ତବ ପଦଯୁଗ ।
ନ ଛାଡ଼ିବ ଏ' ଜୀବନେ ଆହେ ମହାଭାଗ ! ॥ ୫୪
ତବ ପ୍ରସାଦେ ଲଭିବ ପୁରୁଷାର୍ଥ ବଳ ।
ଦୁର୍ଦ୍ଦୈବ ନାଶିଣ କର୍ମେ ହୋଇବ ସଫଳ ॥ ୫୫
ଯେଣୁ ପୁରୁଷାର୍ଥବଳେ ତୁମ୍ଭେ ମହାମୁନି !
ଅସାଧ୍ୟ ସାଧିଛ ଭବେ ଅଛି ଯାହା ଶୁଣି ॥ ୫୬
ସେହି ପଜରୁଷ ବଳେ ମୋର ହିତ କର ।
ଏତିକ ମାଗୁଣି ତବ ଶ୍ରୀପଦରେ ମୋର ॥ ୫୭
ତୁମ୍ଭ ବିନୁ ଏ' ଜଗତେ ଆନ ଜଣେ କେହି ।
ମୋ' ବ୍ୟର୍ଥ ଜୀବନେ ଶୁଭ ଫଳଦାତା ନାହିଁ ॥ ୫୮
ତେଣୁ ମୁଁ ଭରସା କରି ଆସିଛି ହେ ମୁନି !
କର ପ୍ରତିକାର ତୁମ୍ଭ ପାଦେ ମୋ' ଦକ୍ଷିଣା ॥ ୫୯
ତ୍ରିଶଙ୍କୁ ବିଶ୍ୱାମିତ୍ରଙ୍କ ପବିତ୍ର ଚରିତ ।
ପୁରୁଷୋତ୍ତମ ଭଣଇ ଶିର କରି ନତ ॥ ୬୦
ଆହେ ସୁଜ୍ଞଜନେ ! ଏହୁ ମହତ ଆଖ୍ୟାନ ।
ଶ୍ରୁତିପୁଟେ ପାନ କର ତୁଟିବ ଅଜ୍ଞାନ ॥ ୬୧

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଅଷ୍ଟପଞ୍ଚାଶତ୍ତମ ସର୍ଗ ।



# ଏକୋନଷଷ୍ଟିତମ ସର୍ଗ

## ତ୍ରିଶଙ୍କୁଙ୍କୁ ବିଶ୍ୱାମିତ୍ରଙ୍କ ଆଶ୍ୱାସନା ।

କହୁଛନ୍ତି ଶତାନନ୍ଦ ରଘୁନାଥେ ଶୁଣଁ ।
ଚଣ୍ଡାଳ ସ୍ୱରୂପ ଧରି ଅଯୋଧ୍ୟାର ସାଇଁ ॥ ୧
ବିଶ୍ୱାମିତ୍ର ଆଗେ ବଖାଣିଲେ ନିଜ ଦୁଃଖ ।
ଦୟାରେ ଦ୍ରବିତ ହେଲେ ସେ ଋଷି ପ୍ରମୁଖ ॥ ୨
କରୁଣାକଳିତ ଚିତ୍ତେ ମଧୁର ବଚନେ ।
ବୋଇଲେ ସେ ଋଷିବର ଅଯୋଧ୍ୟା ରାଜନେ ॥ ୩
ଇକ୍ଷ୍ୱାକୁ କୁଳନନ୍ଦନ ! ଧାର୍ମିକ ପ୍ରବର !
ଶୁଣିଅଛୁ ତବ କୀର୍ତ୍ତି-ଗାଥା ନୃପବର ! ॥ ୪
ସ୍ୱାଗତ ହେ ନୃପଶ୍ରେଷ୍ଠ ତ୍ରିଶଙ୍କୁ ରାଜନ !
ଭୟ ନ କର ମନରେ ଦେଲି ମୁଁ ଶରଣ ॥ ୫
ତୁମ୍ଭ ଅନୁପମ ଯଜ୍ଞେ ସକଳ ବ୍ରାହ୍ମଣ ।
ଆସିବେ ଯେମନ୍ତେ କରିବି ମୁଁ ନିମନ୍ତ୍ରଣ । ୬
ତଦନ୍ତେ କରିବ ରାଜା ଯଜ୍ଞ ସମାରମ୍ଭ ।
ଶୁଭକାର୍ଯ୍ୟେ ନରାଧିପ ! ନୋହିବ ବିଳମ୍ବ ॥ ୭
ଗୁରୁଙ୍କ ଶାପରୁ ଯେଉଁ ଲଭିଛ ଶରୀର ।
ସେ ଶରୀର ଘେନି ତୁମ୍ଭେ ଯିବ ସ୍ୱର୍ଗପୁର ॥ ୮
ଯେଣୁ ତୁମ୍ଭେ ପଶିଅଛ ମୋ' ପାଦେ ଶରଣ ।
ତେଣୁ ମୁଁ ସାଧିବି ତବ ଶୁଭ କର୍ମମାନ ॥ ୯
ଶରଣାଗତ ବତ୍ସଳ ଅଟଇ ମୁଁ ନୃପ !
ତେଣୁ ତୁମ୍ଭେ ନିଶ୍ଚେ ଯିବ ଦେବଙ୍କ ସମୀପ ॥ ୧୦
ନ ବିସ୍ମର ମନେ କିଛି ଅଯୋଧ୍ୟା ରାଜନ !
କରତଳଗତ ତବ ହେବ ସ୍ୱର୍ଗଧାମ ॥ ୧୧
ଦେବଲୋକରେ ବସିବ ଅମରତ୍ୱ ଲଭି ।
ହେବ ଅଜର ଅମର ମନୁଷ୍ୟେ ସମ୍ଭବ ॥ ୧୨

ଏମନ୍ତ ଭାଷିଣ ମହାତପସ୍ୱୀ ପ୍ରବର ।
ନିଜ ଶତପୁତ୍ରେ ଡାକ ବୋଇଲେ ସତ୍ୱର ॥ ୧୩
ଆହେ ପୁତ୍ରେ ! ବେଗେ ତୁମ୍ଭେ କର ଆୟୋଜନ ।
ଶିଷ୍ୟଗଣଙ୍କୁ ହକାରି ବୋଇଲେ ଏସନ ॥ ୧୪
ସଫଳ ହୋଇବ ଯଥାକ୍ରମେ ଯଜ୍ଞକର୍ମ ।
ମୋ' ଆଜ୍ଞା ପ୍ରମାଣେ ଚଳ ସର୍ବ ତପୋଧନ ॥ ୧୫
ସକଳ ଋଷିଙ୍କୁ କର ଯଜ୍ଞେ ନିମନ୍ତ୍ରଣ ।
ବଶିଷ୍ଠଙ୍କ ପୁତ୍ର ତୁଲେ ସକଳ ବ୍ରାହ୍ମଣ ॥ ୧୬
ଆସିବେ ସକଳ ଋଷି ଶିଷ୍ୟଙ୍କ ସମେତ ।
ଋତ୍ୱିକଗଣ ମିଳିବେ ସ୍ରୁବ ସ୍ରୁଚ ହସ୍ତ ॥ ୧୭
ମୋ' ସନ୍ଦେଶ ଶୁଣାଇବ ବିସ୍ତାରି ସକଳ ।
କି ବୋଲିବେ ମୁନିଗଣେ ଶୁଣି ଏ' ବିଚାର ॥ ୧୮
ଯଦି କେହି ଅବହେଳା କରି କହେ ବାଣୀ ।
ଜଣାଇବ ମୋ' ତୁମ୍ଭରେ ପ୍ରମାଦ ନ ଗଣି ॥ ୧୯
ଶୁଣି ବିଶ୍ୱାମିତ୍ରଙ୍କଠୁ ସକଳ ସନ୍ଦେଶ ।
ଶିଷ୍ୟଗଣ ସର୍ବ ଦିଗେ ଚଳିଲେ ସହର୍ଷ ॥ ୨୦
କହିଲେ ବିସ୍ତାରି ବିଶ୍ୱାମିତ୍ରଙ୍କ ସନ୍ଦେଶ ।
ନିମନ୍ତ୍ରିଲେ ମୁନିଗଣେ ହୋଇ ମନତୋଷ ॥ ୨୧
ଶୁଣି ତାହାଙ୍କ ବଚନ ବ୍ରହ୍ମର୍ଷି ସକଳ ।
ସଜ ହେଲେ ଆସିବାକୁ ଯହିଁ ଯଜ୍ଞସ୍ଥଳ ॥ ୨୨
ତହୁଁ ଶିଷ୍ୟଗଣେ ଫେରି ଆସିଲେ ଆଶ୍ରମେ ।
ବୋଇଲେ ବିଶ୍ୱାମିତ୍ରଙ୍କୁ ନିଗୂଢ଼ ବଚନେ ॥ ୨୩
ଆହେ ତପସ୍ୱୀ ପ୍ରବର ! ତବ ଆଜ୍ଞା ଘେନି ।
ଚଳିଲୁ ସକଳ ଦିଗେ ଯହିଁ ଋଷି ମୁନି ॥ ୨୪
ସକଳେ ଶୁଣିଣ ତବ ସନ୍ଦେଶ ବଚନ ।
ଯଜ୍ଞେ ଆସିବାକୁ ସଜ ହେଲେ ମୁନିଗଣ ॥ ୨୫
ମହୋଦୟ ନାମେ ଏକ ସିଦ୍ଧ ଋଷିବର ।
ନ ଆସିଲେ ସେହୁ ମନେ କରି କି ବିଚାର ॥ ୨୬

ଅବର ବଶିଷ୍ଠ ପୁତ୍ରେ ନ ଆସିବେ ଏଥ ।
ଯା' ବୋଇଲେ କୋପଚିତ୍ତେ ଶୁଣ ସେ ବୃତ୍ତାନ୍ତ ॥ ୨୭
ଚଣ୍ଡାଳର ପାଇଁ ଯଜ୍ଞ କରୁଅଛୁ ଯେହୁ ।
ଦୁଜେ ଜାତିରେ କ୍ଷତ୍ରିୟ ଅଟଇଟି ସେହୁ ॥ ୨୮
ସେ ଯଜ୍ଞ ହବିଷ୍ୟ ଅନ୍ନ କେମନ୍ତ ବ୍ରାହ୍ମଣ ।
ଜାଣିଶୁଣି ଧର୍ମ ତେଜି କରିବେ ଭୋଜନ ॥ ୨୯
ଅଥବା ଚଣ୍ଡାଳ ଅନ୍ନେ ହୋଇଣ ପାଳିତ ।
ବିଶ୍ୱାମିତ୍ର ହସ୍ତେ ଯାହା ହୁଅଇ ସାଧିତ ॥ ୩୦
ସେହି ଯଜ୍ଞ କାର୍ଯ୍ୟେ ଯେହୁ କରିବେ ଭୋଜନ ।
କେମନ୍ତ ଲଭିବେ ସ୍ୱର୍ଗେ ଅମର-ଭୁବନ ॥ ୩୧
ହେ ମୁନିପ୍ରବର ! ମହୋଦୟ ସଙ୍ଗେ ମିଳି ।
ବଶିଷ୍ଠ ତନୟେ କୋପଭରେ ପରଜ୍ୱଳି ॥ ୩୨
ଭାଷିଲେ ନିଷ୍ଠୁର ଅତି କଠୋର ବଚନ ।
ଅଧର କମ୍ପାଇ କୋପେ ଅରୁଣ ନୟନ ॥ ୩୩
ଶୁଣି ଶିଷ୍ୟଙ୍କ ବଚନ ବିଶ୍ୱାମିତ୍ର ମୁନି ।
କ୍ରୋଧେ ଅସମ୍ଭାଳ ହୋଇ ବୋଇଲେ ଏ' ବାଣୀ ॥ ୩୪
ଉଗ୍ର ତପ ସାଧନେ ମୁଁ ଅଛି ବ୍ରତୀ ହୋଇ ।
ଦୁର୍ଭାବନା ତଳେ ହେଲେ ମୋତେ ଛୁଇଁ ନାହିଁ ॥ ୩୫
ତଥାପି କୁଳପାଂଶୁଳ ଏ' ବଶିଷ୍ଠ ସୁତେ ।
ମିଥ୍ୟା ଅପବାଦ ଦେଇ ନିନ୍ଦୁଛନ୍ତି ମୋତେ ॥ ୩୬
ସେ ପାପେ ସକଳେ ଭସ୍ମ ହୋଇବେ ନିଶ୍ଚିତ ।
ସତ୍ୟ ଯେବେ ଧର୍ମବଳ ଅଛି ମୋ' ସଞ୍ଚିତ ॥ ୩୭
ଆଜ ସେହୁ କାଳପାଶେ ହୋଇଣ ବନ୍ଧନ ।
ପ୍ରବେଶିବେ ଯାଇ ରବିନନ୍ଦନ ସଦନ ॥ ୩୮
ସପ୍ତଶତବର୍ଷ ହୀନ ମୁଷ୍ଟିକ ଜାତିରେ ।
ଜନମ ଲଭି ବଞ୍ଚିବେ କୁକୁର ମାଂସରେ ॥ ୩୯
ଚିରକାଳ ଜଗି ମୃତ ଶବ ନେବେ ଧନ ।
କାଟିବେ ସକଳେ ଯେଣୁ କଲେ ଦୁର୍ବଚନ ॥ ୪୦

ପାପାତ୍ମଣ ମହୋଦୟ୍ ନିଷାଦ ଯୋନିରେ ।
ଭୁଞ୍ଜି ସେହୁ ପାପଫଳ ଆପଣା କର୍ମରେ ॥ ୪୧
ପ୍ରାଣୀ ହିଂସା ହେଉ ତାର ଜୀବନର ଧର୍ମ ।
ଅନାର୍ଯ୍ୟ ଆତ୍ମରେ ସେହୁ ସାଧୁ ସବୁ କର୍ମ ॥ ୪୨
ବଶିଷ୍ଠ ପୁତ୍ରଙ୍କ ବୋଲେ ସେହୁ ନରାଧମ ।
ବିନା ଦୋଷେ ନିନ୍ଦା ମୋତେ କଲ ଯେଉଁ କର୍ମ ॥ ୪୩
ସେହିଁ ଦୋଷେ ଏ' ଜଗତେ ହେଉ ସେ ନିନ୍ଦିତ ।
ଭୋଗ କରୁ ନରକ ସେ ପୂତିଗନ୍ଧଯୁକ୍ତ ॥ ୪୪
ଦୁର୍ଗତ ସେ ମହୋଦୟ୍ ଲଭୁ ଏ' ଦୁର୍ଗତି ।
ବିନା ଦୋଷେ ଯେଣୁ ମୋତେ ନିନ୍ଦିଲ ସେ ସତି ॥ ୪୫
କ୍ରୋଧେ ଅଗ୍ନିଶର୍ମା ହୋଇ କୁଶିକ ନନ୍ଦନ ।
ମହାମୁନି ବିଶ୍ୱାମିତ୍ର ହୋଇଲେ ମଉନ ॥ ୪୬
ସେ ରାଜର୍ଷି ଶ୍ରୀଚରଣେ କରି ପ୍ରଣିପାତ ।
ପୁରୁଷୋତ୍ତମ ଭଣେ ବାଳକାଣ୍ଡ ଗୀତ ॥ ୪୭

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକୋନଷଷ୍ଟିତମ ସର୍ଗ ।



# ଷଷ୍ଟିତମ ସର୍ଗ

## ବିଶ୍ୱାମିତ୍ରଙ୍କ ନବସ୍ୱର୍ଗ ନିର୍ମାଣ ।

ଶୁଣ ଏ' ଅପୂର୍ବ ଗାଥା ଆହେ ରାମଚନ୍ଦ୍ର !
ବୋଲନ୍ତି ଆନନ୍ଦ ମନେ ଋଷି ଶତାନନ୍ଦ ॥ ୧
ମହୋଦୟ୍ ସହିତେ ସକଳ ଋଷିପୁତ୍ର ।
ବିଶ୍ୱାମିତ୍ର ଶାପେ ଯହୁଁ ହେଲେ ଭସ୍ମୀଭୂତ ॥ ୨
ମହାତେଜସ୍ୱୀ ସେ ଋଷି କୁଶିକ ନନ୍ଦନ ।
ବୋଲନ୍ତି ଋଷିଙ୍କ ମଧ୍ୟେ ମଧୁର ବଚନ ॥ ୩

ଆହେ ମୁନିଗଣ ! ଶୁଣ ମୋହର କଥନ ।
ଇକ୍ଷ୍ୱାକୁ-କୁଳ-ଭୂଷଣ ତ୍ରିଶଙ୍କୁ ରାଜନ ॥ ୪
ମହାଦାତା ଧାର୍ମିକ ପ୍ରବର ସେ ନରେଶ ।
ଆସିଅଛୁ ମୋ' ଶରଣେ ଘେନ କେତେ ଆଶ ॥ ୫
ବଳନ୍ତୁ ମାନସେ ତା'ର ଏମନ୍ତ ବିଚାର ।
ସ୍ୱଦେହରେ ଯିବ ନୃପ ଅମରଙ୍କ ପୁର ॥ ୬
ତେଣୁ ମୋ' ଅନୁଜ୍ଞା ଘେନ ଆହେ ମୁନିଗଣ !
ତାଙ୍କ ପୁଣ୍ୟ ଅର୍ଥେ କର ଯଜ୍ଞ ଅନୁଷ୍ଠାନ ॥ ୭
ଶୁଣି ବିଶ୍ୱାମିତ୍ର ବାଣୀ ସର୍ବ ମୁନିଗଣ ।
ଧୀର ମନେ ଉପଦେଶ କଲେ ବିଚାରଣ ॥ ୮
ଏହୁ ମୁନି ବିଶ୍ୱାମିତ୍ର ମହାକୋପୀ ଜନ ।
ଯାହା ସେ ବୋଲଇ ତାହା କର ହେ ସାଧନ ॥ ୯
ନୋହିଲେ ଅନର୍ଥ ଉଆଇବ ଅକାରଣ ।
ତେଣୁ ସେ ଭଣଇ ଯାହା କର ମୁନିଗଣ ॥ ୧୦
ଅଗ୍ନି ତୁଲ୍ୟ ତେଜଶାଳୀ ଏହୁ ତପୋଧନ ।
ନ କଲେ ତାଙ୍କ ବଚନ ହେବେ କୋପମନ ॥ ୧୧
ସେହି ଶାପେ ହେବ ନାନା ଅନିଷ୍ଟ ସାଧନ ।
ତେଣୁ ଯଜ୍ଞ ସମାରମ୍ଭ କର ମୁନିଗଣ ॥ ୧୨
ଯେବଣ ଯଜ୍ଞରେ ଏହୁ ଇକ୍ଷ୍ୱାକୁ ରାଜନ ।
ଆପଣା ଶରୀରେ ଯିବ ଅମର ଭୁବନ ॥ ୧୩
ଏମନ୍ତ ବିଚାରି ସର୍ବ ଯାଜ୍ଞିକ ପ୍ରବର ।
ତ୍ରିଶଙ୍କୁ ସ୍ୱର୍ଗଗମନେ କଲେ ଯଜ୍ଞଦ୍ୱାର ॥ ୧୪
ଯେ ଯାହା କର୍ମ ସାଧନେ ହୋଇ ତତପର ।
ଆରମ୍ଭିଲେ ଶୁଦ୍ଧଚିତ୍ତେ ଯଜ୍ଞର ସମ୍ଭାର ॥ ୧୫
ମହାତେଜା ବିଶ୍ୱାମିତ୍ର ସେ ଯଜ୍ଞେ ଯାଜକ ।
ପଦେ ଅଧିଷ୍ଠିତ ହେଲେ ହେ ରଘୁନାୟକ ! ॥ ୧୬
ଆବର ଋତ୍ୱିଜେ କଲେ ମନ୍ତ୍ର ଉଚ୍ଚାରଣ ।
କଳ୍ପଶାସ୍ତ୍ର ମତେ ଯାହା ଯଜ୍ଞର ବିଧାନ ॥ ୧୭

ବିଧିପୂର୍ବ କରି ଋଷିଗଣେ ଯଜ୍ଞ କଲେ ।
ବେଦବିଧି ମତେ ଦେବଗଣେ ଆମନ୍ତ୍ରିଲେ ॥ ୧୮
ମହାତପସ୍ୱୀ କୌଶିକ ଆପଣା ଶକ୍ତିରେ ।
ମନ୍ତ୍ର ଉଚ୍ଚାରି ଦେବଙ୍କୁ ପୂଜିଲେ ଯଜ୍ଞରେ ॥ ୧୯
କିନ୍ତୁ ଆହେ ରଘୁବର ! ଶୁଣ ଦେଇ ମନ ।
ନଇଲେ ଯଜ୍ଞକୁ ନିମନ୍ତ୍ରିତ ଦେବଗଣ ॥ ୨୦
ଯଜ୍ଞଭାଗ ଯଥାସ୍ଥାନେ ରହିଲା ସେଠାରେ ।
ଗ୍ରହଣ ନ କଲେ ଦେବେ ବିସ୍ମର ମନରେ ॥ ୨୧
ତହୁଁ ମହାକ୍ରୋଧେ ବିଶ୍ୱାମିତ୍ର ତପସ୍ୱୀ ।
ବୋଇଲେ ରାଜନେ କୋପେ ବଚନ ଉଚ୍ଚାରି ॥ ୨୨
ହେ ତ୍ରିଶଙ୍କୁ ! ଦେଖ ମୋର ତପ ପରାକ୍ରମ ।
ଯେଉଁ ବଳେ ତୁମ୍ଭଙ୍କୁ ପେଷିବି ସ୍ୱର୍ଗଧାମ ॥ ୨୩
ନଇଲେ ଯଜ୍ଞକୁ ଦେବେ ଘେନ ନିମନ୍ତ୍ରଣ ।
କରିବି ମୁଁ ଅମରଙ୍କ ଅଭିମାନ ଚୂର୍ଣ୍ଣ ॥ ୨୪
ଯଦି ମୋର ଅଛି କିଛି ତପସ୍ୟା ପ୍ରଭାବ ।
ସେ ସକାଶୁଁ ତୁମ୍ଭେ ନିଶ୍ଚେ ସୁଫଳ ଲଭିବ ॥ ୨୫
ସଶରୀରେ ଯିବ ନୃପ ! ଅମର ଭୁବନେ ।
ବୃଥା ଅଭିମାନ କରୁଥା'ନ୍ତି ଦେବଗଣେ ॥ ୨୬
ଏମନ୍ତ କହିଣ ବିଶ୍ୱାମିତ୍ର ମୁନିବର ।
ଆପଣା ଶକ୍ତିରେ କଲେ ମନ୍ତ୍ରକୁ ଉଚ୍ଚାର ॥ ୨୭
ସେହି ମନ୍ତ୍ରବଳେ ପାପୀ ତ୍ରିଶଙ୍କୁ ରାଜନ ।
ସର୍ବ ସମକ୍ଷେ ସ୍ୱର୍ଗକୁ କଲେକ ଗମନ ॥ ୨୮
ତ୍ରିଶଙ୍କୁ ପ୍ରବେଶ ହୋନ୍ତେ ଅମରଭୁବନେ ।
ଦେଖି ତାଙ୍କୁ ବିସ୍ମିତ ହୋଇଲେ ଦେବଗଣେ ॥ ୨୯
ବୋଇଲେ ମଘବାନଙ୍କୁ ସକଳ ବାରତା ।
ତା' ଶୁଣି କୋପେ ଅସ୍ଥିର ହୋଇ ବୃତ୍ରହନ୍ତା ॥ ୩୦
ଭାଷିଲେ ଧିକ୍କାର ବାଣୀ ଶୁଣ ରଘୁରାଣ !
ଶୁଣି ସେ ବଚନ ଭୟେ କମ୍ପିଲେ ରାଜନ ॥ ୩୧

କୋପଭରେ ଶଚୀପତି ବୋଇଲେ ବଚନ ।
ଆରେ ମୂର୍ଖ ତ୍ରିଶଙ୍କୁ ତୋ' ଚିତ୍ତେ ନାହିଁ ଜ୍ଞାନ ॥ ୩୨
ବାମନ ହୋଇ ଚନ୍ଦ୍ରକୁ ବଢ଼ାଉଛୁ କର ।
ଅଧମ ସମାଜେ ଗଣ୍ୟ ହୋଇବୁ ପାମର ॥ ୩୩
ଅମର ଭୁବନେ ତୋର ନାହିଁ ଅଧିକାର ।
ରେ କଳଙ୍କି ! ବିଳମ୍ବ ନ କର ଶୀଘ୍ର ଚଳ ॥ ୩୪
ଗୁରୁ ଅଭିଶାପେ କ୍ଷୀଣ ହୋଇଛି ତୋ' ପୁଣ୍ୟ ।
ତେଣୁ ତୁ ଚଣ୍ଡାଳ ବେଶେ ବୁଲୁଛୁ ରାଜନ ॥ ୩୫
ଯେଉଁ ମୂର୍ଖ ଆସିଛୁ ତୁ ଅମରଧାମରେ ।
ସେ କଳଙ୍କ ପଣେ ବେଗେ ଯାଅ ମର୍ତ୍ତ୍ୟପୁରେ ॥ ୩୬
ଅଧୋମୁଖ ହୋଇ ତୁ କ୍ଷିତିରେ ପଡ଼ ଯାଇ ।
ଏହା ଶୁଣି ତ୍ରିଶଙ୍କୁ ରଡ଼ିଲ ତ୍ରାହି ତ୍ରାହି ॥ ୩୭
ଆହେ କୁଶିକନନ୍ଦନ ! ନ କର ହେ ହେଳା ।
ଦେଖୁଁ ଦେଖୁଁ ତୁମ୍ଭ ଆଗେ ବୁଡ଼ିଲା ମୋ' ଭେଳା ॥ ୩୮
ଅନାଥ ହୋଇଣ ଏବେ ଭୂମିରେ ପଡ଼ିବ ।
କାଳକାଳକୁ ଏ' ଅପଯଶ ରହିଥିବ ॥ ୩୯
ଆହେ ମୁନିବର ! ବେଗେ କର ପରିତ୍ରାଣ ।
ନୋହିଲେ ଭାସିଲି ଏହି ସଂସାର ଦୁଃଖେଣ ॥ ୪୦
ଶୁଣିଲେ କୌଶିକ ତ୍ରିଶଙ୍କୁର ଆର୍ତ୍ତସ୍ୱର ।
ମହାକୋପେ ମୁନିବର ହୋଇଣ ଅସ୍ଥିର ॥ ୪୧
ବୋଇଲେ ଆହେ ତ୍ରିଶଙ୍କୁ ! ରୁହ ସେହିଠାଇଁ ।
ତୁମ୍ଭ ଲାଗି ନୂତନ ସ୍ୱରଗ ରଚିବଇଁ ॥ ୪୨
ଦେଖିବ ଏ' ଦେବବଳ କେତେଢ଼େ ବଳୀୟାନ ।
ଏକ୍ଷଣି ମୋ' କ୍ରୋଧାନଳେ ହୋଇବେ ଜଳନ୍ତ ॥ ୪୩
ଏମନ୍ତ ଭାଷିଣ କୋପେ ବିଶ୍ୱାମିତ୍ର ମୁନି ।
ଦକ୍ଷ ପ୍ରଜାପତି ସମ ଆପଣାକୁ ମଣି ॥ ୪୪
ଅନ୍ତରୀକ୍ଷ ଦକ୍ଷିଣ ଭାଗରେ ମୁନିବର ।
ପ୍ରଥମେ ରଚିଲେ ସେହୁ ସପ୍ତର୍ଷି ମଣ୍ଡଳ ॥ ୪୫

ଏଥନ୍ତେ ରଚିଲେ ମୁନି ଅନ୍ୟ ତାରାଗଣ ।
ତଦନ୍ତେ ରଚିଲେ କୋପେ ସର୍ବ ଦେବଗଣ ॥ ୪୬
ନୂତନ ଇନ୍ଦ୍ର ସୃଜନ କଲପି ମାନସେ ।
ବୋଇଲେ କୌଶିକ ବିଶ୍ୱାମିତ୍ର ମହାରୋଷେ ॥ ୪୭
ମୋ' ନୂତନ ସ୍ୱର୍ଗେ ଇନ୍ଦ୍ର କିବା ପ୍ରୟୋଜନ ।
ଅଧିକାର କରିବଇଁ ମଘବା ଆସନ ॥ ୪୮
ଏସନ ବିଚାରି ମୁନି ମନର ହରଷେ ।
ଓଷି ଦେବତା ରଚିଲେ ନବସ୍ୱର୍ଗବାସେ ॥ ୪୯
ଦେଖି ମୁନିଙ୍କ ଅଦ୍ଭୁତ କରମ ସକଳ ।
ଋଷି ଦେବଗଣେ ମନେ ହୋଇଣ ବିକଳ ॥ ୫୦
ସର୍ବେ ଆସି କୁଶିକନନ୍ଦନ ପାଶେ ମିଳି ।
ବୋଇଲେ ବିମାତସ୍ୱରେ ମନରେ ବିଚାରି ॥ ୫୧
ଆହେ ମହାଭାଗ ! ହୀନ ତ୍ରିଶଙ୍କୁ ରାଜନ ।
ଗୁରୁ ଅଭିଶାପେ ଏହୁ ହରାଇଛୁ ପୁଣ୍ୟ ॥ ୫୨
ସଶରୀରେ କପରି ସେ ଯିବ ସ୍ୱର୍ଗଧାମେ ।
ଏଥିକୁ କର୍ମାଇଁ ରୋଷ କରୁଅଛ ମନେ ॥ ୫୩
ଶୁଣି ଦେବଋଷିଙ୍କର ବଚନ ଅମୃତ ।
ବୋଇଲେ ବିଚାରି ମନେ କୁଶିକଙ୍କ ସୁତ ॥ ୫୪
ଆହେ ସୁରଗଣ ! ତୁମ୍ଭ ବଚନ ମହତ ।
ଶୁଣିଲି ସକଳ ଯାହା ବୋଇଲ ଜଦନ୍ତ ॥ ୫୫
କିନ୍ତୁ ମୋ' ପ୍ରତିଜ୍ଞା ବାକ୍ୟ ଶୁଣ ଦେବଗଣ !
ସ୍ୱରଗେ ବସିବ ଏହୁ ତ୍ରିଶଙ୍କୁ ରାଜନ ॥ ୫୬
ଏ' ବଚନ ମିଥ୍ୟା ମୋର କେବେହେଁ ନୋହିବ ।
ଏଥିକୁ ବିଚାର କର ଆହେ ଋଷିଦେବ ! ॥ ୫୭
ତ୍ରିଶଙ୍କୁ ନୃପତି ସଦା ଲଭୁ ସ୍ୱର୍ଗସୁଖ ।
ହୋଇଥିବରୁ ସଶରୀରେ ନୋହୁ ଏ' ବିମୁଖ ॥ ୫୮
ଯେ ନକ୍ଷତ୍ରଗଣ ମୁହିଁ କରିଛି ନିର୍ମାଣ ।
ରହୁ ଅନ୍ତରୀକ୍ଷେ ସଦା ଏହା ମୋ' ଘୋଷଣ ॥ ୫୯

ମୋ’ ସୃଷ୍ଟି ସୃଜନେ ଯାହା ହୋଇଛୁ ଉଆଣ ।
ଅକ୍ଷୟ ହେଉ ସକଳ ଆହେ ଦେବଗଣ ! ॥ ୬୦
ସର୍ବଦେବେ ଏ’ ମୋ’ ବାକ୍ୟ କର ଅନୁମତ ।
ତେବେ ମୁଁ ତେଜିବ ଏହୁ ବିପରୀତ ବ୍ରତ ॥ ୬୧
ଏହା ଶୁଣି ଦେବଗଣ ହୋଇଣ ହରଷ ।
ବୋଇଲେ ହେ ମୁନିବର ! ରହୁ ତବ ଯଶ ॥ ୬୨
ବୈଶ୍ୱାନର ପଥ ଅନ୍ତେ ଏ’ ନକ୍ଷତ୍ରଗଣ ।
ପ୍ରକାଶନ୍ତୁ ଅନ୍ତରୀକ୍ଷେ ଆହେ ମୁନିରାଣ ! ॥ ୬୩
ସେ ନକ୍ଷତ୍ରମାଳା ମଧ୍ୟେ ଶିର ନତ କରି ।
ବିରାଜ୍ ତ୍ରିଶଙ୍କୁ ତହିଁ ବିନୟ ଆଚରି ॥ ୬୪
ଦେବଗଣ ତୁଲ୍ୟ ଏହୁ କରୁ ସୁଖ ଭୋଗ ।
ନକ୍ଷତ୍ରେ ଚଳନ୍ତୁ କରି ଏହା ଅନୁରାଗ ॥ ୬୫
ଏତେ ଭଣି ଦେବଗଣ ଋଷିଙ୍କର ତୁଲେ ।
ମହର୍ଷି ବିଶ୍ୱାମିତ୍ରଙ୍କୁ ସାଦରେ ନମିଲେ ॥ ୬୬
ସ୍ତୁତି ବଚନ ଭାଷିଣ ସର୍ବ ଦେବଗଣେ ।
ପ୍ରଶଂସିଲେ ସହରଷେ କୁଶିକ ନନ୍ଦନେ ॥ ୬୭
ତଦନ୍ତେ ଆହେ ଶ୍ରୀରାମ ! ଦେବ ଋଷିଗଣ ।
ଯେଉଁଠାରେ ସେ ଯଜ୍ଞଭାଗ ଯେ ଯାହା ରୁଚେଣ ॥ ୬୮
ଯଜ୍ଞଶେଷେ ସର୍ବଦେବେ ଋଷିଗଣ ସାଥେ ।
ଚଳିଲେ ଆପଣା ସୁଖେ ଅନ୍ତରୀକ୍ଷ ପଥେ ॥ ୬୯
ଶୁଣିଲ ତ ରାମଭଦ୍ର ! କୌଶିକ ଚରିତ ।
ଯା’ ଶ୍ରବଣେ ନରେ ହୋ’ନ୍ତି ପରମ ପବିତ୍ର ॥ ୭୦
ବିଶ୍ୱାମିତ୍ର ଚରିତ ଏ’ ସୁଧାମୟ ବାଣୀ ।
ଭବସାଗର ତରଣେ ସୁଦୃଢ଼ ତରଣୀ ॥ ୭୧
ମହାମୁନି ବିଶ୍ୱାମିତ୍ର ଚରଣେ ପ୍ରଣତି ।
ନିବେଦି ପୁରୁଷୋତ୍ତମ ଗାଏ ରାମଗୀତି ॥ ୭୨

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଷଷ୍ଟିତମ ସର୍ଗ ।



# ଏକଷଷ୍ଟିତମ ସର୍ଗ

## ଶୁନଶେପ ଚରିତ ।

ବୋଲନ୍ତି ଜନକ ପୁରୋହିତ ଶତାନନ୍ଦ ।
ଶୁଣ ଆହେ ଶ୍ରୀରଘୁନନ୍ଦନ ରାମଚନ୍ଦ୍ର ॥ ୧
ଯଜ୍ଞ ଶେଷେ ଋଷିଗଣ କରନ୍ତେ ଗମନ ।
ମହାତେଜସ୍ୱୀ କୌଶିକ ଭଣିଲେ ଏସନ ॥ ୨
ଆହେ ମୁନିଗଣ ! ଏହି ଦକ୍ଷିଣ ଦିଗରେ ।
ତପସ୍ୟା କରନ୍ତେ ବହୁ ବିଘ୍ନ ହୁଏ କାଳେ ॥ ୩
ଏଣୁ ମୁଁ ଯିବଇ ଚତ୍ତେ ଅନ୍ୟ ସ୍ଥଳେ ଯାଇ ।
ମନ ସୁଖେ ଜପ ତପ ଯାଗ ରଚିବଇଁ ॥ ୪
ପଶ୍ଚିମ ଦିଗରେ ଅଛି ପ୍ରଜାପତି ସ୍ଥାନ ।
ମନୋହର ଅଟେ ଯେହୁ ଦିବ୍ୟ ତପୋବନ ॥ ୫
ପୁଷ୍କର ଯା' ନାମ ଲୋକେ ହୋଇଛି ବିଖ୍ୟାତ ।
ସେହି ବନେ ଆଚରିବି ସୁଖେ ମୁହିଁ ବ୍ରତ ॥ ୬
ଭଣି ଏସନ ବଚନ କୁଶିକ ନନ୍ଦନ ।
ଚଳିଲେ ପୁଷ୍କର କ୍ଷେତ୍ରେ ହୋଇ ହୃଷ୍ଟମନ ॥ ୭
ଫଳମୂଳ ଭୁଞ୍ଜି ତହିଁ ସନ୍ତୋଷ ମାନସେ ।
ଆରମ୍ଭିଲେ ମହାତପ ରହି ପୁଣ୍ୟ ଦେଶେ ॥ ୮
ଏ' କାଳେ ଅଯୋଧ୍ୟା ନୃପ ଅମ୍ବରୀଷ ନାମ ।
ଯଜ୍ଞ କରିବାକୁ ମନେ ସଙ୍କଳ୍ପ କରିଣ ॥ ୯
ଆରମ୍ଭିଲେ ମହାଯାଗ ଘେନି ପୁରୋହିତ ।
ଏ' କାଳେ ଯଜ୍ଞ ପଶୁକୁ ଦେବ ପୁରୁହୂତ ॥ ୧୦
ଅଲକ୍ଷ୍ୟେ ଚୋରଇ ନେଲେ ହୋଇଣ ବମନ ।
ତା' ଦେଖି ଋତ୍ୱିଜବର ଭଣିଲେ ଏସନ ॥ ୧୧
ଆହେ ନୃପ ! ଯଜ୍ଞପଶୁ ହେଲା ଅପହୃତ ।
ତୁମ୍ଭ ଦୁର୍ନୀତିରୁ ଏହା ଘଟିଲା ନିଶ୍ଚିତ ॥ ୧୨

ଯଜ୍ଞପଶୁ ରକ୍ଷଣେ ଯେ ନୁହଇ ସମର୍ଥ ।
ଭୁଞ୍ଜଇ ସେହୁ ଜୀବନେ ଅଶେଷ ଦୁରିତ ॥ ୧୩
ଭୀଷଣ ବିପତ୍ତି ତାକୁ କରେ ଛାରଖାର ।
ଦୁର୍ଗତି ଲଭଇ ସେହୁ ଜୀବନେ ଅପାର ॥ ୧୪
ତେଣୁ ହେ ପୁରୁଷବର ! ଆଣ ଯଜ୍ଞପଶୁ ।
ନୋହିଲେ କେମନ୍ତେ ଯଜ୍ଞ ହେବ ଫଳପ୍ରସୂ ॥ ୧୫
ହେ ନୃପତିବର ! ପଶୁ ଖୋଜି ଆଣ ବେଗ ।
ଅନ୍ୟଥା ବିଫଳ ହେବ ତୁମ୍ଭ ଯଜ୍ଞଭାଗ ॥ ୧୬
ଅଥବା ତା' ପ୍ରତି ରୂପେ ଦିଅ ନରବଳି ।
ସମୁଚିତ ବିଧି ଯାହା ଆହେ ମହାବଳୀ ! ॥ ୧୭
ଏହି ତୁମ୍ଭ ପ୍ରାୟଶ୍ଚିତ୍ତ ହେବ ନୃପବର !
ଏଥିକୁ ବିଲମ୍ବ ଶତ୍ରେ ଚଳ ହେ ସତ୍ୱର ॥ ୧୮
ପୁରୋହିତ ବଚନେ ସେ ଅମ୍ବରୀଷ ନୃପ ।
ନରପଶୁ ନିମନ୍ତେ ଲଗି କଲେ ସଙ୍କଳ୍ପ ॥ ୧୯
ଏକସହସ୍ର ଧେନୁ ମୂଲ୍ୟ ଦେଇ ନରଗଣ ।
ଯଜ୍ଞପଶୁ ନିମନ୍ତେ ଲଗି କଲେ ଅନ୍ୱେଷଣ ॥ ୨୦
ହେ ରଘୁନନ୍ଦନ ! ଦେଶ ଜନପଦ ଗ୍ରାମ ।
ନଗର ବନ ପର୍ବତେ ଖୋଜିଲେ ରାଜନ ॥ ୨୧
ପବିତ୍ର ଆଶ୍ରମ ସ୍ଥଳେ କଲେକ ଗମନ ।
ଶେଷେ ଭୃଗୁ ପର୍ବତେ ପ୍ରବେଶି ବହନ ॥ ୨୨
ଦେଖିଲେ ପତ୍ନୀପୁତ୍ରଙ୍କ ଗହଣେ ଋଚିକ ।
ବସିଛନ୍ତି ସେ ପର୍ବତ ପ୍ରଦେଶରେ ଏକ ॥ ୨୩
ଅମିତ ବିକ୍ରମୀ ରାଜର୍ଷି ଅମ୍ବରୀଷ ।
ସେ ମୁନିଙ୍କ ପଦେ ନମି ଇଚ୍ଛିଲେ ଆଶିଷ ॥ ୨୪
ତଦନ୍ତେ ଭାଷିଲେ ନୃପ ଶୁଭ ସମାଚାର ।
ବିନୟେ କରଯୋଡ଼ି ବଚନ ମଧୁର ॥ ୨୫
ଏକ ଲକ୍ଷ ଧେନୁ ମୁଁ ଦେବଇଁ ମୁନିବର !
ପୁତ୍ର ଏକ ଦେବଟି କି ଯଜ୍ଞକୁ ମୋହର ॥ ୨୬

ଯଜ୍ଞପଶୁ ହଜାଇ ମୁଁ ହୁଅଇ ଉଚ୍ଛନ୍ନ ।
ତେଣୁ ଆହେ ମୁନିବର ! କର ସୁକଲ୍ୟାଣ ॥ ୨୭
ସେ ପୁତ୍ର ହୋଇବ ମୋର ଯଜ୍ଞ ଯଜ୍ଞପଶୁ ।
ସେ ସିଦ୍ଧିରେ ମୁହିଁ ନଷ୍ଟେଁ ହେବ ଫଳପ୍ରସୂ ॥ ୨୮
ଭ୍ରମିଲିଣି ନଗ୍ର ଗ୍ରାମ ଜନପଦ ବନ ।
କାହିଁ ନ ପାଇଲି ଯଜ୍ଞପଶୁ ଋଷିଗଣ ! ॥ ୨୯
ତେଣୁ ପ୍ରଣମୁଛି ମୁଁ ମାଗଇ ପୁତ୍ରଦାନ ।
କୃତକୃତ୍ୟ ହେବ ମୁନି ! ଲଭି ସୁକଲ୍ୟାଣ ॥ ୩୦
ଏସନ ବୋଲନ୍ତେ ନୃପ ସେ ଋଚୀକ ମୁନି ।
ବୋଲନ୍ତି ସଧୀରେ ଆହେ ଶୁଣ ନୃପମଣି ! ॥ ୩୧
ଜ୍ୟେଷ୍ଠ କୁମର ମୋହର ଅତି ପ୍ରିୟତମ ।
ମୂଲ୍ୟ ବିନିମୟେ ନ ଦେବି ସେ ପୁତ୍ରରତ୍ନ ॥ ୩୨
ଋଚୀକ ବଚନ ଶୁଣି ବୋଲେ ମୁନିପତ୍ନୀ ।
ଆହେ ପ୍ରଭୋ ! ଯେନ ମୋର ଏକଇ ଦୟିତ ॥ ୩୩
ଭାଷିଲେ ଭାର୍ଗବ ଯାହା ଯଥାର୍ଥ ବଚନ ।
ଜ୍ୟେଷ୍ଠପୁତ୍ରେ ନ ଦେବେ ସେ ଦେଲେ ଧେନୁଦାନ ॥ ୩୪
ଜ୍ୟେଷ୍ଠପୁତ୍ର ଅଟେ ସଦା ଧର୍ମର ନନ୍ଦନ ।
ଅଟଇ ସେ ପୁଣ ଆତ୍ମ ପିଣ୍ଡର କାରଣ ॥ ୩୫
ମୂଲ୍ୟ ବିନିମୟେ ତାକୁ ଜନମ ପିଅର ।
ନ ତେଜନ୍ତି ନିଜ ପାଂଶୁ ସତ୍ୟ ଏହୁ ଗିର ॥ ୩୬
ଜାଣନ୍ତି ମହର୍ଷି ଏହୁ କନିଷ୍ଠ କୁମର ।
ଅଟଇ ମୋ' ପ୍ରିୟତମ ପୁତ୍ରରତ୍ନସାର ॥ ୩୭
ଆହେ ନରପତି ! ଶୁଣ ଏ' ସତ୍ୟ ବଚନ ।
ମୂଲ୍ୟ ବିନିମୟେ ନ ଦେବି ମୋ' ଜୀବଧନ ॥ ୩୮
କନିଷ୍ଠ କୁମର ଅଟେ ମୋ' ଜୀବଜୀବନ ।
କେବେ ହେଁ ନ ଦେବି ତା'ରେ ଦେଲେ ଯେତେ ଧନ ॥ ୩୯
ଆହେ ନରପତି ! ଶୁଣ ସୁଜାଣ ସିହାଣ ।
ପିତାର ଯେସନ ପ୍ରିୟ ବରିଷ୍ଠ ସନ୍ତାନ ॥ ୪୦

ଅନୁରୂପ ପ୍ରିୟ ଅଟେ କନିଷ୍ଠ ମୋହର ।
ମାତା ହୋଇ ନ ଦେବଇଁ ତେଣୁ ସେ କୁମର ॥ ୪୧
ଆପଣାର ସାଧ ମତେ କନିଷ୍ଠ କୁମରେ ।
ସୁରକ୍ଷା କରିବ ନୃପ ! ଶୁଣ ସୁଚିତ୍ତରେ ॥ ୪୨
ଇକ୍ଷ୍ୱାକୁ କୁଳଭୂଷଣ ହେ ରଘୁନନ୍ଦନ !
ଶୁଣି ଏ' ବଚନ ତାଙ୍କ ମଧ୍ୟମ ନନ୍ଦନ ॥ ୪୩
ଶୁନଃଶେପ ନାମ ଯା'ର ଅଟନ୍ତି ସୁଶୀଳ ।
ଭାଷିଲେ ଅମ୍ବରୀଷଙ୍କୁ ବଚନ ମଧୁର ॥ ୪୪
ଶୁଣିଲ ତ ନୃପବର ! ପିତାଙ୍କ ଉତ୍ତର ।
ନ ଦେବେ ସେ ଜ୍ୟେଷ୍ଠସୁତେ ଧନଦାନେ ୱାର ! ॥ ୪୫
ମାତା ମୋ' ବୋଇଲେ ତାଙ୍କ କନିଷ୍ଠନନ୍ଦନ ।
ପ୍ରାଣରୁ ଅଧିକ ସେହୁ ଅଟେ ପ୍ରିୟତମ ॥ ୪୬
ତାହାଙ୍କୁ ନ ଦେବେ ସେହୁ ମୂଲ୍ୟ ବଦଳରେ ।
ତେଣୁ ହେ ରାଜନ ! ଶୁଣ କହେଁ ମୁଁ ନିଶ୍ଚୟେ ॥ ୪୭
ମଧ୍ୟମ କୁମର ମୁହିଁ ପିତା ମାତାଙ୍କର ।
ତେଣୁ ମୁଁ ବିକ୍ରୟ ଯୋଗ୍ୟ ଆହେ ନୃପବର ! ॥ ୪୮
ମୂଲ୍ୟ ବଦଳରେ ମୋତେ କର ହେ ଗ୍ରହଣ ।
ଯଜ୍ଞପଶୁ ହେବାକୁ ମୁଁ ଅଟଇ ଭାଜନ ॥ ୪୯
ସାଧିବ ମୁଁ ତବ ମନୋରଥ ହେ ନରେଶ !
ଉପଯୁକ୍ତ ମୂଲ୍ୟେ ପିତାମାତା ହେବେ ତୋଷ ॥ ୫୦
ତେଣୁ ନ କର ବିଳମ୍ବ ହେ ନୃପ ଶାର୍ଦ୍ଦୂଳ !
ମୋତେ ଯଜ୍ଞପଶୁ ରୂପେ ନେଇ ଏଥୁ ଚଳ ॥ ୫୧
ବ୍ରହ୍ମବାଦୀ ମୁନିସୁତ କହନ୍ତେ ଏସନ ।
ମନେ ମନେ ପ୍ରଫୁଲ୍ଲିତ ହେଲେ ନୃପଗଣ ॥ ୫୨
ଏକ କୋଟି ସ୍ୱର୍ଣ୍ଣମୁଦ୍ରା ଅସଂଖ୍ୟ ରତନ ।
ଏକଲକ୍ଷ ଦୁଗ୍ଧବତୀ ଧେନୁ କଲେ ଦାନ ॥ ୫୩
ମୂଲ୍ୟ ବଦଳରେ ଶୁନଃଶେପଙ୍କୁ ନେଇଲେ ।
ପ୍ରଫୁଲ୍ଲ ମାନସେ ଯଜ୍ଞସ୍ଥଳେ ଚଳିଗଲେ ॥ ୫୪

ସତ୍ୱର ଶୁନଃଶେଫକୁ ବସାଇ ରଥରେ ।
ଚଳିଗଲେ ଅମ୍ବରୀଷ ବେଗେ ନିଜ ପୁରେ ।। ୫୫
ଧନ୍ୟ ଧନ୍ୟ ଶୁନଃଶେଫ ମହା ଦୃଢ଼ବ୍ରତି ।
ପୁରୁଷୋତ୍ତମ କରଇ ତବ ପଦେ ନତି ।। ୫୬
ଅଧମ ଅରକ୍ଷ ମୁହିଁ ଆହେ ରଘୁରାଣ !
ପୂରାଅ ମୋ' ଅଭିଳାଷ ହେ ପୁରୁଷୋତ୍ତମ ! ।। ୫୭

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକଷଷ୍ଟିତମ ସର୍ଗ ।



# ଦ୍ୱିଷଷ୍ଟିତମ ସର୍ଗ

## ବିଶ୍ୱାମିତ୍ରଙ୍କ ଦ୍ୱାରା ଶୁନଃଶେଫର ସୁରକ୍ଷା ।

ମହାରାଜ ଅମ୍ବରୀଷ ଶୁନଃଶେଫ ଭୂଲେ ।
ମଧ୍ୟାହ୍ନ ସମୟେ କ୍ଷେତ୍ର ପୁଷ୍କରେ ମିଳିଲେ ।। ୧
ବିଶ୍ରାମ କଲେକ ତହିଁ ଅଯୋଧ୍ୟା ରାଜନ ।
ଏ' ସମୟେ ମହାଯଶା ଶୁନଃଶେଫ ପୁଣ ।। ୨
ଅବସର ଜାଣି ମୁନିପୁତ୍ର ସନ୍ନିଧାନେ ।
ତରଣିନ କଲା ଯାଇ ବିଶ୍ୱାମିତ୍ର ପାଦେ ।। ୩
ସ୍ୱଭାବେ କୌଶିକ ମୁନି ଅଟନ୍ତି ମାନ୍ତିକ ।
ଆତୁର ମୁନିନନ୍ଦନ ହୋଇଣ ଆକୁଳ ।। ୪
ଦୀନଭାବେ ଦୀର୍ଘଶ୍ୱାସ ଛାଡ଼ିଣି କୁମର ।
ପ୍ରଣମିଲା ବେଗେ ଯାଇ ମୁନିଙ୍କ ପୟର ।। ୫
କ୍ଷୁଧା ତୃଷାରେ ବ୍ୟାକୁଳ ଶୁନଃଶେଫ ତହିଁ ।
କୋଇଲା ମୁନି କୁମର ବଚନ ମଣାଇ ।। ୬
ମାତୃପିତୃ ହୀନ ମୁହିଁ ଆହେ ମୁନିବର !
ଅରକ୍ଷ ବ୍ରାହ୍ମଣ ସୁତେ ତୁମ୍ଭେ ରକ୍ଷାକର ।। ୭

ହେ ସର୍ବରକ୍ଷକ ଧର୍ମପାଳକ ମାତୁଳ !
ଦୀନ ଅସହାୟ ମୁହିଁ ହେଉଛି ବ୍ୟାକୁଳ ॥ ୮
ହେ ମହର୍ଷି ! ଅଟ ତୁମ୍ଭେ ଅଭୀଷ୍ଟ ଦାୟକ ।
ତପୋନିଷ୍ଠ ମୁନିଶ୍ରେଷ୍ଠ ସର୍ବ ସହାୟକ ॥ ୯
ଅଭୀଷ୍ଟ ବରଦ ଯେଣୁ ଅଟ ମୁନିବର !
ଅମ୍ବରୀଷ ଯଜ୍ଞ ସହ ମୋତେ ରକ୍ଷାକର ॥ ୧୦
ଏତେ କହି ଶୁନଶେପ ସକଳ ବୃତ୍ତାନ୍ତ ।
ବୋଇଲା ମାତୁଳ ପାଶେ ସ୍ୱଧର୍ମ ବର୍ତ୍ତନ୍ତ ॥ ୧୧
ହେ ମାତୁଳ ! ମୁନିଶ୍ରେଷ୍ଠ ! ମହାନ ସାଧକ !
ହେ ଅଭୟ ବରଦାତା ସ୍ୱଧର୍ମ ପାଳକ ! ॥ ୧୨
କୃପା କରି ଅମ୍ବରୀଷ ଯଜ୍ଞ ରକ୍ଷା କର ।
ତା' ତୁଲେ ମୋ' ସହାୟକ ହୁଅ ମୁନିବର ! ॥ ୧୩
ତୁମ୍ଭ ପ୍ରସାଦୁ ମୁଁ ଲଭେ ପରମ ଆୟୁଷ ।
ସ୍ୱଧର୍ମ ପାଳନେ ଖ୍ୟାତ ହେଉ ମୋର ଯଶ ॥ ୧୪
କଠୋର ତପ ସାଧନ କରି ହେ ମାତୁଳ !
ଲଭିବାକୁ ଇଚ୍ଛା ମୋର ସାଧନେ ସୁଫଳ ॥ ୧୫
ଏସନ କୃପା କର ହେ କୃପାନାଥ ! ମୋରେ ।
ଅସହାୟ ସନ୍ତାନରେ ରଖ ମୁନି ! ଦ୍ୱାରେ ॥ ୧୬
ପିତା ସମ ରକ୍ଷାକର ମୁଁ ତୁମ୍ଭର ସୁତ ।
ନୋହିଲେ ଅଗାଧଜଳେ ବୁଡ଼ିଲା ମୋ' ପୋତ ॥ ୧୭
ଶୁନଶେପ ମୁଖୁଁ ଶୁଣି ଏସନ ବଚନ ।
ସାନ୍ତ୍ୱନା ବହିଲେ ତୋଷେ କୁଶିକନନ୍ଦନ ॥ ୧୮
ତହୁଁ ଡକାଇଣ ମୁନି ଆପଣା ନନ୍ଦନେ ।
ଭଣିଲେ ସକଳ ପୁତ୍ରେ ସାର୍ଥକ ବଚନେ ॥ ୧୯
ଆହେ ପୁତ୍ରଗଣ । ମୋର ଜୀବନବତ୍ସଳ !
ଅରକ୍ଷ ମୁନି କୁମାରେ ତୁମ୍ଭେ ରକ୍ଷାକର ॥ ୨୦
ଯେଣୁ ତୁମ୍ଭେମାନେ ଅଟ ମୋହର ନନ୍ଦନ ।
ଆନନ୍ଦବର୍ଦ୍ଧନ ମୋର କର ପୁତ୍ରଗଣ ! ॥ ୨୧

ପରମ ସୁଗତି ଅର୍ଥେ ପୁତ୍ରଙ୍କ ଜନମ ।
ସେ ସୁଯୋଗ କରଗତ ହୋଇଛି ଏକ୍ଷଣ ॥ ୨୨
ଧର୍ମରକ୍ଷା ଅର୍ଥେ କରି ସ୍ୱ ଜୀବନ ଦାନ ।
ପିତୃବ୍ରତ ସାଧ ଆହେ କୁଳର ନନ୍ଦନ ! ॥ ୨୩
ଭାଗିନେୟ ଶୁନଃଶେପ ପ୍ରାଣରକ୍ଷା ପାଇଁ ।
ଆକୁଳ ଅନ୍ତରେ ପୁତ୍ର ! ଆସିଛି ଏ' ଧାଇଁ ॥ ୨୪
ନଶ୍ୱର ଜୀବନ ଦାନେ ଏ' ପ୍ରାଣୀ ଜୀବନ ।
ରକ୍ଷାକର ପୁତ୍ରେ ଯେବେ ଅଟ ସୁନନ୍ଦନ ॥ ୨୫
ଅଟ ତୁମ୍ଭେମାନେ ସର୍ବେ ଧର୍ମପରାୟଣ ।
ନୃପତି ଯଜ୍ଞସାଧନେ ଦିଅ ନିଜ ପ୍ରାଣ ॥ ୨୬
ଯଜ୍ଞାଗ୍ନିରେ ପଶୁ ହୋଇ ଦିଅ ଆତ୍ମାହୁତି ।
ହୋଇବେ ଯଜ୍ଞରେ ଦେବ ବୈଶ୍ୱାନର ତୃପ୍ତି ॥ ୨୭
ଉଭୟ କର୍ମ ହୋଇବ କୁଶଳେ ସାଧନ ।
ରକ୍ଷା ହେବ ମୁନିପୁତ୍ର ଯଜ୍ଞ ହେବ ପୂର୍ଣ୍ଣ ॥ ୨୮
ଆବର ଦେବତାଗଣ ହୋଇବେ ତୃପତ ।
ପିତୃ ଆଜ୍ଞା ପାଳନ ହୋଇବ ଆହେ ପୁତ୍ର ! ॥ ୨୯
ଆହେ ରାମ ରଘୁନାଥ ରଘୁକୁଳବର !
ବିଶ୍ୱାମିତ୍ର ମୁଖୁଁ ଶୁଣି ଏମନ୍ତ ବିସ୍ତର ॥ ୩୦
ମଧୁଚ୍ଛନ୍ଦ ଆଦି ସର୍ବ ମୁନିଙ୍କ ନନ୍ଦନ ।
ବୋଇଲେ ପିତାଙ୍କୁ ଅବହେଳନେ ବଚନ ॥ ୩୧
ଅଭିମାନେ ରୁଷ୍ଟ ହୋଇ ସକଳ କୁମର ।
ପିତାଙ୍କ ସମ୍ମୁଖେ କୋପେ ଦେଲେ ପ୍ରତ୍ୟୁତ୍ତର ॥ ୩୨
ଏ' କି କୁହ ପିତୃଦେବ ! ଅପ୍ରିୟ ବଚନ ।
ବନ୍ଧୁ ପୁତ୍ରେ ତେଜି ରକ୍ଷାକର ଏକ ପ୍ରାଣ ॥ ୩୩
ଶ୍ୱାନମାଂସ ହୁଏ ଯଥା ଅଗ୍ରାହ୍ୟ ଭୋଜନ ।
ବନ୍ଧୁ ସୁତେ ତେଜି ଏକ ରକ୍ଷଣ ତେସନ ॥ ୩୪
କପରି ଅପ୍ରିୟ କାର୍ଯ୍ୟ କରିବୁ ତୁମ୍ଭର ।
ଏ' ହୀନ-କର୍ମ ସାଧନେ ଇଚ୍ଛା ନାହିଁ କା'ର ॥ ୩୫
ଶୁଣି ଏ' ବଚନ ପୁତ୍ରଙ୍କର ବିଶ୍ୱାମିତ୍ର ।
କ୍ରୋଧରେ ଅରୁଣବର୍ଣ୍ଣ କଲେ ବେନି ନେତ୍ର ॥ ୩୬

କଣ୍ଠ ଗଦଗଦେ ମୁନି ଭାଷିଲେ ଏସନ ।
ଏ' ଅଧର୍ମ ବାକ୍ୟ କମ୍ପା କର ଉଚ୍ଚାରଣ ॥ ୩୭
ଧର୍ମରକ୍ଷା ଅର୍ଥେ ପୁତ୍ର ଜାତ ଏ' ଜଗତେ ।
ଜାଣିଶୁଣି ଦାରୁଣ ବେଦନା ଦେଲ ମୋତେ ॥ ୩୮
ମୋ' ଆଜ୍ଞା ଲଙ୍ଘନେ କେଉଁେ କଲ ଦୁଃସାହସ ।
ସେ ପାପେ ଲଭିବ ପୁତ୍ରେ ନର୍କ ସପ୍ତବର୍ଷ ॥ ୩୯
ବଶିଷ୍ଠଙ୍କ ପୁତ୍ର ତୁଲ୍ୟ ମୁଷ୍ଟିକ ଚଣ୍ଡାଳେ ।
ହୋଇ ଭ୍ରମୁଥାଅ ସପ୍ତବର୍ଷ ଭୂମଣ୍ଡଳେ ॥ ୪୦
ଶ୍ଵାନମାଂସ ଭକ୍ଷଣରେ ଜୀବନ ବଞ୍ଚାଅ ।
ଅମେଧ୍ୟ ଭୋଜନେ ସପ୍ତବର୍ଷ ବୁଲୁଥାଅ ॥ ୪୧
ନିଜ ପୁତ୍ରେ ଏମନ୍ତ କଠୋର ଶାପ ଦେଇ ।
ଭାଷିଲେ ମୁନି କୌଶିକ ଶୁନଃଶେଫେ ଚାହିଁ ॥ ୪୨
ରେ ନନ୍ଦନ ! ଶୁଣ ମୋର ସୁହୃଦ୍ୱାକ୍ୟ ବଚନ ।
ଯେଉଁ ବଳେ ଲଭିବୁ ତୁ ଅମୃତ ଜୀବନ ॥ ୪୩
ଯେ କାଳେ ଯୂପ କାଷ୍ଠରେ ତୋତେ ପୁରୋହିତ ।
କୁଶ ରଜ୍ଜୁରେ ବାନ୍ଧଣ ଦେବେ ଆରେ ପୁତ୍ର ! ॥ ୪୪
ରକ୍ତମାଲ୍ୟ କଣ୍ଠେ ତୋର ପିନ୍ଧାଇ ଯତନେ ।
ତୋ' ଅଙ୍ଗ ମଣ୍ଡାଇ ଦେବେ ରକ୍ତ ଚନ୍ଦନେ ॥ ୪୫
ସେ କାଳେ ତୁ ଯୂପପାଶେ ଯୋଡ଼ି ବେନିକର ।
ଇନ୍ଦ୍ର ଅଗ୍ନି ଗାଥା ଦୁଇ ପଢ଼ିବୁ ସତ୍ୱର ॥ ୪୬
ସେ ଗାଥା ଗାୟନେ ତୁଷ୍ଟ ହେବେ ବୈଶ୍ୱାନର ।
ଆଉର ସନ୍ତୁଷ୍ଟ ହେବେ ଦେବ ସୁନାସୀର ॥ ୪୭
ତେଣୁ ତୋର ମନୋବାଞ୍ଛା ହୋଇବ ପୂରଣ ।
ଲଭିବୁ ଅମୋଘସିଦ୍ଧି ଭାଗିନେୟ ଶୁଣ ॥ ୪୮
ଶୁଣ ଏ' ଅମୃତଗାଥା କୁଳର ନନ୍ଦନ !
ଏକାଗ୍ର ମାନସେ ତାହା କରିବୁ ଗାୟନ ॥ ୪୯
ସକଳ ତୋ' ଅଷ୍ଟ-ଦୋଷ ହୋଇବ ଖଣ୍ଡନ ।
ଅଭୀଷ୍ଟ ପୂରଣ ହେବ ଏ' ସତ୍ୟ ବଚନ ॥ ୫୦

ମାରୁଳଙ୍କଠାରୁ ଦୁଇ ଗାଥା ଦେଇ କରି ।
ଚଳିଗଲ ଶୁନଃଶେଫ ଯଜ୍ଞ ଦଣ୍ଡଧାରୀ ॥ ୫୧
ଆହେ ରାଜସିଂହ ! ଶୀଘ୍ର କରନ୍ତୁ ପ୍ରୟାଣ ।
ଅବିଳମ୍ବେ ଯଜ୍ଞକାର୍ଯ୍ୟ କରିବା ପୂରଣ ॥ ୫୨
ଯଜ୍ଞରେ ଦୀକ୍ଷିତ ହୋଇ ସାଧିବ ସକଳ ।
ବିଳମ୍ବ ନକର ଆହେ ଅଯୋଧ୍ୟା-ଭୂପାଳ ॥ ୫୩
ଶୁଣି ଋଷିକୁମାରଙ୍କ ମୃଦୁ ସୁବଚନ ।
ଆଳସ୍ୟ ତେଜି ଉଠିଲେ ଅମ୍ବରୀଷ ରାଣ ॥ ୫୪
ରଥ ବାହୁ ଚଳିଗଲେ ନୃପ ଧାଇଁକାରେ ।
ପ୍ରବେଶ ହୋଇଲେ ଯାଇ ଯଜ୍ଞ ମଣ୍ଡପରେ ॥ ୫୫
ସକଳ ଋତ୍ୱିଜଗଣ ଅନୁମତି ନେଇ ।
ଯଜ୍ଞ ଆରମ୍ଭିଲେ ନୃପ ସମ୍ଭାର ସଜାଇ ॥ ୫୬
ଶୁନଃଶେଫକୁ ମଣ୍ଡାଇ ରକ୍ତ ବିଭୂଷଣେ ।
ଯୂପସ୍ତମ୍ଭେ ପୃବେଷ୍ଟିତେ ବାନ୍ଧିଲେ ଯତନେ ॥ ୫୭
ଯୂପସ୍ତମ୍ଭେ ବନ୍ଦୀ ହୋଇ ଋଚିକ ନନ୍ଦନ ।
ସୁସ୍ୱରେ ଗାଇଲେ ଇନ୍ଦ୍ର ଅଗ୍ନିଙ୍କ ସ୍ତବନ ॥ ୫୮
ଏ' ରହସ୍ୟ ସ୍ତୁତି ଶୁଣି ଦେବ ପୁରନ୍ଦର ।
ସନ୍ତୋଷେ ବୋଇଲେ ହୁଅ ଦୀର୍ଘାୟୁ କୁମର ! ॥ ୫୯
ଆହେ ରାମ ରଘୁନାଥ ! ଅଯୋଧ୍ୟା ଠାକୁର !
ସେ ଯଜ୍ଞ ସାଧନେ ନୃପ ଲଭିଲେ ସୁଫଳ ॥ ୬୦
ଉତ୍ତମ ଫଳକୁ ଲଭି ଅମ୍ବରୀଷ ତେଷ ।
ଶୁନଃଶେଫ ଲଭିଲକ ପରମ ଆୟୁଷ ॥ ୬୧
ବିଶ୍ୱାମିତ୍ରଙ୍କ କୃପାରୁ ଲଭିଲ ସୁଫଳ ।
ଦୀର୍ଘାୟୁଷ ହୋଇଲ ସେ ଋଚିକ ଦୁଲାଳ ॥ ୬୨
ଶୁଣି ଏସନ ବୃତ୍ତାନ୍ତ କଉଶିକ ଋଷି ।
ଶତସହସ୍ର ବର୍ଷ ତପ ସାଧିଲେକ ବସି ॥ ୬୨
କୃପାକୁ ବିଶ୍ୱାମିତ୍ରଙ୍କ ଅଭୟ ଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମାୟଣ ଭଣେ ॥ ୬୪

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ଦ୍ୱିଷଷ୍ଟିତମ ସର୍ଗ ।

●

# ତ୍ରିଷଷ୍ଟିତମ ସର୍ଗ

## ମେନକାଙ୍କ ଦ୍ୱାରା ବିଶ୍ୱାମିତ୍ରଙ୍କ ତପୋଭଙ୍ଗ ତଥା ବ୍ରହ୍ମର୍ଷି ପଦ ଲାଗି କଠୋର ତପସ୍ୟା ।

ଶତାନନ୍ଦ କହୁଛନ୍ତି ଶ୍ରୀରାମରେ ଚାହିଁ ।
ଶୁଣ ଆହେ ବୀରବର ! ରଘୁକୁଳ ସାଇଁ ॥ ୧
ସହସ୍ର ବରଷ ଯାଏଁ ତପେ ବିଶ୍ୱାମିତ୍ର ।
ନିଷ୍ଠାରେ ଯାପିଲେ କାଳ ହୋଇ ବ୍ରତଯୁକ୍ତ ॥ ୨
ବ୍ରତ ଶେଷ ହୁଅନ୍ତେ ସେ କୁଶିକ ନନ୍ଦନ ।
ପୁଣ୍ୟତୋୟା ନଦୀଜଳେ କଲେକ ସ୍ନାହାନ ୩
ସୁପୁଣ୍ୟ ପ୍ରଭାବ ତାଙ୍କ ଜାଣି ଦେବଗଣ ।
ପିତାମହ ସଙ୍ଗେ ତହିଁ କଲେ ଆଗମନ ॥ ୪
ବିଶ୍ୱାମିତ୍ରେ ଚାହିଁ ଧୀରେ ବୋଲନ୍ତି ବିଧାତା ।
ଆହେ ପୁଣ୍ୟକର୍ମା ! ଦୂର ହେଉ ତୁମ୍ଭ ଚିନ୍ତା ॥ ୫
ଶୁଭବ୍ରତ ଫଳେ ତୁମ୍ଭେ ଶୁଣରେ କୁମର !
ଏ' ଜଗତେ ଋଷିଗଣେ ଲଭିବ ଆଦର । ୬
ତବ ଶୁଭକର୍ମ ହେଉ ଜଗତେ ବିଦିତ ।
ଘୋଷନ୍ତୁ ତୋ' ନାମ ସର୍ବେ ହୋଇ ବ୍ରତନିଷ୍ଠ ॥ ୭
ଏତେ କହି ବେଦବର ଦେବଗଣ ସେନ ।
ଚଳିଗଲେ ବ୍ରହ୍ମଲୋକେ ଆହେ ରଘୁମଣି ! ॥ ୮
ବିଶ୍ୱାମିତ୍ର ଜାଣି ନିଜ ବ୍ରତର ବୈଭବ ।
ପୁଣି ତପସ୍ୟା ସାଧନେ ହେଲେ ତତପର ॥ ୯
କଠୋର ବ୍ରତ ସାଧନେ କୁଶିକନନ୍ଦନ ।
ପୁଷ୍କର ତୀର୍ଥେ ବସିଲେ ସାଧି ଯୋଗଧର୍ମ ॥ ୧୦
ଏଥିଅନନ୍ତରେ ସୁରମୋହିନୀ ମେନକା ।
ପୁଷ୍କରତୀର୍ଥେ ସ୍ନାହାନେ ଆସିଥିଲା ଏକା ॥ ୧୧

ଅପୂର୍ବ ସୁନ୍ଦରୀ ଲାସ୍ୟମୟୀ ସୁରନାରୀ ।
ଲାବଣ୍ୟବତୀ ମୋହିନୀ କନକ ଗଉରୀ ॥ ୧୨
ଜଳେ ପ୍ରବେଶିଲା ଚଳିଁ ମେନକା ସୁନ୍ଦରୀ ।
ମାଳମେଘ କୋଳେ ଜଳା ଖେଳଇ ବିଜୁଳି ॥ ୧୩
ଦେଖି ସେ ରୂପ ଲାବଣ୍ୟ ଅଙ୍ଗର ସୌଷ୍ଠବ ।
ଋଷି ବିଶ୍ୱାମିତ୍ର ଲଭି କାମେ ପରାଭବ ॥ ୧୪
ଚେତନା ହତ ହୋଇଣ ମୁନି ବିଶ୍ୱାମିତ୍ର ।
ତତକ୍ଷଣେ ପାସୋରି ଦେଲେ ଯୋଗକ୍ଷେମ ବ୍ରତ ॥ ୧୫
କାମେ ବଶବର୍ତ୍ତୀ ହୋଇ ମହାତପୀବର ।
ହୋଇଲେ ମେନକା ପାଶେ ମଦନ କିଙ୍କର ॥ ୧୬
ସୁମଧୁର ଗିରେ ମୁନି ବୋଇଲେ ବଚନ ।
ଆଗୋ କାମମୋହିନୀ ! ମୁଁ ହେଲି କାମାଧୀନ ॥ ୧୭
ମୋ' ଆଶ୍ରମେ ରହି ବାଳେ ପୂର୍ଣ୍ଣକର ଆଶା ।
ମଦନ ସନ୍ତାପେ ଘୋରି ! ତୁ ମୋର ଭରସା ॥ ୧୮
କୃପା କରି କୃପାମୟି ! କର କାମକେଳୀ ।
ଏ' ବିଶ୍ୱବ୍ରହ୍ମାଣ୍ଡେ କେହୁ ନାହାନ୍ତି ତୋ' ସରି ॥ ୧୯
ଶୁଣି ମୁନିଙ୍କ କାକୁତି ମିନତି ବଚନ ।
କାମ ପ୍ରଦୀପ୍ତିମା ମେନା କାମେ ହେଲା ଛନ୍ନ ॥ ୨୦
ଉନ୍ମୋହି ରମଣୀମଣି ମେନକା ସୁନ୍ଦରୀ ।
ବିଶ୍ୱାମିତ୍ର ଆଶ୍ରମେ ରହିଲା ସ୍ୱରନାରୀ ॥ ୨୧
ଏମନ ପ୍ରକାରେ ଚଳିଁ ବିଶ୍ୱାମିତ୍ର ମୁନି ।
ତପ ଜପ ଧ୍ୟାନ ତେଜି ହେଲେ କାମେ ଧନୀ ॥ ୨୨
ବିଳସିଲେ ଲାବଣ୍ୟମୟୀକୁ କୋଳେ ଧରି ।
ମଦନ ବିଭ୍ରମେ ଯୋଗ ବିବେକ ବିସ୍ମରି ॥ ୨୩
ସ୍ୱହୁଁ ସ୍ୱହୁଁ ବିତିଗଲା ସମ୍ବତ୍ସର ଦଶ ।
ସୁମନ ମୋହିନୀ ମେନକାରେ ହୋଇ ବଶ ॥ ୨୪
କାମାନଳେ ଦଗ୍‌ଧ ମୁନି ଏକାକିନକରେ ।
ଜାଣି ନିଜ ଦୁର୍ବଳତା ଚିନ୍ତିଲେ ମନରେ ॥ ୨୫

ଲଙ୍କାନଢ ଶିରେ ସେତୁ କଲେକ ଈଶ୍ୱର ।
କି କଲି କି କଲି କେଡ଼େ ମନ୍ଦକର୍ମ ଘୋର ।। ୨୬
ଜାଣିଶୁଣି ଆଚରିଲି କେଡ଼େ ହୀନକର୍ମ ।
ହରାଇଲି ଶମ ଦମ ତପସ୍ୟା ସାଧନ ।। ୨୭
ନାରୀ ପ୍ରେମେ ମୋହିତ ମୁଁ ହୋଇଲି ପାମର ।
ଧିକ ଏ' ଜୀବନ ଧିକ ଧିକ ବ୍ରତ ମୋର ।। ୨୮
ସ୍ଥିର ରୂପ ମୋହେ ହେଲି କାମରେ ଅଧୀନ ।
ସପ୍ତ ବର୍ଷ ତପକ୍ଳେଶ ଭୁଲିଲି ମୁଁ ହୀନ ।। ୨୯
ଯେଉଁ ତପୋବଳେ ଥିଲା ମୋର ଅଭିମାନ ।
ସେ ତପପ୍ରଭାବ ନାରୀପାଦେ ହେଲା ମ୍ଳାନ ।। ୩୦
ଜାଣିଲି ଏ' ଦେବକୂଟ ଅଟଇ ନିଶ୍ଚିତ ।
ମୋ' ଉଗ୍ର ତପସ୍ୟା ଦେଖି ଦେବେ ହୋଇ ଭୀତ ।। ୩୧
ପେଷିଲେ ଏ' ମେନକାକୁ ମୋର ତପୋବନେ ।
ଜ୍ଞାନ ଧର୍ମ ହରାଇଲି ସୁରନାରୀ ପ୍ରେମେ ।। ୩୨
କି କରିବି କାହିଁ ଯିବି ପଡ଼ିଲି ସଙ୍କଟେ ।
ଦଶବର୍ଷ ବିତାଇଲି ପଡ଼ି ମୋହ ଗର୍ତ୍ତେ ।। ୩୩
ଏମନ୍ତ ବିଚାରି ବିଶ୍ୱାମିତ୍ର ମୁନିବର ।
ଆପଣା ମନକୁ ଧିକ୍କାରିଲେ ବାରମ୍ବାର ।। ୩୪
ଦୀର୍ଘଶ୍ୱାସ ତେଜି ମୁନି କଲେ ପଶ୍ଚାତ୍ତାପ ।
କରପୁଟେ ମୁଖପୋଛି କଲେକ ବିଳାପ ।। ୩୫
ମୁନିଙ୍କ ମାନସ ଜାଣି ସେ ସୁରସୁନ୍ଦରୀ ।
ଭୟେ ସ୍ତବ୍ଧ ହୋଇ କମ୍ପି କହେ କରଯୋଡ଼ି ।। ୩୬
କ୍ଷମ ଅପରାଧ ମୋର ଆହେ ତପୀବର !
ନ ଜାଣି କରିଛି ଦୋଷ ପଦ୍ମରେ ତୁମ୍ଭର ।। ୩୭
ନିର୍ଦ୍ଦୋଷ ନାରୀରେ ଦଣ୍ଡ ନ ଦିଅ ହେ ମୁନି !
ଶ୍ରୀପଦ୍ମରେ ଦୋଷ ମୁଁ କରିନି ଜାଣି ଶୁଣି ।। ୩୮
ଦୀର୍ଘ ଦଶବର୍ଷ ଯା'ର ପ୍ରେମେ ଥିଲେ ଲୀନ ।
ଶୁଣି ମେନକାର ଭୟେ ତରସ୍ତ ବଦନ ।। ୩୯

ମୃଦୁଳ ବଚନେ ତାଙ୍କୁ ବୋଇଲେ ମହର୍ଷି ।
ବିଳମ୍ବ ନ କର ସ୍ୱର୍ଗେ ଯାଅ ଶୁକ୍ରକେଶି ! ॥ ୪୦
ମେନକାକୁ ବିଦାୟ କରଣ ଋଷିବର ।
ବିଭ୍ରାନ୍ତ ମାନସେ ଆତ୍ମବଳେ କଲେ ସ୍ଥିର ॥ ୪୧
ତଦନ୍ତେ ନୂତନ ତପ ସାଧନ ନିମିତ୍ତ ।
ଚଳିଗଲେ ବିଶ୍ୱାମିତ୍ର ହିମବାନପ୍ରାନ୍ତ ॥ ୪୨
ନିଷ୍ଠକ ମାନସେ କଉଶିକୀ ତଟେ ବସି ।
ଦୁର୍ଜୟ ତପସ୍ୟା ଆରମ୍ଭିଲେ ମହାଋଷି ॥ ୪୩
ଏକ ସହସ୍ର ସମ୍ବତ୍ସର କଲେ ଯୋଗଧ୍ୟାନ ।
କାୟକ୍ଲେଶେ ସାଧିଲେ ସେ ଅସାଧ୍ୟ ସାଧନ ॥ ୪୪
ଦେଖି ତାଙ୍କ ଉଗ୍ରତପ ଦେବ ଋଷିଗଣ ।
ପରସ୍ପର ମିଳି ହେଲେ ବିସ୍ମୟେ ନିମଗ୍ନ ॥ ୪୫
କୁଶିକନନ୍ଦନ ବିଶ୍ୱାମିତ୍ର ମୁନିବର ।
ମହର୍ଷିପଦକୁ ଯୋଗ୍ୟ ହୋଇଲେ ନିକର ॥ ୪୬
ସର୍ବେ ମିଳି ବ୍ରହ୍ମାପାଦେ କରି ନମସ୍କାର ।
ଜଣାଇଲେ କରଯୋଡ଼ି ବିନୟେ ଉତ୍ତର ॥ ୪୭
ଆହେ ଦେବ କୃପାମୟ କରୁଣା ସାଗର !
ଅଭୟବରଦ ପ୍ରଭୁ ! ବାରେ କୃପାକର ॥ ୪୮
କଠୋର ବ୍ରତରେ ବ୍ରତୀ ହୋଇ ବିଶ୍ୱମିତ୍ର ।
ସାଧୁଅଛି ତପ ଆହେ ଅଯୋନିସମ୍ଭୂତ ! ॥ ୪୯
ମହର୍ଷି ପଦରେ ତାଙ୍କୁ କର ସୁକଲ୍ୟାଣ ।
ଉଗ୍ର ତପୋବଳେ ଯେହୁ ଅଟେ ବଳୀୟାନ ॥ ୫୦
ଦେବଋଷିଙ୍କ ବଚନ ଶୁଣି ପଦ୍ମଯୋନି ।
ମଙ୍ଗଳବାହନେ ବିଜେ କଲେ ଯହିଁ ମୁନି ॥ ୫୧
ମଧୁର ବଚନ ଭଷି ବୋଲନ୍ତି ପଦ୍ମଜ ।
ଧନ୍ୟ ଆହେ ଋଷିବର ! କୁଶିକ ଆତ୍ମଜ ॥ ୫୨
ଉଗ୍ରତପ ତେଜ ବହ ଶୁଣ ମୋ' ବଚନ ।
ପ୍ରଦାନ କରୁଛୁ ତୋତେ ମହାଋଷି ପଣ ॥ ୫୩

ପରମ ସନ୍ତୋଷେ ଏହା ଯେନ ମହାଋଷି ।
ତୁମ୍ଭ ତପଫଳେ ବର ଦେଲଇଁ ସନ୍ତୋଷି ॥ ୫୪
ଋଷିଗଣ ମଧ୍ୟେ ତୁମ୍ଭ ମହର୍ଷି ବୋଲଇ ।
ଶୁଦ୍ଧ ଆନନ୍ଦ ମାନସେ ଜିତେନ୍ଦ୍ରିୟ ହୋଇ ॥ ୫୫
ଶୁଣି ବିରଞ୍ଚି ବଚନ ମୁନି ବିଶ୍ୱାମିତ୍ର ।
କରଯୋଡ଼ି ସମ୍ଭାଷିଲେ ବଚନ ଅମୃତ ॥ ୫୬
ଆହେ କୃପାନିଧି ! ଯେବେ କୃପା କଲ ମୋତେ ।
ବ୍ରହ୍ମର୍ଷି ପଦରେ ମୋତେ ବସାଅ ତୁରିତେ ॥ ୫୭
ମୋ'ଠାରେ କରୁଣା ଯଦି ବହିଛ ହେ ତାତ !
ବ୍ରହ୍ମର୍ଷି ପଦରେ ମୋତେ କର ଅଭିଷିକ୍ତ ॥ ୫୮
ଏତିକି ମାଗୁଣି ମୋର ଆହେ ଦୟାନିଧି !
ବ୍ରହ୍ମଋଷି ପଦେ ଲଭେଁ ଜଗତେ ପ୍ରସିଦ୍ଧି ॥ ୫୯
ଶୁଣି ବିଶ୍ୱାମିତ୍ର ବାଣୀ ବିଧାତା ପୁରୁଷ ।
ସେ ପଦକୁ ଯୋଗ୍ୟ ତୁମ୍ଭେ ନୁହ ମୁନିଈଶ ! ॥ ୬୦
ଜିତେନ୍ଦ୍ରିୟ ହେବାକୁ ପ୍ରୟାସ କର ତତ୍ତ୍ୱେ ।
ତେବେ ବ୍ରହ୍ମର୍ଷିରେ ଗଣ୍ୟ ହେବ ଏ' ଜଗତେ ॥ ୬୧
ସାମାନ୍ୟ ନୁହଇ ବତ୍ସ ! ଏ' ଅକ୍ଷୟ ପଦ ।
ଜିତେନ୍ଦ୍ରିୟ ପଣେ ଲଭିପାରୁ ଏ' ସମ୍ପଦ ॥ ୬୨
ଏତେ ଭଣି ଅନ୍ତର ହୋଇଲେ ବେଦବର ।
ସଙ୍ଗେ ଯେନ ଦେବ ଯକ୍ଷ ଗନ୍ଧର୍ବ କିନ୍ନର ॥ ୬୩
ବିଧାତା ଗମନ ଶୁଣି ବିଷାଦ ଅନ୍ତରେ ।
ବିଶ୍ୱାମିତ୍ର ପୁଣି ଘୋର ତପ ଆରମ୍ଭିଲେ ॥ ୬୪
ଦୁଇଭୁଜ ଊର୍ଦ୍ଧ୍ୱେ ଟେକି ନିରାଧାରେ ରହି ।
ପବନ ଅଶନେ ଦିବା ରଜନୀ ବିତାଇ ॥ ୬୫
ଗ୍ରୀଷ୍ମକାଳେ ଚଉପାଶେ ଜାଳି ହୁତାଶନ ।
ମଧ୍ୟାହ୍ନେ ସୂର୍ଯ୍ୟଙ୍କୁ ଚାହିଁ ହେଲେ ତପେ ମଗ୍ନ ॥ ୬୬
ବରଷା କାଳେ ଆକାଶ ତଳେ ହୋଇ ଠିଆ ।
ସାଧିଲେ ବରଷକେତେ ଊର୍ଦ୍ଧ୍ୱେ ଟେକି ଗ୍ରୀବା ॥ ୬୭

ଶୀତକାଳେ ଅଖଣ୍ଡ ନିମଜ୍ଜି ନଦୀଜଳେ ।
ଅସାଧ୍ୟ ସାଧନେ ମୁନି ତପ ଆଚରିଲେ ॥ ୬୮
ସହସ୍ର ବରଷ ତପେ ଲଭି ଘୋର କ୍ଳେଶ ।
ଯୋଗ ସାଧନେ ନିମଗ୍ନ କଲେ ସେ ମାନସ ॥ ୬୯
ଏମନ୍ତ କଠୋର ତପ ଦେଖି ମୁନିଙ୍କର ।
ଦେବଗଣ ମନେ ଚିନ୍ତା ହୋଇଲା ଅପାର ॥ ୭୦
ମରୁତଗଣ ସମେତ ସକଳ ଅମରେ ।
ହକାରି ଆଣିଲେ ସୁରସୁନ୍ଦରୀ ରମ୍ଭାରେ ॥ ୭୧
ବୋଇଲେ ତାହାକୁ ଧୀରେ ବଚନ ଅମୃତ ।
ଯେ ଢଙ୍ଗ ପ୍ରେ ମୁନିଙ୍କର ହୋଇବ ଅହିତ ॥ ୭୨
ଅମରଗଣଙ୍କ ହିତ ପାଇଁ କର ଚିନ୍ତା ।
କହିଲେ ରମ୍ଭାରେ ଇନ୍ଦ୍ର ସହିତେ ଦେବତା ॥ ୭୩
ବ୍ରହ୍ମା ସମେତ ସକଳ ଦେବଗଣେ ନମି ।
ପୁରୁଷୋତ୍ତମ ଗାବଇ ରମାଧୁଣ ବାଣୀ ॥ ୭୪

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ତ୍ରିଷଷ୍ଟିତମ ସର୍ଗ ।



# ଚତୁଃଷଷ୍ଟିତମ ସର୍ଗ

## ବିଶ୍ୱାମିତ୍ରଙ୍କ ଉଗ୍ରତପସ୍ୟା ଓ ଅଭିଶପ୍ତା ରମ୍ଭା ।

ତେବେ ଇଲେ ରମ୍ଭାକୁ ଡାକି ଇନ୍ଦ୍ର ସୁରେଶ୍ୱର ।
ଆଗୋ ଅପସରି ! ତୁମ୍ଭେ ଦେବ କାର୍ଯ୍ୟ କର ॥ ୧
ମହାଋଷି ବିଶ୍ୱାମିତ୍ର ଉଗ୍ର ତପସ୍ୟାରେ ।
ବସିଛନ୍ତି ତପକ୍ଳେଶ ସହିଣ ଧ୍ୟାନରେ ॥ ୨
ଅପସରଗଣେ ତୁମ୍ଭେ ପରମ ରୂପସୀ ।
କାମେ ବିମୋହିତ କର ବିଶ୍ୱାମିତ୍ର ଋଷି ॥ ୩

କହନ୍ତେ ଇନ୍ଦ୍ର ଏମନ୍ତ ହୋଇ ଲଜ୍ଜାଶୀଳା ।
କରଯୋଡ଼ି ବୋଲେ ରମ୍ଭା ଅପ୍‌ସରୀ ସୁଶୀଳା ।। ୪
ଆହେ ସୁରପତି ! ଶୁଣ ମୋହର ବଚନ ।
ବିଶ୍ୱାମିତ୍ର ମହାକ୍ରୋଧୀ ଅଟନ୍ତି ଜାଣ ।। ୫
ଏଣୁ ଭୟ ଜାଗେ ଦେବ ! ମାନସେ ମୋହର ।
ମହାକ୍ରୋଧୀ ଅଟନ୍ତି ସେ କୁଶିକ କୁମର ।। ୬
ଜାଣିଛ ତ ସୁରେଶ୍ୱର ! ମୁନିଙ୍କ ପ୍ରଭାବ ।
କୋପଭରେ ବିଶ୍ୱାମିତ୍ର ଦେବେ ପରାଭବ ।। ୭
ଏଣୁ କ୍ଷମା କର ମୋତେ ଆହେ ଶଚୀପତି !
ନ ପିବ ମୁଁ ରୂପ ମୋହେ ମୋହିବାକୁ ଯତି ।। ୮
କହନ୍ତେ ଏପରି ଭୟେ ବିନୟ ବଚନ ।
ଶୁଣି ବୋଇଲେ ଉତ୍ତର ସହସ୍ରଲୋଚନ ।। ୯
କମ୍ପାଇଁ କରୁଛୁ ଭୟ ଆରେ ଶୁଭ୍ରକେଶି !
ମାନ ମୋର ବୋଲ ତଳ ଯନ୍ତ୍ରିଁଛନ୍ତି ଋଷି ।। ୧୦
କଲ୍ୟାଣ ହୋଇବ ତୋର ଘେନ ଆଜ୍ଞା ମମ ।
କରିଅ ଯତିପ୍ରବରେ କାମରେ ବିଭ୍ରମ ।। ୧୧
ଏ' ବସନ୍ତକାଳେ ଦେଖି ତରୁଗଣ ଶୋଭା ।
ନବପଲ୍ଲବ କୁସୁମେ ହୋଇଛନ୍ତି ଲୋଭା ।। ୧୨
ବସନ୍ତ ମଦନ ପିକ ଥିବେ ତୋ' ସଙ୍ଗତେ ।
ଆବର ରହିବ ମୁହିଁ ତୋର ସାଥେ ସାଥେ ।। ୧୩
ମନୋହର ହାବଭାବେ କରୁଣ ସିହାଣୀ ।
କ୍ଷଣକରେ ମୁନିମନ ପାରିବୁ ତୁ ଜିଣି ।। ୧୪
ତପୋଭଙ୍ଗେ ମୁନିଙ୍କର ହେବ ଦେବକର୍ମ ।
ଏଥିକି ସୁଶୀଳେ ! ତନ ନ ହୋଇ ବିମନ ।। ୧୫
ଶୁଣି ଦେବରାଜ ବାଣୀ ରମ୍ଭା ଅପସରୀ ।
ଚଳିଲା ସୁକେଶୀ ବନେ ଦିବ୍ୟବେଶ ଧରି ।। ୧୬
ବହିଲା ସେକାଳେ ଧୀରେ ଶୀତଳ ପବନ ।
ଗୁଞ୍ଜରିତ ହେଲା ମନ୍ଦେ ଭ୍ରମର ଗୁଞ୍ଜନ ।। ୧୭

ରହିଲା କୋକିଳ ସୁପଞ୍ଚମ ତାନ ତୋଳି ।
ତାହା ଶୁଣି ମହାମୁନି ଚାହିଁଲେ ଉତ୍ତର ।। ୧୮
ଦେଖିଲେ ଚମ୍ପ ଶାଖେ ରମ୍ଭା ଧରି ଦିବ୍ୟବେଶ ।
ଚାହିଁଛି ସତୃଷ୍ଣ ନେତ୍ରେ ଦେଇ ହସହସ ।। ୧୯
କୋକିଳର ସ୍ୱନେ ଗାନ ଦେଇ ରମ୍ଭା ନଗ୍ନ ।
ଗାଇଲା ମଧୁରକଣ୍ଠେ କୁହୁତାନ କରି ।। ୨୦
ଶୁଣି ସେ ମଧୁରସ୍ୱନ ଋଷି ବିଶ୍ୱାମିତ୍ର ।
ଚାହିଁଲେ ସକ୍ରୋଧେ ଚହୁଁ କରି ରକ୍ତନେତ୍ର ।। ୨୧
କୋପବଶେ ମହାତପୀ ଦେଇ ଉଚ୍ଚସ୍ୱର ।
ବୋଇଲେ ଲୋ ରମ୍ଭା ! ଏତେ ସାହସ ତୋହର ।। ୨୨
କାମ କ୍ରୋଧ ଲୋଭ ମୋହ ଜିଣିବାର ପାଇଁ ।
ଅକଳନ ତପକ୍ଲେଶ ସହୁଛି ଲୋ ମୁହିଁ ।। ୨୩
ଦେବକୃତ ମାୟାରେ ତୁ ହୋଇ ବଶେ ସ୍ୱତ ।
ଆସିଛୁ ଏଥକୁ ଭାଙ୍ଗିବାକୁ ମୋର ବ୍ରତ ।। ୨୪
ସେହି ପାପେ ଦେଉ ମୋର ଖର ଅଭିଶାପ ।
ଦଶସହସ୍ର ବର୍ଷ ଯାଏଁ ହୋଇ ଶିଳା ରୂପ ।। ୨୫
ପଡ଼ିଥାଅ ଏହି ବନେ ଶିଳାଖଣ୍ଡ ହୋଇ
ଅବଧି ଶେଷରେ ଯେବେ ବଶିଷ୍ଠ ଗୋସାଇଁ ।। ୨୬
ଆସି ତୋତେ ଶିଳ ରୂପୁଁ କରିବେ ଉଦ୍ଧାର ।
ଅନ୍ୟଥା ନୋହିବ ଯେଣୁ କଲୁ ପାପାଚାର ।। ୨୭
ଶୁଣି ଏ' ବଚନ ମୁନି ମୁଖୁଁ ଇନ୍ଦ୍ର କାମ ।
ପଳାଇଲେ ପ୍ରାଣ ଘେନି ଛାଡ଼ି ସେ ଆଶ୍ରମ ।। ୨୮
ତଦନ୍ତେ ହେ ରଘୁମଣି ! ଋଷି ବିଶ୍ୱାମିତ୍ର ।
କ୍ରୋଧେ ତପୋଭଙ୍ଗ ଭୟେ ହୋଇଲେ ସନ୍ତପ୍ତ ।। ୨୯
କୋପେ ବ୍ରତଭଙ୍ଗ ଯନ୍ତ୍ର ହେଲା ମୁନିଙ୍କର ।
ଆତଙ୍କିତେ ମହାମୁନି କଲେ ସ୍ୱବିଚାର ।। ୩୦
ଆଜଠାରୁ ଏକସହସ୍ର ବର୍ଷ ପର୍ଯ୍ୟନ୍ତେ ।
ନିଷ୍ଠାଶୀଳ ହୋଇ ମୁଁ ରହିବି ଦୃଢ଼ବ୍ରତେ ।। ୩୧

କ୍ରୋଧକୁ କରିଣ ଜୟ ଇନ୍ଦ୍ରିୟ ନିରୋଧି ।
ରହିବି ମୁଁ ମୌନବ୍ରତେ କରିଣ ସମାଧି ।। ୩୨

ନ କରିବି ମୁଖୁଁ ଏକ ଶବ୍ଦ ଉଚ୍ଚାରଣ ।
ଶ୍ୱାସ ନିରୋଧି କରିବି ବ୍ରତ ଆଚରଣ ।। ୩୩

ଅନ୍ନ ଜଳ ବିନେ ତପେ ଶୁଖାଇ ଶରୀର ।
ସାଧିବି ଅରଣ୍ୟେ ବସି ତପ ଘୋରତର ।। ୩୪

ଯାବତ ନୋହିବି ଗଣା ବ୍ରହ୍ମର୍ଷି ସମାଜେ ।
ତାବତ ସାଧିବି ବ୍ରତ ରହି ବ୍ରହ୍ମଚର୍ଯ୍ୟେ ।। ୩୫

ତପ ପ୍ରଭାବୁ ନୋହିବ ମୋ' ଶରୀର କ୍ଷୟ ।
ଦୃଢ଼ତପେ ଇନ୍ଦ୍ରଗଣେ କରିବି ମୁଁ ଜୟ ।। ୩୬

ଏସନ ପ୍ରତିଜ୍ଞା କରି ଦୃଢ଼େ ତପୋଧନ ।
କଠୋର ତପ ସାଧନେ ହୋଇଲେ ମଗନ ।। ୩୭

ଯେ ପ୍ରତିଜ୍ଞା କଲେ ବିଶ୍ୱାମିତ୍ର ମହାଶୟ ।
ସଂସାରେ ତୁଳନା ନାହିଁ ଆହେ ରଘୁରାୟ ! ।। ୩୮

ସେ ମୁନି ଅଭୟପଦେ କରିଣ ପ୍ରଣତି ।
ପୁରୁଷୋତ୍ତମ ଭଣଇ ରାମାୟଣ ଗୀତି ।। ୩୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଚତୁଃଷଷ୍ଟିତମ ସର୍ଗ ।



## ପଞ୍ଚଷଷ୍ଠିତମ ସର୍ଗ

### ବିଶ୍ୱାମିତ୍ରଙ୍କ ଘୋର ତପସ୍ୟା ଓ ବ୍ରହ୍ମର୍ଷି ପଦ ପ୍ରାପ୍ତି ।

ଶତାନନ୍ଦ ମୁଖୁଁ ଶୁଣି ଏସନ ବିସ୍ତର ।
ବୋଇଲେ ଶ୍ରୀରାମ ଧୀରେ ବୃଦ୍ଧ ମୁନିବର ! ॥ ୧
ଏଥିଅନ୍ତେ କଷ୍ଟ କଲେ ମୁନି ବିଶ୍ୱାମିତ୍ର ?
କେତେକାଳେ ସିଦ୍ଧ ହେଲେ ସାଧିଣ ସେ ବ୍ରତ ॥ ୨
ଆଉ ପୁଣି ବାଧାବିଘ୍ନ ହୋଇଲା କି ନାହିଁ ।
ବିଧି ପୂର୍ବ କରି ବୃଦ୍ଧ ହେ ମୁନି ଗୋସାଇଁ ! ॥ ୩
ଶୁଣି ଶ୍ରୀରାମଙ୍କ ବାଣୀ ମୁନି ଶତାନନ୍ଦ ।
ବୋଇଲେ ସାନନ୍ଦେ ଶୁଣ ଆହେ ରାମଚନ୍ଦ୍ର ! ॥ ୪
ଏଥିଅନ୍ତେ ତପଶୀଳ ବିଶ୍ୱାମିତ୍ର ମୁନି ।
ଚଳିଲେ ସେ ସ୍ଥାନ ତେଜି ଆହେ ରଘୁମଣି ! ॥ ୫
ପୂର୍ବାଞ୍ଚଳେ ଚଳିଗଲେ ମନର ହରଷେ ।
ଅରଣ୍ୟେ ସାଧିଲେ ତପ ସହସ୍ର ବରଷେ ॥ ୬
ମୌନବ୍ରତ ଆଚରଣ ତପଶୀଳ ଯନ୍ତ ।
କଠୋର ତପ ସାଧନେ ହୋଇଣ ସେ ବ୍ରତୀ ॥ ୭
ଅତ୍ୟନ୍ତ ଦୁଷ୍କର ତପ ଆଚରିଲେ ମୁନି ।
ଅତୁଳନୀୟ ସେ ତପ ଅଦ୍ୱିତୀୟ ପୁଣି ॥ ୮
ଏକ ସହସ୍ର ବର୍ଷ ଧ୍ୟାନେ ରହି ତପଶୀଳ ।
ଇନ୍ଦ୍ରଗଣେ ଜପ କରି ଲଭିଲେ ସୁଫଳ ॥ ୯
ବହୁ ବାଧାବିଘ୍ନ ଆସି ହେଲା ଉପସ୍ଥିତ ।
ତେବେହେଁ ଇନ୍ଦ୍ରପୂଜ୍ୟ ନୋହିଲେ ବିଚଳିତ ॥ ୧୦
କାମକ୍ରୋଧେ ଜୟ କରି ବସିଲେ ଆସନେ ।
ବ୍ରହ୍ମ ମନ୍ତ୍ର ସାଧି ଦୃଢ଼େ ରହିଲେ ମଉନେ ॥ ୧୧
ନିଷ୍ଠା ବ୍ରତେ ରହି ମୁନି ସାଧିଲେକ ବ୍ରତ ।
ସହସ୍ର ବର୍ଷ ଯାଏଁ ତଳେ ନୋହି ବିଚଳିତ ॥ ୧୨

ତପ ସମାଧିର ଶେଷେ ଯବେ ବିଶ୍ୱାମିତ୍ର ।
ଅନ୍ନ ଜଳ ଗ୍ରହଣେ ସେ ହୋଇଲେ ଉଦ୍ୟତ ॥ ୧୩
ଏସନ ସମୟେ ଧରି ବିପ୍ର ରୂପ ଇନ୍ଦ୍ର ।
ତକ୍ଷଣେ ମିଳିଲେ ଆସି ଆହେ ରାମଚନ୍ଦ୍ର ! ॥ ୧୪
କ୍ଷୁଧାତୁର ପ୍ରାୟେ ମାଗିଲେକ ଅନ୍ନଦାନ ।
ଶୁଣି ବିପ୍ରବାଣୀ ମୁନି ହୋଇଣ ପ୍ରସନ୍ନ ॥ ୧୫
ଅନ୍ନ ବ୍ୟଞ୍ଜନାଦି ଯାହା ବାଢ଼ିଥିଲେ ମୁନି ।
ତକ୍ଷଣେ ସମର୍ପି ଦେଲେ ବିପ୍ରକରେ ଆଣି ॥ ୧୬
ତାହା ଶେଷ କରି ଅନ୍ନ ନେଇ ବିପ୍ର କରେ ।
ଅନଶନେ ଦିବସ ଯାପିଲେ ମୋଦଭରେ ॥ ୧୭
ମଉନବ୍ରତେ ରହିଣ ସାଧିଲେ ସ୍ୱକର୍ମ ।
କିଛି ନ ବୋଇଲେ ବିପ୍ରେ ନୋହିଣ ବିମନ ॥ ୧୮
ତଦନ୍ତେ ସେ ମୁନିବର ନିଃଶ୍ୱାସ ସାଧିଣ ।
ମୌନେ ରହି ମହାବ୍ରତ କଲେ ସମ୍ପାଦନ ॥ ୧୯
ଦୀର୍ଘକାଳ ପର୍ଯ୍ୟନ୍ତ ମୁନି ରହିଲେ ନିଷ୍ଠାରେ ।
ନିଃଶ୍ୱାସ ନିରୋଧି ଅନୁଷ୍ଠାନ ସାଧିବାରେ ॥ ୨୦
ମୁନିଙ୍କ ମସ୍ତକୁ ଧୂମ ହୋଇଲା ନିର୍ଗତ ।
ଚରାଚର ଜଗତେ ଯା' ହୋଇଥିଲା ବ୍ୟାପ୍ତ ॥ ୨୧
ଦେଖି ତପ-ସିଦ୍ଧି-ଧୂମ ତ୍ରିଜଗତ ଜନ ।
ସଭୟ ଚିତ୍ତେ ହୋଇଲେ ବ୍ୟାକୁଳିତ ମନ ॥ ୨୨
ନାଗ ନର ଯକ୍ଷ ରକ୍ଷ ଗନ୍ଧର୍ବ କିନ୍ନର ।
ସକଳ ଅମରଗଣେ ହେଲେ ଭୟାତୁର ॥ ୨୩
ମୁନି ତପସିଦ୍ଧ ଧୂମେ ହୋଇ ଆକୁଳିତ ।
ନିସ୍ତେଜ ଲଭି ଅମରେ ହୋଇଲେ ବିବ୍ରତ ॥ ୨୪
ଶେଷେ ଅସହାୟ ହୋଇ ମିଳି ବ୍ରହ୍ମା ପାଶେ ।
ବୋଇଲେ ଅମରଗଣେ ପରମ ବିଶ୍ୱାସେ ॥ ୨୫
ଆହେ ତାତ ! ସକଳ ପ୍ରକାର ବିଘ୍ନକର୍ମ ।
ସାଧିଲୁ ଉପାୟେ କରିବାକୁ ତପୋଭଗ୍ନ ॥ ୨୬

କିନ୍ତୁ ବିଶ୍ୱାମିତ୍ର କାହିଁ ନୋହି ବିଚଳିତ ।
କଠୋର ତପ ସାଧନେ ସାଧୁଛନ୍ତି ବ୍ରତ ।। ୨୭
ଦନୁଜନ ଅସହ୍ୟ ହେଲଣି ତାଙ୍କ ତେଜ ।
ଆଜ ତାଙ୍କ ତପୋବହ୍ନି ନୁହଇ ସହଜ ।। ୨୮
ଏ' ସମୟେ ଯଦି ତୁମ୍ଭେ ନ ଦେବ ହେ ବର ।
ଯଦ୍ୟପି କିଳପି ମାନସେ ଅଛୁ ତପୀବର ।। ୨୯
ତାଙ୍କ ତପ ଅନଳେ ନଶିବୁ ସର୍ବ ଦେବ ।
ଚରାଚର ବିଶ୍ୱ ନିଶ୍ଚେ ବିନାଶ ଲଭିବ ।। ୩୦
ଦେଖ ତାଙ୍କ ମସ୍ତକୁ ନିର୍ଗତ ହୋଇ ଧୂମ ।
ଚରାଚର ବ୍ୟାପିଲଣି କରାଇ ବିଭ୍ରମ ।। ୩୧
ପ୍ରଚଣ୍ଡ ଲହରୀମାଳା ଉଠଇ ସାଗରେ ।
ବିଘୂର୍ଣ୍ଣି ହୁଅନ୍ତି ତେଣେ ଭୁଙ୍କ ଗିରିବରେ ।। ୩୨
ଟଳମଳ ହୁଏ ପୃଥ୍ୱୀ କମ୍ପଇ ଆକାଶ ।
ପ୍ରଭଞ୍ଜନ ବେଗେ ନ ବହଇ ଦଶଦିଶ ।। ୩୩
ଆହେ ପିତାମହ ! ଉପଦ୍ରବ ନିବାରଣେ ।
ନ ଦିଶଇ କିଛି ପଥ ଯେବଣ କାରଣେ ।। ୩୪
କର ପ୍ରତିକାର ତା'ର ଆହେ ପ୍ରଜାପତି !
ନୋହିଲେ ତ୍ରିପୁରେ ବ୍ୟାପିଯିବ ଏ' ଦୁର୍ଗତି ।। ୩୫
ଜନସମାଜ ବିକ୍ଷୁବ୍ଧ ହୋଇଲେଣି ଦେବ !
କର୍ମକୁଣ୍ଠ ହୋଇଲେଣି ସକଳ ମାନବ ।। ୩୬
ଆସ୍ତିକ ଭାବନା ମନୁଁ ପାଉଛୁ ଜଗରେ ।
ହାହା ହାହା ରବେ କମ୍ପି ଉଠୁଅଛି ମହୀ ।। ୩୭
ମହର୍ଷିଙ୍କ ତେଜେ ଭବ ହେଲେଣି ମଳିନ ।
କାଳାଗ୍ନି ସ୍ୱରୂପ ଧରିଲେଣି ମୁନିଗଣ ।। ୩୮
ଆହେ ବିଧାତା ପୁରୁଷ ! କର ପ୍ରତିକାର ।
ନୋହିଲେ ନିଖିଳବିଶ୍ୱ ହେବ ଛାରଖାର ।। ୩୯
ପ୍ରସନ୍ନ କରନ୍ତୁ ବରଦାନେ ମୁନିରାଜ ।
ନୋହିଲେ ଧ୍ୱଂସ ହୋଇବ ଏ' ବିଶ୍ୱସମାଜ ।। ୪୦

କଳ୍ପପ୍ରଳୟ ସମୟେ ଯଥା କାଳ ଅଗ୍ନି ।
ସେପରି ଧ୍ୱଂସିବ ବିଶ୍ୱ ଋଷି-ତେଜ-ବହ୍ନି ॥ ୪୧
ବିଶ୍ୱାମିତ୍ର ଯଦି ଇଚ୍ଛାକରେ ସ୍ୱର୍ଗଧାମ ।
ତଥାପି ସ୍ୱୀକାର କରି କରନ୍ତୁ ସକାମ ॥ ୪୨
ଯେଉଁ ଅଭିଳାଷ ଘେନି ସାଧୁଛନ୍ତି ମୁନି ।
ଅବଶ୍ୟ ପୂରଣ ତାହା କର ପଦ୍ମଯୋନି ! ॥ ୪୩
ଏଥୁଅନନ୍ତରେ ବ୍ରହ୍ମା ଘେନି ଦେବଗଣେ ।
ପ୍ରବେଶ ହୋଇଲେ ଯାଇ ଋଷି ତପସ୍ଥାନେ ॥ ୪୪
ମଧୁର ବଚନେ ବିଧି ବୋଇଲେ ବଚନ ।
ଆହେ ବିଶ୍ୱାମିତ୍ର ! ତୁମ୍ଭେ ଲଭ ସୁକଲ୍ୟାଣ ॥ ୪୫
ତବ ତପୋବଳେ ମୁନି ! ହେଲି ମୁଁ ସନ୍ତୁଷ୍ଟ ।
ପୂରଣ ହୋଇବ ଆଜ ତୁମ୍ଭ ମନୋଭୀଷ୍ଟ ॥ ୪୬
ଉଗ୍ରତପେ ତୁମ୍ଭେ ଲଭ କଲ ବ୍ରହ୍ମପଦ ।
ବ୍ରହ୍ମର୍ଷି ସମାଜେ ତେଣୁ ବଢ଼ିବ ଆସ୍ପଦ ॥ ୪୭
ଆହେ ବ୍ରହ୍ମମୁନି ! ଦେବ ମରୁତ ସହିତେ ।
ଦୀର୍ଘାୟୁଷ ପ୍ରଦାନ କରୁଛୁଁ ତୋଷଚିତ୍ତେ ॥ ୪୮
ଆହେ ସୌମ୍ୟ ବିଶ୍ୱାମିତ୍ର ! ହେଉ ତୋ' କଲ୍ୟାଣ ।
ଇଚ୍ଛା ସୁଖେ ଏ' ଜଗତେ କର ହେ ଭ୍ରମଣ ॥ ୪୯
ଶୁଣି ପ୍ରଜାପତି ମୁଖୁଁ ଅମିୟ ବଚନ ।
ଋଷି ବିଶ୍ୱାମିତ୍ର ହୋଇ ଆନନ୍ଦିତ ମନ ॥ ୫୦
ସକଳ ଦେବଙ୍କୁ ବ୍ରହ୍ମା ସହିତେ ଆଦରି ।
ପ୍ରଣତି ନବେଦି ବିଶ୍ୱାମିତ୍ର ବ୍ରହ୍ମର୍ଷି ॥ ୫୧
ଭାଷିଲେ ପ୍ରସନ୍ନ ମନେ ଆହେ ଦେବଗଣ !
ତୁମ୍ଭ ପ୍ରସାଦୁ ଲଭିଲି ଆଜ ବ୍ରହ୍ମପଣ ॥ ୫୨
ଦୀର୍ଘାୟୁଷ ବରପ୍ରାପ୍ତ ହୋଇଲି ଆବର ।
କେବଳ ମୋ' ଇଚ୍ଛା ପୂର୍ଣ୍ଣକର ସୁରବର ॥ ୫୩
ବ୍ରହ୍ମବେଦ ଧନୁର୍ବେଦ ଆଦି ସବୁଜ୍ଞାନ ।
ତବ ପ୍ରସାଦୁ ହୁଅନ୍ତୁ ମୋହର ଅଧୀନ ॥ ୫୪

ବେଦବାଣୀ ମନ୍ତ୍ରରୂପେ ହେଉ ମୋ ଗଣନା ।
ତେବେ ହେ ଅମରଗଣ ! ପୂରିବ କାମନା ॥ ୫୫
ମହର୍ଷିପ୍ରବର ବ୍ରହ୍ମାସୁତ କୁଳପତି ।
ବ୍ରହ୍ମର୍ଷି ବୋଲିଣ ମୋତେ ଘେନନ୍ତୁ ତଡ଼ିତ ॥ ୫୬
ଏତିକ କାମନା ମୋର ଆହେ ସୁରଗଣ !
ଦୟା କରି ମନୋଭୀଷ୍ଟ କର ମୋ' ପୂରଣ ॥ ୫୭
ଏତେ ଭଣି ବ୍ରହ୍ମର୍ଷି ହୋଇଲେ ମଉନ ।
'ଏବମସ୍ତୁ' ବୋଲି ବର ଦେଲେ ଦେବଗଣ ॥ ୫୮
ଦେବଗଣଙ୍କ ପ୍ରସ୍ତାବ କରିଣ ଗ୍ରହଣ ।
ବଶିଷ୍ଠ ବିଶ୍ୱାମିତ୍ରଙ୍କୁ କଲେ ଆଲିଙ୍ଗନ ॥ ୫୯
ବ୍ରହ୍ମର୍ଷି ବୋଲିଣ ତାଙ୍କୁ କରି ସମାଦର ।
ସେହି କାଳୁଁ ଦୁହେଁ ମିତ୍ର ହେଲେ ପରସ୍ପର ॥ ୬୦
ଦେବଗଣ ଅତି ତୋଷେ କରି ସୁକଲ୍ୟାଣ ।
ପ୍ରଜାପତି ଭୁଲେ କଲେ ସ୍ୱରଗେ ଗମନ ॥ ୬୧
ବ୍ରହ୍ମପଦ ଲଭି ତୋଷେ ବିଶ୍ୱାମିତ୍ର ମୁନି ।
ବଶିଷ୍ଠଙ୍କ ପାଦେ ପୂଜା କଲେ ଅର୍ଘ୍ୟ ଘେନି ॥ ୬୨
ହେ ଶ୍ରୀରାମ ! ଶୁଣିଲ ତ ବିଶ୍ୱାମିତ୍ର ଗାଥା ।
ଯା' ବଖାଣି ଥିଲେ ଗଉତମ ପୂଜ୍ୟପିତା ॥ ୬୩
ତପସ୍ୱୀପ୍ରବର ବ୍ରହ୍ମମୁନି ବିଶ୍ୱାମିତ୍ର ।
ଋଷିଗଣେ ଗାବନ୍ତି ଯା' ପବିତ୍ର ଚରିତ ॥ ୬୪
ବହୁ ତପକ୍ଲେଶ ସହି ହୋଇଲେ ବ୍ରହ୍ମର୍ଷି ।
ମହାପରାକ୍ରମୀ ସେହୁ ଶୁଣ ରଘୁବଂଶୀ ! ॥ ୬୫
ଏସନକ ଭଣି ମୁନି ଗୌତମ ନନ୍ଦନ ।
ବିଶ୍ୱାମିତ୍ରେ ପ୍ରଣମି ସେ ହୋଇଲେ ମଉନ ॥ ୬୬
ଶତାନନ୍ଦ ମୁଖୁଁ ଶୁଣି ବ୍ରହ୍ମର୍ଷି ଚରିତ ।
ମିଥିଳା ରାଜନ ତୋଷେ ହେଲେ କୃତକୃତ୍ୟ ॥ ୬୭
ଶ୍ରୀରାମ ଲକ୍ଷ୍ମଣେ ଦୁହିଁ ଅତି ତୋଷମନେ ।
ଭାଷିଲେ ଜନକ ସୁଧାସମ ସୁବଚନେ ॥ ୬୮

ଆହେ କୌଶିକ ! ମୋହର ଆଜ ଶୁଭଦିନ ।
ଯେଣୁ ଆଜ ଲଭିଲି ମୁଁ ତବ ଦରଶନ ॥ ୬୯
ଇକ୍ଷ୍ୱାକୁ କୁଳଭୂଷଣ ଏ' ଦୁଇ କୁମାର ।
ସଙ୍ଗେ ଘେନି ଆସିଲ ଯା' ସୁଯଜ୍ଞେ ମୋହର ॥ ୭୦
ପବିତ୍ର ହୋଇଲା ଆଜ ମୋ' ମିଥିଳାପୁରୀ ।
ସୁପବିତ୍ର ହୋଇଲି ମୁଁ ଆହେ ବ୍ରହ୍ମର୍ଷି ! ॥ ୭୧
ତୁମ୍ଭ କୃପାବଳେ ଲଭିଲି ମୁଁ ସର୍ବସୁଖ ।
ହରିଲ ଦୁରିତ ସବୁ ହୋଇଲେ ସୁମୁଖ ॥ ୭୨
ଆଜ ଏ' ସଭାରେ ବିଜେ କରିଛନ୍ତି ରାମ ।
ମୁନିଗଣ ସୁମିତ୍ରାନନ୍ଦନ ଗୁଣଧାମ ॥ ୭୩
ସକଳେ ଶୁଣିଲୁ ତବ ପୁଣ୍ୟ ଗାଥାମାନ ।
ଆହେ ପୁଣ୍ୟଧାମ ! ଧନ୍ୟ ହେଲା ମୋ'ଜୀବନ ॥ ୭୪
ଶତାନନ୍ଦ ମୁଖୁଁ ଶୁଣି ତବ ସୁଚରିତ ।
ଆଜ ମୋର କର୍ଣ୍ଣପଥ ହେଲା ସୁପବିତ୍ର ॥ ୭୫
ତପୋନିଷ୍ଠ ବ୍ରହ୍ମର୍ଷି ଆହେ ତପୋଧନ !
ତବ ଦରଶନେ ମୋ' ଜୀବନ ହେଲା ଧନ୍ୟ ॥ ୭୬
ଆହେ କୁଶିକ ନନ୍ଦନ ! ତବ ତପୋବଳ ।
ଅପ୍ରମେୟ ଅଟେ ପୁଣି ଶକତି ପ୍ରବଳ ॥ ୭୭
ତବ ପୁଣ୍ୟ ଗାଥା ଗାନେ କେ ହେବ ସମର୍ଥ ।
ଗୁଣାଶ୍ରିତ ଗୁଣମୟ ଅହେ ତପୋବନ୍ତ ॥ ୭୮
ତବ ସୁଗୁଣ ଶ୍ରବଣେ ଅତୃପ୍ତ ମୋ' ମନ ।
ପୁଣି ପୁଣି ଶୁଣିବାକୁ କରଇ ଭାବନ ! ॥ ୭୯
କିନ୍ତୁ ଆହେ ବ୍ରହ୍ମର୍ଷି ! ବେଳ ଅବସାନ ।
ହେଲାଣି କରିବା ଏବେ ଯଜ୍ଞ ଅନୁଷ୍ଠାନ ॥ ୮୦
ସ୍ୱାଗତ ହେ ମୁନିବର ! ଯୋଗୀଙ୍କ ଈଶ୍ୱର ।
ସୁଯଜ୍ଞ ସାଧନେ ହେବ ! ଆଜ୍ଞା ମୋତେ କର ॥ ୮୧
ଏସନ ବଚନ ଶୁଣି ବିଶ୍ୱାମିତ୍ର ମୁନି ।
ଜନକେ ରାଜନେ ଚହୁଁ ହେଲେ ସେ ମେଲାଣି ॥ ୮୨

ମନେ ମନେ ପ୍ରସନ୍ନ ହୋଇଲେ ବ୍ରହ୍ମର୍ଷି ।
ସକଳ ସମକ୍ଷେ ତାଙ୍କୁ ଅନେକ ପ୍ରଶଂସି ॥ ୮୩
ପ୍ରୀତିପୂର୍ଣ୍ଣ ପ୍ରତିବାଣୀ ଭଣି ବିଶ୍ବାମିତ୍ର ।
ମିଥିଳା ରାଜନେ କଲେ ପରମ ପବିତ୍ର ॥ ୮୪
ସକଳ ବିଧିବେ ମିଳି ପରିକ୍ରମା କରି ।
ଜନକ ରାଜନ ଚଳିଗଲେ ଯଜ୍ଞପୁରୀ ॥ ୮୫
ତଦନ୍ତେ ରାମଲକ୍ଷ୍ମଣ ସଙ୍ଗେ ବ୍ରହ୍ମମୁନି ।
ଚଳିଲେ ବିଶ୍ରାମ ସ୍ଥଳେ ଶିଷ୍ୟଗଣ ଘେନି ॥ ୮୬
ବିଶ୍ବାମିତ୍ର ଶତାନନ୍ଦ ଜନକ ଚରଣେ ।
ବନ୍ଦି ଶ୍ରୀପୁରୁଷୋତ୍ତମ ରାମାୟଣ ଭଣେ ॥ ୮୭

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ପଞ୍ଚଷଷ୍ଟିତମ ସର୍ଗ ।



## ଷଟ୍ଷଷ୍ଟିତମ ସର୍ଗ

### ଶିବଧନୁ ଚରିତ ।

ପରଦିନ ପ୍ରଭାତରୁ ଜନକ ରାଜନ ।
ଉଠିଣ ନିର୍ମଳ ମନେ କଲେ ପ୍ରାତଃ ସ୍ନାନ ॥ ୧
ବେଦବିଧି ଅନୁସରି ସାରି ନିତ୍ୟକର୍ମ ।
ଇଷ୍ଟଦେବତାରେ କଲେ ସାଦରେ ପୂଜନ ॥ ୨
ତଦନ୍ତେ ବିଦେହରାଜ ଲକ୍ଷ୍ମଣ ସହିତ ।
ହକାରି ଆଣିଲେ ଗୃହେ ରାମ ବିଶ୍ବାମିତ୍ର ॥ ୩
ଯଥାମାନ୍ୟେ ସେ ତିନିଙ୍କି କରିଣ ବନ୍ଦନ ।
ପାଦ୍ୟ ଅର୍ଘ୍ୟ ମଧୁପର୍କେ କଲେକ ପୂଜନ ॥ ୪
ତଦନ୍ତେ ବିନୀତ ଗିରେ ଭାଷିଲେ ଏସନ ।
ଆହେ ମୁନି ବିଶ୍ବାମିତ୍ର ! ଜଗତ ବନ୍ଦନ ॥ ୫

ଆଜ୍ଞା କର ମହାବାହୁ ! ମୁଁ ଅଧୀନ ଜନ ।
କେଉଁଣ ପ୍ରକାରେ ସେବା କରିବ ବିଧାନ ॥ ୬
ଶୁଣି ବିଶ୍ୱାମିତ୍ର ଜନକଙ୍କ ଶ୍ରଦ୍ଧା ବାଣୀ ।
ବଚନ କୁଶଳ ସର୍ବଜ୍ଞତା ବ୍ରହ୍ମମୁନି ॥ ୭
ବୋଇଲେ ମଧୁର ସ୍ୱରେ ଆହେ ମହାରାଜ !
ରାଜର୍ଷି ମଣ୍ଡଳେ ତବ ନାମ ଅଗ୍ରପୂଜ୍ୟ ॥ ୮
ରାମ ଲକ୍ଷ୍ମଣ ଦୁହେଁ ଶ୍ରେଷ୍ଠ ଧନୁର୍ଦ୍ଧର ।
ଅସାଧ୍ୟ ସାଧନ କର୍ମେ ଯେତୁ ତତ୍ପର ॥ ୯
ତୁମ୍ଭ ପୁରେ ଅଛଇ ଯେ ଧନୁ ସୁପୂଜିତ ।
ତାହାଙ୍କୁ ଦେଖାଇ ନୃପ କର କୃତକୃତ୍ୟ ॥ ୧୦
ହେଉ ତବ ସୁକଲ୍ୟାଣ ଆହେ ମୁନିବର !
ଅଯୋଧ୍ୟା ରାଜନ ଦଶରଥଙ୍କ କୁମର ॥ ୧୧
ଆସିଛନ୍ତି ଏଥେ ଧନୁ ଦରଶନ ଆଶେ ।
କୌତୂହଳ ଜନମଛି ତାହାଙ୍କ ମାନସେ ॥ ୧୨
ସେ ଧନୁ ଦେଖିଲେ ହେବ ତାଙ୍କ ଇଚ୍ଛା ପୂର୍ଣ୍ଣ ।
ମନସୁଖେ ନିଜ ରାଜ୍ୟ କରିବେ ଗମନ ॥ ୧୩
ଶୁଣି ଏ' ବଚନ ବିଶ୍ୱାମିତ୍ର ମୁଖୁଁ ନୃପ ।
କରଯୋଡ଼ି ନିବେଦିଲେ ବ୍ରହ୍ମର୍ଷି ସମୀପ ॥ ୧୪
ଆହେ ଋଷିବର ! ଏହି ଧନୁର ଚରିତ ।
ଶୁଣନ୍ତୁ ସଧୀରେ ଯାହା ଅଛଇ ବୃତ୍ତାନ୍ତ ॥ ୧୫
ଯେଉଁ ସକାଶୁ ସଜାଡ଼ି ରଖିଛୁ ମୁଁ ଏଥି ।
ଶୁଣିବା ହେଉ ସାଗ୍ରହେ ଆହେ ବ୍ରହ୍ମପତି ! ॥ ୧୬
ଆହେ ମୁନିବର ! ନିମି ନାମେ ନରପତି ।
ଦେବରାତ ନାମେ ତାଙ୍କ ଅଟଇ ସନ୍ତତି ॥ ୧୭
ତାଙ୍କ କରେ ଏହି ଧନୁ ସମର୍ପିଲେ ଦେବେ ।
କହଇ ବୃତ୍ତାନ୍ତ ତା'ର ଶୁଣନ୍ତୁ ସରବେ ॥ ୧୮
ପୂର୍ବକାଳେ ଯଜ୍ଞ କଲେ ଦକ୍ଷ ପ୍ରଜାପତି ।
ଆଣିଲେ ସକଳ ଦେବ ଋଷିଙ୍କୁ ଆମନ୍ତ୍ରି ॥ ୧୯

ଯଜ୍ଞେ ଯଜ୍ଞଭାଗ ଦେଇ କଲେ ସୁପୂଜନ ।
କେବଳ ନଇଲେ ଯଜ୍ଞେ ଦେବ ତ୍ରିନୟନ ॥ ୨୦
ଦକ୍ଷ ପ୍ରଜାପତି ଯେଣୁ ହେଲ ମୂଢ଼ମତି ।
ମତ୍ସରଗର୍ବେ ନ ବରିଲ ଦେବ ପଶୁପତି ॥ ୨୧
ତହୁଁ କ୍ରୋଧେ ଥରହର ହୋଇ ମହେଶ୍ୱର ।
ଯଜ୍ଞ ବିଧ୍ୱଂସିଣ ଉଚେ ବୋଇଲେ ଏ' ଗିର ॥ ୨୨
ଆହେ ଦେବଗଣ ! କଲ ଏତେ ମନ୍ଦକର୍ମ ।
ଦକ୍ଷଯଜ୍ଞେ ଯଜ୍ଞଭାଗ ଭୁଞ୍ଜିଲ ଆପଣ ॥ ୨୩
ନ ରଖିଲ ମୋର ଯଜ୍ଞଭାଗ ମୂଢ଼ପଣେ ।
ଆଜ ମାରିବି ଧନୁରେ ସର୍ବ ଦେବଗଣେ ॥ ୨୪
ଏମନ୍ତ ବଚନ ହର ଅବଲୀଳା କ୍ରମେ ।
ଉଠାଇ କାର୍ମୁକ ସେହୁ ଅପଣା ହସ୍ତେ ॥ ୨୫
ଟଙ୍କାର କରନ୍ତେ ଗୁଣ ଦେଇ ସଦାଶିବ ।
ବିଷାଦ ଭଜିଲେ ଭୟେ ସ୍ୱର୍ଗେ ସର୍ବ ଦେବ ॥ ୨୬
ଡରସ୍ତରେ ସର୍ବ ଦେବେ ଶିବ ପାଶେ ଯାଇ ।
ସ୍ତୁତି ଆରମ୍ଭିଲେ ପାଦେ ପ୍ରଣତି ଜଣାଇ ॥ ୨୭
ଆଶୁତୋଷ ସଦାଶିବ ଅତ୍ୟନ୍ତ ପ୍ରସନ୍ନେ ।
ଏ' ଧନୁକୁ ସମର୍ପିଲେ ଦେବ ସନ୍ନିଧାନେ ॥ ୨୮
ମୋ' ପୂର୍ବପୁରୁଷ ମହାରାଜ ଦେବରାତ ।
ଥିଲେ ସେହୁ ପରମ୍ପରେ ଜଗତେ ବିଦିତ ॥ ୨୯
ଦେବତାଙ୍କ ପ୍ରିୟ ଯେଣୁ ଥିଲେ ସେ ରାଜନ ।
ଦେବକାର୍ଯ୍ୟ ସାଧି ଲୋକେ ଦେବରାତ ନାମ ॥ ୩୦
ସକଳ ଦେବତା ହୋଇ ପ୍ରହୃଷ୍ଟ ମାନସ ।
ତାଙ୍କ କରେ ଏ' ଧନୁକୁ କଲେକ ବିନ୍ୟାସ ॥ ୩୧
ନ୍ୟାସ ରୂପେ ଏ' ଧନୁକୁ ଆଣି ନରନାଥ ।
ସମ୍ପାଦିଲେ ନିଜ ପୁରେ ହୋଇ କୃତକୃତ୍ୟ ॥ ୩୨
ସେହିଦିନୁ ଏ' ପିନାକ ଅଛି ଆମ୍ଭପୁରେ ।
ତଦନ୍ତେ ଯା' ହେଲ କହେ ଶୁଣନ୍ତୁ ସଧୀରେ ॥ ୩୩

ଏକଦା ମୁଁ ଯଜ୍ଞ ଭୂମି ଶୋଧନ କାରଣେ ।
ଭୂମି ଚଷୁଥିଲି ଦେବ ! ଲଙ୍ଗଳର ମୂନେ ॥ ୩୪
ଫଳକ ଅଗ୍ର ବାଜଣ ଭୂମିରୁ ସମ୍ଭୂତା ।
ହେଲା ଏକ କନ୍ୟାରତ୍ନ ନାମ ଦେଲି ସୀତା ॥ ୩୫
ସେ କନ୍ୟାକୁ ପାଳିଲି ମୁଁ ନିଜ ପୁରେ ଆଣି ।
ସର୍ବଗୁଣେ ପରିପୂର୍ଣ୍ଣା ସୁଶ୍ରୀ ସୁଲକ୍ଷଣୀ ॥ ୩୬
ଶୁକ୍ଳପକ୍ଷେ ନିଶାକର ବଢ଼ଇ ଯେସନ ।
ମୋ'ପୁରେ ସେ କନ୍ୟାରତ୍ନ ବଢ଼ିଲା ତେସନ ॥ ୩୭
ଅଯୋନିସମ୍ଭୂତା କନ୍ୟାରତ୍ନ ମୋର ସୀତା ।
ଅନାୟାସେ ଧରଣୀରୁ ହୋଇଛି ସମ୍ଭୂତା ॥ ୩୮
ମୋର ଏ' ଦୁହିତା ସମର୍ପିବି କାହା କରେ ।
ବସି ବିଚାରିଲି ଆପଣା ମନରେ ॥ ୩୯
ନିଜ ଭୁଜ ପରାକ୍ରମେ ଯେତୁ ଧନୁର୍ଦ୍ଧର ।
ଗୁଣ ଦେଇ ଏ' ଧନୁରେ କରିବ ଟଙ୍କାର ॥ ୪୦
ତା'ର କରେ ସମର୍ପିବି ଏ' କନ୍ୟାରତନେ ।
ବୀର୍ଯ୍ୟଶୁଳ୍କା କରି ତାକୁ ପାଳୁଛି ଯତନେ ॥ ୪୧
ସୀତା ରୂପ ଗୁଣ ଶୀଳ ଶୁଣି ରାଜାଗଣ ।
ଆସିଲେ ମିଥିଳା ଦେଶେ ଘେନି ସୈନ୍ୟଗଣ ॥ ୪୨
ପଚାରିଲେ କିବା ତବ ପଣ ହେ ଜନକ !
ତହୁଁ ମୁଁ ଭଣିଲି ସର୍ବ ହେ ମହୀପାଳକ ! ॥ ୪୩
ଶିବଧନୁ କରେ ଧରି ଯେତୁ ଦେବ ଗୁଣ ।
ତାକୁ ମୁଁ ଜାମାତା ପଣେ କରିବି ବରଣ ॥ ୪୪
ଶୁଣି ସକଳ ରାଜନ ହୋଇ ହୃଷ୍ଟମନ ।
ଉତ୍ତୋଳିଲେ ଶିବଧନୁ କରି ଜଣେ ଜଣ ॥ ୪୫
କି ବୋଲିବି ଋଷିବର ! ଦୁର୍ଭାଗ୍ୟ ମୋହର ।
କେହି ଜଣେ ସମର୍ଥ ନୋହିଲେ ଶୂରବୀର ॥ ୪୬
ଯେଣୁ ସର୍ବେ ପରାଭୂତ ହେଲେ ଧନୁପାଶେ ।
ତେଣୁ ମୁଁ ନିରାଶ କଲି ସକଳ ନରେଶେ ॥ ୪୭

ଏଥୁଅନ୍ତେ ସର୍ବ ରାଜା କରଣ ସମ୍ଭର ।
ଆକ୍ରମଣ କଲେ ବେଢ଼ି ମୋ' ମିଥିଳାପୁର ॥ ୪୮
ଏକବର୍ଷ ଯାଏଁ ଯୁଦ୍ଧ କଲି ମୁଁ ନିଯୁତ ।
ଶେଷେ ଅବସନ୍ନ ହୋଇ ହେଲି ପରାଭୂତ ॥ ୪୯
ଉପାୟ ନ ଦେଖି ଆରାଧିଲି ଦେବଗଣ ।
ଜଣାଇଲି ସ୍ମମୂରେ ମୋ' ଦୁଃଖର କାରଣ ॥ ୫୦
ତହୁଁ ଦେବଗଣ ତୁଷ୍ଟ ହୋଇ ହେ ବ୍ରହ୍ମର୍ଷି !
ପଠାଇଲେ ଚତୁରଙ୍ଗ ବଳ ସର୍ବେ ମିଳି ॥ ୫୧
ଦେବସେନା ଦେଖାଇଣ ପ୍ରବଳ ବିକ୍ରମ !
ପରାଭୂତ କଲେ ଯେତେ ଥିଲେକ ରାଜନ ॥ ୫୨
ଲଜ୍ଜାନତ ମୁଖେ ପାପାତ୍ମସ ରାଜାଗଣ ।
ପଳାଇଲେ ନିଜ ନିଜ ରାଜ୍ୟେ ଘେନି ସୈନ୍ୟ ॥ ୫୩
ସେହିକାଳୁ କୁମାରୀ ରହିଛି ମୋର ସୁତା ।
ପରମା ସୁନ୍ଦରୀ ରୂପଗୁଣେ ନାମ ସୀତା ॥ ୫୪
ଶୁଣିଲ ତ ବ୍ରହ୍ମଋଷି ! ଧନୁର ଚରିତ ।
ଦେଖାଇବ ଆଜ ରାମେ ଲକ୍ଷ୍ମଣ ସହିତ ॥ ୫୫
ଆହେ ମୁନିବର ! ଏହୁ ବୀର ଧୁରନ୍ଧର ।
ଯଦି ଗୁଣ ଚଢ଼ାଇବେ ଏ' ଶିବଧନୁର ॥ ୫୬
ତେବେ ମୁଁ ପରମ ସୁଲକ୍ଷଣୀ କନ୍ୟା ମୋର ।
ସମର୍ପିବି ଶ୍ରୀରାମଙ୍କ କରେ ମୁନିବର ! ॥ ୫୭
ଏତେ ବଖାଣି ଜନକ ହୋଇଲେ ମଉନ ।
ରାଜର୍ଷିପ୍ରବର ସର୍ବ ଗୁଣରେ ନିପୁଣ ॥ ୫୮
ମିଥିଳା ନରେଶ ଜନକଙ୍କ ଶ୍ରୀପଦ୍ମରେ ।
ବନ୍ଦି ଶ୍ରୀପୁରୁଷୋତ୍ତମ ଭଣେ ମୁନିଗିରେ ॥ ୫୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଷଟ୍‌ଷଷ୍ଟିତମ ସର୍ଗ ।



# ସପ୍ତଷଷ୍ଟିତମ ସର୍ଗ

## ଶିବଧନୁ ଭଙ୍ଗ ।

ଶୁଣି ବଇଦେହ ନୃପଙ୍କ ଅମୃତ ବଚନ ।
ଭାଷିଲେ ବ୍ରହ୍ମର୍ଷି ଧୀରେ ହୋଇ ହୃଷ୍ଟମନ ॥ ୧
ହେ ଧାର୍ମିକ ନୃପ ! ଶୁଣ ମୋହର ବଚନ ।
ଯେଉଁ ଯଅ ଧନୁଗୃହେ ଶ୍ରୀରାମ ଲକ୍ଷ୍ମଣ ॥ ୨
ଦେଖିବେ କୁମାରେ ତାଙ୍କ ବଳନ୍ତି ମାନସ ।
ଏଣୁ କର ଆୟୋଜନ ହେ ମିଥିଳା ଈଶ ! ॥ ୩
ତହୁଁ ବଇଦେହ ରାଜନ ମନ୍ତ୍ରୀଙ୍କୁ ଡକାଇ ।
ବୋଇଲେ ଗନ୍ଧମାଲ୍ୟରେ ସୁଶୋଭିତ କରି ॥ ୪
ଯେଉଁ ଆସ ଶିବଧନୁ ଦେଖିବେ ଶ୍ରୀରାମ ।
ଅଜଗବ ଦେଖି ପୂର୍ଣ୍ଣ ହେବ ମନସ୍କାମ ॥ ୫
ନୃପ ଜନକଙ୍କ ଆଜ୍ଞା ଯେଉଁ ମନ୍ତ୍ରୀଗଣ ।
ଚଳିଲେ ନଗରେ ଶୀଘ୍ରେ ହୋଇ ହୃଷ୍ଟମନ ॥ ୬
ଆଦେଶିଲେ ମଲ୍ଲଗଣେ ପରମ ସାଦରେ ।
ଯେଉଁପିବ ଶିବଧନୁ ନୃପ ଯଜ୍ଞଶାଳେ ॥ ୭
ଲୌହ ମଞ୍ଜୁଷାରେ ଥିଲା ପିନାକ କାର୍ମୁକ ।
ସନ୍ଧି ଲଗିଥିଲା ଅଠଗୋଟି ଲୌହ ଚକ୍ର ॥ ୮
ପାଞ୍ଚସହ୍ର ବୀରେ ଧୀରେ ଆଗପଛ ହୋଇ ।
ଆଣିଲେ ଶିବଧନୁକୁ ପଦଣ୍ଡ ମଣାଇ ॥ ୯
ଧନୁ ଥୋଇ ସଭାମଧ୍ୟେ ବୋଇଲେ ଅମାତ୍ୟ ।
ଆହେ ନୃପ ! ଶିବଧନୁ ଆଣିଲୁ ଜଗତ ॥ ୧୦
ଦେଖିବା ହୁଅନ୍ତୁ ଏବେ ରାମ ରଘୁମଣି ।
ବହୁ କ୍ଳେଶେ ଆଣିଲୁ ଏଠାକୁ ଧନୁ ଯେଉଁ ॥ ୧୧
ସକଳ ରାଜସମାଜେ ଯେହୁ ସୁପୂଜିତ ।
ଏବେ ପ୍ରତ୍ୟକ୍ଷ କରନ୍ତୁ ତା'ରେ ବେଦଭ୍ରାତ ॥ ୧୨

ଦେଖିବାକୁ କୁତୂହଳ ବଳନ୍ତି ତାଙ୍କର ।
ଦେଖାଅ ରାଜନ ! ତାଙ୍କୁ କରି ସମାଦର ॥ ୧୩
ମନ୍ତ୍ରୀ ମୁଖଁ ଶୁଣି ଏ' ବଚନ ମିଥିଳେଶ ।
କରଯୋଡ଼ି ବିଶ୍ୱାମିତ୍ରେ ବୋଲନ୍ତି ହେ ଈଶ ! ॥ ୧୪
ଅଣାଇଲି ଶିବଧନୁ ତବ ଆଜ୍ଞା ଘେନି ।
ଶ୍ରଦ୍ଧାରେ ଦେଖନ୍ତୁ ଏବେ ରଘୁକୁଳମଣି ॥ ୧୫
ରାମ ଲକ୍ଷ୍ମଣଙ୍କୁ ଚାହିଁ ବୋଲନ୍ତି ରାଜନ ।
ସାମାନ୍ୟ ନୁହଇ ଏହୁ ଆହେ ରଘୁଗଣ ! ॥ ୧୬
ସସାଗରା ଧରାରେ ଅଛନ୍ତି ଯେତେ ରାଜା ।
ଏ' ଧନୁରେ ନତ ଶିରେ କରିଛନ୍ତି ପୂଜା ॥ ୧୭
ଗୁଣ ଦେବାକୁ ଧନୁରେ ନୋହିଲେ କେ କ୍ଷମ ।
ପୂର୍ବେ ମୁଁ ଦେଖିଛି ନୃପଗଣ ପରାକ୍ରମ ॥ ୧୮
ଦେବ ନାଗ ଯକ୍ଷ ରକ୍ଷ ଗନ୍ଧର୍ବ କିନ୍ନର ।
ସକଳେ ଦେଖି ଅଛନ୍ତି ଏହି ଧନୁ ମୋର ॥ ୧୯
କେହି ନୋହିଲେ ସମର୍ଥ ନିଜ ପରାକ୍ରମେ ।
ଗୁଣ ଦେବାକୁ ଧନୁରେ ବହୁ ପରିଶ୍ରମେ ॥ ୨୦
କି କହିବି ଆଉର ହେ ବୀର ରଘୁନାଥ !
ଟେକି ନ ପାରିଲେ କେହି ହୋଇଣ ସମର୍ଥ ॥ ୨୧
ଗୁଣ ଦେଇ ଟଙ୍କାରିବା ଦୂରେ ଥାଉ ରାମ !
ହଲାଇ ନ ପାରି ଡଳେ ହୋଇଲେ ବିଭ୍ରମ ॥ ୨୨
ଏହୁଁ ବିଶ୍ୱାମିତ୍ରେ ଚାହିଁ ଜନକ ରାଜନ ।
ବୋଇଲେ ହେ ମୁନିବର ! ଘେନ ତୋ' ବଚନ ॥ ୨୩
ଅଣାଇଲି ଧନୁ ଏଥେ ଦେଖନ୍ତୁ ଶ୍ରୀରାମ ।
ଆଉର ଦେଖନ୍ତୁ ତାଙ୍କ ଅନୁଜ ଲକ୍ଷ୍ମଣ ॥ ୨୪
ଶୁଣି ଜନକ ବଚନ ମୁନି ବିଶ୍ୱାମିତ୍ର ।
ବୋଇଲେ ଶ୍ରୀରାମେ ଆହେ ବୀର ରଘୁନାଥ ! ॥ ୨୫
ଦେଖାଅ ବଳ ବିକ୍ରମ ଦଶରଥ ବାଳ !
ଦେଖନ୍ତୁ ସଭାରେ ଯେତେ ମହର୍ଷି-ଭୂପାଳ ॥ ୨୬

ମୁନିଙ୍କ ଆଦେଶେ ରାମ ହସ ହସ ହୋଇ ।
ପ୍ରଣମି ଗୁରୁଙ୍କ ପାଦେ ଗଲେ ମୋଡ ବାନ୍ଧି ।। ୨୭
ମଞ୍ଜୁଷା ଫେଡଇଣ ଧନୁ ଦେଖି ରଘୁମଣି ।
ବିଶ୍ୱାମିତ୍ରଙ୍କୁ ଅନାଇଁ ଯୋଡ଼ି ବେନିପାଣି ।। ୨୮
ବୋଇଲେ ହେ ଗୁରୁଦେବ ! ଧରୁଛି ମୁଁ ଏହା ।
ପାରିଲେ ଗୁଣ କଷିବି ଆଦେ ପୁଣ୍ୟଦେହା ।। ୨୯
ଶୁଣି ଶ୍ରୀରାମଙ୍କ ମୁଖୁଁ ଏସନ ଉତ୍ତର ।
'ଏବମସ୍ତୁ' 'ଏବମସ୍ତୁ' ବୋଇଲେ ସକଳ ।। ୩୦
କୌଶିକ ଇଙ୍ଗିତେ ରାମ ହୋଇଣ ହରଷ ।
ମନେ ମନେ ସୁମରଣା କରିଣ ଗୌରୀଶ ।। ୩୧
ଅବଲୀଳା କ୍ରମେ ଧନୁ ମଧ୍ୟଭାଗୁଁ ଧରି ।
ଉଠାଇଲେ ଶଶକରୁ ଯେସନ କେଶରୀ ।। ୩୨
ସ୍ୱଚ୍ଛ ସ୍ୱଚ୍ଛନ୍ଦେ କ୍ରୀଡ଼ାଧନୁ ପରି ରଘୁନାଥ ।
ପ୍ରତ୍ୟଞ୍ଚା ଚଢ଼ାଇ ମନେ ହେଲେ ପୁଲକିତ ।। ୩୩
ଶତ ସହସ୍ର ଜନତା ଏକାଗ୍ର ଦୃଷ୍ଟିରେ ।
ଚାହିଁ ରହିଥିଲେ ସବେ ଅତି କୁତୂହଳେ ।। ୩୪
ଗୁଣ ଚଢ଼ାଇ ଶ୍ରୀରାମ ଆଣ୍ଟେ ଧନୁ ଧରି ।
ମଣିବନ୍ଧୁଁ କର୍ଣ୍ଣପାଏଁ ଆଣନ୍ତେ ଓଟାରି ।। ୩୫
ଚଟକ ଶବଦେ ଧନୁ ବେନିଖଣ୍ଡ ହୋଇ ।
ପଡ଼ିଲା ମଧ୍ୟରେ ସବେ ଦେଖୁଥିଲେ ଚାହିଁ ।। ୩୬
ଧନୁଭଙ୍ଗେ ଉଠିଲା ଯେ ପ୍ରଚଣ୍ଡ ଶବଦ ।
ଶତ ବଜ୍ରପାତ ସମ ଶୁଭିଲା ସେ ନାଦ ।। ୩୭
ପର୍ବତ ଶିଖର ଅବା ବେନିଖଣ୍ଡ ହୋଇ ।
ପଡ଼ିଣ ନିର୍ଘାତେ ହୋଇଲା କି ଧରାଶାୟୀ ।। ୩୮
ଅବା କି ହୋଇଲା ଭୂମିକମ୍ପ ଧରଣୀରେ ।
ସକଳେ ସ୍ତବଧ ହେଲେ ଧନୁ ଶବଦରେ ।। ୩୯
ମୁନିବର ବିଶ୍ୱାମିତ୍ର ଜନକ ରାଜନ ।
ଆବର ସେ ବେନିଭାଇ ଶ୍ରୀରାମ ଲକ୍ଷ୍ମଣ ।। ୪୦

ଏହୁ ଶ୍ବରଜଣ ମାଗ ଉତ୍ବଲେ ସଙ୍ଗନେ ।
ଅନ୍ୟ ସଭ୍ଜନେ ଜ୍ଞନ ହାଣଲେ ତକ୍ଷଣେ ॥ ୪୧
କଣ୍ଠୁକ୍ଷଣ ଅନ୍ତେ ସର୍ବେ ଲଭିଲେ ଚେତନ ।
ତହୁଁ କରଯୋଡ଼ି ମୋଦେ ଜନକ ରାଜନ ॥ ୪୨
ବଚନ ଉଚନେ ଯେହୁ ଅତ୍ୟନ୍ତ କୁଶଳ ।
ଦିବ୍ୟ ନନ୍ଦେ ମନ ଯା'ର ହୋଇଛୁ ନର୍ମଳ ॥ ୪୩
ସେ ଜନକ ମିଥିଳେଶ ବିଶ୍ବାମିତ୍ରେ ଗୁହିଁ ।
ବୋଇଲେ ହେ ମୁନିବର ! ଧନ୍ୟ ହେଲ ମୁହିଁ ॥ ୪୪
ସାମାନ୍ୟ ନୁହଇ ଏହୁ ପିନାକ କାର୍ମୁକ ।
ତହିଁରେ ଗୁଣ କଷିଲେ ଶ୍ରୀରଘୁନାୟକ ॥ ୪୫
ଜାଣିଲ ପ୍ରତ୍ୟକ୍ଷେ ତାଙ୍କ ବଳ ପରାକ୍ରମ ।
ଅଚିନ୍ତ୍ୟ ଅଦ୍ଭୁତ ଅତର୍କିତ ଏହୁ କର୍ମ ॥ ୪୬
ମୋ ନନ୍ଦନ ସୁକୁମାରୀ ଧରଣୀ ସମ୍ଭୂତ ।
ଲଭି ଶୌର୍ଯ୍ୟବୀର୍ଯ୍ୟଶାଳୀ ଏସନକ ପତି ॥ ୪୭
ଜନକ ବଂଶର କୀର୍ତ୍ତିଧ୍ୱଜା ଧରଣୀରେ ।
ଉଡ଼ାଇବ ନଶ୍ଚେ ଏହା ଜାଣ ମୁନିବରେ ! ॥ ୪୮
ଆହେ କୁଶିକ ନନ୍ଦନ ! ବୀର୍ଯ୍ୟଶୁଳ୍କା ରୂପେ ।
କଳ୍ପିଥିଲ ଯାହାକୁ ମୁଁ ମନର ସଂକଳ୍ପେ ॥ ୪୯
ହୋଇଲା ପୂରଣ ତାହା ଆଜ ମୁନିବର !
ସତ୍ୟ ସଙ୍କଳ୍ପ ମୋର ପୂରିଲା ସକଳ ॥ ୫୦
ପ୍ରାଣରୁ ଅଧିକ ସ୍ନେହଶୀଳା ମୋ' କୁମାରୀ ।
ସମର୍ପିବି ଶ୍ରୀରାମଙ୍କ କରେ ସତ୍ୟ କରି ॥ ୫୧
ଆହେ ବ୍ରହ୍ମ ଋଷିବର ! କୁଶିକ ନନ୍ଦନ !
ହେଉ ତବ ସର୍ବ ଶୁଭ ମଙ୍ଗଳ କଲ୍ୟାଣ ॥ ୫୨
ଆଜ୍ଞା ଦିଅ ରଥୁବର ଯେନ ଶୀଘ୍ରତରେ ।
ପ୍ରସ୍ଥାଣ କରନ୍ତୁ ମନ୍ତ୍ରୀ ଅଯୋଧ୍ୟା ନଗରେ ॥ ୫୩
ସକଳ ଜଣାଇ ନୃପପୁରେ ଦଶରଥେ ।
ଘେନାଇ ଆସନ୍ତୁ ତାଙ୍କୁ ସୁସଜ୍ଜିତ ରଥେ ॥ ୫୪

କହନ୍ତୁ ଆବର ଆମ୍ଭ ଶୁଭ ସମାଚାର ।
ବୀର୍ଯ୍ୟଶୁଳ୍‌କା ସୀତା ମୋର ପ୍ରାଣର ଆଧାର ।। ୫୫
ପୂର୍ବେ ଯେଉଁ ସଙ୍କଳପ କଲି ମୁନିବର !
ଆଜ ତୁମ୍ଭ କୃପାରୁ ତା' ହୋଇଲା ସମ୍ପୂର୍ଣ୍ଣ ।। ୫୬
ଶ୍ରୀରାମଙ୍କ କରେ କନ୍ୟା କରି ସମର୍ପଣ ।
ନିଶ୍ଚିନ୍ତ ହୋଇବି ଆହେ କୁଶିକ ନନ୍ଦନ ! ।। ୫୭
ଆବର ବୋଲିବେ ମନ୍ତ୍ରୀ ଅଯୋଧ୍ୟା ରାଜନେ ।
ତୁମ୍ଭ ସଙ୍ଗେ ସବ ଶୁଭେ ଆସି ବେଗଜନେ ।। ୫୮
ମିଥିଳାରେ ପରବେଶି ପ୍ରମୋଦ ମନରେ ।
ଲଭିଛନ୍ତି ଗଉରବ ଅବନୀ ମଣ୍ଡଳେ ।। ୫୯
ପୂର୍ବେ ଯାହା ସାଧି ନୋହିଥିଲା ସେହି କର୍ମ ।
ଶିବଧନୁ ଭାଙ୍ଗି ଲଭଅନ୍ତୁ ସୁତା ମମ ।। ୬୦
ଶୁଣି ବିନୟ ବଚନ ଜନକ ରାଜାର ।
ମନେ ହରଷିତ ହୋଇ କୁଶିକ କୁମର ।। ୬୧
'ଏବମସ୍ତୁ' ବୋଲି ଆଜ୍ଞା ଦେଲେ ଗାଧିସୁତ ।
ତହୁଁ ମିଥିଳେଶ ମନେ ହୋଇ ହରଷିତ ।। ୬୨
କୁଶଳ ମନ୍ତ୍ରୀରେ ରାଇ ବୁଝାଇ ସକଳେ ।
ଆଜ୍ଞା ଦେଲେ ଯେନ ଆସ ଅଯୋଧ୍ୟା ଭୂପାଳେ ।। ୬୩
ମହାବୀର ଧନୁର୍ଦ୍ଧର ଶ୍ରୀରାମ ଚରଣେ ।
ପ୍ରଣମି ପୁରୁଷୋତ୍ତମ ଏ' ଚରିତ ଭଣେ ।। ୬୪
ଆହେ ରାମ କୌଶଲ୍ୟାନନ୍ଦନ ଦାଶରଥି !
ପୂରଣ କର ମୋ' ଆଶା ଜଣାଏ ପ୍ରଣତି ।। ୬୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତଷଷ୍ଟିତମ ସର୍ଗ ।



# ଅଷ୍ଟଷଷ୍ଟିତମ ସର୍ଗ

## ମହାରାଜ ଦଶରଥଙ୍କ ମିଥିଳା ଆଗମନ ।

ଜନକଙ୍କ ଆଜ୍ଞା ଘେନ ଦୂତ ଚଳିଗଲେ ।
ଅଯୋଧ୍ୟାରେ ଯାଇ ତ୍ରୟ ଦିବସେ ମିଳିଲେ ॥ ୧
ବିଶ୍ରାମ କାରଣେ ରଜନୀରେ ପଥେ ରହି ।
ଚତୁର୍ଥ ଦିନେ ମନସୁଖେ ରାଜପୁରେ ଯାଇ ॥ ୨
ଦେଖିଲେ ତେଜସ୍ୱୀ ଅତ୍ୟନ୍ତ ଦଶରଥ ।
ଦୂତ ଯାଇ ପ୍ରଣମିଲେ ଶିର କରି ନତ ॥ ୩
କରଯୋଡ଼ି ସବିନୟେ କହନ୍ତି ମଧୁରେ ।
ଆହେ ଅଯୋଧ୍ୟା ନରେଶ ! ଶୁଣନ୍ତୁ ସଧୀରେ ॥ ୪
ବିଧି ଯଜ୍ଞେ ବୈଶ୍ୱାନର ଆଗେ ନୃପବର ।
ବିଦେହ ମଣ୍ଡଳେ ଯେହୁ ଅତ୍ୟନ୍ତ ଈଶ୍ୱର ॥ ୫
ଜନକ ସ୍ନେହ ବଚନେ ଶ୍ରଦ୍ଧାଯୁକ୍ତ ହୋଇ ।
ତବ କୁଳଗୁରୁ ପୁରୋହିତ ହିତ ପାଇଁ ॥ ୬
ବାରମ୍ବାର ପଚ୍ଛନ୍ତି ଅଛନ୍ତି କୋଶଳେଶ !
କୁଳଗୋତ୍ର ସହିତରେ କରି ଯେ ଅଶେଷ ॥ ୭
ମିଥିଳାଧିପତି ଧୀର ଧାର୍ମିକ ସୁଜାଣ ।
ମୁନି ବିଶ୍ୱାମିତ୍ରଙ୍କର ଅନୁଜ୍ଞା ଲଭିଣ ॥ ୮
ଏ' ସନ୍ଦେଶ ଦେଇଛନ୍ତି ଆହେ ନରନାଥ !
ବିଧିପୂର୍ବ କରି ତାହା କରୁଛୁ ବ୍ୟକତ ॥ ୯
ଶୁଣିଛ ତ ରାଜନ ! ମୋ' ପୂରୁବ ଚରିତ ।
ମୋ' ପୁତ୍ରୀ ସୀତା ବିବାହେ ଯେଉଁ ପ୍ରତିଜ୍ଞାତ ॥ ୧୦
ସୀତପୁତ୍ରାକୁ ବୀର୍ଯ୍ୟଶୁଳ୍କା କରି ଯଥୋଚିତେ ।
ବିବାହ ଦେବାକୁ ମୁହିଁ ଭାବଥିଲି ଚିତ୍ତେ ॥ ୧୧

ଶୁଣି ପ୍ରତିଜ୍ଞା ବଚନ ଅନେକ ରାଜନ ।
ଆସିଥିଲେ କଷିବାକୁ ବଳ ପରାକ୍ରମ ॥ ୧୨
ସର୍ବେ ଶିବଧନୁ ପାଶେ ହୋଇଣ ନଷ୍ଟ ଭ ।
କେତେ କେତେ ପରାକ୍ରମୀ ଲଭି ପରାଭବ ॥ ୧୩
ଛନ୍ତି କୋପବଶେ ଯାହା କଲେ ନୃପଗଣ ।
ଶୁଣିଥିବ ସେ ଉଦନ୍ତ ଅଯୋଧ୍ୟା ରାଜନ ! ॥ ୧୪
ତୁମ୍ଭର ବେନି କୁମର ଶ୍ରୀରାମ ଲକ୍ଷ୍ମଣ ।
ଉପସ୍ଥିତ ହୋଇ ଏଥେ ଆହେ ନରଗଣ ! ॥ ୧୫
ବିଶ୍ୱାମିତ୍ରଙ୍କ ଆଜ୍ଞାରେ ଅସାଧ୍ୟ ସାଧନ ।
କରନ୍ତେ ମୋ' ମନୋରଥ ହୋଇଅଛି ପୂର୍ଣ୍ଣ ॥ ୧୬
ନ ମଣିବ କେବେ ଏହୁ କଥା ଆଚମ୍ବିତ ।
ମୋ' କନ୍ୟାକୁ ଶୌର୍ଯ୍ୟବଳେ ଜିଣି ରଘୁନାଥ ॥ ୧୭
ରବିକୁଳମଣି ରଘୁମଣି ଅବମାରେ ।
ଛୁଡ଼ାଇଲେ ଅକ୍ଷୟ-କୀରତି ହେବସ୍ତାରେ ॥ ୧୮
ଭୁଜବଳେ ଶିବଧନୁ ଉଠାଇ ବିକ୍ରମେ ।
ଗୁଣ ଦେଇ ଟଙ୍କାରିଲେ ଭୀମ ପରାକ୍ରମେ ॥ ୧୯
ସଭାଜନ ମଧ୍ୟେ ରାମ ଦେଖାଇ ବାହୁଳି ।
ସେ ଧନୁକୁ ବେନିଖଣ୍ଡେ ଭାଙ୍ଗିଲେ ଅଦ୍ଭୁତ ॥ ୨୦
ତେଣୁ ହେ ନୃପଶେଖର ! ମୋ' ପ୍ରତିଜ୍ଞା ପୂର୍ଣ୍ଣ ।
ହୋଇଛି ଏବେ ମୁଁ ମୋର ଦୁହିତା ରତନ ॥ ୨୧
ସମର୍ପିବି ମହାବୀର ଶ୍ରୀରାମଙ୍କ କରେ ।
ସଫଳ ହୋଇବ ବାଞ୍ଛା ଭାବଇ ମନରେ ॥ ୨୨
ଏଣୁ କରି କରଯୋଡ଼ି କରେ ନିବେଦନ ।
ଆଜ୍ଞାଦେବା ହେଉ ମୋତେ ରଘୁକୁଳରତ୍ନ ! ॥ ୨୩
ଆହେ ନୃପତି ତିଳକ ! ଶୁଣ ମୋ' ବିନତି ।
ସୁଶୋଭିତ କୁଳଗୁରୁ ସହିତେ ତତ୍ପରି ॥ ୨୪
ପାତ୍ର ମନ୍ତ୍ରୀ କୁଟୁମ୍ବାଦି ଘେନି ସଙ୍ଗତରେ ।
ଏତିକ ପ୍ରାର୍ଥନା ବିଜେ କର ମିଥିଳାରେ ॥ ୨୫

ବେନଗାର-ତନୟଙ୍କୁ ଦେଖିବ ରାଜନ !
ସର୍ବ ଶୁଭେ ଛନ୍ତି ସଉମିତ୍ରି ରଘୁଗଣ ॥ ୨୬
ସୁକଲ୍ୟାଣ ହେଉ ତବ ରଘୁବଂଶ ମଣି !
ତୁରିତେ ଆସିବ ସର୍ବେ ମୋ' ତନୟ ଘେନ ॥ ୨୭
ଏଥୁଁ ମୋହର ପ୍ରତିଜ୍ଞା ହୋଇବ ପୂରଣ ।
ପୁତ୍ରର ବିବାହେ ମୋଦ ଲଭିବେ ଆପଣ ॥ ୨୮
ସନ୍ଦେଶ ଶୁଣାଇ ଦୂତ କହିଲ ସଧୀରେ ।
ହେ ରାଜନ ! କହିଲି ଯା' ଶୁଣିଲ ତ ଭଲେ ॥ ୨୯
ମୁନି ବିଶ୍ୱାମିତ୍ରଙ୍କର ଆଜ୍ଞା ଘେନି କରି ।
ଆଦର ଶତାନନ୍ଦଙ୍କ ସମ୍ମତି ବିସ୍ତରି ॥ ୩୦
ପଠାଇଛନ୍ତି ଜନକ ଆହେ ନରେଶ୍ୱର !
ଏଥିକି ଉଚିତ ଯାହା କରନ୍ତୁ ସତ୍ୱର ॥ ୩୧
ସନ୍ଦେଶବାହକ ମୁଖୁଁ ଶୁଣି ଏ' ବଚନ ।
ରଘୁବଂଶ ରବି ଦଶରଥ ତୋଷମନ ॥ ୩୨
ମହର୍ଷି ବଶିଷ୍ଠ ବାମଦେବ ଆଦି ଯେତେ ।
ଡକାଇ ଆଣିଲେ ନୃପ ସକଳ ଅମାତ୍ୟେ ॥ ୩୩
ବୋଇଲେ ହେ ଋଷି ମନ୍ତ୍ରୀଗଣ ! ଶୁଣ ଧୀରେ ।
ଜନକ ଯା' ବାର୍ତ୍ତା ପେଷିଛନ୍ତି ମୋ' ଛାମୁରେ ॥ ୩୪
କୌଶଲ୍ୟା ଆନନ୍ଦ ବରଧନକାରୀ ରାମ ।
ବିଶ୍ୱାମିତ୍ରଙ୍କ ସଙ୍ଗତେ ସୌମିତ୍ରି ଲକ୍ଷ୍ମଣ ॥ ୩୫
ସୁଖେ ରହିଛନ୍ତି ଏବେ ମିଥିଳା ନଗରେ ।
ସର୍ବଜନମନ ତୋଷି ନିଜ ବିକ୍ରମରେ ॥ ୩୬
ଏଣୁ ରାଜର୍ଷି ଜନକ ମନେ ତୋଷ ହୋଇ ।
ଶ୍ରୀରାମ ବିବାହେ ମୋର ଅଜ୍ଞା ମାଗିଛଇଁ ॥ ୩୭
ରଘୁକୁଳରତ୍ନ କରେ ଦୁହିତା ରତନ ।
ସୀତାରେ ସମର୍ପିବେ ସେ ବିଦେହ ରାଜନ ॥ ୩୮
ଏଥିକୁ ଅନୁଜ୍ଞା ମାଗଇଁ ମୁଁ ମୁନିଗଣ !
ମନ୍ତ୍ରୀଗଣ ସମ୍ମତିରେ କରି ଜଣେ ଜଣ ॥ ୩୯

ସମ୍ମତ ଲଭିଲେ ଶୀଘ୍ର କରିବା ଗମନ ।
ତଥ ରହିଁ ବସିଥିବେ ମିଥିଳା ରାଜନ ॥ ୪୦
ଶୁଣି ଏସନକ ବାଣୀ ଅମାତ୍ୟ ସମେତ ।
ଋଷିଗଣ ଆନନ୍ଦରେ ହୋଇ କୃତକୃତ୍ୟ ॥ ୪୧
ବଶିଷ୍ଠ ବାମଦେବାଦି ହରଷିତ ମନେ ।
ବୋଇଲେ ରାଜନ ! ସାଜ ମିଥିଳା ଗମନେ ॥ ୪୨
ଶୁଭକାର୍ଯ୍ୟେ ବିଳମ୍ବ ନ କର ନୃପରାଣ !
ସର୍ବେ ସନମତ ହୋଇ ବୋଇଲେ ଏସନ ॥ ୪୩
ମନ୍ତ୍ରୀ ପୁରବନ୍ଧୁତ କୁଳଗୁରୁଙ୍କ ସମ୍ମତ ।
ଲଭି ଶୀଘ୍ର ସଜ ହେଲେ ଅଯୋଧ୍ୟାଭୂପତି ॥ ୪୪
ବୋଇଲେ କାଲି ପ୍ରଭାତୁଁ କରିବା ଗମନ ।
ଏହା ଶୁଣି ଅମାତ୍ୟେ ହୋଇଲେ ତୋଷମନ ॥ ୪୫
ସୁଗୁଣଭୂଷଣ ଅଯୋଧ୍ୟାର ମନ୍ତ୍ରୀଗଣ ।
ବରଯାତ୍ରୀ ଦଳେ ଯିବା ପାଇଁ କଲ ମନ ॥ ୪୬
ସେ ରଜନୀ ମହାସୁଖେ ବଞ୍ଚାଇ ସକଳେ ।
ସଜ ହେଲେ ଯିବା ପାଇଁ ମିଥିଳା ନଗରେ ॥ ୪୭
ଲକ୍ଷ୍ମୀନାରାୟଣରୂପୀ ସୀତାରାମଙ୍କର ।
ନମି ପଦେ ଶ୍ରୀପୁରୁଷୋତ୍ତମ ବିପ୍ରବର ॥ ୪୮
ରଚଇ ଏ' ରାମାୟଣ ଗାଥା ମନ ସୁଖେ ।
ପୂର୍ବେ ଯାହା ବାଲ୍ମୀକି ଭଣିଛନ୍ତି ଶ୍ଳୋକେ ॥ ୪୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଅଷ୍ଟଷଷ୍ଟିତମ ସର୍ଗ ।



# ଏକୋନସପ୍ତତିତମ ସର୍ଗ

## ଦଶରଥଙ୍କ ମିଥିଳା ପ୍ରବେଶ ଓ ଜନକଙ୍କ ଭବ୍ୟ ସ୍ୱାଗତ ।

ନିଶା ଅବସାନେ ଦଶରଥ ନୃପଗଣ ।
ଉପାଧ୍ୟାୟ ବନ୍ଧୁଗଣ ସଙ୍ଗତେ ଆପଣ ॥ ୧
ମିଥିଳା ଗମନେ ଶୀଘ୍ର ହୋଇଣ ତତ୍ପର ।
ମୋଦଭରେ ସୁମନ୍ତରେ ବୋଇଲେ ଏ' ଗିର ॥ ୨
ରାଜଭଣ୍ଡାରରୁ ଯେତେ ଧନଦ୍ରବ୍ୟମାନ ।
ଚଳନ୍ତୁ କୋଷ ରକ୍ଷକ ସଙ୍ଗ ଅଗ୍ରତେଣ ॥ ୩
ତାହାଙ୍କ ସୁରକ୍ଷା ଲାଗି ଯେ ବଧି ବିଧାନ ।
ପଠାଅ ସୁମନ୍ତ କରି ସବୁ ଆୟୋଜନ ॥ ୪
ଚତୁରଙ୍ଗ ବଳ ଶୀଘ୍ର ହୋଇଣ ତତ୍ପର ।
ଗମନ କରିବେ ବରଯାତ୍ରୀ ସଙ୍ଗତର ॥ ୫
ମୋ' ଆଜ୍ଞା ମାତ୍ରକେ ତାକ ବାହକେ ସକଳ ।
ସୁସଜ୍ଜିତ ପାଲିଙ୍କି ଅଣାଅ ମନ୍ତ୍ରୀବର ॥ ୬
ବାଛିଣ ସୁଜାତି ବାଜି ସଜାଇ ସଜରେ ।
ବେଗେ କରାଅ ସୁମନ୍ତ ଆଜ ମୋ' ସ୍ମୁମୁରେ ॥ ୭
ବ୍ରହ୍ମାସୁତ ବାମଦେବ କଶ୍ୟପ ଜାବାଲି ।
ଚିରଞ୍ଜୀବୀ ମାର୍କଣ୍ଡେୟ ସହିତରେ ମିଳି ॥ ୮
କାତ୍ୟାୟନ ଆଦି ଯେତେ ଛନ୍ତି ଋଷିଗଣ ।
ସକଳ ଚଳନ୍ତୁ ଅଗ୍ରେ ଚଢ଼ି ଯେଝା ଯାନ ॥ ୯
ସୁସଜ୍ଜିତ ରଥବର ଅଣାଅ ତ୍ବରିତେ ।
ଯିବି ମୁଁ ମିଥିଳାପୁରୀ ଯେତେ ସବୁ ସାଥେ ॥ ୧୦
ଜନକ ରାଜନ ଦୂତ ହେଲେଣି ଉଛନ୍ନ ।
ପ୍ରେରଣେ । ବଅନ୍ତ ଏଥେ ଆସି ଘନ ଘନ ॥ ୧୧

କୋଶଳେଶ ଆଜ୍ଞା ପାଇ ଚତୁରଙ୍ଗ ବଳ ।
ଚଳିଲେ ମିଥିଳା ମାର୍ଗେ ପଛାଇ ଚହଳ ॥ ୧୨

ନୃପ ସଙ୍ଗ ମୁନିଗଣ ଆଗପଛ ହୋଇ ।
ଗମିଲେ ରାଜମାର୍ଗରେ ଚହଳ ପକାଇ ॥ ୧୩

ସର୍ବଶେଷ ସୈନ୍ୟଗଣ ନାନା ଶସ୍ତ୍ର ଧରି ।
ଚଳିଲେ ମନ ଉତ୍ସୁକେ ବିଳମ୍ବ ନ କରି ॥ ୧୪

ଚାରିଦିନ ଅନ୍ତେ ହେଲେ ମିଥିଳା ନଗରେ ।
ଶୁଣି ଏ' ବାରତା ନୃପ ଜନକ ସତ୍ୱରେ ॥ ୧୫

ସ୍ୱାଗତ ବରଣ ଦ୍ରବ୍ୟ ସଜାଇ ତତ୍ପରେ ।
ମିଳିଲେ ସାନନ୍ଦେ ଯାଇ ବରଯାତ୍ରୀ ଦଳେ ॥ ୧୬

ମନର ହରଷେ ଦଶରଥ ପାଶେ ଯାଇ ।
ବରଣ କଲେ ନୃପଙ୍କୁ ପାଦ୍ୟ ଅର୍ଘ୍ୟ ଦେଇ ॥ ୧୭

ତଦନ୍ତେ ମୁନିଗଣଙ୍କୁ କରି ବିଧି ପୂଜା ।
ମନରେ ସନ୍ତୋଷ ହେଲେ ମିଥିଳାର ରାଜା ॥ ୧୮

ଏଥିଅନ୍ତେ ରାଜର୍ଷି ପ୍ରବର ଯେ ଜନକ ।
ଅଯୋଧ୍ୟା ନରେଶେ କହୁଛନ୍ତି ଅନେକ ॥ ୧୯

ବୋଇଲେ ହେ ନରଶ୍ରେଷ୍ଠ ! ଜଣାଏ ସ୍ୱାଗତ ।
ମୋର ସୌଭାଗ୍ୟରୁ ଆଜ ହେଲ ଉପଗତ ॥ ୨୦

ମହାକୀର୍ତ୍ତିଧର ତବ ଏ' ବେନି କୁମରେ ।
ଦେଖିବ ତାହାଙ୍କୁ ତୁମ୍ଭେ ଆନନ୍ଦ ମନରେ ॥ ୨୧

ମୁନିଶ୍ରେଷ୍ଠ ବଶିଷ୍ଠଙ୍କୁ ଲଭି ଭାଗ୍ୟ ବଶୁ ।
ପ୍ରମୁଦିତ ହେଲା ଯଜ୍ଞ ହେବ ଫଳପ୍ରସୂ ॥ ୨୨

ମୁନିଗଣ ମଧ୍ୟେ ସେହୁ ଦିଶନ୍ତି ଯେମନ୍ତ ।
ଦେବଗଣେ ଶୋଭାପା'ନ୍ତି ଯେସନ୍ତେ ଶଚୀକାନ୍ତ ॥ ୨୩

ପରାଭୂତ ହୋଇଅଛି ମୋର ବାଧା ବିଘ୍ନ ।
ଯେଣୁ ମୋ' ନବରେ ବିଜେ ଇକ୍ଷ୍ୱାକୁନନ୍ଦନ ॥ ୨୪

ସୂର୍ଯ୍ୟବଂଶ ସଙ୍ଗେ ମୋର କୁଳର ସମ୍ବନ୍ଧ ।
ହୋଇବାରୁ ମଣୁଅଛି ସୁବର୍ଣ୍ଣେ ସୁଗନ୍ଧ ॥ ୨୫

ମୋ' କୁଳ ଉଜ୍ଜ୍ୱଳ ହେଲା ଆହେ ନରେଶ୍ୱର !
ଯେଣୁ ଆପଣ ହୋଇଲେ ମୋର ବନ୍ଧୁବର ॥ ୨୬

କାଲି ପ୍ରଭାତୁଁ ମୋ' ଯାଗ ହେବ ସମାପତ ।
କୃପା କରି ଯଜ୍ଞଶାଳେ ହୋଇ ଉପସ୍ଥିତ ॥ ୨୭
ଯଜ୍ଞଶେଷେ ରାମଚନ୍ଦ୍ର ଉତ୍ସବ ଅର୍ପଣ ।
କରନ୍ତୁ ସମ୍ପନ୍ନ ଏ' ମୋ' ନମ୍ର ନିବେଦନ ॥ ୨୮
ଋଷିମଣ୍ଡଳୀରେ ଶୁଣି ଜନକ ବଚନ ।
ଦଶରଥ ନୃପ ହେଲେ ଆନନ୍ଦିତ ମନ ॥ ୨୯
ସୁବାଣୀ ମନ୍ତ୍ରଜ୍ଞ କଳାବିଦ ଦଶରଥ ।
ବୋଇଲେ ମିଥିଳାନୃପେ ଏସନ ଉଦନ୍ତ ॥ ୩୦
ହେ ଧର୍ମଜ୍ଞ ! ଶୁଣିଛି ମୁଁ ଏମନ୍ତ ବଚନ ।
ପ୍ରତିଗ୍ରାହୀ ହୁଅଇ ଯେ ଦାତାର ଅଧୀନ ॥ ୩୧
ତେଣୁ ଯେ ବିଧିନିଷେଧ କରିବ ବିଧାନ ।
ସକଳ ମୁଁ ସମ୍ପାଦିବି ବିଦେହ ରାଜନ ! ॥ ୩୨
ସତ୍ୟବାଦୀ ଧର୍ମନିଷ୍ଠ ଦଶରଥଙ୍କର ।
ଶୁଣି ମିଥିଳାଧିପତି ବଚନ ମଧୁର ॥ ୩୩
ବିସ୍ମୟ ଯାଗରେ ବୃଦ୍ଧ ହେଲେ ତୋଷମନ ।
ଦରିଦ୍ର ଲଭଇ ଯେହ୍ନେ ରତ୍ନବିଭୂଷଣ ॥ ୩୪
ମୁନିଗଣେ ପରସ୍ପରେ ହୋଇଣ ମିଳିତ ।
ସୁଖେ ଯାପିଲେ ରଜନୀ ବହୁ ମୋଦଚିତ୍ତ ॥ ୩୫
ତଦନ୍ତେ ମହାତେଜସ୍ବୀ ଶ୍ରୀରାମ ଲକ୍ଷ୍ମଣ ।
ବାହାରିଲେ ବନ୍ଦିବାକୁ ପିତାଙ୍କ ଚରଣ ॥ ୩୬
ପ୍ରବେଶି ପିତୃ ଆବାସେ ବୀର ରଘୁବର ।
ପ୍ରଣମି ବନ୍ଦିଲେ ମୋଦେ ପିତାଙ୍କ ପୟର ॥ ୩୭
ଜନକ ନରେଶେ ହୋଇ ସାଦରେ ସତ୍କୃତ ।
ପ୍ରସନ୍ନ ମାନସେ ମହାମନା ଦଶରଥ ॥ ୩୮
ରଘୁକୁଳନନ୍ଦ ରାମ ଲକ୍ଷ୍ମଣେ ଆଶ୍ବାସି ।
ସୁଖେ ପୁହାଇଲେ ନୃପ ରାଜପୁରେ ନିଶି ॥ ୩୯
ରଘୁବଂଶ କଳାକର ଶ୍ରୀରାମ ଲକ୍ଷ୍ମଣେ ।
ପ୍ରଣମି ପୁରୁଷୋତ୍ତମ ରାମାୟଣ ଭଣେ ॥ ୪୦

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକୋନସପ୍ତତିତମ ସର୍ଗ ।



# ସପ୍ତତିତମ ସର୍ଗ

## କୁଶଧ୍ୱଜଙ୍କ ଆଗମନ ଓ ରଘୁବଂଶ ବର୍ଣ୍ଣନା ।

ଏଥୁଅନ୍ତେ ପାହିଲାକ ସେଦିନ ରଜନୀ ।
ରାଜର୍ଷି ଜନକ ସର୍ବ ଋଷି ବିପ୍ର ଘେନ ॥ ୧
ଶତାନନ୍ଦଙ୍କୁ ଅଗ୍ରତେ କରିଣ ବରଣ ।
ବିଧିମତେ ବିଧିଯଜ୍ଞ କଲେ ସୁସମ୍ପନ୍ନ ॥ ୨
ତଦନ୍ତେ ରାଜନ ନିଜ କୁଳ ପୁରୋହିତ ।
ଶତାନନ୍ଦ ମହର୍ଷିରେ ଭାଷନ୍ତି ଏମନ୍ତ ॥ ୩
ହେ ମହାତ୍ମା ! ମହା ପରାକ୍ରମୀ ମୋର ଭାଇ ।
ଧାର୍ମିକ ପ୍ରବର ପୁଣ ଗୁଣଜ୍ଞ ଅଟଇ ॥ ୪
ଇକ୍ଷୁମତୀ ନଦୀ ତଟେ ସାଙ୍କାଶ୍ୟା ନଗରୀ ।
ପୁଷ୍ପକ ବିମାନ ସମ ସେହୁ ପୁଣ୍ୟସ୍ଥଳୀ ॥ ୫
କଲ୍ୟାଣମୟୀ ନଗରୀ ଉତ୍ତମା ସେ ପୁରୀ ।
ଯା'ର ଚଉପାଶେ ଅଛି ସୁଦୃଢ଼ ପାଚେରୀ ॥ ୬
ସେ ମହାନଗରୀ ମଧ୍ୟେ ସୁଖେ ନିରନ୍ତର ।
ଅଛଇ ମୋ' ଭାଇ କୁଶଧ୍ୱଜ ନୃପବର ॥ ୭
ଏହି ଶୁଭ ଅବସରେ ଆସି ସେ ଯେମନ୍ତ ।
ସମ୍ପନ୍ନ କରିବେ ରାମବିଭା ବିଧିମତ ॥ ୮
ସର୍ବଧର୍ମଜ୍ଞତା ମୋର ଭାଇ ଗୁଣାକର ।
ଅତ୍ୟନ୍ତ ସ୍ନେହଭାଜନ ଅଟଇ ମୋହର ॥ ୯
ମୋର ସଂରକ୍ଷକ ଯେଣୁ କୁଶଧ୍ୱଜ ଭ୍ରାତ ।
ତା'ର ବିନୁ ଏ' ମଙ୍ଗଳବିଧି ଅସଙ୍ଗତ ॥ ୧୦
ତେଣୁ ତାକୁ ଦିଅ ଶୀଘ୍ର ଶୁଭ ସମାଚାର ।
ସକୁଟୁମ୍ବେ ଆସୁ ସେହୁ ଯୋଗାଇ ସମ୍ଭାର ॥ ୧୧
ନୃପତି ବଚନ ଶୁଣି ମୁନି ଶତାନନ୍ଦ ।
ହର୍କାରା ଆଣିଲେ ଦୂତେ ହୋଇଣ ଆନନ୍ଦ ॥ ୧୨

ବୀର ଧୀର ବିଶ୍ୱସ୍ତ ପଣେ ଯେ ସୁକୁଶଳ ।
ଏମନ୍ତ ଦୂତ ପେଷିଲେ ରଜତମ ବାଳ ॥ ୧୩
ଜନକ ରାଜନ ସେହି ଦୂତଙ୍କୁ ହକାରି ।
ବୋଇଲେ ସନ୍ଦେଶ ଯାହା ଥିଲେ ସେ ବିସ୍ତରି ॥ ୧୪
ବେଗଗାମୀ ଅଶ୍ୱପୃଷ୍ଠେ କରି ଆରୋହଣ ।
ଚଳିଲେ ସେ ଦୂତବର ସଙ୍କାଶ୍ୟା ପଥେଣ ॥ ୧୫
କୁଶଧ୍ୱଜଙ୍କୁ ସନ୍ଦେଶ ଶୁଣାଇବା ପାଇଁ ।
ଧାଇଁଲେ ସତ୍ୱରେ ଦୂତ ପ୍ରଚଣ୍ଡ ମଣାଇଁ ॥ ୧୬
ଦେବରାଜ ଦୂତେ ସାଧିବାକୁ ଦେବକର୍ମ ।
ଚଳିଲେ କି ବିଷ୍ଣୁ ପାଶେ ବଇକୁଣ୍ଠଧାମ ॥ ୧୭
ସାଙ୍କାଶ୍ୟା ନଗରୀ ମଧ୍ୟେ ହୋଇ ଉପଗତ ।
ଜଣାଇଲେ ଯେ ସନ୍ଦେଶ ଜନକ ପ୍ରେରିତ ॥ ୧୮
ଶୁଣି ଦୂତଙ୍କ ମୁଖରୁ ଶୁଭ ସମାଚାର ।
କୁଶଧ୍ୱଜ ମନେ ମୋଦ ଲଭିଲେ ଅପାର ॥ ୧୯
ମିଥିଳା ଗମନେ ରଜା ହୋଇଣ ତତ୍ପର ।
କୁଳ-କୁଟୁମ୍ବାଦି ଘେନି ହୋଇବେ ବାହାର ॥ ୨୦
ପ୍ରବେଶ ହୋଇଲେ ଯାଇ ମିଥିଳା ନଗରୀ ।
ଅପୂର୍ବ ଶୋଭା ସମ୍ପଦେ ମଣ୍ଡିତ ଯେ ପୁରୀ ॥ ୨୧
ଜନକ-ଶତାନନ୍ଦଙ୍କ ପାଦରେ ପ୍ରଣାମ ।
କରି କୁଶଧ୍ୱଜ ଭଜେ କଲେ ସିଂହାସନ ॥ ୨୨
ବେନଭାଇ ବନ୍ଧୁଗଣେ ପ୍ରବେଷ୍ଟିତ ମେଳେ ।
ସୁଦାମନ ଅମାତ୍ୟଙ୍କୁ ଡକାଇ ସତ୍ୱରେ ॥ ୨୩
ବୋଇଲେ ହେ ମନ୍ତ୍ରୀବର ! ବେଗ ହୋଇ ଯାଅ ।
ଇକ୍ଷ୍ୱାକୁ କୁଳଭୂଷଣେ ସନ୍ଦେଶ ଶୁଣାଅ ॥ ୨୪
ଅମିତ ତେଜସ୍ୱୀ ଯେହୁ ରଜା ଦଶରଥ ।
ତ ହାଙ୍କୁ ନିବେଦ ବେନଭାଇଙ୍କ ଉଦନ୍ତ ॥ ୨୫
ଶୀଘ୍ର କରି ଘେନି ଆସ କରି ଯଥା ମାନ୍ୟ
ତାଙ୍କ ପଦରଜେ ପୂତ ହେଉ ମୋର ଧାମ ॥ ୨୬

ଜନକଙ୍କ ଆଜ୍ଞା ପାଇ ଅମାତ୍ୟ ପ୍ରବର ।
ସୁଦାମନ ଦଶରଥେ ଭେଟିଣ ସତ୍ୱର ॥ ୨୭
ପ୍ରଣମି ଯଥାମାନ୍ୟରେ କଲେ ନିବେଦନ ।
ଆହେ ନୃପ ଦଶରଥ ! ରଘୁକୁଳରଣ ॥ ୨୮
ମିଥିଳା ନରେଶ ମହାଧାର୍ମିକ ସୁଜ୍ଞାନୀ ।
ବସିଛନ୍ତି ଭ୍ରାତା ମନ୍ତ୍ରୀ ପୁରୋହିତେ ଘେନି ॥ ୨୯
ତୁମ୍ଭ ଦରଶନ ମାତ୍ର କଳପି ମାନସେ ।
ପଠାଇଲେ ମୋତେ ଦେବ ! ଶୁଣନ୍ତୁ ସନ୍ତୋଷେ ॥ ୩୦
ମନ୍ତ୍ରୀ ମିତ୍ର କୁଳଗୁରୁ ଘେନିଣ ସତ୍ୱର ।
ବିଜେ କରନ୍ତୁ ହେ ରଘୁକୁଳ ନିଶାକର ! ॥ ୩୧
ମନ୍ତ୍ରୀ ସୁଦାମନ ମୁଖୁଁ ଶୁଣି ଏ’ ବଚନ ।
ବଶିଷ୍ଠ-ବିଶ୍ୱମିତ୍ରଙ୍କୁ ନିବେଦି ବହନ ॥ ୩୨
ପାତ୍ର-ମିତ୍ର ବନ୍ଧୁଗଣ ଘେନାଇ ସଙ୍ଗରେ ।
ପ୍ରବେଶ ହୋଇଲେ ଯାଇ ଜନକପୁରରେ ॥ ୩୩
ସବାନ୍ଧବେ ଦଶରଥ ବସି ସୁଖାସନେ ।
ପ୍ରମୁଦିତ ହେଲେ ଜନକଙ୍କ ଅଭ୍ୟର୍ଥନେ ॥ ୩୪
ପୁରୋହିତ କୁଳଗୁରୁ ବଶିଷ୍ଠ କୌଶିକ ।
ବାମଦେବ କାତ୍ୟାୟନ ସଙ୍ଗତେ ଅନେକ ॥ ୩୫
ମୁନି ବିପ୍ରଗଣେ ଯହୁଁ ବସିଲେ ଆସନେ ।
ବଚନ କୁଶଳ ଦଶରଥ ତୋଷମନେ ॥ ୩୬
ଘୋଷିଲେ ବିନୟ ଗିରେ କୁଶଳ ପ୍ରଶନ ।
ତଦନ୍ତେ ପ୍ରସଙ୍ଗ ହେଜ ବୋଇଲେ ବଚନ ॥ ୩୭
ହେ ରାଜର୍ଷି ! ଜାଣ ତୁମ୍ଭେ ଆମ୍ଭ କୁଳଗୁରୁ ।
ବଶିଷ୍ଠ ଅଟନ୍ତି ଋଷିକୁଳ ମହାମେରୁ ॥ ୩୮
ସେ ଆମ୍ଭର କୁଳଧର୍ମ କହନ୍ତି ବଖାଣ ।
ଆବର ଦିଅନ୍ତି ସଦ ଉପଦେଶମାନ ॥ ୩୯
ଏ’ ଆମ୍ଭର କୁଳ ପରମ୍ପରାଗତ ଧର୍ମ ।
ରଘୁବଂଶେ ହୁଏ ତାଙ୍କ ଆଦେଶ ପାଳନ ॥ ୪୦

ଯେବେ ମୁନି କଉଶିକ ହେବେ ସୁପ୍ରସନ୍ନ ।
ବଶିଷ୍ଠ କରିବେ ଆମ୍ଭ କୁଳଯଶ ଗାନ ॥ ୪୧
ଏତେ ଭଣି ଦଶରଥ ହୁଅନ୍ତେ ମଉନ ।
ବ୍ରହ୍ମର୍ଷି ବଶିଷ୍ଠ ପଢ଼ି ମଙ୍ଗଳାଚରଣ ॥ ୪୨
ବୋଇଲେ ଜନକେ ସୂର୍ଯ୍ୟ କୁଳ ଗୋତ୍ର ଗାଥା ।
ସର୍ବଗୁଣେ ମହୀତଳେ ଯେହୁ ସାମରଥା ॥ ୪୩
ଜାଣ ବ୍ରହ୍ମେ ଅଯୋନି ସମ୍ଭବ ପଦ୍ମଯୋନି ।
ନିତ୍ୟ ଶାଶ୍ୱତ ଯେ ଅବିନାଶୀ ଅଟେ ପୁଣି ॥ ୪୪
ତାହାଙ୍କ ମାନସୁ ଜାତ ମରୀଚି ଦେବର୍ଷି ।
ତାଙ୍କ ପୁତ୍ର କଶ୍ୟପ ହୋଇଲେ ହେ ରାଜର୍ଷି ! ॥ ୪୫
କଶ୍ୟପଙ୍କଠାରୁ ଜାତ ହେଲେ ବିବସ୍ୱାନ ।
ବିବସ୍ୱାନ୍ତୁଁ ଜାତ ବୈବସ୍ୱତ ମନୁ ଜାଣ ॥ ୪୬
ବୈବସ୍ୱତ ମନୁ ରୂପେ ପ୍ରଥମ ରାଜନ ।
ହୋଇଲେ ଜଗତ ପାଳନରେ ଲୋକମାନ୍ୟ ॥ ୪୭
ତାହାଙ୍କ କୁମରମଣି ଇକ୍ଷ୍ୱାକୁ ସମ୍ଭୂତ ।
ତାଙ୍କଠାରୁ କୁକ୍ଷି ପୁତ୍ର ହୋଇଲେକ ଜାତ ॥ ୪୮
କୁକ୍ଷି ମହା ତେଜଶାଳୀ ଥିଲେ ହେ ଜନକ !
ବିକୁକ୍ଷି ନାମରେ ତାଙ୍କ ହୋଇଲା ବାଳକ ॥ ୪୯
ମହାପ୍ରତାପୀ ଅଟନ୍ତି ବିକୁକ୍ଷି ରାଜନ ।
ତାଙ୍କ ପୁତ୍ର ରାଜପଦେ ବସିଲେକ ବାଣ ॥ ୫୦
ବାଣଙ୍କ ଔରସୁଁ ଜାତହେଲେ ଅନରଣ୍ୟ ।
ତେଜସ୍ୱୀ ପଣରେ ଯେହୁ ସର୍ବଲୋକେ ଧନ୍ୟ ॥ ୫୧
ଅନରଣ୍ୟ ପୁତ୍ର ପୃଥୁ ତାହାଙ୍କ ନନ୍ଦନ ।
ତ୍ରିଶଙ୍କୁ ହୋଇଲେ ନୃପ ବିଦେହ ରାଜନ ! ॥ ୫୨
ତ୍ରିଶଙ୍କୁ କୁମର ଧୁନ୍ଧୁମାର ହେଲେ ଜାଣ ।
ମହାମନା ଧୁନ୍ଧୁମାର ସର୍ବଗୁଣେ କ୍ଷମ ॥ ୫୩
ଧୁନ୍ଧୁମାର ପୁତ୍ର ମହାରଥୀ ଯୁବନାଶ୍ୱ ।
ଜନ୍ମିଁ ସେ ଜଗତେ ପୂରାଇଲେ ନିଜ ଯଶ ॥ ୫୪

ମାନ୍ଧାତା ନାମରେ ପୁତ୍ର ହୋଇଲା ତାଙ୍କର ।
ଯେତୁ ପାଳିଲେ ପ୍ରତାପେ ଏ' କ୍ଷିତିମଣ୍ଡଳ ॥ ୫୫
ମାନଧାତା ଥିଲେ ସର୍ବଗୁଣର ଆକର ।
ତାଙ୍କ କୋଳେ ସୁସନ୍ଧି ଜନ୍ମିଲେ ବୀରବର ॥ ୫୬
ମାନ୍ଧାତାଙ୍କ ଠାରୁ ବେନିସୁତ ହେଲେ ଜନ୍ମ ।
ଧ୍ରୁବସନ୍ଧି ପ୍ରସେନଜିତ ନାମେ ରାଜନ ॥ ୫୭
ଧ୍ରୁବସନ୍ଧି ରାଜପଦେ ବସି ସିଂହାସନେ ।
ପରଜା ପାଳିଲେ ସୁଖେ ସନ୍ତାନ ଯେସନେ ॥ ୫୮
ଭରତ ହୋଇଲେ ଧ୍ରୁବସନ୍ଧିର ନନ୍ଦନ ।
ଅସିତ ସୁଖ୍ୟାତ ଭରତଙ୍କ ପୁତ୍ର ଜାଣ ॥ ୫୯
ପିତା ପୁତ୍ର ଦୁହେଁ ଥିଲେ ଜଗତ ବନ୍ଦନ ।
ଯାହାଙ୍କ ଗୁଣ ଦେବତା କରନ୍ତି ଗାୟନ ॥ ୬୦
ତାଳଜଙ୍ଘ ଶଶବିନ୍ଦୁ ହୈହୟ ବଂଶଜ ।
ରାଜଗଣେ ଅସିତଙ୍କ ଶତ୍ରୁ ମୂଳବୀଜ ॥ ୬୧
ଶତ୍ରୁରେ ବିବଶ ହୋଇ ଲଭି ପରାଜୟ ।
ଅସିତ ଆଶ୍ରୟ କଲେ ଗିରି ହିମାଳୟ ॥ ୬୨
ଦୁଇରାଣୀଙ୍କ ସଙ୍ଗତେ ଅସିତ ରାଜନ ।
ରହିଲେ ଗିରିରାଜରେ ହୋଇଣ ବିମନ ॥ ୬୩
ମୁଷ୍ଟିମେୟ ରାଜଭକ୍ତ ସେନାଗଣ ଭୁଲେ ।
ବହୁକଷ୍ଟେ ମହାରାଜ କାଳ ନିକ୍ଷେପିଲେ ॥ ୬୪
ଦୁଇରାଣୀ ତହିଁ ହୋଇଥିଲେ ଗର୍ଭବତୀ ।
ଏକରାଣୀ ଅନ୍ୟଠାରେ ଆଚରି ଦୁର୍ମତି ॥ ୬୫
ସପତ୍ନୀ ବାଦେ ଗର୍ଭ ବିନାଶ ମାନସେ ।
ଧର୍ମକୁ ନ ଡରି ବିଷ ଦେଲା ମନ ତୋଷେ ॥ ୬୬
ସେ ସମୟେ ଭୃଗୁବଂଶୀ ଏକଇ ବ୍ରାହ୍ମଣ ।
ତପ ସାଧୁଥିଲେ ତହିଁ ନାମ ଯା' ଚ୍ୟବନ । ୬୭
ନ ଜାଣି ନିଜ ସପତ୍ନୀ ଅମାନ୍ତ ବିସ୍ତର ।
ମହାବୀର ପୁତ୍ର ଲଭାମେ କରି ମନ ସ୍ଥିର ॥ ୬୮

ପ୍ରବେଶ ହୋଇଲେ ଯାଇ ଚ୍ୟବନ ଆଶ୍ରମେ ।
ଭକ୍ତିଭରେ ମୁନି ପାଦ ପୂଜି ସେ ସମ୍ଭ୍ରମେ ॥ ୬୯
କାଳନ୍ଦୀ ନାମ ତାହାର ସେହ୍ନ ପତିବ୍ରତା ।
ପୁତ୍ରକାମେ ସେହ୍ନ ପୂଜେ ଅତିଥି ଦେବତା ॥ ୭୦
ବିକଚ-ପଦ୍ମ-ଆନନା କାଳନ୍ଦୀ ସୁନ୍ଦରୀ ।
ଉତ୍କର୍ଷ୍ୟ ବୁଝିଲ ବନେ ମୁନିପାଦ ଧରି ॥ ୭୧
ଯୋଗବଳେ ମହାଭାଗ ସେ ଭୃଗୁ ନନ୍ଦନ ।
କାଳନ୍ଦୀ ବିଷୟେ ସବ କଲେକ ବର୍ଣ୍ଣନ ॥ ୭୨
ଶୁଣି ସପତ୍ନୀ ଦୁର୍ଗାନ୍ତ କାଳନ୍ଦୀ ସୁନ୍ଦରୀ ।
ମୁନି ପଦଯୁଗେ ଲୋଟି କହେ ଶୋକ କରି ॥ ୭୩
ଆହେ ମୁନି ! କରୁଣାସାଗର ଗୁଣନିଧି !
କହ କ କରିବ ଏବେ ନ ଦିଶଇ ବୁଦ୍ଧି ॥ ୭୪
କ ରୂପେ ବଞ୍ଚିବ ମୋର ଗର୍ଭର ନନ୍ଦନ ।
ଅନ୍ତର୍ଯ୍ୟାମୀ ନାଥ ! କୁହ ତା'ର ବିବରଣ ॥ ୭୫
ଆଶ୍ୱାସି ତାହାରେ ମୁନି କହିଲେ ଏସନ ।
ହେ ସୌଭାଗ୍ୟବନ୍ତ ରାଣି ! ନ ଭାଳ ତୋ'ମନ ॥ ୭୬
ମହା ତେଜସ୍ୱୀ କୁମର ଲଭିବୁ ଉଦରେ ।
ନ ଭାଳ ସୁନ୍ଦରି ! ଶୋକ ନକର ମନରେ ॥ ୭୭
କାନ୍ତିମାନ ତୋ' କୁମର ତେଜସ୍ୱୀ ପ୍ରବର ।
ହୋଇ ଜାତ ହେବ ମନେ ଭ୍ରାନ୍ତି ନ କର । ୭୮
ପତିବ୍ରତା ରାଜରାଣୀ ସେବି ମୁନିବର ।
ବାହୁଡ଼ି ଆସିଲ ଗୃହେ ଚିତ୍ତ ଉମାବର ॥ ୭୯
ଯଥାକାଳେ ତନୟ ଜନମ ପୁଷି ଏକ ।
ଶିଶୁ ମୁଖ ଦେଖି ରାଣୀ ପାସୋରିଲ ଶୋକ ॥ ୮୦
ସପତ୍ନୀ ଗର ଅଙ୍ଗେ ବନ୍ଧି ଜାତ ଯେଣୁ ।
କାଳନ୍ଦୀ ସଗର ନାମ ରଖିଲ ତା' ତେଣୁ ॥ ୮୧
ସଗର ରାଜନ ହେଲେ ତ୍ରିଲୋକେ ବିଖ୍ୟାତ ।
ତାଙ୍କ ସୁତ ଅସମଞ୍ଜ ନାମରେ କୁଖ୍ୟାତ ॥ ୮୨

ଅସମଞ୍ଜସର ପୁତ୍ର ଅଂଶୁମାନ ନାମ ।
ବସ୍ତାରନ୍ତ ଘଣ ଯେହୁ ସାଧି ପିତୃ କର୍ମ ॥ ୮୩
ତାଙ୍କ ପୁତ୍ର ଦିଲୀପ ନାମରେ ନୃପବର ।
ଯା' କୋଳେ ଜନ୍ମିଲେ ଭଗୀରଥ ସୁକୁମାର ॥ ୮୪
ଯା' କୀର୍ତ୍ତିବଲ୍ଲରୀ ବ୍ୟାପିଅଛି ତ୍ରିଜଗତ ।
ତାଙ୍କ ପୁତ୍ର ଖ୍ୟାତ କୀର୍ତ୍ତି ନାମ ଯେ କକୁତ୍ସ୍ଥ ॥ ୮୫
କକୁତ୍ସ୍ଥଙ୍କ ପୁତ୍ର ରୂପେ ରଘୁ ହେଲେ ଜାତ ।
କଲ୍ମାଷପାଦ ନାମେ ଯେ ଲୋକେ ସୁବଦିତ ॥ ୮୬
କୁଳଗୁରୁ ଅଭିଶାପେ ହୋଇଲେ ରାକ୍ଷସ ।
ତାଙ୍କ ପୁତ୍ର ଶଙ୍ଖଣ ଯେ ବସ୍ତାରଲେ ଯଶ ॥ ୮୭
ସୁଦର୍ଶନ ନାମେ ଜାତ ଶଙ୍ଖଣ କୁମର ।
ଅଗ୍ନିବର୍ଣ୍ଣ ତାଙ୍କ ଠାରୁଁ ଜାତ ନରେଶ୍ୱର ॥ ୮୮
ସେ ରାଜାର ପୁତ୍ର ନାମ ଶୀଘ୍ରଗ ଅଟଇ ।
ତାଙ୍କ ଠାରୁ ଜାତ ମରୁ ନାମେ ନରସାଇଁ ॥ ୮୯
ପ୍ରଶୁଶ୍ରୁକ ନାମେ ଜାତ ମରୁର କୁମର ।
ତାଙ୍କ ପୁତ୍ର ଅମ୍ବରୀଷ ନାମେ ନୃପବର ॥ ୯୦
ଅମ୍ବରୀଷଙ୍କ କୁମର ନହୁଷ ଭୂପତି ।
ତାଙ୍କ ପୁତ୍ରରତ୍ନ ଜାତ ନାମ ଯା' ଯଯାତି ॥ ୯୧
ଯଯାତିଙ୍କ ଠାରୁ ଜନ୍ମ ହୋଇଲେ ନାଭାଗ ।
ନାଭାଗଙ୍କ ପୁତ୍ର ଅଜ ଶୁଣ ମହାଭାଗ ! ॥ ୯୨
ଅଜ ମହାରାଜ ରଘୁବଂଶ ସୁଧାକର ।
ଗୁଣାକର ଦଶରଥ ତାହାଙ୍କ କୁମର ॥ ୯୩
ମହାରାଜ ଦଶରଥ ପରମ ଧାର୍ମିକ ।
ଯାହାଙ୍କ ଶୁଭ୍ର ସୁଯଶ ବ୍ୟାପିଛି ତ୍ରିଲୋକ ॥ ୯୪
ରଘୁବଂଶମଣି ନୃପ ଦଶରଥଙ୍କର ।
ରାମ ଲକ୍ଷ୍ମଣ ସୁପୁତ୍ର ମହାଧନୁର୍ଦ୍ଧର ॥ ୯୫
ଇକ୍ଷ୍ୱାକୁ କୁଳଭୂଷଣ ରାଜନ ସକଳ ।
ପରମ ଧାର୍ମିକ ସତ୍ୟବାଦୀ ମହାବଳ ॥ ୯୬

ସେ ରାମଲକ୍ଷ୍ମଣ ଦେନି କୁମାରଙ୍କ ପାଇଁ ।
ବରଣ କରୁଛୁ ନୃପ ! ତବ କନ୍ୟା ଦୁଇ ॥ ୯୭
ତୁମ୍ଭ ଜେମା ଯୋଗ୍ୟ ରୂପେ ଅଟନ୍ତି ଏ'ବର ।
ସୁଯୋଗ୍ୟା ଅଟନ୍ତି ପୁଣ ସେ କନ୍ୟା ଯୁଗଳ ॥ ୯୮
ଏଣୁ ଯଥାଯୋଗ୍ୟେ କନ୍ୟାଙ୍କୁ ଦିଅ ଦାନ ।
ହେ ଜନକ ! କହେଦିଲି ସୂର୍ଯ୍ୟବଂଶ ଗୁଣ ॥ ୯୯
ରଘୁକୁଳ ଶିରୋମଣି ଶ୍ରୀରାମ ଚରଣ ।
ପୁରୁଷୋତ୍ତମଙ୍କୁ ଦ୍ୟନ୍ତୁ ସଦୟେ ଶରଣ ॥ ୧୦୦

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ ସପ୍ତତମ ସର୍ଗ ।



# ଏକ ସପ୍ତତିତମ ସର୍ଗ

## ଜନକଙ୍କ ରାଜବଂଶ ବର୍ଣ୍ଣନ ।

ଏମନ୍ତ ପ୍ରକାରେ ବ୍ରହ୍ମାସୁତ ତପୋଧନ ।
ସୂର୍ଯ୍ୟବଂଶ ପରିଚୟ କରନ୍ତେ ପ୍ରଦାନ ॥ ୧
ତଦନ୍ତେ ମିଥିଳା ପତି ଯୋଡ଼ି ଦେନିକର ।
ସକଳ ସମ୍ମୁଖେ ନୃପ ବୋଲନ୍ତି ଉତ୍ତର ॥ ୨
ଆହେ ମୁନିବର ! ତୁମ୍ଭେ ସୁଜାଣ ବିଦ୍ୱାଣ ।
ଉଚିତ କହିଲ ରଘୁବଂଶ ବିବରଣ ॥ ୩
ଏବେ ଆହେ ବ୍ରହ୍ମର୍ଷି ! କହେ ବିସ୍ତାରଣ ।
ମୋ' କୁଳର ବଂଶଲତା ଶୁଣ ଦେଇ ମନ ॥ ୪
ବିବାହ କାଳରେ କୁଳଗୋତ୍ର ଉଚ୍ଚାରଣ ।
ଦୁଇଘର କନ୍ୟାବରଙ୍କ ଅଛି ଏ' ବିଧାନ ॥ ୫
ତେଣୁ କୃପା କରି ଶୁଣ ଆହେ କୃପାନାଥ !
ବିସ୍ତାର କରି ବର୍ଣ୍ଣିବି ଆମ୍ଭ କୁଳଗୋତ୍ର ॥ ୬

ପୂର୍ବକାଳେ ନିମି ନାମେ ଥିଲେ ଏକ ରାଜା ।
ସୁଧାର୍ମିକ ପଣେ ସେହୁ ପାଳୁଥିଲେ ପ୍ରଜା ॥ ୭
ଧୈର୍ଯ୍ୟଶୀଳ ଗୁଣବନ୍ତ ପଣେ ରାଜଶ୍ରେଷ୍ଠ ।
ଏ' ତିନ ଜଗତେ ସେହୁ ବୀରପଣେ ଖ୍ୟାତ ॥ ୮
ତାଙ୍କ ସୁତ ମିଥି ନାମେ ହୋଇଲେ ଜନମ ।
ଜନକ ତାହାଙ୍କ ପୁତ୍ର ଶୁଣ ରଘୁତ୍ତମ ॥ ୯
ସେହି ଦିନୁ ନିମିବଂଶେ ଯେତେକ ଭୂପତି ।
ଜନକ ନାମରେ ଲୋକେ ଲଭିଲେ ସୁଖ୍ୟାତି ॥ ୧୦
ତାହାଙ୍କର ପୁତ୍ର ନାମ ଉଦାବସୁ ଜାଣ ।
ନନ୍ଦିବର୍ଦ୍ଧନ ଉଦାବସୁଙ୍କ ନନ୍ଦନ ॥ ୧୧
ନନ୍ଦଙ୍କ କୁମର ନାମ ସୁକେତୁ ଅଟଇ ।
ତାଙ୍କ ପୁତ୍ର ଦେବରାତ ଶୁଣ ମୁନିସାଇଁ ! ॥ ୧୨
ସେ ମହା ଧାର୍ମିକ ପୁଣି ଥିଲେ ମହାବୀର ।
ଯଶୋଧନେ ଧନୀ ସେହୁ ଦେବ-ପ୍ରିୟଙ୍କର ॥ ୧୩
ଦେବରାତଙ୍କ ସୁପୁତ୍ର ନାମ ବୃହଦ୍ରଥ ।
ସକଳ କର୍ମରେ ସେହୁ ନିପୁଣ ସମର୍ଥ ॥ ୧୪
ବୃହଦ୍ରଥଙ୍କ କୁମର ଅଟନ୍ତି ସୁଧୀର ।
ମହାବୀର ପଣେ ସେହୁ ଖ୍ୟାତ ଜଗତର ॥ ୧୫
ତାଙ୍କ ମହାରାଣୀ କୋଳେ ହୋଇଲେ ଉତ୍ପତ୍ତି ।
ସର୍ବଗୁଣେ ସୁଲକ୍ଷଣ ନାମ ତା' ସୁଧୃତି ॥ ୧୬
ସୁଧୃତିଙ୍କ ପୁତ୍ର ନାମ ଧୃଷ୍ଟକେତୁ ଜାଣ ।
ଦେବେ ଈର୍ଷ୍ୟା କରୁଥିଲେ ଦେଖି ତାଙ୍କ ଗୁଣ ॥ ୧୭
ହର୍ଯ୍ୟଶ୍ୱ ନାମରେ ତାଙ୍କ କୁମର ସୁନ୍ଦର ।
ତାହାଙ୍କର ପୁତ୍ର ମରୁ ଶୁଣ ମୁନିବର ॥ ୧୮
ମରୁଙ୍କ ଔରସୁ ପ୍ରତୀନ୍ଧକ ହେଲେ ଜାତ ।
ତାଙ୍କ ପୁତ୍ର ମହାତମା ଖ୍ୟାତ କୀର୍ତ୍ତିରଥ ॥ ୧୯
କୀର୍ତ୍ତିରଥଙ୍କ କୁମର ଦେବମୀଢ଼ ଜାଣ ।
ବିବୁଧ ନାମରେ ତାଙ୍କ ହେଲା ପୁତ୍ର ରତ୍ନ ॥ ୨୦

ମହୀଧ୍ରକ ଅଟନ୍ତି ଯେ ବିବୁଧ କୁମର ।
ତାଙ୍କଠାରୁ ଜାତ କୀର୍ତ୍ତିରଥ ମହାବୀର ॥ ୨୧
ରାଜର୍ଷି କୀର୍ତ୍ତିରଥଙ୍କ ଔରସୁ ସନ୍ତାନ ।
ଜାତ ହେଲେ ମହାରୋମା ହ୍ରିଗୁଣ ଉତ୍ତମ ॥ ୨୨
ମହାରୋମାଙ୍କ ନନ୍ଦନ ସ୍ୱର୍ଣ୍ଣରୋମା ଜାଣ ।
ରାଜର୍ଷି ପଣେ ସେ ଥିଲେ ଜଗତ ବନ୍ଦନ ॥ ୨୩
ତାହାଙ୍କ ନନ୍ଦନ ସୁକୁମାର କୀର୍ତ୍ତିଧର ।
ହ୍ରସ୍ୱରୋମା ନାମେ ଯେହୁ ଖ୍ୟାତ ଭୁବନର ॥ ୨୪
ତାହାଙ୍କର ପୁତ୍ରରତ୍ନ ଜାତ ହେଲେ ଦୁଇ ।
ଜ୍ୟେଷ୍ଠ ତନୟ ମୁ କୁଶ କନିଷ୍ଠ ଅଟଇ ॥ ୨୫
ମୋତେ ରାଜପଦ ଦେଇ ମୋହର ପିଅଇ ।
କୁଶଧ୍ୱଜେ ସମର୍ପି ଚଳିଲେ ବନ ଘୋର ॥ ୨୬
କଷ୍ଟ କାଳ ଅନ୍ତେ ପିତା ଯା'ନ୍ତେ ସ୍ୱର୍ଗଧାମ ।
ପାଳିଲି ସ୍ନେହରେ କୁଶଧ୍ୱଜେ ହେ ରାଜନ ! ॥ ୨୭
ଦୁଇ ଭାଇ ଅତି ସ୍ନେହେ ଯାପୁଥିଲୁ ଦିନ ।
ନଥିଲା ମୋ' ରାଜ୍ୟେ ଦ୍ୱନ୍ଦ୍ୱ କଳହ ଦୁର୍ଦ୍ଦିନ ॥ ୨୮
ଏଥୁ ଅନ୍ତେ କଷ୍ଟକାଳ ସୁଖେ ଗଲା ବହି ।
ଏ କାଳେ ସାଙ୍କାଶ୍ୟା ନୃପ ସଇନ୍ୟ ଚଳାଇ ॥ ୨୯
ମିଥିଳା ନଗର ଚଉପାଶେ ଘେରି କରି ।
ଆକ୍ରମିଲ ଦଣ୍ଡଧର ମନେ ଦମ୍ଭ ଭରି ॥ ୩୦
ମହା ପରାକ୍ରମୀ ଅଟେ ସାଙ୍କାଶ୍ୟା ରାଜନ ।
ସୁଧନ୍ୱା ନାମ ତାହାର ସର୍ବ ଗୁଣେ ଧନ୍ୟ ॥ ୩୧
ଦୂତ ହସ୍ତେ ପଠାଇଲା ବାରତା ଏସନ ।
ସୀତା ଶିବଧନୁ ଦେଇ ପଶ ତୁ ଶରଣ ॥ ୩୨
ଏସନ୍ତ ଉଦ୍ଧତ ପଣ ଆଚରିଲା ସେହୁଁ ।
ସୁଧନ୍ୱା ସଙ୍ଗତେ ରଣ ଆରମ୍ଭିଲି ତହୁଁ ॥ ୩୩
କାଳବଶେ ମୋର କରେ ସୁଧନ୍ୱା ମରଣ ।
ଲେଖିଥିଲା ବିଧି ଶୁଣ ଆହେ ମୁନିଗଣ ॥ ୩୪
ଅନ୍ୟଥା ତୁଅନ୍ତା କାହୁଁ ଆହେ ମୁନିବର !
ସୁଧନ୍ୱା ଗମନ୍ତେ ବିଧିବଶେ ସ୍ୱର୍ଗପୁର ॥ ୩୫

ସାଙ୍କାଶ୍ୟା ନଗରୀ ରାଜ ସିଂହାସନେ ନେଇ ।
ଶୂରବୀର କୁଶଧ୍ୱଜେ ଦେଲି ମୁଁ ବସାଇ ॥ ୩୬
ଏ' ମୋ' କନିଷ୍ଠ ଅନୁଜ ନାମ କୁଶଧ୍ୱଜ ।
ମୁଁ ଜ୍ୟେଷ୍ଠ ଅଟଇ ଧୀରେ ଶୁଣ ମୁନିରାଜ ! ॥ ୩୭
ମୋର ଦୁଇକନ୍ୟା ସର୍ବ ଗୁଣେ ସେ ସୁଶୀଳା ।
ଜ୍ୟେଷ୍ଠା କନ୍ୟା ନାମ ସୀତା କନିଷ୍ଠା ଊର୍ମିଳା ॥ ୩୮
ବୀର୍ଯ୍ୟଶୁଳ୍କା ଅଟେ ସେଣୁ ମୋ' ଜ୍ୟେଷ୍ଠ ନନ୍ଦନୀ ।
ତାହାଙ୍କୁ ଅର୍ପିବ ଶ୍ରୀରାମଙ୍କ କରେ ଘେନି ॥ ୩୯
କନିଷ୍ଠ ତନୟା ମୋର ଅଟେ ସୁରୁଶୀଳା ।
ସଉମିତ୍ରି କରେ ଦେବ ନାମ ଯା' ଊର୍ମିଳା ॥ ୪୦
ସତ୍ୟ ସତ୍ୟ ସତ୍ୟ କଲି ଏଣୁ ତିନିବାରେ ।
କନ୍ୟା ଦୁହିଁଙ୍କି ଅର୍ପିବ ରାମ ଲକ୍ଷ୍ମଣରେ ॥ ୪୧
ହେ ମୁନି ପ୍ରବର ବଶିଷ୍ଠ ! ଶୁଣ ଧୀରେ ।
ଦୁଇ କନ୍ୟା ଅରପିବ ରଘୁବଂଶ ଘରେ ॥ ୪୨
ଏତେ କହି ମିଥିଳା ନରେଶ ତୋଷ କହି ।
ବୋଇଲେ ଦଶରଥଙ୍କୁ କୃତକୃତ୍ୟ ହୋଇ ॥ ୪୩
କୁମାର ଦୁହିଁଙ୍କ କ୍ଷେମ କରଣେ ଗୋଦାନ ।
ପିତୃଶ୍ରାଦ୍ଧ ଆଦି କର୍ମ କରନ୍ତୁ ବିଧାନ ॥ ୪୪
ଆଜ ମଘା ନକ୍ଷତ୍ର ଅଟଇ ବିଦ୍ୟମାନ ।
ଦୁଇଦିନ ଅନ୍ତେ ଉତ୍ତରଫାଲ୍‌ଗୁନି ଜାଣ ॥ ୪୫
ବିବାହ ଯୋଗକୁ ତାହା ଅଟଇ କାରଣ ।
ଏଥକୁ ବିଗୁର କାର୍ଯ୍ୟ କର ନରବର ! ॥ ୪୬
ରାମ ଲକ୍ଷ୍ମଣଙ୍କ ଶ୍ରେଷ୍ଠ ହୋଇ ଶାନ୍ତି ପାଇଁ ।
ଗୋ ଭୂମି ତିଳ ସୁବର୍ଣ୍ଣ ଆଦି ଦ୍ରବ୍ୟ ନେଇ ॥ ୪୭
ବେଦ ବିଧିମତେ ଦାନ ଦିଅ ବିପ୍ର ବଶ ।
ଶୁଦ୍ଧ ଶାନ୍ତ ଦେବେ ପ୍ରଭୁ ନୀଳାଦ୍ରିବିହାରୀ ॥ ୪୮
ନୀଳାଚଳନାଥ ଲକ୍ଷ୍ମୀକାନ୍ତ ଶ୍ରୀଚରଣେ ।
ପ୍ରଣମି ପୁରୁଷୋତ୍ତମ ରାମାୟଣ ଭଣେ ॥ ୪୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଏକସପ୍ତତିତମ ସର୍ଗ ।

# ଦ୍ୱିସପ୍ତତତମ ସର୍ଗ

## ଶ୍ରୀରାମ ଆଦି ଚତୁର୍ଭ୍ରାତାଙ୍କ ବିବାହ ଆୟୋଜନ

ବିଦେହରାଜ ଜନକ ଭଣନ୍ତେ ଏସନ ।
ବଶିଷ୍ଠ ବିଶ୍ୱାମିତ୍ରାଦି ସର୍ବ ଋଷିଜନ ॥ ୧
ଭାଷିଲେ ଏମନ୍ତ ବାଣୀ ପ୍ରଶଂସା କରି ।
ଆହେ ନୃପ ଶିରୋମଣି ! ଶୁଣ ହେତୁ ଧରି ॥ ୨
ଇକ୍ଷ୍ୱାକୁ ଜନକ ଦୁଇବଂଶ ଶୁଭଙ୍କର ।
ଦୁହିଙ୍କ ବଂଶରେ ଜାତ ଯେତେକ ଭୂପାଳ ॥ ୩
ସର୍ବେ ମହିମାସ୍ୱ କୀର୍ତ୍ତିଧର ହେ ରାଜନ !
ଦୁଇବଂଶର ପ୍ରଭାବ ଅଟେ ଅକଳନ ॥ ୪
କେଉଁବଂଶ ସମକକ୍ଷ ହେବାକୁ ମହୀରେ ।
ନାହିଁ ନଥିଲେ ନୋହିବେ ଏ' ଚରାଚରରେ ॥ ୫
ଯଥାଯୋଗ୍ୟ କୁଳେ ଦେବ ! ହୋଇଛି ସମ୍ବନ୍ଧ
ଏଥିକୁ ଆନ ନଭାଳ ଆହେ ସତ୍ୟସନ୍ଧ ! ॥ ୬
ସୀତା ଉର୍ମିଳା ସମାନ ଯୋଗ୍ୟବର ଯେହୁ ।
ବରଣ କଲ ବିଧିରେ ଅହେ ମହାବାହୁ ! ॥ ୭
ଶ୍ରୀରାମ ଲକ୍ଷ୍ମଣ ତାଙ୍କ ଯୋଗ୍ୟ ଏ' ମହୀରେ ।
ଆବର ପ୍ରସ୍ତାବ ଏକ କହୁଁ ଶୁଣ ଧୀରେ ॥ ୮
ଏତେ ଭଣି ମୁନିଗଣ ହୁଅନ୍ତେ ମଉନ ।
ବଶିଷ୍ଠ ସମ୍ମତେ ବଖାଣିଲେ ଗାଧିନନ୍ଦନ ॥ ୯
ହେ ବିଦେହ ନରପତି ! ଶୁଣ ମୋ' ବଚନ ।
ତବ କନିଷ୍ଠ ଅନୁଜ ସାଙ୍କାଶ୍ୟ ରାଜନ ॥ ୧୦
ଦେଖ କନ୍ୟା ତାହାଙ୍କର ଅଛନ୍ତି ଆବର ।
ଦୁହେଁ ଗୁଣବନ୍ତୀ ପୁଣି ତାଙ୍କ ଯୋଗ୍ୟ ବର ॥ ୧୧
ଶୁଭରତ ଭରତ ଯେ ସୁମତି ଶତ୍ରୁଘ୍ନ ।
ତାହାଙ୍କୁ ବରଣ କର ବିଦେହ ରାଜନ ! ॥ ୧୨

ବଶିଷ୍ଠଙ୍କ ପ୍ରସ୍ତାବେ ମୁଁ ହରଷିଲି ନରେଶ !
ଏଥକୁ ବିସ୍ତାର ତୁମ୍ଭେ କର ମିଥିଳେଶ ! ॥ ୧୩
ରାଜା ଦଶରଥଙ୍କର ଏ' ଯୁଗଳକୁମର ।
ରୂପ-ଗୁଣ-ଧୈର୍ଯ୍ୟ-ଶୀଳେ ନାହିଁ ପଟାନ୍ତର ॥ ୧୪
ଲୋକପାଳ ସମ ସର୍ବେ ମହାଧନୁର୍ଦ୍ଧର ।
ଦେବ ତୁଲ୍ୟ ପରାକ୍ରମୀ ଅଟନ୍ତି ଆବର ॥ ୧୫
ଭରତ ଶତ୍ରୁଘ୍ନେ ଦୁଇକନ୍ୟା କରି ଦାନ ।
ବିଦେହ-ଇକ୍ଷ୍ୱାକୁ ବଂଶେ ବଢ଼ାଅ ସମ୍ମାନ ॥ ୧୬
ମନୁଁ ଆନ ଚିନ୍ତା ତୁମ୍ଭେ ତେଜ ନୃପବର !
ଆମ୍ଭ ପ୍ରସ୍ତାବେ ସତ୍ୱର ସନମତ କର ॥ ୧୭
ନୃପଙ୍କ କଣ୍ଠେ ତେ ଆହେ ରାଜର୍ଷି ପ୍ରବର !
ଜପରି ଜଣିବ ବଳ ସମ୍ବନ୍ଧ ଆସ୍ଥର ॥ ୧୮
ସର୍ବଗୁଣେ ହେବ ଏହି ଉତ୍ସବ ବିଧାନ ।
ଯୋଗ୍ୟ ବରେ କନ୍ୟା ଦେଇ ଲଭ ସନମାନ ॥ ୧୯
ଶୁଣି ଏମନ୍ତ ପ୍ରସ୍ତାବ ବିଶ୍ୱାମିତ୍ରଙ୍କର ।
ଆନନ୍ଦ ସାଗରେ ମଜ୍ଜି ମିଥିଳା ଈଶ୍ୱର ॥ ୨୦
ଆପଣାର ଅହୋଭାଗ୍ୟ ମଣି ଯୋଡ଼କର ।
ବୋଇଲେ ହେ ମୁନି ! ଧନ୍ୟ ଜୀବନ ମୋହର ॥ ୨୧
ଦୁହିଙ୍କର ହିତ ଅର୍ଥେ ଉଚିତ ଯା' ଭଲ ।
ବୋଇଲ ହେ ତପୋଧନ ! ମନରେ ବିଶ୍ୱାଶ ॥ ୨୨
ଇକ୍ଷ୍ୱାକୁ କୁଳ ସହିତ ସମ୍ବନ୍ଧ ବିସ୍ତାର ।
ଯେ ପ୍ରସ୍ତାବ କଲ ଆହେ ବ୍ରହ୍ମର୍ଷି ପ୍ରବର ! ॥ ୨୩
କଲ୍ୟାଣ କାରକ ଯେଉଁ ବଚନ ନିକର ।
ମୋ' କୁଳସାଧନେ ଯାହା ବୋଇଲ ଆବର ॥ ୨୪
ମନ ବଚନରେ ତାହା କରେ ମୁଁ ସ୍ୱୀକାର ।
କୁଶଧ୍ୱଜ କନ୍ୟା ଲାଗି ବରିଲଇଁ ବର ॥ ୨୫
ସ୍ୱଭାବ ସୁନ୍ଦର ଗୁଣ ଶୀଳର ଆକର ।
ଭରତ ଶତ୍ରୁଘ୍ନ ହେବେ ମୋ କନ୍ୟାଙ୍କ ବର ॥ ୨୬

ତେଣୁ ଆହେ ମହାମୁନି ! କରେ ମୁଁ ବିଗ୍ଭର ।
ସୁଶୀଳଙ୍କର ପାଣିଗ୍ରହଣ ସଂସ୍କାର ॥ ୨୭
ଏକଇ ମୁହୂର୍ତ୍ତେ କରିବଇ ସମ୍ପାଦନ ।
ଏଥକୁ ଆଜ୍ଞା କରନ୍ତୁ ଆହେ ତପୋଧନ ॥ ୨୮
ମଘା ପରେ ପୂର୍ବାଫାଲ୍‌ଗୁନୀ ନକ୍ଷତ୍ରଗଣ ।
ତଦନ୍ତେ ତୃତୀୟ ଦିନେ ଯେଉଁ ଶୁଭ ଦିନ ॥ ୨୯
ସେଦିନ ଉତ୍ତରଫାଲଗୁନୀ ନକ୍ଷତ୍ରରେ ।
ସମ୍ପାଦିବା ବିଭା ବିଧି ଭାବୁଛି ମନରେ ॥ ୩୦
ଉତ୍ତରଫାଲଗୁନୀ ଅଟେ ଅତି ଶୁଭ ଲଗ୍ନ ।
ସେଦିନ ବିବାହ ବିଧି କରିବା ସମ୍ପନ୍ନ ॥ ୩୧
ଏତେ ବୋଲି ଜନକ ରାଜନ ମୋଦଭରେ ।
ଆସନରୁ ଉଠି କରଯୋଡ଼ି ମୁନିବରେ ॥ ୩୨
ବୋଇଲେ ପ୍ରସ୍ତାବ କରି ସ୍ୱୀୟକନ୍ୟାଙ୍କର ।
ପରମ କଲ୍ୟାଣ ମୋର କଲ ମୁନିବର ! ॥ ୩୩
ତେଣୁ ହେ ତପସ୍ୱୀବର ! ବସି ସୁଖାସନେ ।
ଆଜ୍ଞା ଦିଅ ସମ୍ପାଦିବ ବିବାହ ବିଧାନେ ॥ ୩୪
ଅଯୋଧ୍ୟା ନଗ୍ର ଯେପରି ତବ ଅତି ପ୍ରିୟ ।
ଅନୁରୂପ ଏ' ମିଥିଳା ଅଟଇ ନିଶ୍ଚୟ ॥ ୩୫
ଯେମନ୍ତ ଅଟନ୍ତି ଶିଷ୍ୟ ଅଯୋଧ୍ୟା ନରେଶ ।
ସେହିପରି ମୋତେ ଅନୁରୂପ କରି ତବ ଦାସ ॥ ୩୬
ଆହେ ମହର୍ଷି ! ଏ' ମୋ' ମିଥିଳା ଭୂମିର ।
ଯଥା ଅଯୋଧ୍ୟା ନଗ୍ରେ ଅଟେ ପରିକର ॥ ୩୭
ମିଥିଳା ନରେଶ ଜନକଙ୍କ ବାକ୍ୟ ଶୁଣି ।
ମନେ ମନେ ତୁଷ୍ଟ ହୋଇ ରଘୁକୁଳମଣି ॥ ୩୮
ବୋଇଲେ ମଧୁର ସ୍ୱରେ ବିନମ୍ର ବଚନ ।
ଆହେ ମିଥିଳେଶ ! କି ବର୍ଣ୍ଣିବି ତବ ଗୁଣ ॥ ୩୯
ତୁମ୍ଭେ ଭାଇ ବେନି ସର୍ବଗୁଣରେ ଅକର ।
ଆମ୍ଭେ ସର୍ବେ ପାଇଲୁଣି ଉଚିତ ସତ୍କାର ॥ ୪୦

ଏବେ ଆଜ୍ଞା ହେଉ ଯିବୁ ବିଶ୍ରାମ ଆବାସେ ।
ଶ୍ରାଦ୍ଧ ଦେବୁ ସବିଧିରେ ପିତୃଗଣେ ତୋଷେ ॥ ୪୧
ଏତେ ଭଣି ଅଯୋଧ୍ୟା ନରେଶ ଦଶରଥ ।
ଉଠିଲେ ଆସନୁ ହୋଇ ମୋଦମଗ୍ନ ଚିତ୍ତ ॥ ୪୨
ବଶିଷ୍ଠ ବିଶ୍ୱାମିତ୍ରଙ୍କୁ ଘେନି ସଙ୍ଗତରେ ।
ତଦନ୍ତେ ଚଳିଲେ ନୃପ ବିଶ୍ରାମ ଗୃହରେ ॥ ୪୩
ସେଦିନ ଅପରାହ୍ଣରେ କରିଣ ବିଧାନ ।
ବିହିଲେ 'ଆଭ୍ୟୁଦୟିକ' ଶ୍ରାଦ୍ଧ ପିଣ୍ଡଦାନ ॥ ୪୪
ପରଦିନ ପ୍ରଭାତରୁ ଉଠିଣ ସତ୍ୱର ।
ବ୍ରାହ୍ମଣଗଣେ ଲଭିଣ ନିଜ ବାସସ୍ଥଳ ॥ ୪୫
ପୁତ୍ରଙ୍କ ଶୁଭ୍ରଖଣ୍ଡନ ବିଷ୍ଟର ମନରେ ।
ଚାରିଲକ୍ଷ ଧେନୁଦାନ କଲେ ତାଙ୍କ କରେ ॥ ୪୬
ସୁବର୍ଣ୍ଣେ ଜଡ଼ାଇ ଶିଙ୍ଗ କାଂସ୍ୟପାତ୍ର ସଙ୍ଗେ ।
ଦାନ ଦେଲେ ସବତ୍ସା ଧେନୁରେ ବିପ୍ରବର୍ଗେ ॥ ୪୭
ଚାରିପୁତ୍ରଙ୍କର ଶୁଭ ମନୋସି ମନରେ ।
ଯଥାଯୋଗ୍ୟ ଦାନ ନୃପ ଦେଲେ ବିପ୍ରବରେ ॥ ୪୮
ସକଳ ମଙ୍ଗଳକୃତ୍ୟ ସମ୍ପାଦି ରାଜନ ।
ପୁତ୍ରଙ୍କ ଗହଣେ ବସି ହେଲେ ମୋଦମଗ୍ନ ॥ ୪୯
ଲୋକପାଳ ମେଳେ ଯେହ୍ନେ ବିଜେ ପ୍ରଜାପତି ।
ତେମନ୍ତ ଶୋଭା ପାଇଲେ ଅଯୋଧ୍ୟା ନୃପତି ॥ ୫୦
ହେ ମଙ୍ଗଳମୟ ହରି ! କରୁଣା ନିଧାନ ।
କୃପା କଟାକ୍ଷ ନିକ୍ଷେପି ଦିଅ ଭବ୍ୟଜ୍ଞାନ ॥ ୫୧
ପୂରୁ ମୋ' କାମନା ହେଉ ଅଚିରେ ପୂରଣ ।
ସର୍ବବେଦମୟ ଏହୁ ଗ୍ରନ୍ଥ ରାମାୟଣ ॥ ୫୨
ବାମନ ହୋଇ ଚନ୍ଦ୍ରକୁ ବଢ଼ାଇଛି କର ।
ପୁରୁଷୋତ୍ତମର ମନୋବାଞ୍ଛା ପୂର୍ଣ୍ଣକର ॥ ୫୩

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଦ୍ୱିସପ୍ତତିତମ ସର୍ଗ ।



# ତ୍ରିସପ୍ତତିତମ ସର୍ଗ

## ଶ୍ରୀରାମ ଆଦି ଚାରିଭାଇଙ୍କ ବିବାହ ।

ଉତ୍ତମ ଗୋଦାନ ପୁତ୍ର ମଙ୍ଗଳ କାରଣେ ।
ଯେଉଁଦିନ ଅର୍ପିଲେ ରାଜା ସର୍ବ ବିପ୍ରଗଣେ ॥ ୧
ସେହିଦିନ କେକୟରାଜ ବରିଷ୍ଠ ତନୁଜ ।
ବିଜେ କଲେ ଯୁଧାଜିତ ହୋଇ ସଜବାଜ ॥ ୨
ଦର୍ଶନ କରି କୁମାର ଦଶରଥ ନୃପେ ।
କୁଶଳ ମଙ୍ଗଳ ପୃଚ୍ଛି ବସିଲେ ସମୀପେ ॥ ୩
ତଦନ୍ତେ କେକୟରାଜ୍ୟ କୁଶଳ ବାରତା ।
ସ୍ୱାମି ସମାଦରେ ବୋଲେ କଇକେୟୀ ଭ୍ରାତା ॥ ୪
ଆହେ ନୃପଶେଖର ଅଯୋଧ୍ୟା ମହୀଶ୍ୱର !
ସକଳେ ଅଛନ୍ତି ସୁଖେ କେକୟ ନଗର ॥ ୫
ପିତୃଦେବ ମହାନନ୍ଦେ ଯାପନ୍ତି ଦିବସ ।
ପଚ୍ଛନ୍ତି ଅଛନ୍ତି ତବ ମଙ୍ଗଳ ସନ୍ଦେଶ ॥ ୬
ଦୌହିତ୍ର ଦର୍ଶନେ ତାଙ୍କ ବଳନ୍ତି ମାନସ ।
ତେଣୁ ମୋତେ ପଠାଇଲେ କେକୟ ନରେଶ ॥ ୭
ଏଣୁ ପିତୃଆଜ୍ଞା ପରମାଣେ ହେ ରାଜେଶ !
ଅଯୋଧ୍ୟା ରାଜ୍ୟରେ ଆସି ହୋଇ ପରବେଶ ॥ ୮
ଶୁଣିଲି ସେଠାରେ ତୁମ୍ଭେ ପୁତ୍ରମାନ ଘେନି ।
ଆସିଛ ମିଥିଳା ସଙ୍ଗେ ସଜାଇ ସଇନ ॥ ୯
ତେଣୁ ଏଠାକୁ ଅଇଲି ଆହେ ନରେଶ୍ୱର !
ଦେଖିବି ଭଗିନେୟଙ୍କୁ ହୋଇ ମୋଦଭର ॥ ୧୦
ବିବାହ ଉତ୍ସବ ଦେଖି ହୋଇବି କୃତାର୍ଥ ।
ତେଣୁ ସତ୍ୱରେ ଅଇଲି ଆହେ ନରନାଥ ! ॥ ୧୧
ତାହା ଶୁଣି ଦଶରଥ ମନେ ବହୁ ତୋଷ ।
ଯୁଧାଜିତଙ୍କୁ ସତ୍କାର କଲେ ସବିଶେଷ ॥ ୧୨

ଯେଣୁ ସେ ଅଟନ୍ତି ନିଜ ପ୍ରିୟବନ୍ଧୁବର ।
ପାଦ୍ୟ ଅର୍ଘ୍ୟ ଦେଇ ତାଙ୍କୁ ପୂଜିଲେ ସତ୍ୱର ॥ ୧୩
ତଦନ୍ତେ ଶୁଭମଙ୍ଗଳେ ଯାପି ସେ ରଜନୀ ।
ପରଦିନ ପ୍ରଭାତରୁ ଉଠି ନୃପମଣି ॥ ୧୪
ନିତ୍ୟକର୍ମ ଶେଷ ହେବ ମୁନିଗଣ ସାଥେ ।
ଚଳିଗଲେ କୋଶଳନାଥ ଅତି ହୃଷ୍ଟଚିତ୍ତେ ॥ ୧୫
ଜନକଙ୍କ ଯଜ୍ଞଗୃହ ହୋଇଲେ ପ୍ରବେଶ ।
ମନ୍ତ୍ରୀ-ପୁତ୍ର-ମିତ୍ରଗଣେ ଅଛନ୍ତି ଅଶେଷ ॥ ୧୬
ତଦନ୍ତେ ବିବାହ ଯୋଗ୍ୟ ଭୂଷଣ ଅଳଙ୍କାରେ ।
ସଜ ହେଲେ ରାମଚନ୍ଦ୍ର ଭ୍ରାତାଙ୍କ ସଙ୍ଗରେ ॥ ୧୭
ବରବେଶେ ସଜ ହୋଇ ବିଜେ ରଘୁରାଣ ।
ସାରିଣ ମଙ୍ଗଳକୃତ୍ୟ ସକଳ ବିଧାନ ॥ ୧୮
ବଶିଷ୍ଠ ମୁନି ଆଚରି 'ମଙ୍ଗଳାରୋପଣ' ।
କୁଳବିଧି ମତେ ନିର୍ବା କଲେ ବିଧିମାନ ॥ ୧୯
ତହୁଁ କୁଳଗୁରୁ ମିଳି ଜନକ ସମୀପ ।
ବୋଇଲେ ଅହେ ରାଜର୍ଷି ବିଦେହ ମହୀପ ! ॥ ୨୦
ସକଳ ମଙ୍ଗଳକୃତ୍ୟ ସାରିଣ ରାଜନ ।
ଯଜ୍ଞସ୍ଥାନେ ପ୍ରବେଶିଲେ ଦଶରଥ ରାଣ ॥ ୨୧
ପୁତ୍ର-ମନ୍ତ୍ରୀ-ମିତ୍ର ହେବ ଅଛନ୍ତି ସେଠାରେ ।
ଆଜ୍ଞା ଦେଲେ ଆସିବେ ସେ ହେବ ଦଳବଳେ ॥ ୨୨
ଦାତା ଗ୍ରହୀତା ଉଭୟ ହେଲେ ସମ୍ମିଳିତ ।
ସମ୍ପନ୍ନ ହୋଇବ ବିଭାବିଧି ଯଥୋଚିତ ॥ ୨୩
ମଙ୍ଗଳାରୋପଣ ଆଦି ସାରି ପୂର୍ବ କର୍ମେ ।
ପ୍ରସ୍ତୁତ ହୁଅନ୍ତୁ ନୃପ ! କନ୍ୟାରତ୍ନଦାନେ ॥ ୨୪
ଶୁଣି କୁଳଗୁରୁ ମୁଖୁଁ ବଚନ ଅମୃତ ।
ବୋଇଲେ ହରଷଚିତ୍ତେ ମିଥିଳାଭୂନାଥ ॥ ୨୫
ଧାର୍ମିକପ୍ରବର ମହାତେଜସ୍ୱୀ ରାଜନ ।
କରଯୋଡ଼ି ବଶିଷ୍ଠଙ୍କୁ ବୋଇଲେ ବଚନ ॥ ୨୬

ଏ' କ ବାଣୀ ବୋଲୁଛନ୍ତ ଆହେ ମୁନବର !
ଏ' ମିଥିଳାପୁର ଅଟେ ଦଶରଥଙ୍କର ॥ ୨୭
କାହାର ଅଦେଶ ଲଗି କୋଶଳ ନରେଶ ।
ଅଛନ୍ତ ଯଜ୍ଞଶାଳାରେ କୃହ ମୁନଈଶ !
ଅବାରିତ ଦ୍ୱାର ମୋର ତାଙ୍କ ଆଗମନେ ।
ତେଣୁ କେ'ବା ଦେବ ଆଜ୍ଞା ବିଚ୍ଚରନ୍ତ ମନେ ॥ ୨୯
ଏ' ମିଥିଳାପୁର ଏବେ ଅଟେ ତାହାଙ୍କର ।
ପୁରଜନ ସହିତେ ମୁଁ ତାହାଙ୍କ କଙ୍କର ॥ ୩୦
ଏଣୁ ଆହେ ମୁନବର ! କହେଁ ଯୋଡ଼ କର ।
ଆସନ୍ତୁ ନରେଶ ଯେନ ବରଯାତ୍ରୀ ଦଳ ॥ ୩୧
ସକଳ ମଙ୍ଗଳାଗ୍ରର କନ୍ୟାଗଣଙ୍କର ।
କୌତୁକସୂତ୍ର ବନ୍ଧନ ଆଦ ଯେ ଅପ୍ୱର ॥ ୩୨
ସକଳ ସମ୍ପୂର୍ଣ୍ଣ କର ଆହେ ତପୀଶ୍ୱର !
ଯେନ କନକ ବରଣା କନ୍ୟାଗଣ ମୋର ॥ ୩୩
ବିବାହମଣ୍ଡପେ ଅଛ୍ଛ ଗ୍ୱହିଁ ତାଙ୍କ ପଥ ।
ଆସନ୍ତୁ ସଦଳ ବଳେ ନୃପ ଦଶରଥ ॥ ୩୪
ଅନଳଶିଖା ସମାନ ତେଜେ ମହାପ୍ରାନ ।
ବିବାହମଣ୍ଡପେ ବସିଛନ୍ତ କନ୍ୟାଗଣ । ୩୫
ଆସିଣ ତ୍ୱରିତେ ନୃପ ପୁତ୍ରଗଣ ସହ ।
ଉତ୍ତମ ଲଗ୍ନେ ସମ୍ପନ୍ନ କରନ୍ତୁ ବିବାହ ॥ ୩୬
ଶୁଣି ବଶିଷ୍ଠଙ୍କ ମୁଖୁଁ ଜନକ ବଚନ ।
କୋଶଳ ନୃପତି ହୋଇ ହରଷିତ ମନ ॥ ୩୭
ଈତର ପୁତ୍ରଙ୍କୁ ସଜା ପୁତ୍ର-ମିତ୍ରଗଣ ।
ମୁନଗଣ ଆଗ କର ଚଳିଲେ କହନ ॥ ୩୮
ହାତୁଁ କଉଚ୍ଛ୍ଳ ନୃପ ଜନକ ବହନ ।
ପାଶ୍ରେତି ନେଲେ ସଭକ୍ତି ହୋଇ ହୃଷ୍ଟମନ ॥ ୩୯
ଉତ୍ତମ ଆସନ-ପାଦ୍ୟ ଅର୍ଘ୍ୟେ ତୋଷ କର ।
ବସାଇଲେ ଜଣେ ଜଣେ ମନେ ମୋଦ ଭର ॥ ୪୦

ବଶିଷ୍ଠ ମୁନିଙ୍କ ଆଗେ ଯୋଡ଼ି ବେନିକର ।
ବୋଲନ୍ତି ବିନୟ ବାଣୀ ମିଥିଳାଧୀଶ୍ୱର ॥ ୪୧
ଆହେ କୁଳଗୁରୁ ! ତୁମ୍ଭେ ଘେନି ମୁନିଗଣ ।
ଶ୍ରୀରାମଙ୍କ ବିବାହକାର୍ଯ୍ୟ କରନ୍ତୁ ସମ୍ପୂର୍ଣ୍ଣ ॥ ୪୨
ଶୁଣନ୍ତେ ମୁନିବର ବିଧିସୁତ ବଶିଷ୍ଠ ।
ଶତାନନ୍ଦ ଆଦି ଯେତେ ଥିଲେ ପୁରୋହିତ ॥ ୪୩
ସେଭଙ୍କ ସଙ୍ଗରେ ଘେନି ଚଳିଲେ ବହନ ।
ମଣ୍ଡାଇଲେ ବିବାହବେଦୀ କରି ସୁଯତନ ॥ ୪୪
ଚଉପାଶେ ରମ୍ଭା ବୃକ୍ଷ ପୋତାଇ ବିଧାନେ ।
ଗନ୍ଧଚନ୍ଦନ ବିଆଇଲେ ଅତି ଯତନେ ॥ ୪୫
ସୁଗନ୍ଧ କୁସୁମମାଳା ମଣ୍ଡାଇ ବେଦୀରେ ।
ସୁବର୍ଣ୍ଣ କଳସମାନ ବସାଇ ବିଧିରେ ॥ ୪୬
ଯବାଙ୍କୁର ଝିଟି ଦେଇ ସଜାଇଲେ ପୁଣ ।
ଅକ୍ଷତ ପୂର୍ଣ୍ଣ କରଣ ଖଞ୍ଜି ସରାଗଣ ॥ ୪୭
ଧୂପ ଦୀପ ଶଙ୍ଖ ସ୍ରୁବ ସ୍ରୁଚ ଅର୍ଘ୍ୟପାତ୍ର ।
ଯତନେ ମଣ୍ଡିଲେ ବେଦୀ କରି ନାନା ଶତ୍ର ॥ ୪୮
ସକଳ ସମ୍ଭାର ସଜାଇଣ ବିଧିମତ ।
ଚଉପାଶେ ବିଛାଇଲେ କୁଶ ଘେନି ହସ୍ତେ ॥ ୪୯
ତଦନ୍ତେ 'ମଙ୍ଗଳାଷ୍ଟକ' ପଢ଼ିଲେ ବ୍ରାହ୍ମଣେ ।
ବୈଦିକସୂକ୍ତ ଆବୃତ୍ତି କଲେ ଜଣେ ଜଣେ ॥ ୫୦
ଶ୍ରୀରାମଙ୍କୁ ବସାଇଣ ବେଦୀରେ ବଶିଷ୍ଠ ।
ସୁସ୍ୱରେ ଗାଇଲେ ବେଦ ମନ୍ତ୍ର ହୋଇ ହୃଷ୍ଟ ॥ ୫୧
ଏ' ଜଳନ୍ତ ହୋମକୁଣ୍ଡେ ଅଗ୍ନି ଆବାହନ ।
କରି ଅର୍ଚ୍ଚା କଲେ ଋଷି କୁଶଣ୍ଡି ବିଧାନ ॥ ୫୨
ଗ୍ରହ ମାତୃଗଣ ବ୍ରହ୍ମ ସାବତ୍ରୀ ପୂଜନ ।
କରାଇଲେ ଶ୍ରୀରାମରେ ବିଧାତାନନ୍ଦନ ॥ ୫୩
ଏଥୁଅନ୍ତେ କନ୍ୟାଦାନ ଲଗ୍ନ ଉପସ୍ଥିତ ।
ତୁଅନ୍ତେ ବଶିଷ୍ଠ ପଦ୍ମେ କଲେକ ଇଙ୍ଗିତ ॥ ୫୪

ତହୁଁ ଜନକ ରାଜନ ହରଷିତ ହୋଇ ।
ସୁଲକ୍ଷଣା ଜାନକୀଙ୍କି ଆଣିଲେ ସଜାଇ ॥ ୫୫
ଯଜ୍ଞକୁଣ୍ଡ ଅଗ୍ରେ ବସାଇଣ ସୁକୁମାରୀ ।
ବୋଇଲେ ଶ୍ରୀରାମେ ମିଥିଳାର ଦଣ୍ଡଧାରୀ ॥ ୫୬
ହେ ରଘୁକୁଳ ଭୂଷଣ ବୀରବର ରାମ !
ମାତା କଉଶଲ୍ୟାଙ୍କର ଆନନ୍ଦବର୍ଦ୍ଧନ ॥ ୫୭
ହେଉ ତବ ସୁକଲ୍ୟାଣ ଆହେ ବୀରବର !
ସର୍ବ ସୁଲକ୍ଷଣା ସୁକୁମାରୀ ସୀତା ମୋର ॥ ୫୮
ଜୀବନ ସଙ୍ଗିନୀ ରୂପେ କରନ୍ତୁ ସ୍ୱୀକାର ।
ଘେନ ମୋର ନିବେଦନ ରଘୁବଂଶ ବୀର ! ॥ ୫୯
ଏହାର କରପଲ୍ଲବ କର ହେ ଗ୍ରହଣ ।
ପତିବ୍ରତା ଗୁଣେ ହେଉ ତା' ଜୀବନ ଧନ୍ୟ ॥ ୬୦
କାୟା ସାଥେ ଛାୟା ପରି ତବ ସହଚରୀ ।
ହୋଇ ସୁଖେ ରହୁ ମୋର ପ୍ରାଣର ଦୁଲାଳୀ ॥ ୬୧
ସକଳ ସୌଭାଗ୍ୟେ ଏହୁ ହୋଇ ବିଭୂଷିତା ।
ତୁମ୍ଭ କୁଳେ ସର୍ବ ସୁଖ ଭୁଞ୍ଜୁ ମୋ ଦୁହିତା ॥ ୬୨
ଏତେ ଭାଷି କରେ ଶଙ୍ଖ ଧରିଣ ରାଜନ ।
ଶ୍ରୀରାମଙ୍କ କରେ ଜଳ କଲେ ସମର୍ପଣ ॥ ୬୩
ଏକାଳେ ତ୍ରିଦଶଗଣ ଆକାଶେ ଉଲ୍ଲସି ।
ଋଷିଗଣ ସହିତରେ ଗନ୍ଧର୍ବେ ମିଳଣି ॥ ୬୪
ସାଧୁବାଦେ ଜନକ ରାଜନେ ପରଶଂସି ।
ଅନ୍ତରୀକ୍ଷ ମାର୍ଗରୁ ସୁମନସ ବରଷି ॥ ୬୫
ଦେବଦୁନ୍ଦୁଭି ବାଇଣ କଲେ ଜୟଧ୍ୱନି ।
ଜୟନାଦେ ପୂରାଇଲେ ଆକାଶ ଅବନୀ ॥ ୬୬
ଏସନ ସମୟେ ରାଜା ଜନକ ମୋଦରେ ।
ସୀତା କର ନେଇ ଧରାଇଲେ ରାମ କରେ ॥ ୬୭
କନ୍ୟାଦାନ ସାରି ପୁଣ ମିଥିଳା ନରେଶ ।
ଲକ୍ଷ୍ମଣଙ୍କୁ ଚାହିଁ ଧୀରେ ବୋଲନ୍ତି ଏ' ଭାଷ ॥ ୬୮

ହେ ଲକ୍ଷ୍ମଣ ! ଘେନ ହସ୍ତେ ଊର୍ମିଳାର କର ।
ଆଜଠାରୁ ଗଳାମାଳୀ ହେଲା ଏ' ତୁମ୍ଭର ॥ ୬୯
ଏହା କର ଧରି ବୀର ! ଘେନ ମୋ' ବଚନ ।
ସଦା ମୋ' ଦୁଲଣୀ ହେଉ ତବ ପ୍ରିୟବନ୍ତ ॥ ୭୦
ସେବକା ରୂପେ ଗ୍ରହଣ କର ତାକୁ ବୀର !
ସତତ ଊର୍ମିଳା ସେବୁ ଚରଣେ ତୁମ୍ଭର ॥ ୭୧
ଭରତଙ୍କ କରେ ମାଣ୍ଡବୀର କର ଦେଇ ।
ଜନକ ରାଜନ ହେଲେ ଅନେକ ବିନୟୀ ॥ ୭୨
ତଦନ୍ତେ ଶ୍ରୁତକୀର୍ତ୍ତିର କର ଧରି ରାଜା ।
ଦାରପୂଣ ରୂପେ ଶତ୍ରୁଘ୍ନରେ କରି ପୂଜା ॥ ୭୩
ବୋଇଲେ ବିନୟେ ନୃପ ଏସନ ବଚନ ।
ଆହେ ନୃପ ଦଶରଥ କନିଷ୍ଠ ନନ୍ଦନ ! ॥ ୭୪
ଶ୍ରୁତକୀର୍ତ୍ତି ଇଳାଅଳୀ ସୁକୁମାରୀ ମୋର ।
ଗ୍ରହଣ କର ହେ ରଘୁବଂଶ କଳାକର ! ॥ ୭୫
ତୁମ୍ଭେ ଚାରିଭାଇ ସର୍ବ ଗୁଣେ ସୁଲକ୍ଷଣ ।
ଶାନ୍ତ ସୁଶୀଳ ସୁନ୍ଦର ଆହେ ବୀରଗଣ ! ॥ ୭୬
ନିଜ ନିଜ ପତ୍ନୀକର ସାଗ୍ରହେ ଘେନିଣ ।
ବିଳମ୍ବ ନ କରି ଅଗ୍ନି କର ପ୍ରଦକ୍ଷିଣ ॥ ୭୭
ଜନକ ରାଜନ ବାଣୀ ଶୁଣି ଚାରିଭାଇ ।
ଆପଣାର ପତ୍ନୀକର ନିଜ କରେ ଲଇଁ ॥ ୭୮
ବଶିଷ୍ଠଙ୍କ ଅନୁଜ୍ଞାରେ ଭାଇ ଚାରିଜଣ ।
କନକବେଦୀରେ କଲେ ଅଗ୍ନି ପ୍ରଦକ୍ଷିଣ ॥ ୭୯
ପିତୃଦେବ କୁଳଗୁରୁ ଆଦି ମୁନିଗଣେ ।
ଶୁଭଶିଷ ମାଗି ବୀରେ ବନ୍ଦିଲେ ଚରଣେ ॥ ୮୦
ବେଦମନ୍ତ୍ର ପଢ଼ି ମୁନି କୁଳପୁରୋହିତ ।
ସର୍ବ ଶୁଭେ ବିଭା ବିଧି କଲେ ସମାପତ ॥ ୮୧
ଏକାଳେ ଆକାଶୁଁ ହେଲା ପୁଷ୍ପ ବରଷଣ ।
ଚଉଦିଗେ ଆମୋଦିଲା ସୁଗନ୍ଧ ପବନ ॥ ୮୨

ଆକାଶ ଅବନୀ ହେଲ ଶୋଭାର ଆକର ।
ସୁସ୍ୱରେ ଦେବଦୁନ୍ଦୁଭି ବାଜିଲ ସତ୍ୱର ॥ ୮୩
ତୂର୍ଯ୍ୟନାଦେ ପୂରିଲା ଆକାଶ ମହୀସ୍ଥଳ ।
ପ୍ରମୋଦମନେ ଅପ୍ସରା ନାଚିଲେ ସକଳ ॥ ୮୪
ମଙ୍ଗଳ ମନ୍ତ୍ରସ୍ୱ ସୁମଧୁର ସ୍ୱରେ ବାଜି ।
ଗନ୍ଧର୍ବେ ଗାଇଲେ ତାଳେ ଗୀତ ମନ ରଞ୍ଜି ॥ ୮୫
ଶଙ୍ଖ କାହାଳୀ ଶବଦେ ପୂରିଲା ମେଦିନୀ ।
ପ୍ରଦକ୍ଷିଣ ତିନିବାର କଲେ ରଘୁମଣି ॥ ୮୬
ଲକ୍ଷ୍ମଣ ଊର୍ମିଳା ସଙ୍ଗେ କଲେ ପ୍ରଦକ୍ଷିଣ ।
ପ୍ରଦକ୍ଷିଣ କଲେ ଭରତ ମାଣ୍ଡବୀ ସଙ୍ଗେଣ ॥ ୮୭
ଶ୍ରୁତକୀର୍ତ୍ତି କର ଧରି ବୀର ଶତ୍ରୁଘ୍ନ ।
ସ୍ୱର୍ଣ୍ଣବେଦୀ ଚଉପାଶେ କଲେ ପ୍ରଦକ୍ଷିଣ ॥ ୮୮
ତଦନ୍ତେ କୁମାରେ ଘେନି ନିଜ ପତ୍ନୀଗଣ ।
ଚଳିଲେ ବିଶ୍ରାମଗୃହେ ହୋଇ ମୋଦମଗ୍ନ ॥ ୮୯
ତାଙ୍କ ଅନୁଗାମୀ ହେଲେ ଅଯୋଧ୍ୟା ନରେଶ ।
ସଙ୍ଗେ ଘେନି ମନ୍ତ୍ରୀ ମିତ୍ର ସକଳ ମୁନୀଶ ॥ ୯୦
ସୁମଙ୍ଗଳ ଗାଥା ଏହୁ ରାମଚନ୍ଦ୍ର ଗୀତ ।
ପୁରୁଷୋତ୍ତମ ଗାବଇ ହୋଇ ପ୍ରମୁଦିତ ॥ ୯୧

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଦ୍ୱିସପ୍ତତିତମ ସର୍ଗ ।



# ଚତୁଃ ସପ୍ତତିତମ ସର୍ଗ

## ଶ୍ରୀରାମ-ପରଶୁରାମ ଭେଟ ।

ସେଦିନ ସୁଖେ ସକଳେ ପୁହାଇ ରଜନୀ ।
ଉଠିଲେ ପ୍ରଭାତୁ ମନେ କରି ହରି ଧ୍ୱନି ॥ ୧
ମହର୍ଷି ବଶିଷ୍ଠ ନୃପ ଦଶରଥେ ରାଇ ।
ଅନୁଜ୍ଞା ମାଗିଲେ ବିଶ୍ୱାମିତ୍ର ତପସାଇଁ ॥ ୨
ଜନକେ ଆଶିଷ ଦେଇ ଘେନି ଅନୁମତି ।
ରାମାଦି ଭ୍ରାତାଭାଇଙ୍କ ଘେନିଣ ପ୍ରଣତି ॥ ୩
ଚଳିଲେ ଉତ୍ତରପଥେ କଉଶିକୀ ତୀରେ ।
ଯହିଁ ବସି ପୂର୍ବେ ତପ ସାଧୁଥିଲେ ଧୀରେ ॥ ୪
ବିଶ୍ୱାମିତ୍ର ବିଦା ହୋଇ କରନ୍ତେ ଗମନ ।
ରାଜର୍ଷି ଜନକେ ରାଇ ଅଯୋଧ୍ୟା ରାଜନ ॥ ୫
ବରକନ୍ୟା ଘେନି ନିଜ ରାଜ୍ୟେ ଯିବା ପାଇଁ ।
ବୋଇଲେ ବିନମ୍ରେ ସମ୍ବନ୍ଧୀଙ୍କ ମୁଖ ଚାହିଁ ॥ ୬
ହେ ରାଜନ ମିଥିଳେଶ ! ଆଜ୍ଞା ଦେଉ ଏବେ ।
ପୁତ୍ର-ବଧୂ ଘେନି ନିଜ ରାଜ୍ୟେ ଯିବି ଜବେ ॥ ୭
ଦଶରଥଙ୍କ ବଚନେ ହୋଇ ହରଷିତ ।
କନ୍ୟାଧନ ଆୟୋଜିଲେ ମିଥିଳାର ନାଥ ॥ ୮
ଲକ୍ଷ ଲକ୍ଷ ଦ୍ରବ୍ୟ ଧେନୁ ବହୁମୂଲ୍ୟ ଶଯ୍ୟା ।
କୋଟିସଂଖ୍ୟ ଝୀନବସ୍ତ୍ର ଅରପିଲେ ରାଜା ॥ ୯
ଗଜ ବାଜି ଅଗଣନ ସୁସଜ୍ଜିତ କରି ।
କନ୍ୟାଧନ ରୂପେ ଦାନ ଦେଲେ ଦଣ୍ଡଧାରୀ ॥ ୧୦
ରଥାରୋହୀ ପଦାତି ଅପାର ବଳ ଦେଇ ।
ଜନକ ରାଜନ ହେଲେ ଅନେକ ବିନମ୍ରୀ ॥ ୧୧
କନ୍ୟା ଗୋଟିକେ ଅର୍ପିଲେ ଶତ ଦାସୀ ଦାସ ।
ପରିଚ୍ଛଦ ସହସ୍ର ଦେଲେକ ଅଶେଷ ॥ ୧୨

କୋଟି କୋଟି ସ୍ବର୍ଣ୍ଣ ରୌପ୍ୟ ମୁଦ୍ରାମାନ ଦେଲେ ।
ହୀରା ନୀଳା ମୋତି ମାଣିକ୍ୟାଦି ସମର୍ପିଲେ ॥ ୧୩
ଏମନ୍ତ ପ୍ରକାରେ ରାଜା ଦେଇ କନ୍ୟାଧନ ।
ବିନମ୍ର ବାକ୍ୟେ ତୋଷିଲେ ଦଶରଥ ମନ ॥ ୧୪
ମୁନିଗଣେ ଯଥାଯୋଗ୍ୟ ଦ୍ରବ୍ୟ ସମର୍ପିଣ ।
ଆଶୀର୍ବାଦ ଘେନି କରି ମିଥିଳା ରାଜନ ॥ ୧୫
ମନସୁଖେ ଆପଣା ପୁରକୁ ବିଜେ କଲେ ।
ଦଶରଥ ଅଯୋଧ୍ୟା ଯିବାକୁ ସଜ ହେଲେ ॥ ୧୬
ଋଷି ମହର୍ଷି ମଇଷ ବନ୍ଧୁଙ୍କୁ ଘେନିଣ ।
ସଙ୍ଗେ ଘେନି ଚାରିପୁତ୍ର ପୁତ୍ରବଧୂଗଣ ॥ ୧୭
ସେବକ ସେବକୀ ଆଉ ଦାସୀ ପରିକ୍ଷା ।
ସଙ୍ଗତେ ଘେନିଣ ବଧୂଗଣ-ସହଚରୀ ॥ ୧୮
ରଥ ବାଜି ଗଜ ସଙ୍ଗେ ଅତୁଳ ସମ୍ପତ୍ତି ।
ଘେନି ଚଳିଲେ ହରଷେ କୋଶଳ ନୃପତି ॥ ୧୯
ଏ କାଳେ ବିଚିତ୍ର ରବ କରି ପକ୍ଷୀଗଣ ।
ଉଡ଼ିଲେ ଆକାଶେ ପଥପ୍ରାନ୍ତେ ପଶୁଗଣ ॥ ୨୦
ଦକ୍ଷିଣ ପାର୍ଶ୍ବରେ କରି ଭୟଙ୍କର ଭଡ଼ ।
ଧାଇଁଲେ ରାଜମାର୍ଗରେ ବନପଥ ଦ୍ରୁତ ॥ ୨୧
ଦକ୍ଷିଣେ ଗୋ ମୃଗ ଯୂଥ ଲଣ୍ଡଭଣ୍ଡ ହୋଇ ।
ପ୍ରାଣଭୟେ ଚଳିଲେ ତା’ ଦେଖି ନୃପସାଇଁ ॥ ୨୨
ବୋଇଲେ ହକାରି ମୁନି ବଶିଷ୍ଠେ ସତ୍ବର ।
ଆହେ କୁଳଗୁରୁ ! ଏ’ କି ସୂଚନା ମାର୍ଗର ॥ ୨୩
ଶୁଭ ଅଶୁଭ ଶକୁନ ଦିଶଇ ହେ ମୁନି !
କୁହ ଏଥକୁ ବିଷ୍ତର ଭୁମ୍ଭେ ତତ୍ତ୍ୱଜ୍ଞମା ॥ ୨୪
ଏ’ ଦୃଶ୍ୟ ଦର୍ଶନେ ଗୁରୁ ! କମ୍ପେ ମୋ’ ହୃଦୟ ।
କି’ ବା ଶୁଭାଶୁଭ ଫଳ ଫଳିବ ନିଶ୍ଚୟ ॥ ୨୫
ସବଶୁଭେ ତ ବାହାରି ହେଲେ ମୁନିବର !
ପଥେ କି’ ବା ମିଳିବ ଅଶୁଭ ସମାଗ୍ଭର ॥ ୨୬

ଶୁଣି ଦଶରଥଙ୍କର ଆକୁଳ ବଚନ ।
ବୋଇଲେ ବଶିଷ୍ଠ ଧୀରେ ଶୁଣ ହେ ରାଜନ ! ॥ ୨୭
ପକ୍ଷୀଗଣଙ୍କ କୂଜନ ସୂଚ୍ଚଏ ଏସନ ।
ପଥେ କିଛି ହୋଇବ ଅଶୁଭ ଦରଶନ ॥ ୨୮
ଭୟାବହ ଦୃଶ୍ୟ ଅବା ହୋଇବ ଗୋଚର ।
କିନ୍ତୁ ମାର୍ଗେ ଦେଖି ପଶୁଗଣଙ୍କ ସଞ୍ଚାର ॥ ୨୯
ମନେ ହୁଏ ସେ ଅପଶକୁନ ହେବ ଦୂର ।
ସୁମଙ୍ଗଳ ହେବ ଅନ୍ତ ମାର୍ଗର ସଞ୍ଚାର ॥ ୩୦
ଏସନ ପ୍ରବୋଧି ମୁନି ଗଲେ ପଥ ବାହି ।
ଅଦୂରେ ଦେଖିଲେ ପ୍ରଭଞ୍ଜନ ବହୁଛଇ ॥ ୩୧
ନିର୍ଘାତ ଶବଦେ ଧୂଳି ଉଡ଼ଇ ଗଗନେ ।
ଝଞ୍ଜାବାତେ ଝଳି ପଡ଼ୁଛନ୍ତି ଦ୍ରୁମଗଣେ ॥ ୩୨
ଧରଣୀ କମ୍ପିତ ହୁଏ ପ୍ରଭଞ୍ଜନ ବେଗେ ।
ନିର୍ଘାତ ଗର୍ଜନ ଶୁଭେ ଅନ୍ତରୀକ୍ଷ ଭାଗେ ॥ ୩୩
ଧୂଳି ଧୂସରେ ଗଗନ ହୁଅଇ ଆଚ୍ଛନ୍ନ ।
ଶୂନ୍ୟପଥେ ଚନ୍ଦ୍ରକର ଦିଶଇ ମଳିନ ॥ ୩୪
ପଥପ୍ରାନ୍ତ ନ ଦିଶଇ ହୋଇଲା ତିମିର ।
ଝଞ୍ଜା ପବନେ ପଡ଼ିଲେ ଅଗ୍ରଗାମୀ ଦଳ ॥ ୩୫
ହୁହୁଁ ହୁହୁଁ ସକଳ ସଇନ୍ୟ ମୂର୍ଚ୍ଛା ଯାଇ ।
ନିର୍ଘାତ ପବନେ ତଳେ ପଡ଼ିଲେ ଘୁମାଇ ॥ ୩୬
କେବଳ ବଶିଷ୍ଠ ଆଦି ସର୍ବ ମୁନିବର ।
ଦଶରଥ ରାମ ଆଦି ସକଳ କୁମାର ॥ ୩୭
ଏ' ଦୃଶ୍ୟ ଦେଖିଣ ମନେ ହେଲେ ଆଚମ୍ବିତ ।
ଅଦଭୁତେ ଏ' କି ହେଲା ଚିନ୍ତିଲେ ଭୂପତି ॥ ୩୮
ଏ' ସମୟେ ଦେଖିଲେକ କୋଶଳ ରାଜନ ।
ମହାରୁଦ୍ର ସମ ଆସୁଛନ୍ତି ପର୍ଶୁରାମ ॥ ୩୯
କ୍ଷତ୍ରିକୁଳ ଧୂମକେତୁ ଜମଦଗ୍ନି ସୁତ ।
ଭୃଗୁକୁଳ ବିପ୍ରବର କାଳାଗ୍ନି ସମ୍ଭୂତ ॥ ୪୦
କ୍ରୋଧେ ବେନି ନେତ୍ର ତାଙ୍କ ଜଳଇ ପ୍ରଖର ।
ସତେ ବା ଧ୍ୱଂସିବେ କ୍ଷଣେ ଏ' ସଚରାଚର ॥ ୪୧

ମହାତେଜେ ଦୀପ୍ତିମନ୍ତ ବଷ୍ଟବ୍ଧ ଅନ୍ତର ।
ପିଙ୍ଗଳ ଜଟା ମଣ୍ଡଳ ଉଡ଼ଇ ପ୍ରଖର ॥ ୪୨
ବାମେ ବଇଷ୍ଣବ ଧନୁ ଦକ୍ଷିଣେ କୁଠାର ।
ତ୍ରିପୁର ବିଧ୍ୱଂସେ ଜବା ଆସୁଛନ୍ତି ହର ॥ ୪୩
ଦେଖି ପରଶୁରାମଙ୍କ କ୍ରୋଧମୟୀ ମୂର୍ତ୍ତି ।
ଭୟେ ଥରହର ହେଲେ କୋଶଳ ନୃପତି ॥ ୪୪
ବଶିଷ୍ଠାଦି ମୁନିଗଣେ କଲେକ ବିଚାର ।
ଏ'କି ଉଗ୍ରରୂପ ଧରିଛନ୍ତି ପର୍ଶୁଧର ॥ ୪୫
ପୂର୍ବେ ଏ' କ୍ଷତ୍ରିୟକୁଳ ନିପାତ କରିଣ ।
ସୁଧିଛନ୍ତି ଅବନୀମଣ୍ଡଳେ ପିତୃଋଣ ॥ ୪୬
ଏବେ କମ୍ପା କାଳାଗ୍ନି ସଦୃଶ ରୁଦ୍ରମୂର୍ତ୍ତି ।
ଧରି ପଥେ ଆସୁଛନ୍ତି ଭୃଗୁକୁଳପତି ॥ ୪୭
ତେଜିଛନ୍ତି କ୍ଷତ୍ରକୁଳ ସଂହାରଣ ପଣ ।
ଧ୍ୱଂସ କରି ଧରାତଳୁ ଦୁଷ୍ଟ ରାଜାଗଣ ॥ ୪୮
ସେ ଉଗ୍ରଭାବନା ମନୁ କରିଛନ୍ତି ଦୂର ।
ଏବେ ସେ ଭାବନା ନାହିଁ ମନରେ ତାଙ୍କର ॥ ୪୯
ଏମନ୍ତ ବିଚାରି ସର୍ବ ଋଷି ବିପ୍ରଗଣେ ।
ଅର୍ଘ୍ୟ ଦେଇ ନିବେଦିଲେ ମୁଖେ ଭାଷି ରାମ ॥ ୫୦
ଆହେ ରାମ ! ତ୍ରିପୁର ବିଜୟୀ ରାମ ରାମ !
ପରଶୁଧାରଣେ ଯା' ନାମ ପରଶୁରାମ ॥ ୫୧
ଋଷି ବିପ୍ରଙ୍କ ସାଦର ପାଦ୍ୟ ଅର୍ଘ୍ୟ ଦେଇ ।
ମନୁ କ୍ରୋଧ ନ ତେଜିଲେ ଭୃଗୁକୁଳମଣି ॥ ୫୨
କ୍ରୋଧରେ ଅରୁଣାୟିତ କରିଣ ଲୋଚନ ।
ଶ୍ରୀରାମେ କହିଲେ ଦୃଢ଼େ ରେଣୁକା ନନ୍ଦନ ॥ ୫୩
ସେ କାଳାଗ୍ନି ରୂପଧର ପର୍ଶୁରାମ ପାଦେ ।
ପୁରୁଷୋତ୍ତମ ଚିନ୍ତଇ ସମ୍ପଦ ବିପଦେ ॥ ୫୪

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଚତୁଃସପ୍ତତିତମ ସର୍ଗ ।



# ପଞ୍ଚ ସପ୍ତତତମ ସର୍ଗ

## ପିନାକ ଓ ବୈଷ୍ଣବଧନୁ ଚରିତ ।

ଆହେ ଦଶରଥ ସୁତ ! ଶୁଣିଲି ଅଦ୍ଭୁତ ।
ଶିବଧନୁ ଭଙ୍ଗିଛ ବଳରେ ହୋଇ ମତ୍ତ ॥ ୧
ଶୁଣି ସେ ଦୁଃଖଦ ସମାଚାର ହେ ଶ୍ରୀରାମ !
ଆସିଅଛି ଆଜ ଏକ ଧନୁ ମୁଁ ଘେନଣ ॥ ୨
ଅଚିନ୍ତ୍ୟ ଅଦ୍ଭୁତ ଅଟେ ଶିବଧନୁ ଭଙ୍ଗ ।
ତେଣୁ ମୁଁ ଆସିଛି ମନେ ବହି ଉଦବେଗ ॥ ୩
ଏ' ଧନୁ ନୁହଇ ସାଧାରଣ ହେ ରାଘବ !
ଅଟଇ ଲଭିଛନ୍ତି କ୍ଷତ୍ରିକୁଳ ପରାଭବ ॥ ୪
ଧନୁର୍ଦ୍ଧର ପରଶୁରାମର ଧନୁ ଏହୁ ।
ଏ' ଧନୁରେ ଗୁଣ ଦିଅ ଯେବେ ମହାବାହୁ ॥ ୫
ମୋ' ଧନୁରେ ଗୁଣ ଦେଲେ ଜାଣିବ ନିକର ।
ତ୍ରିଜଗତେ ଅଟ ତୁମ୍ଭେ ମହାଧନୁର୍ଦ୍ଧର ॥ ୬
ହୋଇବଲେ ମୋ' ସଙ୍ଗେ ବେଗେ କର ଦ୍ୱନ୍ଦ୍ୱରଣ ।
ତେବେ ସ୍ପୃହଣୀୟ ହେବ ତୁମ୍ଭ ପରାକ୍ରମ ॥ ୭
ଶୁଣି ପରଶୁରାମଙ୍କ ସମ୍ବୋଧ ବଚନ ।
ବିଷାଦ ଅନ୍ତରେ ଛନ୍ନ ହେଲେ ନୃପରାଣ ॥ ୮
ଅତ୍ୟନ୍ତ କାତରେ ବେଗେ ଯୋଡ଼ି ବେନିକର ।
ବୋଇଲନ୍ତି କୋଶଳ ନୃପ ବଚନ୍ତେ ଉତ୍ତର ॥ ୯
ଆହେ ମହାଭାଗ ! ତୁମ୍ଭେ ଭୃଗୁକୁଳେ ଜାତ ।
ସଦା ସେ କୁଳ ପୁରୁଷେ ସ୍ୱାଧ୍ୟାୟେ ନିରତ ॥ ୧୦
ବ୍ରତବନ୍ତ ବ୍ରାହ୍ମଣ ବଂଶର ମହାପ୍ରାଣ ।
ଅଟ ତୁମ୍ଭେ ମହାତପୀ ହେ ପରଶୁରାମ ! ॥ ୧୧
କ୍ଷତ୍ରିୟ ସମାଜେ ତବ ରୋଷାଗ୍ନି ନିକର ।
ଶାନ୍ତ ହୋଇଅଛି ଜାଣେ ଆହେ କ୍ଷମାବର ! ॥ ୧୨

ତେଣୁ ତବ ଶ୍ରୀଚରଣେ କରେ ନିବେଦନ ।
ମୋ' ବାଳକୁମରେ କର ଅଭୟ ପ୍ରଦାନ ॥ ୧୩
ଶୁଣିଅଛି ସୁରବର ସମକ୍ଷେ ଆପଣ ।
ଅସ୍ତ୍ରତ୍ୟାଗ କରିଛନ୍ତି ଶପଥ କରିଣ ॥ ୧୪
କଶ୍ୟପଙ୍କ କରେ ଭୂମଣ୍ଡଳ କରି ଦାନ ।
ମହେନ୍ଦ୍ର ପର୍ବତେ କରିଛନ୍ତି ନିକେତନ ॥ ୧୫
ତପୋଧନ ! ତପ ତେଜ କ୍ଷମା କୋପ କର ।
ତବ ପ୍ରତିସ୍ପର୍ଦ୍ଧୀ ନୋହେ ମୋ' ବାଳକୁମର ॥ ୧୬
ତଥାପି କ୍ଷମାଇଁ ଦେବ ! ହୋଇ ରୁଷ୍ଟ ଚିତ୍ତ ।
ମୋ' ସୁତ ବିନାଶେ ହୋଇଅଛ ଉଦ୍ୟତ ॥ ୧୭
ଜୀବନ ସର୍ବସ୍ୱ ମୋର ଅଟଇ ଶ୍ରୀରାମ ।
ତା' ବିନାଶେ ଆମ୍ଭେ ସର୍ବେ ତେଜିବୁ ଜୀବନ ॥ ୧୮
ତେଣୁ ଆହେ କୃପାମୟ ! କୃପାକର ମୋରେ ।
ବାଳକ ଶ୍ରୀରାମ ଦାସ ତବ ଶ୍ରୀପଦରେ ॥ ୧୯
ଶୁଣି ନ ଶୁଣିଲା ପରି ଦଶରଥ ବାଣୀ ।
ପରଶୁରାମ ବୋଇଲେ ରଘୁର୍ନ୍ଦ୍ରେ ରଘୁମଣି ॥ ୨୦
ଆହେ ରାମ ! ତ୍ରିଜଗତେ ଦୁଇ ଶରାସନ ।
ଶ୍ରେଷ୍ଠ ଅଟନ୍ତି କେବଳ ମନ ଦେଇ ଶୁଣ ॥ ୨୧
ଦେବଗଣେ ଶ୍ରଦ୍ଧାଚିତ୍ତେ କରନ୍ତି ସମ୍ମାନ ।
ବିଶ୍ୱକର୍ମା ମହାକ୍ଲେଶେ କଲେ ଯା' ନିର୍ମାଣ ॥ ୨୨
ତହିଁରୁ ଏକଇ ଧନୁ ଅଟେ ଅଜଗବ ।
ତ୍ରିପୁର ଧ୍ୱଂସ କାରଣେ ଯାହା ସର୍ବ ଦେବ ॥ ୨୩
ଶଙ୍କରଙ୍କ କରେ ଅର୍ପିଥିଲେ ପୂର୍ବକାଳେ ।
ସର୍ବ ଲୋକପୂଜ୍ୟ ସେହୁ ଥିଲା ଏ' ସଂସାରେ ॥ ୨୪
ସେ ଧନୁକୁ ଧୃଷ୍ଟ ଚିତ୍ତେ କଲୁ ବେନି ଖଣ୍ଡ ।
ଜାଣି ଶୁଣି ନିମନ୍ତ୍ରିଲୁ ସ୍ୱୟଂ ମୃତ୍ୟୁଦଣ୍ଡ ॥ ୨୫
ଅପର ଶରାସନଟି ଅଛି ମୋର କରେ ।
ପ୍ରତ୍ୟକ୍ଷେ ଦେଖ ଶ୍ରୀରାମ ! ବୈଷ୍ଣବ ଧନୁରେ ॥ ୨୬

ବହୁ ଶ୍ରଦ୍ଧା ଅନୁରାଗ ପୂର୍ବେ ଦେବଗଣେ ।
ବିଷ୍ଣୁ କରେ ଅର୍ପିଥିଲେ ଯେଉଁ ଧନୁସନେ ॥ ୨୭
ଏହି ସେ ବୈଷ୍ଣବ ଧନୁ ଦେଖ ତୁ ଶ୍ରୀରାମ !
କହୁଛି ଯା' ଅଛି ଏଥି ପୁରାଣ ଆଖ୍ୟାନ ॥ ୨୮
ଏକଦିନେ ହରି ହର ମନେ ବହୁ ରୋଷ ।
ଆତ୍ମବଳ ପରୀକ୍ଷାରେ ହୋଇଲେ ପ୍ରବେଶ ॥ ୨୯
ପିତାମହ ଆଗେ ହେଲା ପରୀକ୍ଷା ବିଧାନ ।
ସାକ୍ଷୀରୂପେ ସର୍ବେ ରହିଥିଲେ ଦେବଗଣ ॥ ୩୦
ବୈଷ୍ଣବ ଧନୁରେ ଗୁଣ ଦେଇ ରମାବର ।
ଆକର୍ଣ୍ଣ ଓଟାରି ଗୁଣ କରନ୍ତେ ଟଙ୍କାର ॥ ୩୧
କମ୍ପିଗଲା ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଭୁବନ ।
ଲଜ୍ଜାଭରେ ଶିର ନତ କଲେ ତ୍ରିନୟନ ॥ ୩୨
ଦେବତା ଋଷି ସକଳ ମିଳି ତତକ୍ଷଣ ।
ନିବାରିଲେ ଦ୍ୱନ୍ଦ୍ୱଯୁଦ୍ଧ ଶୁଣ ହେ ଶ୍ରୀରାମ ! ॥ ୩୩
ସେହିଦିନୁଁ ଶିବ ସଦା ହୋଇଲେ ନିର୍ଜନ ।
ଧନୁର୍ଦ୍ଧର ଗଣେ ଶ୍ରେଷ୍ଠ ହେଲେ ନାରାୟଣ ॥ ୩୪
ତହୁଁ ମନେ ମନେ କ୍ରୁଦ୍ଧ ହୋଇଣ ଶଙ୍କର ।
ଜନକବେ ସମର୍ପିଲେ ଦେବରାତ କର ॥ ୩୫
ଦୁଷ୍ଟ ଶତ୍ରୁ ନିବାରଣେ ସଦା ଯେ ତତ୍ପର ।
ଏହି ସେ ବୈଷ୍ଣବଧନୁ ଜାଣ ରଘୁବର ! ॥ ୩୬
ପୂର୍ବକାଳେ ଭୃଗୁବଂଶୀ ଋଚୀକଙ୍କୁ ତୋଷେ ।
ଅର୍ପିଥିଲେ ଶାର୍ଙ୍ଗଧର ଏ' ଧନକୁ ନ୍ୟାସେ ॥ ୩୭
ପିତାମହ ଋଚୀକଙ୍କ ଠାରୁ ଜମଦଗ୍ନି ।
ମୋ' ପିତା ଘେନିଲେ ଏହା ନ୍ୟାସବସ୍ତୁ ମଣି ॥ ୩୮
ପ୍ରତିଶୋଧ ପରାୟଣ ନୃହନ୍ତି ପିଅର ।
ତେଣୁ ସେ ସାଇତି ଥିଲେ ଏହି ଧନୁବର ॥ ୩୯
ମହାତପୀ ମୋ' ପିଅର ଥିଲେ ତପେ ମଗ୍ନ ।
ଦୁରନ୍ତ ବନ୍ଧସରୂପୀ କାର୍ତ୍ତବୀର୍ଯ୍ୟାର୍ଜୁନ ॥ ୪୦

ତାହାର ନନ୍ଦନ ଆସି ନିର୍ଦ୍ଦୋଷ ବୃତ୍ତିରେ ।
ବଧ କଲା ରଘୁବର ! ନିର୍ଦ୍ଦୟ ଚିତ୍ତରେ ॥ ୪୧
ଶୁଣି ଏ' ଦାରୁଣ ଦୁଃଖପୂର୍ଣ୍ଣ ସମାଚାର ।
କୋପେ ପ୍ରଜ୍ୱଳିତ ହେଲା ଶରୀର ମୋହର ॥ ୪୨
ଧରି ଏ' ବୈଷ୍ଣବଧନୁ ଶାଣିତ କୁଠାର ।
ନିକ୍ଷତ୍ରିୟ କଲି ପୃଥ୍ୱୀ ଏକବିଂଶବାର ॥ ୪୩
ଶେଷେ ଏକ ମହାଯଜ୍ଞେ କରି ନିମନ୍ତ୍ରଣ ।
କଶ୍ୟପଙ୍କ କରେ ତୋଷେ ଦେଲି ପୃଥ୍ୱୀ ଦାନ ॥ ୪୪
ସେହି ଦିନୁ ତପସ୍ୟାଁ ବ୍ରତେ ବ୍ରତୀ ହୋଇ ।
ମହେନ୍ଦ୍ର ପର୍ବତେ ଅଛି ମନେ ବ୍ରହ୍ମ ଧ୍ୟାୟି ॥ ୪୫
ଶୁଣି ଶିବଧନୁ ଭଙ୍ଗ ବାରତା ଶ୍ରବଣେ ।
ଧୈର୍ଯ୍ୟ ଧରି ରହି ନ ପାରିଲି ତପଧ୍ୟାନେ ॥ ୪୬
ମନଯାନେ ବସି ଆସିଅଛି ମୁଁ ଏଠାର ।
ଶୁଣିଲ ତ ରଘୁନାଥ ! ମୋ' ମନ ଉତ୍ତର ॥ ୪୭
ବୈଷ୍ଣବଧନୁ ସେ ଦିନୁଁ ଅଛି ମୋର ପାଶ ।
ପିତୃ ପିତାମହଙ୍କର ଏ' ଅପୂର୍ବ ନ୍ୟାସ ॥ ୪୮
ଯେହୁ ତୁମ୍ଭେ ଉପଯୁକ୍ତ କ୍ଷତ୍ରିୟ ସନ୍ତାନ ।
ପାଳନେ ନିରତ ଅଛ କ୍ଷତ୍ରିୟର ଧର୍ମ ॥ ୪୯
ତେବେ ତୁମ୍ଭେ ଏ' ଧନୁରେ ଚଢ଼ାଇଣ ଗୁଣ ।
ଆକର୍ଣ୍ଣ ଓଟାରି କର ବାଣ ବରଷଣ ॥ ୫୦
ତେବେ ମୁଁ ମଣିବି ଆଜ ଅହୋଭାଗ୍ୟ ମୋର ।
ଦେଖିବି କ୍ଷତ୍ରିୟ ଜଣେ ବୀର ଧନୁର୍ଦ୍ଧର ॥ ୫୧
ବେଦ ରାମ ଶ୍ରୀପଦ୍ମରେ ଶିର କରି ନତ ।
ପୁରୁଷୋତ୍ତମ ଭଣେ ରାମାୟଣ ଗୀତ ॥ ୫୨

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ପଞ୍ଚସପ୍ତତିତମ ସର୍ଗ ।



# ଷଟ୍ ସପ୍ତତତମ ସର୍ଗ

## ଶ୍ରୀପରଶୁରାମଙ୍କ ପୁଣ୍ୟ ପ୍ରତାପ ବିନାଶ ।

ଶୁଣି ପରଶୁରାମଙ୍କ କୁପିତ ବଚନ ।
କିଛୁ ନ ବୋଇଲେ ରାମ ରାଜୀବଲୋଚନ ॥ ୧
ପିତାଙ୍କ ସମ୍ମୁଖେ ଶୁଣି ତାଙ୍କ ଗର୍ବବାଣୀ ।
କ୍ଷତ୍ରିୟ ସ୍ୱଭାବେ ବହ୍ନି ଅମ୍ବରକ୍ଷ ପୁଣି ॥ ୨
ମଉନ ନ ରହି ରାମ ବୋଇଲେ ଏସନ ।
ଆହେ ବୀରବର ! କ୍ଷତ୍ରିକୁଳ ନିସୂଦନ ! ॥ ୩
ପିତୃବଧ ପ୍ରତିଶୋଧେ କରିଛ ଯେ କର୍ମ ।
ଅନୁଚିତ କର୍ମ ତାହା ନୋହେ ଭୃଗୁରାମ ! ॥ ୪
କ୍ଷତ୍ରିୟ-ସଂହାର ରୂପୀ ଯେ ବିହିତ କର୍ମ ।
କରିଛ କରଇ ତାହା ମୁଁ ଅନୁମୋଦନ ॥ ୫
ପ୍ରତିଶୋଧ ନେବା ଅଟେ ବୀରର ପୌରୁଷ ।
ଏଥିକୁ ଉପାୟ କରି ଲଭିଅଛ ଯଶ ॥ ୬
ହେ ବୀର ଭୃଗୁନନ୍ଦନ ! କ୍ଷତ୍ରିକୁଳେ ଜାତ ।
ଏଣୁ ମୁଁ ତବ ସମ୍ମୁଖେ ଅଟଇ ବିନୀତ ॥ ୭
ବ୍ରାହ୍ମଣ ଦେବତା ତୁମ୍ଭେ ଅଟନ୍ତ ଆମ୍ଭର ।
ତେଣୁ ମୁଁ କରଇ ତୁମ୍ଭ ପାଦେ ନମସ୍କାର ॥ ୮
କିନ୍ତୁ ନିରାଦର ବାଣୀ ଶୁଣି ତବ ମୁଖୁଁ ।
ଅନୁଚିତ ମଣଇଁ ମୁଁ ମୌନ ରହିବାକୁ ॥ ୯
ପରାକ୍ରମହୀନ ଅସମର୍ଥ ବୋଲି ଯାହା ।
ବୋଇଲ ହେ ଦେବ ! ସହି ନ ପାରଇ ତାହା ॥ ୧୦
ତେଣୁ ବୋଲଇଁ ବିନୟେ ହେ ଭୃଗୁନନ୍ଦନ !
ସ୍ୱଚକ୍ଷେ ଦେଖସି ମୋର ବଳ ପରାକ୍ରମ ॥ ୧୧
ଏତେ ଭଣି ରାମଚନ୍ଦ୍ର ରଘୁକୁଳମଣି ।
ପରଶୁରାମଙ୍କ କରୁ ଧନୁ ନେଲେ ଟାଣି ॥ ୧୨

ଉତ୍ତମଧନୁ ସହିତେ ବଇଷ୍ଣବୀ ଶକ୍ତି ।
ଆକର୍ଷଣ କରିନେଲେ ବୀର ରଘୁପତି ॥ ୧୩
ବୈଷ୍ଣବ ଧନୁରେ ଗୁଣ ଦେଇ ଟଙ୍କାରିଲେ ।
କୁପିତ ହୋଇଣ ଭୃଗୁପତିଙ୍କୁ ବୋଇଲେ ॥ ୧୪
ହେ ଭୃଗୁନନ୍ଦନ ରାମ ! ବ୍ରାହ୍ମଣ ଆପଣ ।
ସେ ହେତୁ ଅଟନ୍ତି ମୋର ଗୁରୁ ପୂଜ୍ୟତମ ॥ ୧୫
ବିଶ୍ୱାମିତ୍ରଙ୍କ ସହିତ ରହନ୍ତି ସମ୍ବନ୍ଧ ।
ଥିବାରୁ ବନ୍ଦଇଁ ମୁଁ ତୁମ୍ଭର ପଦଦ୍ୱନ୍ଦ୍ୱ ॥ ୧୬
କିନ୍ତୁ ଆହେ ଭୃଗୁପତି ! ସନ୍ଧିଛି ଯେ ବାଣ ।
କାହାକୁ ବଧିବି କୁହ ହେ ଭୃଗୁନନ୍ଦନ ! ॥ ୧୭
ବ୍ରାହ୍ମଣକୁ ନୋହିଥିଲେ କରନ୍ତି ପ୍ରହାର ।
ତେଣୁ କ କରିବି କୁହ ଆହେ ଭୃଗୁବର ! ॥ ୧୮
ଇଚ୍ଛାନୁରୂପ ଗମନ ଶକତି ତୁମ୍ଭର ।
ଅଥବା ଛେଦିବି ତବ ମହାତପ ଫଳ ॥ ୧୯
ପ୍ରତିଦ୍ୱନ୍ଦ୍ୱୀ ଗରବ ଛେଦନେ ଏହୁ ବାଣ ।
ଅବଶ୍ୟ କରିବ କର୍ମ ରେଣୁକାନନ୍ଦନ ! ॥ ୨୦
ନିଷ୍ଫଳ ନୋହିବ କେବେ ଏ' ବାଣ ଟଙ୍କାର ।
ଶତ୍ରୁଗର୍ବ ବିନାଶନ ବାନାଟି ଏହାର ॥ ୨୧
ସେକାଳେ ଦେଖି ଶ୍ରୀରାମେ ଧନୁର୍ବାଣ ହସ୍ତେ ।
ଅନ୍ତରୀକ୍ଷମାର୍ଗେ ରହି ବ୍ରହ୍ମାଁଣ ଚରସ୍ତେ ॥ ୨୨
ପ୍ରଜାପତି ସମେତ ଦେବତା ଋଷିଗଣ ।
ଅପୂର୍ବ ଲାବଣ୍ୟ ରୂପେ ହେଲେ ମୋହମଗ୍ନ ॥ ୨୩
ଗନ୍ଧର୍ବ ଅପ୍ସରା ସିଦ୍ଧ ଚାରଣ କିନ୍ନର ।
ଯକ୍ଷ ରାକ୍ଷସ ସହିତେ ସର୍ବ ନାଗବର ॥ ୨୪
ଧନୁର୍ଦ୍ଧର ବେଶେ ଦେଖି ଶ୍ରୀ ରଘୁନନ୍ଦନେ ।
ସାଧୁ ରାମ ! ସାଧୁ ରାମ ! ଘୋଷିଲେ ବଚନେ ॥ ୨୫
ବୈଷ୍ଣବୀ ଶକ୍ତି ତାହାର ଭୃଗୁସୁତ ଦେହୁ ।
ପ୍ରବେଶିଲା ଶ୍ରୀରାମଙ୍କ ଦେହେ ରହୁଁ ରହୁଁ ॥ ୨୬

ତେଜହୀନ ହୋଇ ତହୁଁ ଜମଦଗ୍ନି ସୁତ ।
ସ୍ତୁତିଲେ ଶ୍ରୀରାମଚନ୍ଦ୍ରେ ହୋଇଣ ତରସ୍ତ ॥ ୨୭
ବଳବୀର୍ଯ୍ୟ ହୀନ ହୋଇ ରେଣୁକାକୁମର ।
ବିଷଣ୍ଣ ମନେ ଶ୍ରୀରାମେ ଭାଷିଲେ ଏ' ଗିର ॥ ୨୮
ଆହେ ରାମ ରଘୁନାଥ ରାଜୀବ ଲୋଚନ !
ପୂର୍ବେ ଯେବେ କଶ୍ୟପଙ୍କୁ ଦେଲି ପୃଥ୍ୱୀଦାନ ॥ ୨୯
ମହର୍ଷି ବୋଇଲେ କସ ମନରେ ବିଚକ୍ଷଣ ।
ମୋ' ଧରା ମଧ୍ୟରେ ନ ରହିବ ତପସ୍ୱୀ ॥ ୩୦
ରାତି ନ ଯାପିବ କେବେ ଏ' ମହୀମଣ୍ଡଳେ ।
ସେଦିନୁ ପ୍ରତିଜ୍ଞା ମୋର ଶୁଣ ହେ ସଧୀରେ ॥ ୩୧
ଦିବାକାଳେ ଇତସ୍ତତ କରି ମୁଁ ଭ୍ରମଣ ।
ରାତିରେ ମହେନ୍ଦ୍ର ଗିରି କରେଁ ଆରୋହଣ ॥ ୩୨
ତେଣୁ ହେ ରାଘବ ! ମୋର ମନୋଜବ ଗତି ।
ନ ଛେଦ ଏତିକ ମୁହିଁ କରଇଁ ବିନତି ॥ ୩୩
ଏହି ଶୁଭମୁହୂର୍ତ୍ତରୁ ଆରମ୍ଭି ହେ ରାମ !
ଚଳି ମୁଁ କରିବ ମହେନ୍ଦ୍ରରେ ଅବସ୍ଥାନ ॥ ୩୪
ମହାତପେ କରିଛି ଯେ ପୁଣ୍ୟ ମୁଁ ଅର୍ଜ୍ଜନ ।
ଅନୁପମ ଧନ ସେହୁ ହେ ରଘୁନନ୍ଦନ ! ॥ ୩୫
ତାହାକୁ ବୈଷ୍ଣବଶରେ କର ହେ ଛେଦନ ।
ବିଳମ୍ବ ନ କର କ୍ଷଣେ ଆହେ ପୁଣ୍ୟଧନ ! ॥ ୩୬
ହେ ଶତ୍ରୁନାଶନ ବୀର ! ପ୍ରଭୁ ଦଇତ୍ୟାରି !
ସାମାନ୍ୟ ମାନବ ତୁମ୍ଭେ ନୁହ ରୂପଧାରୀ । ୩୭
ବିଷ୍ଣୁରୂପୀ ଜଗତଜୀବନ ଜଗନ୍ନାଥ !
ଦେବଙ୍କ ହିତସାଧନେ କ୍ଷତ୍ରିକୁଳେ ଜାତ ॥ ୩୮
ଆହେ ଦେବେଶ୍ୱର ! ତବ ହେଉ ସୁକଲ୍ୟାଣ ।
ଅନୁପମ ଅଦଭୁତ ଅଟେ ତୁମ୍ଭ କର୍ମ ॥ ୩୯
ଦେଖ ଅନ୍ତରୀକ୍ଷ ମାର୍ଗେ ରହି ଦେବଗଣ ।
ନିରେଖନ୍ତି କଲ ଯାହା ଅସାଧ୍ୟ ସାଧନ ॥ ୪୦

ଏ' ତିନିଭୁବନେ ଯୋଦ୍ଧା ତୁମ୍ଭ ସମସର ।
ନାହିଁ ନୋହିଛି ନୋହିବ ଆହେ ତାଡ଼କାରି ! ॥ ୪୧
କକୁତ୍ସ୍ଥ-କୁଳଭୂଷଣ ଆହେ ରଘୁନାଥ !
ଏ' ମୋ' ପରାଜୟେ ପ୍ରଭୋ ! ନୋହେ ମୁଁ ଲଜ୍ଜିତ ॥ ୪୨
ତ୍ରିଲୋକନାଥଙ୍କ ଠାରୁ ଲଭି ପରାଜୟ ।
ମଣୁଛି ଏ' ପରାଜୟେ ଆପଣା ବିଜୟ ॥ ୪୩
ତ୍ରିପୁର ସୁନ୍ଦର ବୀର ! ମହା ଧନୁର୍ଦ୍ଧର ।
ବଇଷ୍ଣବ ଶରେ ଛେଦ ମୋ' ପୁଣ୍ୟ ନିକର ॥ ୪୪
ତଦନ୍ତେ ଚଳିବି ଦେବ ! ମହେନ୍ଦ୍ର ଅଚଳେ ।
ଲଭି ମୁଁ ଅକ୍ଷୟ ଯଶ ଏ' ମର୍ତ୍ତ୍ୟମଣ୍ଡଳେ ॥ ୪୫
ପରଶୁରାମଙ୍କ ମୁଖୁଁ ଏସନ ବଚନ ।
ଶୁଣି ହରଷ ହୋଇଲେ କୌଶଲ୍ୟାନନ୍ଦନ ॥ ୪୬
ତହୁଁ ଅପୂର୍ବ ବିକ୍ରମେ ଦଶରଥ ସୁତ ।
ସନ୍ଧାନି ବୈଷ୍ଣବଶର କଲେ ପୁଣ୍ୟ ହତ ॥ ୪୭
ବହୁକାଳ ତପସ୍ୟାରେ ଯେଉଁ ପୁଣ୍ୟଫଳ ।
ଲଭିଥିଲେ ଭୃଗୁସୁତ ହେଲା ତା' ବିଫଳ ॥ ୪୮
ତଦନ୍ତେ ଦେବତାଗଣ ଋଷିଙ୍କ ଗହଣେ ।
ଅନ୍ତରୀକ୍ଷୁଁ ରାମେ ସ୍ତୁତି କଲେ ଜଣେ ଜଣେ ॥ ୪୯
ଉତ୍ତମ ଆୟୁଧଧାରୀ ହେ ରଘୁନନ୍ଦନ !
ଜଗତ କରତା ରାମ ! ଆହେ ପୁଣ୍ୟଧାମ ॥ ୫୦
ତହୁଁ କୌଶଲ୍ୟାନନ୍ଦନ ପାଦ୍ୟ ଅର୍ଘ୍ୟଦାନେ ।
ପୂଜିଲେ ରେଣୁକାସୁତେ ବସାଇ ଆସନେ ॥ ୫୧
ଶ୍ରୀରାମେ ପୂଜିତ ହୋଇ ଦେବ ପର୍ଶୁଧର ।
ମହାନନ୍ଦେ ପରିକ୍ରମା କରି ତିନିବାର ॥ ୫୨
ଉଲ୍ଲସିତ ମନେ ତହୁଁ ମନୋଜବ ହୋଇ ।
ଚଳିଲେ ମହେନ୍ଦ୍ରଗିରି ପହଣ୍ଡ ମଣାଇଁ ॥ ୫୩
ପରଶୁଧର ସେ ସ୍ଥାନୁଁ ହୁଅନ୍ତେ ଅନ୍ତର ।
କ୍ଷଣକେ ବିନାଶ ହେଲା ଘୋର ଅନ୍ଧକାର ॥ ୫୪

ଶ୍ରୀରାମ ପରଶୁରାମ ଚରଣ ପଙ୍କଜେ ।
ଅଧମ ପୁରୁଷୋତ୍ତମ ଅହର୍ନିଶି ଭଜେ ॥ ୫୫

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ଷଟ୍ ସପ୍ତତିତମ ସର୍ଗ ।



# ସପ୍ତ ସପ୍ତତିତମ ସର୍ଗ

## ଶ୍ରୀରାମଙ୍କ ଅଯୋଧ୍ୟା ପ୍ରବେଶ ଓ ସୀତାରାମ ବିଳାସ ।

ମହାପ୍ରତାପୀ ବ୍ରାହ୍ମଣ ଜମଦଗ୍ନି ସୁତ ।
ପ୍ରସ୍ଥାନ କରନ୍ତେ ଚହିଁ ବୀର ରଘୁନାଥ ॥ ୧
ନିର୍ମଳ ପ୍ରଶାନ୍ତମନା ପରମ ଆନନ୍ଦେ ।
ବରୁଣଙ୍କ କରେ ଧନୁ ଅର୍ପିଲେ ପ୍ରମୋଦେ ॥ ୨
ଏଥିଅନ୍ତେ ରଘୁକୁଳଭୂଷଣ ଶ୍ରୀରାମ ।
ବଶିଷ୍ଠାଦି ମୁନିପାଦେ କଲେକ ପ୍ରଣାମ ॥ ୩
ତଦନ୍ତେ ବିଭ୍ରମଚିତ୍ତ ଦଶରଥେ ଚାହିଁ ।
କୋମଳଗିରେ ବୋଇଲେ ରଘୁକୁଳ ସାଇଁ ॥ ୪
ଆହେ ପିତୃଦେବ ! ଚାହିଁ ଦେଖନ୍ତୁ ଏଥର ।
ଅନ୍ତର ହେଲେଣି ଏଥୁଁ ରେଣୁକାକୁମର ॥ ୫
ଚତୁରଙ୍ଗିଣୀ ସେନାରେ ଦିଅନ୍ତୁ ଆଦେଶ ।
ଅଯୋଧ୍ୟା ପଥେ ଚଳିବା ଆହେ ନରଈଶ ! ॥ ୬
ଶୁଣି ଏସନ ବଚନ ରଘୁନାଥଙ୍କର ।
ଆନନ୍ଦ ସାଗରେ ମଜ୍ଜି ହୋଇଣ ନୃପେଶ୍ୱର ॥ ୭
ବେନିଭୁଜେ କୋଳ କରି ଅଯୋଧ୍ୟା ରାଜନ ।
ସଗୌରବେ ନିଜ ସୁତେ କଲେ ଆଲିଙ୍ଗନ ॥ ୮
ବୋଇଲେ ଗଦ୍‌ଗଦ ସ୍ୱରେ ଏସନ ବଚନ ।
ସତେ କି ନିବୃତ୍ତ ହେଲେ ଶ୍ରୀପରଶୁରାମ ॥ ୯

ଅପାର ଆନନ୍ଦେ ନୃପ ରଘୁକୁଳମଣି ।
ବୋଇଲେ ବା ନବଜନ୍ମ ଲଭିଲି ମୁଁ ପୁଣି ॥ ୧୦
ମୋ’ ସୁତେ ଲଭିଲେ ସତେ ଅବା ପୁନର୍ଜନ୍ମ ।
ଆଜ ମୋ’ ସଫଳ ହେଲା ହୁଏ ପୁଣ୍ୟକର୍ମ ॥ ୧୧
ଏତେ ଭଷି ଦଶରଥ ନିଜ ସୈନ୍ୟଗଣେ ।
ଆଦେଶିଲେ ସଗୌରବେ ଅଯୋଧ୍ୟା ଗମନେ ॥ ୧୨
ଦୁଇଦିନ ଅନ୍ତେ ହେଲେ ନଗରେ ପ୍ରବେଶ ।
ଅଯୋଧ୍ୟା ନଗର ଶୋଭା ଦେଖି ମନ ତୋଷ ॥ ୧୩
ସହସ୍ର ଉଡ଼ଇ ସୂର୍ଯ୍ୟବଂଶ ଧ୍ୱଜାମାନ ।
ପଥ ମଧ୍ୟେ ସୁସଜ୍ଜିତ ଅସଂଖ୍ୟ ତୋରଣ ॥ ୧୪
ପ୍ରତିଦ୍ୱାରେ ରମ୍ୟାଚରୁ ପୂର୍ଣ୍ଣକୁମ୍ଭମାନ ।
ସୁଗନ୍ଧିତ ପୁଷ୍ପମାନେ ଭୂଷିତ ଅଙ୍ଗନ ॥ ୧୫
କୋମଳ ପଞ୍ଚପଲ୍ଲବେ ସଜ୍ଜିତ ଦେହଳୀ ।
ଜୟ ଜୟ ନାଦେ ନଗ୍ର ପଡ଼ଇ ଉଚ୍ଛୁଳି ॥ ୧୬
ବାଜଇ ବିବିଧ ବାଦ୍ୟ ସୁମଙ୍ଗଳ ସ୍ୱରେ ।
ପୂରିତ ଅଯୋଧ୍ୟାପୁରୀ ନୃତ୍ୟ ଗୀତ ରେଳେ ॥ ୧୭
ରାଜପଥେ ପଡ଼ିଅଛୁ ଚନ୍ଦନ ଛିଡ଼କା ।
ପଥପ୍ରାନ୍ତେ ନାଚୁଛନ୍ତି ସୁବେଶେ ଗଣିକା ॥ ୧୮
ସକଳ ନଗ୍ରବାସୀଙ୍କ ମୁଖେ ହର୍ଷଧ୍ୱନି ।
ଜୟ ନୃପ ଦଶରଥ ! ଜୟ ରଘୁମଣି ! ॥ ୧୯
ପୁଷ୍ପମାଳା କରେ ଘେନି ନଗ୍ରବାସୀଗଣ ।
ତୋରଣଦ୍ୱାରେ ଜଣାନ୍ତି ସୁଅଭିନନ୍ଦନ ॥ ୨୦
ହର୍ମ୍ୟଶିଖେ ପୁରଙ୍ଗନାଗଣ ଜୁଣ୍ଡ ହୋଇ ।
ଦୁର୍ବାକ୍ଷତ ପୁଷ୍ପ ବରଷନ୍ତି ମୋଦ ବହି ॥ ୨୧
ନଗ୍ରବାସୀ ପ୍ରଜାଗଣ ହୋଇ ସମ୍ମିଳିତ ।
ଘୋଷନ୍ତି ଆନନ୍ଦମନେ ରଘୁବଂଶ ଗୀତ ॥ ୨୨
ପୁରବାସୀଗଣେ ହୋଇ ସୁଅଭିନନ୍ଦିତ ।
ରାଜପୁର ମାର୍ଗେ ଚଳିଗଲେ ଦଶରଥ ॥ ୨୩

କୁମଗିରି ସମ ରଜଭବନ ସୁନ୍ଦର ।
ଗଗନଚୁମ୍ବୀ ପ୍ରାସାଦ ଶୋହେ ମନୋହର ॥ ୨୪
ସେ ପୁରେ ପ୍ରବେଶ କଲେ ନୃପତି ହରଷେ ।
ପୁତ୍ର-ପୁତ୍ରବଧୂଗଣେ ଘେନି ମନତୋଷେ ॥ ୨୫
ପୁରଦ୍ୱାରେ ସ୍ୱଜନ ବାନ୍ଧବେ ହୋଇ ମେଳ ।
ଜୟ ଜୟ ନାଦେ କରି ଉଲ୍ଲାସେ ଚହଲ ॥ ୨୬
ଆଗୋଳିଲେ ଦଶରଥେ ମନେ ବହୁ ହର୍ଷ ।
ସମୁଦ୍ର ଉଚ୍ଛୁଳେ ଯେହ୍ନେ ଲଭି ପୌର୍ଣ୍ଣମାସ ॥ ୨୭
ପୁରବାସୀଗଣେ ମୋଦେ ପୁଲକିତ ହୋଇ ।
ରଜଭବନେ ପ୍ରବେଶ କଲେ ନରସାଇଁ ॥ ୨୮
ମହାରାଣୀ କଉଶଲ୍ୟା ସୁମିତ୍ରା ସୁନ୍ଦରୀ ।
ପ୍ରବେଶିଲେ ସୁମଧ୍ୟମା କଇକେୟୀ ନାରୀ ॥ ୨୯
ଅନ୍ୟ ଯେତେ ରଜପତ୍ନୀ ଥିଲେ ସେ ଭୁବନେ ।
ପ୍ରବେଶିଲେ ହୁଳହୁଳି ଦେଇ ଶଙ୍ଖସ୍ୱନେ ॥ ୩୦
ଅର୍ଘ୍ୟଥାଳୀ ଧରି ବନ୍ଦାଇଲେ ବଧୂଜନେ ।
ଅକ୍ଷତ ଚନ୍ଦନ ଦୂବା ପୁଷ୍ପ ବରଷଣେ ॥ ୩୧
ପ୍ରଥମେ ସୌଭାଗ୍ୟବତୀ ସୀତା କର ଧରି ।
ଶିବିକାରୁ ଓହ୍ଲାଇଲେ ଅଯୋଧ୍ୟା ସୁନ୍ଦରୀ ॥ ୩୨
ତଦନ୍ତେ ପରମ ଯଶସ୍ୱିନୀ ଉର୍ମିଳାରେ ।
ଓହ୍ଲାଇଲେ ହୁଳହୁଳି ଦେଇ ନାରୀବରେ ॥ ୩୩
ମଙ୍ଗଳଗୀତ ଗାଇଣ ଅଯୋଧ୍ୟା ନାଗରୀ ।
ଓହ୍ଲାଇଲେ ଶ୍ରୁତକୀର୍ତ୍ତି ମାଣ୍ଡବୀଙ୍କୁ ଧରି ॥ ୩୪
ମଙ୍ଗଳ ବାଇଦ ବାଇ ପୁରଙ୍ଗନାଗଣ ।
ଆଗୋଳିଲେ ଶ୍ୱଶୁରବଧୂ ହୋଇ ହୃଷ୍ଟମନ ॥ ୩୫
ବଧୂଗଣ ହେମକର୍ମ ବସ୍ତ୍ରତ ଭୂଷଣେ ।
ସୁସଜ୍ଜିତା ହୋଇଥିଲେ ରତ୍ନ ଆଭୂଷଣେ ॥ ୩୬
କୋମଳ ପଟ୍ଟବସନେ କହାଇ ସୁସଜ୍ଜିତା ।
ଅମର ରମଣୀ ରମଣୀୟ ଶୋଭାନ୍ୱିତା ॥ ୩୭

ହୋଇ ସ୍ୱଣବଧୂ ମୋହୁଥିଲେ ସର୍ବ ମନ ।
ଘେନ ତାହାଙ୍କୁ ଚଳିଲେ ଦେବତା ଆହ୍ୱାନ ॥ ୩୮
ଇଷ୍ଟଦେବେ ପୂଜନ କରଇ ନାରୀଗଣ ।
ସମାଦରେ ଘେନିଗଲେ ଯର୍ତ୍ତି ଗୁରୁଜନ ॥ ୩୯
ଶାଶୁ ଶ୍ୱଶୁରଙ୍କ ପାଦେ କରି ପ୍ରଣିପାତ ।
ବଧୂଗଣ ରାଜପୁରେ ହେଲେ ପ୍ରମୁଦିତ ॥ ୪୦
ଶାଶୂମାନେ ନବବଧୂ ମୁଖଚନ୍ଦ୍ର ସ୍ପର୍ଶି ।
ଆଶିଷ ବନ୍ଧିଲେ କପୋଳରେ ଚୁମ୍ବ ଦେଇ ॥ ୪୧
ତଦନ୍ତେ ବଧୂଏ ସାରି କୁଳ କର୍ମମାନ ।
ନିଜ ନିଜ ପତି ସଙ୍ଗେ ଗମିଲେ ସଦନ ॥ ୪୨
ଆପଣା ଆପଣା ପୁରେ ପ୍ରବେଶି ରମଣୀ ।
ପତି ସଙ୍ଗେ ସୁଖେ ପୁହାଇଲେ ସେ ରଜନୀ ॥ ୪୩
ଏକାନ୍ତ ବିଳାସେ ବଳସିଣ ବଧୂଗଣ ।
ଯାପିଲେ ଦିବସ ନିଶି କରି ଏକକ୍ଷଣ ॥ ୪୪
ଶ୍ରୀରାମ ଭରତ ଲକ୍ଷ୍ମଣ ଶତ୍ରୁଘନ ।
ସକଳ ଶାସ୍ତ୍ର ଶସ୍ତ୍ରରେ ଅତ୍ୟନ୍ତ ନିପୁଣ ॥ ୪୫
ମିତ୍ରବନ୍ଧୁଗଣେ ହୋଇ ସର୍ବଦା ମିଳିତ ।
ପିତାଙ୍କ ସେବାରେ ମନ ନିବେଶି ସତତ ॥ ୪୬
ପିତୃମାତୃ ଆଜ୍ଞା ପାଳି ହରଷିତ ମନେ ।
ଯାପିଲେ ଦିବସ ନିଶି ରାଜପୁତ୍ରଗଣେ ॥ ୪୭
କତିଦିନ ଅନ୍ତେ ଦଶରଥ ନୃପବର ।
କୈକେୟୀ କୁମରେ ଡାକି ଭଣିଲେ ଏ' ଗିର ॥ ୪୮
ଆହେ ବାବୁ ! ଶୁଭରତ ଭରତ କୁମାର !
ତୋ' ମାତୁଳ ଯୁଧାଜିତ ଅଛନ୍ତି ଏଠାର ॥ ୪୯
ତୁମ୍ଭଙ୍କୁ ସଙ୍ଗେ ନେବାକୁ ହୋଇ ତତପର ।
ଏ' ପୁରେ ଅଛନ୍ତି ବତ୍ସ ! କେକୟ କୁମାର ॥ ୫୦
ଘେନ ପିତାଙ୍କ ବଚନ ହୋଇ ଉଲ୍ଲସିତ ।
ଶତ୍ରୁଘ୍ନ ସହିତେ ଯିବା ପାଇଁ ସେ ଭରତ ॥ ୫୧

ମାତୁଳଙ୍କ ସଙ୍ଗେ ସଜ ହେଲେ ଶତ୍ରୁଘନ ।
ଯେଣୁ ବହୁ ବନ୍ଧୁ ଥିଲେ କେକୟନନ୍ଦନ ॥ ୫୨
ପିତାମାତାଙ୍କ ଚରଣେ କରି ଦଣ୍ଡବତ ।
ଶ୍ରୀରାମ ଲକ୍ଷ୍ମଣ ସଙ୍ଗେ ହୋଇଲେ ମିଳିତ ॥ ୫୩
ଭାଇ ଦୁହିଁଙ୍କୁ ଆଲିଙ୍ଗି ଭରତ ଶତ୍ରୁଘ୍ନ ।
ମାତୁଳ ଗୃହେ ଚଳିଲେ ହୋଇ ମୋଦମଗ୍ନ ॥ ୫୪
ଦୂର ଯାତ୍ରା ନେଇ ସଙ୍ଗେ ସେନା ସୁଧାଙ୍କିତ ।
କେକୟ ନଗରେ ଯାଇ ହୋଇଲେ ମିଳିତ ॥ ୫୫
ତାହା ଶୁଣି କେକୟ ନୃପତି ତୋଷଭରେ ।
ଦୁଇ କୁମାରଙ୍କୁ ଘେନି ଆଦର ସତ୍କାରେ ॥ ୫୬
ଯାପିଲେ ଦିବସ ବୃଦ୍ଧ ନରପତି ତୋଷେ ।
ଦୁଇଭାଇ ତହିଁ କାଳ ଯାପିଲେ ହରଷେ ॥ ୫୭
ମାତୁଳ ଗୃହେ ଚଳନ୍ତେ ଭରତ ଶତ୍ରୁଘ୍ନ ।
ଅତ୍ୟନ୍ତ ତନ୍ମୟ ଚିତ୍ତେ ଶ୍ରୀରାମ ଲକ୍ଷ୍ମଣ ॥ ୫୮
ପିତାଙ୍କ ପାଦେ ଖଟିଲେ ମନର ସରସେ ।
ମିତ୍ର ବନ୍ଧୁଗଣେ ମିଳି ରଜନୀ ଦିବସେ ॥ ୫୯
ପିତା ଆଜ୍ଞା ମାନି ଦୁଇ କୁମାର ତତ୍ପରେ ।
ପ୍ରଜାରଞ୍ଜନରେ ମନ ଦେଲେ ହରଷରେ ॥ ୬୦
ସଭିଙ୍କ ପରମପ୍ରିୟ ହେଲେ ରଘୁନାଥ ।
କର୍ତ୍ତବ୍ୟ ପାଳନେ ସଦା ହୋଇଣ ଉଦ୍ୟତ ॥ ୬୧
ପିତାମାତାଙ୍କ ଆଦେଶ ପାଳି ଦୁଇଭାଇ ।
ଗୁରୁଜନ ହିତେ କାର୍ଯ୍ୟ କଲେ ପୁରେ ରହି ॥ ୬୨
ଅସାଧ୍ୟ ସାଧନ କଲେ ଶ୍ରୀରାମ ଲକ୍ଷ୍ମଣ ।
ଗୁରୁଜନଙ୍କ ବଚନେ ସଦା ରଖି ଧ୍ୟାନ ॥ ୬୩
କର୍ତ୍ତବ୍ୟ ପାଳନ ଆତ୍ମ ସଂଯମେ ତତ୍ପର ।
ହୋଇ କାଟିଲେ ଦିବସ ସେ ଦୁଇ କୁମର ॥ ୬୪
ଦେଖି ଦୁଇ ଭାଇଙ୍କର କୁଶଳ ଆଚାର ।
ଦଶରଥ ନୃପ ମନେ ହୋଇଲେ ହର୍ଷେର ॥ ୬୫

ବେଦଜ୍ଞ ବ୍ରାହ୍ମଣ ସଦା ଦେଲେ ଶୁଭାଶିଷ ।
ପରଜା ସକଳ ହେଲେ ପରମ ସନ୍ତୋଷ ॥ ୬୬
ରାଜକର୍ମବୃଷଗଣ ମନେ ହେଲେ ତୋଷ ।
ଦେଖି ରାମ ଲକ୍ଷ୍ମଣଙ୍କ ସୁକର୍ମ ଅଶେଷ ॥ ୬୭
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ପ୍ରଜାଗଣ ।
ଅଯୋଧ୍ୟାବାସୀଏ ହେଲେ ଆନନ୍ଦେ ମଗନ ॥ ୬୮
ଚାରିଭ୍ରାତାଙ୍କ ମଧ୍ୟରେ ରାମ ରଘୁନାଥ ।
ସର୍ବଗୁଣାକର ସାଧୁ ସୁଶୀଳ ସୁବ୍ରତ ॥ ୬୯
ସତ୍ୟଧର୍ମ ପରାୟଣ ଷାରବ୍ରାହ୍ମି ରାମ ।
ସକଳ ଜନେ ତୋଷିଲେ ହୋଇ କାର୍ଯ୍ୟକ୍ଷମ ॥ ୭୦
ସକଳ ପ୍ରାଣୀରେ ଯେହ୍ନେ ଦେବ ପ୍ରଜାପତି ।
ଅନୁରୂପ ଗୁଣେ ଖ୍ୟାତ ହେଲେ ସୀତାପତି ॥ ୭୧
ସୀତାଙ୍କ ମନ ମନ୍ଦରେ ସଦା ଅଭିରାମ ।
ବିରାଜଲେ ଯଥା ଗ୍ରୀଷ୍ମେ ସୁବାସ ଚନ୍ଦନ ॥ ୭୨
ଶ୍ରୀରାମ ସୀତାଙ୍କ ଭୁଲେ ପରମ ସନ୍ତୋଷେ ।
ବିଳସିଲେ ବସନ୍ତାଦ ଋତୁରେ ବିଳାସେ ॥ ୭୩
ପତି ଗୁଣେ ମୁଗ୍ଧା ସୀତା ପରମ ପ୍ରୀତିରେ ।
ମନ ଜାଣି ସଦାକାଳେ ସେବଲେ ପୟରେ ॥ ୭୪
ରାମ ବିନୁ ନ ଜାଣନ୍ତି କାହାକୁ ଅପରେ ।
ସଦା ରାମ ଅଭିରାମେ ହୃଦନ୍ତ ତତ୍ପର ॥ ୭୫
ପ୍ରାଣାଧିକା ପ୍ରିୟତମା ସୀତାଙ୍କୁ ଶ୍ରୀରାମ ।
ତୋଷିଲେ ପ୍ରିୟବଚନେ ସଦା ବନ୍ଧୁ ପ୍ରେମ ॥ ୭୬
ପରସ୍ପର ପତିପତ୍ନୀ ବନ୍ଧଣ ପ୍ରମୋଦ ।
ଏକପ୍ରାଣ ଏକମନ ହୋଇ ଏକହୃଦ ॥ ୭୭
ଦିନୁଁଦିନ ପରସ୍ପରେ ବଢ଼ିଲା ଆଦର ।
ରାମ-ଚନ୍ଦ୍ର ଦେଖି ସୀତା ହୃଦୟ ସାଗର ॥ ୭୮
ପ୍ରମୋଦେ ଲଙ୍ଘିଲା କୂଳ ରାମ ରଘୁବୀର ।
ସୀତା ପ୍ରେମେ ମଜ୍ଜି ଭୋଳେ ହେଲେ ମୋଦମଗ୍ନ ॥ ୭୯

ସ୍ୱାମୀ ସୁହାଗିଣୀ ସୀତା ରାମଙ୍କ ମାନସ ।
ବୃଦ୍ଧି ପଦେ ସେବା କଲେ ରଜନୀ ଦିବସ ॥ ୮୦
ଦେବାଙ୍ଗନା ସମ ରାମ ମାନସ ମନ୍ଦିରେ ।
ବିଳସିଲେ ଜନକନନ୍ଦିନୀ ତୋଷଭରେ ॥ ୮୧
ମନରୁ ଅନ୍ୟ ବାସନା ସଦା କରି ଦୂର ।
ଶ୍ରୀରାମ କାମନା ହୃଦେ ରଖିଲେ ସତ୍ୱର ॥ ୮୨
ରାମ ଗୁଣ ଗୁଣି ରାମ ପ୍ରେମେ ବିକାଶିନୀ ।
ହୋଇ କାଳ ଯାପିଲେ ସେ ଦିବସ ରଜନୀ ॥ ୮୩
ବିଷ୍ଣୁ ପାଶେ ଯେସନ୍ତେ ଶୋଭା ପାଆନ୍ତି କମଳା ।
ଅନୁରୂପେ ସୀତା ହେଲେ ରାମ ଗଳାମାଳା ॥ ୮୪
ସକଳ ମାନସେ ବିଳସିଲେ ସୀତାରାମ ।
ପୁରଜନେ ଘୋଷି ହେଲେ ସଦା ସୀତାରାମ ॥ ୮୫
ସୀତାରାମ ପଦକଞ୍ଜେ ବିଳସି ସତତ ।
ପୁରୁଷୋତ୍ତମ ଭଣଇ ବାଳକାଣ୍ଡ ଗୀତ ॥ ୮୬
ତବ ପରସାଦୁ ଆହେ ରାଜୀବ ଲୋଚନ !
ପୂର୍ଣ୍ଣ ହେଲା ଆଦ୍ୟକାଣ୍ଡ ଗ୍ରନ୍ଥ ରାମାୟଣ ॥ ୮୭
ଆହେ ରାମ କରୁଣାସାଗର ଦଇତ୍ୟାରି !
ପୂର୍ଣ୍ଣ କର ଅଭିଳାଷ ଜାନକୀବିହାରୀ ॥ ୮୮
ବାଳକାଣ୍ଡ ଚରିତ ଏ' ପରମ ପବିତ୍ର ।
ସପ୍ତସପ୍ତତି ସର୍ଗରେ ପୂର୍ଣ୍ଣ ହେଲା ଗୀତ ॥ ୮୯

ଇତି ଶ୍ରୀଆର୍ଷରାମାୟଣେ ବାଲ୍ମୀକୀୟେ ଆଦିକାବ୍ୟେ ବାଳକାଣ୍ଡେ
ସପ୍ତସପ୍ତତିତମ ସର୍ଗ ।

ଭୀମସ୍ୟାପି ରଣେ ଭଙ୍ଗୋ ମୁନେ ରପି ମତିଭ୍ରମଃ ।
ଯଦି ଶୁଦ୍ଧମଶୁଦ୍ଧଂ ବା ମମ ଦୋଷୋ ନ ବିଦ୍ୟତେ ॥
ବାଳକାଣ୍ଡ ସମାପ୍ତୋଽୟଂ ସମ୍ପୂର୍ଣ୍ଣ ।



# ଶୁଦ୍ଧିପତ୍ର

| ପୃଷ୍ଠା | ପଦ ସଂଖ୍ୟା | ଅଛି | ହେବ |
|---|---|---|---|
| ୩୦ | ୧୩୧ | ସୀଗ୍ର | ସୀତା |
| ୧୦୬ | ୧୦୬ | ଲମ୍ୟ | ମୂର୍ଚ୍ଛ |
| ୧୫୮ | ୧୦ | ଅହ୍ନଭ | ଆହ୍ନିକ |
| ୧୭୧ | ୧୨ | ଣନେ | ମନେ |
| ୧୮୮ | ୨୬ | ଜ୍ଞାମ | ଜ୍ଞାନ |
| ୧୮୯ | ୩୬ | ବାରଦାନ | ବରଦାନ |
| ୨୧୯ | ୬ | ଦଶରଥ | ବଶ୍ବାମିତ୍ର |
| ୨୪୦ | ୩୪ | ସନ୍ଧାଜ | ସନ୍ଧାନ |
| ୨୪୬ | ୧୦ | ବନ୍ଧମାସୁ | ବନ୍ଦମାସୁ |
| ୨୫୦ | ୪୬ | ତର୍ପଣ ଭୁ ନକର | ତର୍ପଣ ଭୁ ଭର |
| ୨୫୧ | ୬୧ | ଆନଦଥା | ଆନକଥା |
| ୨୭୬ | ୪୮ | ଛଘ୍ନକର | ବଘ୍ନକର |
| ୩୦୧ | ୫୩ | ତପବଂଛ | ତପସିଛ |
| ୩୦୩ | ୨୧ | ସ୍ବରଲ | ସ୍ବଲଲ |
| ୩୧୩ | ୪୩ | ଛନ୍ଦରଙ୍ଗ | ଛନ୍ଦଭଙ୍ଗ |
| ୩୧୪ | ୧୦ | ଅଶ୍ବାରୋହୀ | ଗଜାରୋହୀ |
| ୩୧୬ | ୪୯ | ଆସ୍ବାସିଣ | ଆଶ୍ବାସିଣ |
| ୩୨୬ | ୨୪ | ଅପଚେପଣା | ଆପଣା |
| ୩୩୧ | ୧୩ | ଖଇ | ଘଇ |
| ୩୩୮ | ୭୦ | ବେବଗଣ | ଦେବଗଣ |
| ୩୩୮ | ୨୮ | ରୁପ୍ରେଣ | ରୂପେଣ |
| ୩୮୩ | ୪୬ | ବୈବସ୍ବୂତ | ବୈବସ୍ବତ |
| ୩୮୯ | ୫୩ | ଏସନ୍ତ | ଏସନ |
| ୩୯୪ | ୪୮ | ମନୋସି | ମନାସି |
| ୪୧୫ | ୧୮ | ନଢନ | ଚର୍ଚ୍ଚନ |
| ୪୧୬ | ୪୫ | ଶାସ୍ତ୍ର | ଶସ୍ତ୍ର |